ରଞ୍ଜନ ପ୍ରଧାନ

ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ

# କେନ୍ଦୁଝର

(କେନ୍ଦୁଝର ଜିଲ୍ଲାର ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, କଳା, ପରଂପରା, ପର୍ବପର୍ବାଣୀ,
ଜୀବନଯାତ୍ରା ଓ ଅନ୍ୟାନ୍ୟ ମୂଲ୍ୟବାନ ତଥ୍ୟ ସମ୍ବଳିତ ଏକ ବହୁମୂଲ୍ୟ ଗ୍ରନ୍ଥ )



କେନ୍ଦୁଝର ଜିଲ୍ଲା ସଂପର୍କରେ ଏ ବହି ଏକ ଜ୍ଞାନକୋଷ । ଏଥିରେ ଦ୍ୱିମତ ନାହିଁ । ବହିଟିକୁ ସବୁ କେନ୍ଦୁଝରିଆ କିଣନ୍ତୁ ଓ ପଢନ୍ତୁ ।

—— ଡ଼. ରାମଚନ୍ଦ୍ର ବେହେରା

ଏତେ କଥା ଜାଣିବାର ଅଛି ପାହାଡ ପର୍ବତଘେରା କେନ୍ଦୁଝରକୁ ଘେନି. ଏ ବହିଟି ନ ପଢିଲେ ବିଶ୍ୱାସ କରିହେବନାହିଁ ।

—— ତରୁଣକାନ୍ତି ମିଶ୍ର

ନୃତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ଓ ପ୍ରତ୍ନତାତ୍ତ୍ୱିକ ଆଭିମୁଖ୍ୟ ଏ କୃତିଟିରେ ଠାଏ ଠାଏ ଭସାମେଘ ପରି ସଂଚରି ଯାଇଛି । ରଂଜନଙ୍କ ଏହି ଉଦ୍ୟମ ପ୍ରଶଂସନୀୟ ।

—— ଡ଼. ଶରତ ଚନ୍ଦ୍ର ପ୍ରଧାନ

ସାଧୁ ଉଦ୍ୟମ । କେନ୍ଦୁଝର ଜିଲ୍ଲାର ସଂସ୍କୃତି. ପର୍ଯ୍ୟଟନ. ପରଂପରା. ପର୍ବପର୍ବାଣି. ଐତିହ୍ୟ. କୀର୍ତ୍ତିରାଜି ଏବଂ ସର୍ବୋପରି ବହୁ ଜ୍ଞାତ. ସ୍ୱଳ୍ପଜ୍ଞାତ. ଅଜ୍ଞାତ ତଥ୍ୟ ଉପସ୍ଥାପନ କରିବାରେ ଲେଖକ ସଫଳ ହୋଇଛନ୍ତି । ଲେଖକଙ୍କୁ ବଧେଇ ।

—— ନିରଂଜନ ପଟ୍ଟନାୟକ

ପୂର୍ବତନ ମନ୍ତ୍ରୀ. ପ୍ରଦେଶ କଂଗ୍ରେସ କମିଟି ସଭାପତି. ଓଡ଼ିଶା

କେନ୍ଦୁଝରକୁ କେନ୍ଦୁଝର ଓ କେନ୍ଦୁଝର ବାହାରେ ପରିଚିତ କରାଇବା ପାଇଁ ଏ ଗ୍ରନ୍ଥର ଭୂମିକା ଗୁରୁତ୍ୱପୂର୍ଣ୍ଣ । କେନ୍ଦୁଝର ଜିଲ୍ଲାର ପ୍ରତି ପରିବାରରେ ଏହି ବହିଟି ସାଇତି ରଖିଲା ଭଳି ଏକ ଅମୂଲ୍ୟ ସଂପଦ ।

—— ଡ଼. ବିମ୍ବାଧର ବେହେରା

କେନ୍ଦୁଝର ଜିଲ୍ଲାକୁ ନେଇ ଏହା ଏକ 'ବେଷ୍ଟ କଫି ଟେବୁଲ୍ ବୁକ୍' । ଏହାର ପ୍ରତିଟି ପୃଷ୍ଠାରେ ରହିଛି ପଠନୀୟ ଉପଭୋଗ ଓ ରୋମାଞ୍ଚକର ଅନୁଭୂତି । ଆମ ଜିଲ୍ଲାକୁ ପ୍ରକାଶ କରିବାରେ ରଂଜନ ପ୍ରଧାନଙ୍କ ଏହା ଏକ ଯୁଗାନ୍ତକାରୀ ସୃଷ୍ଟି ।

—— କିରଣ ଶଙ୍କର ସାହୁ. କେନ୍ଦୁଝର ନାଗରିକ ମଞ୍ଚ

ଗୋଟିଏ ନିଶ୍ୱାସରେ ପଢି ହୋଇଗଲା ଭଳି ପୁସ୍ତକ । ତଥ୍ୟ ଓ ରୋମାଞ୍ଚରେ ଭରା ଏହି ଗ୍ରନ୍ଥଟି କେନ୍ଦୁଝର ପାଇଁ ଏକ ଅମୂଲ୍ୟ ବସ୍ତୁ । ମୁଁ ତ କହିବି ଗୀତା. ଭାଗବତ ଭଳି ଏହା ସଂଗ୍ରହଣୀୟ । ପ୍ରତି କେନ୍ଦୁଝରିଆ ନିଜ ଘର ପାଇଁ ଏଭଳି ଏକ ପୁସ୍ତକକୁ ସଂଗ୍ରହ କରି ରଖନ୍ତୁ ।

—— ଅରୁଣ ପଣ୍ଡା. ବରିଷ୍ଠ ସାମ୍ବାଦିକ

ପତ୍ରବସନା ଜୁଆଙ୍ଗ ଯୁବତୀଠାରୁ ସଙ୍ଗୀତ ବୀଣାର ମୂର୍ଚ୍ଛନା ଯାଏଁ. ରାଜ୍ୟ ପାଇଁ ରାଜପୁତ୍ର ପାଇବାର ସର୍ତ୍ତ ପାଳନ ଲାଗି ସହିଦ୍ ହେବାଠାରୁ ଦୁର୍ଲଭ ଚାରୁଚିତ୍ର ଚମକ ଆଣିଥିବା ରାବଣଛାୟା ଯାଏଁ; ଏହି ମାଟିତୀର୍ଥ କେନ୍ଦୁଝରକୁ ରଂଜନ ଖୋଜିଛନ୍ତି ନିରନ୍ତର.... ଧନ୍ୟ ହୋଇଛନ୍ତି....।

—— ପଣ୍ଡିତ ମଦନ ମୋହନ ମିଶ୍ର

ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ

# କେନ୍ଦୁଝର

(କେନ୍ଦୁଝର ଜିଲ୍ଲାର ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, କଳା, ପରଂପରା, ପର୍ବପର୍ବାଣୀ, ଜୀବନଯାତ୍ରା ଓ ଅନ୍ୟାନ୍ୟ ମୂଲ୍ୟବାନ୍ ତଥ୍ୟ ସମ୍ବଳିତ ଏକ ବହୁମୂଲ୍ୟ ଗ୍ରନ୍ଥ)

ରଞ୍ଜନ ପ୍ରଧାନ

Odisha [redacted]

ଲେଖକ: ରଞ୍ଜନ ପ୍ରଧାନ

# ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ

# କେନ୍ଦୁଝର

(କେନ୍ଦୁଝର ଜିଲ୍ଲାର ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, କଳା, ପରଂପରା, ପର୍ବପର୍ବାଣୀ, ଜୀବନଯାତ୍ରା ଓ ଅନ୍ୟାନ୍ୟ ମୂଲ୍ୟବାନ୍ ତଥ୍ୟ ସମ୍ବଳିତ ଏକ ବହୁମୂଲ୍ୟ ଗ୍ରନ୍ଥ)

ପ୍ରକାଶକ : କ୍ରିଏଟିଭ୍ ଓଡ଼ିଶା, ନିଗିନିପୁର, ସାନଜରିଆ,କେନ୍ଦ୍ରାପଡା
ବିତରକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର-୧୨
ପ୍ରଚ୍ଛଦ : ଅଶୋକ ମହାନ୍ତି, ଫଟୋ : ରଞ୍ଜନ ପ୍ରଧାନ
ମୁଦ୍ରଣ : ଏ.ବି.ଇମେଜିଂ ପ୍ରା.ଲିଃ., ଭୁବନେଶ୍ୱର
ଫଟୋ : ରଂଜନ ପ୍ରଧାନ
ପ୍ରଥମ ମୁଦ୍ରଣ : ୨୦୧୨

ମୂଲ୍ୟ - ୩୫୦ ଟଙ୍କା



**aeitihya, sanskruti o' paryatana; kendujhara:** a work by ranjan pradhan on kendujhar district.
published by creative odisha, niginipur, sanajaria, kendrapada, odisha

**contact: 09437213854**
**e-mail:** ranjan_pragyan@rediffmail.com
pradhanranjan37@yahoo.com

₹ : 350.00

**ISBN: 987-81-89098-61-2**



## ଅର୍ପଣ

ପ୍ରିୟ ଓଡ଼ିଆ, ପ୍ରିୟ କେନ୍ଦୁଝରିଆ ତଥା 'ସମ୍ବାଦ'ର ସଂପାଦକ **ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକଙ୍କୁ...**

# କେଉଁ ପୃଷ୍ଠାରେ କ'ଣ ଅଛି?

ଜନେଇନାଳ
ନେଉଳିଯୋଡି
ନାକଜୋର
ଜହ୍ନେଇନାଳ
ସିମିଳି ନାଳ
ଗଞ୍ଜେଇ ଘୁରା ନାଳ
ମୁହାଁଣ ନାଳ
କାଳିଆପାଳ ନାଳ
ଗଣ୍ଡନାଳ
ଢବାଟିନାଳ
ବୈତରଣୀ ନଦୀର ବାମ ପାର୍ଶ୍ୱରୁ ଆସି ମିଶିଥିବା ପ୍ରମୁଖ ଉପନଦୀ
କୁରୁରା ନଦୀ
ଉଙ୍ଗିରା ନଦୀ
ଖଇରିଭଞ୍ଜନ ନଦୀ
ଦେଓ ନଦୀ
ତେଲ ନଦୀ
ସିମ୍ ନଦୀ
ଢଣ୍ଟେ ମୂଳି ନଦୀ
ଶାଳନ୍ଦୀ ନଦୀ
ବୈତରଣୀର ଅନ୍ୟ କ୍ଷୁଦ୍ର ଉପନଦୀ (ବାମ ପାର୍ଶ୍ୱରେ ଥିବା)
ଧୋବାପିଟା
ଟମକାଯୋଡି-ଢଟିମଯୋର
ଭିରାଳ-ସୀତା
ଭିରୋଳ-ଯମୁନା
କାଠୁପକା
ଧୋଢୁଆ ନାଳ
ଭାଲୁଘର ବା ବାଉଡିଆ
ଘାଗରା ନାଳ
ଘଣ୍ଟିଆ ନାଳ
ଚାରିନାଳିଆ

## କାହିଁକି ଏ ପୁସ୍ତକର ପରିକଳ୍ପନା?

ଏହା ପୂର୍ବରୁ କେନ୍ଦୁଝର ଜିଲ୍ଲା ସଂପର୍କରେ ଅଳ୍ପବହୁତ କିଛି ପୁସ୍ତକ ରଚନା ସମ୍ଭବ ହୋଇଛି । ତେବେ ଏଭଳି ଏକ ପୁସ୍ତକର ପରିକଳ୍ପନା କାହିଁକି, ମନରେ ପ୍ରଶ୍ନଟିଏ ଉଠିବା ସ୍ୱାଭାବିକ । ସାଧାରଣ ଲୋକଟିଏ କେନ୍ଦୁଝର ଜିଲ୍ଲା ସଂପର୍କରେ ଗୋଟିଏ ମାତ୍ର ପୁସ୍ତକରୁ ଏକ 'ସାଧାରଣ ଧାରଣା' (*common idea*) ପ୍ରାପ୍ତ ହେବା ଭଳି ପୁସ୍ତକଟିଏ ରଚନା କରିବାକୁ ମୋର ଅତ୍ୟନ୍ତ ଆଗ୍ରହ ଜାତ ହେଲା । ତା' ସାଥେସାଥେ ଏଭଳି ଏକ ପୁସ୍ତକର ପରିକଳ୍ପନା ମଧ୍ୟ ଆରଂଭ ହେଲା । ଏହି ପରିକଳ୍ପନା ମୋର ଏକାନ୍ତ ନୂତନ ମଧ୍ୟ ନୁହେଁ । ବରଂ ଏହା ପୂର୍ବରୁ ନବରଙ୍ଗପୁର ଜିଲ୍ଲା ସଂପର୍କରେ ଏହି ଧରଣର ଏକ ପୁସ୍ତକ ରଚନା କରାଯାଇଛି । ନବରଙ୍ଗପୁର ଜିଲ୍ଲାର ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, କଳା, ପରଂପରା, ପର୍ବପର୍ବାଣୀ, ଜୀବନଯାତ୍ରା ଓ ଅନ୍ୟାନ୍ୟ ମୂଲ୍ୟବାନ୍ ତଥ୍ୟ ସମ୍ବଳିତ 'ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ' ପୁସ୍ତକର ସଫଳତା ମୋତେ ଏହି ପୁସ୍ତକ ଲେଖିବାକୁ ପ୍ରେରଣା ଯୋଗେଇଛି କହିଲେ ଉଚିତ୍ ହେବ । କେନ୍ଦୁଝର ଭଳି ଏକ ଖଣିଖାଦାନଭରା ଓ ଶିଳ୍ପସମୃଦ୍ଧ ଜିଲ୍ଲାରେ 'ସମ୍ବାଦ'ର ଜିଲ୍ଲା ପ୍ରତିନିଧି ଭାବେ କାର୍ଯ୍ୟ କରିବା ଏକ ଆହ୍ୱାନ । ଏତେ ମାତ୍ରାରେ କର୍ମବ୍ୟସ୍ତତା ମଧ୍ୟରେ କିପରି ଏଭଳି ଏକ ପୁସ୍ତକ ଲେଖିବାକୁ ସମୟ ମିଳିଲା ସେଥିନେଇ ମନରେ ପ୍ରଶ୍ନ ଉଠିବା ସ୍ୱାଭାବିକ । ମଣିଷ ଯେତେ ଜଞ୍ଜାଳ ମଧ୍ୟରେ ଥାଉ ନା କାହିଁକି ସେ କ'ଣ ଖାଇବା, ପିଇବା, ଝାଡା ଯିବା, ପରିସ୍ରା କରିବା, ସଂଭୋଗ କରିବା, ହସିବା, ଖେଳିବା, ନାଚିବା, କାନ୍ଦିବା, ପଢିବା, ଲେଖିବା, ଈର୍ଷା, ଛଳନା, ପ୍ରେମ, ସ୍ନେହ ଭଳି ମାନବିକ ପ୍ରକ୍ରିୟାକୁ ଭୁଲିଯାଏକି? ଏସବୁ ପ୍ରକ୍ରିୟା ମଣିଷ ଜୀବନ ସହିତ ଓତପ୍ରୋତ ଭାବେ ଜଡ଼ିତ । କେହି ଛକରେ ବସି ଗଞ୍ଜେଇ ଟାଣେ ତ ଆଉ କେହି ଖଟିରେ ମଦ ପିଏ । ପୁଣି କେହି ପର ଝିଅ ବୋହୂଙ୍କ ଉପରେ ପାପ ଦୃଷ୍ଟି ରଖେ ତ ପୁଣି କେହି ଚୋରି କରେ, ଲୁଟ୍ କରେ, ଧର୍ଷଣ କରେ, ହତ୍ୟା କରେ, ଲୁଣ୍ଠନ କରେ, ଗୀତ ଗାଏ, ନାଚେ, ଟିଭି ଦେଖେ, କଂପ୍ୟୁଟର୍ ଭିଡ଼ିଓ ଗେମ୍ ଖେଳେ, ଇଣ୍ଟରନେଟ୍‌ରୁ ସେକ୍ସ ୱେବ୍‌ସାଇଟ୍ ତଲାସ କରେ, ତାସ୍, ପଶା, କ୍ରିକେଟ୍, ଫୁଟ୍‌ବଲ୍ ଆଦି ଖେଳରେ ବ୍ୟସ୍ତ ରହେ । କିଏ ଧର୍ମଶାସ୍ତ୍ର ଆଲୋଚନା କରେ ତ କିଏ ରାଜନୀତି ସଂକ୍ରାନ୍ତରେ ପ୍ରବଚନ ଦିଏ ଓ ସର୍ବୋପରି କିଛି କାମ ନଥିବା ବେଳେ ମଣିଷ ଯେତେସବୁ ବାଜେ କଥା ଚିନ୍ତା କରେ ଏବଂ ଅନ୍ୟମାନଙ୍କର କ୍ଷତି କରିବା ପାଇଁ ଯୋଜନା ପ୍ରସ୍ତୁତ କରେ । ମୁଁ ଏସବୁରୁ ମୁକୁଳି କିଛି ସମୟ ଲେଖାଲେଖି ପାଇଁ ଦେଇଥାଏ ।

ଅନ୍ୟମାନଙ୍କ ଭଳି ଏହି ପଢାଲେଖା ମଧ୍ୟ ମୋର ଏକ ଅଭ୍ୟାସ । ତେବେ ମୋର ଏହି ଅଭ୍ୟାସ ସାଧାରଣ ଲୋକଙ୍କ ପାଇଁ କି ଉପକାରରେ ଆସିପାରିବ ତାହା ଆପଣମାନେ ବିଚାର କରିବେ । ମୁଁ ଲେଖାଲେଖି କରୁ ନଥିଲେ ହୁଏତ ଚୋରି କରିଥାନ୍ତି କିମ୍ବା ଲୁଟ୍ କରିଥାନ୍ତି କିମ୍ବା ମଣିଷ ହତ୍ୟା କରିଥାନ୍ତି କିମ୍ବା ଜଙ୍ଗଲ କାଟି ପଦା କରିଥାନ୍ତି କିମ୍ବା ଖଣିଜ ସଂପଦ ଚୋରି କରିଥାନ୍ତି କିମ୍ବା ପର ଝିଅବୋହୂଙ୍କ ଇଜ୍ଜତ ଲୁଟିଥାନ୍ତି କିମ୍ବା ମଦ ପିଇ ମାତାଲ୍ ହୋଇଥାନ୍ତି କିମ୍ବା ପରଚର୍ଚ୍ଚା କରି ସମୟ ନଷ୍ଟ କରିଥା'ନ୍ତି କିମ୍ବା ନିଜ ଅଫିସ କର୍ମଚାରୀମାନଙ୍କ ବିରୋଧରେ ଷଡଯନ୍ତ୍ର କରି ନିଜକୁ ଅଧିକ ନିର୍ବୋଧ ବୋଲି ପରିଚୟ ଦେଇଥାନ୍ତି କିମ୍ବା କିଛି ନ କରି ଶୋଇ ରହିଥାନ୍ତି । ରକ୍ଷା ହୋଇଛି, ମୁଁ ଏସବୁ କୌଣସିଥିରେ ନାହିଁ ।

ଦିନରାତି ମୁଁ ବୁଲିଛି । କେନ୍ଦୁଝର ଜିଲ୍ଲାର କୋଣଅନୁକୋଣ, ସବୁଆଡେ ପଶିଯାଇଛି । କେନ୍ଦୁଝର ଜିଲ୍ଲା ସଂପର୍କରେ ଅଧିକ ଜାଣିବାକୁ ବହୁ ଅଧ୍ୟୟନ କରିଛି । ପାଗଳ ହୋଇଛି । ଅସନପାଟର ନଟରାଜ ମୂର୍ତ୍ତି ଓ ଶିଳାଲେଖଟିର ଫଟୋଟିଏ ଆଣିବା ପାଇଁ ହେଉ କିମ୍ବା କେନ୍ଦୁଝରରୁ ଉଦ୍ଧାର ହୋଇ ରାଜ୍ୟ ସଂଗ୍ରହାଳୟରେ ରଖା ଯାଇଥିବା ବୁଦ୍ଧ, ଜୈନ ମୂର୍ତ୍ତି ସଂପର୍କରେ ଜାଣିବାକୁ ମୁଁ ଅନେକବାର ଭୁବନେଶ୍ୱର ଧାଇଁଛି । ଆହୁରି ମଧ୍ୟ ଐତିହାସିକ ନନ୍ଦପୁର, ଅସନପାଟ, ଧଳେଇପାଟ, ଚକ୍ରତୀର୍ଥ, ଗଡ଼ଚଣ୍ଡୀ, ପୋତାସିଙ୍ଗିତି, ବୈଦ୍ୟାଖିଆ, ସୀତାବିଞ୍ଜି, ଜ୍ୟୋତିପୁର, ରାଜନଗର, ହୁଣ୍ଡା, ଦେଓଗାଁ ଆଦି ଅଞ୍ଚଳକୁ ଯେତେଥର ଯାଇଥିଲେ ମଧ୍ୟ ମୋର ଗସ୍ତ ଓ ଜିଜ୍ଞାସା ଅସଂପୂର୍ଣ୍ଣ ଭଳି ମନେ ହୋଇଛି । ଗୋନାସିକା, ଖଣ୍ଡାଧାର, ଭୀମକୁଣ୍ଡ, ଅସୁରଖୋଲ, ହାଣ୍ଡିଭଙ୍ଗା, ଦେଓଝର ମୁର୍ଗାମହାଦେବ, କେଶରୀକୁଣ୍ଡ ଭଳି ପର୍ଯ୍ୟଟନସ୍ଥଳ ମୋତେ ବିମୋହିତ କରିଛି । କେନ୍ଦୁଝର ଜିଲ୍ଲାର ଆଦିବାସୀ ଜନଜୀବନ ଓ ସେମାନଙ୍କର ପର୍ବପର୍ବାଣୀ ମଧ୍ୟ ମୋତେ ପ୍ରଭାବିତ କରିଛି । ଏସବୁକୁ ନେଇ ଏକ ଆକର୍ଷଣୀୟ ପୁସ୍ତକର ପରିକଳ୍ପନା ସେବେଠୁ ଆରମ୍ଭ ହୋଇଛି ।

ଧୂଆଁ ଓ ଧୂଳି ବିନା ଯଦି କେଉଁ ଶିଳ୍ପ କଥା ଚିନ୍ତା କରାଯାଏ, ତାହା ହୁଏତ ହୋଇପାରେ ରାଜ୍ୟର ପର୍ଯ୍ୟଟନ ଶିଳ୍ପ । ରାଜ୍ୟରେ ପର୍ଯ୍ୟଟନ ଶିଳ୍ପର ବିକାଶ ପାଇଁ ଯଥେଷ୍ଟ ସମ୍ଭାବନା ଥିଲାବେଳେ କେନ୍ଦୁଝର ଜିଲ୍ଲା ଏ କ୍ଷେତ୍ରରେ ସବୁଠୁ ଆଗରେ ରହିବ । କେନ୍ଦୁଝର ଜିଲ୍ଲାରେ ଯେତେ ଦର୍ଶନୀୟ ସ୍ଥାନ, ଐତିହ୍ୟ, କୀର୍ତ୍ତିରାଜି, ଧାର୍ମିକ ଅନୁଷ୍ଠାନ, ପ୍ରାକୃତିକ ଶୋଭା, ଜଙ୍ଗଲ, ପାହାଡ, ଝରଣା ଆଦି ପର୍ଯ୍ୟଟନ କ୍ଷେତ୍ର ରହିଛି ତାହାର ଉପଯୁକ୍ତ ବିକାଶ କରାଯାଇ ପାରିଲେ କେନ୍ଦୁଝର ଅର୍ଥନୈତିକ ସ୍ତରରେ ଅଧିକ ସମୃଦ୍ଧ ହୋଇ ପାରନ୍ତା । ଆଜି ଖଣିଖାଦାନ ଲୁଟ୍, ଦୁର୍ନୀତି, ଚୋରି, ଶିଳ୍ପ ଓ ପ୍ରଦୂଷଣକୁ ନେଇ କେନ୍ଦୁଝର ଜିଲ୍ଲା କ୍ଳାନ୍ତ ହୋଇ ପଡିଛି । ଖଣି ଦୁର୍ନୀତି ପାଇଁ କେନ୍ଦୁଝର ରାଜ୍ୟ କାହିଁକି ସମଗ୍ର ଦେଶରେ ସର୍ବାଧିକ ଚର୍ଚ୍ଚିତ ହୋଇଛି । **ଶିଳ୍ପପତିମାନେ କେନ୍ଦୁଝର ଜିଲ୍ଲାର ଖଣିଜ ସଂପଦ ପ୍ରତି ଯେତିକି ମାତ୍ରାରେ ଆକୃଷ୍ଟ ହୋଇଛନ୍ତି ସମ ପରିମାଣରେ ଏ ଜିଲ୍ଲାର ସବୁଜିମା, ପ୍ରାକୃତିକ**

ଶୋଭା ଓ ସୌନ୍ଦର୍ଯ୍ୟ ପ୍ରତି ଆଗ୍ରହ ଦେଖେଇ ପାରିନାହାନ୍ତି । କେନ୍ଦୁଝର ଜିଲ୍ଲାରୁ ଖଣିଜ ସଂପଦ ଲୁଟିନେବା ଚକ୍କରରେ ଶିଳ୍ପପତିମାନେ ସମସ୍ତ ପ୍ରକାର ମାନବିକତାକୁ ଜଳାଞ୍ଜଳି ଦେବାକୁ ପଛେଇ ନାହାନ୍ତି । ଖଣିଖାଦାନକୁ ନେଇ କେନ୍ଦୁଝର ଜିଲ୍ଲାର ଭୌଗୋଳିକ ସ୍ଥିତି ପ୍ରଭାବିତ ହେବା ସାଙ୍ଗକୁ ପରିବେଶ ପରିସ୍ଥିତି ବିଗିଡ଼ିବାରେ ଲାଗିଛି । ବ୍ୟାପକ ଖଣି ଖନନ ଯୋଗୁଁ ଜିଲ୍ଲାରେ ଜଙ୍ଗଲ ସଂପଦ ହ୍ରାସ ପାଇଛି ଏବଂ ବନ୍ୟଜନ୍ତୁଙ୍କ ଜୀବନ ପ୍ରକ୍ରିୟା ମଧ୍ୟ ବିପନ୍ନ ହୋଇଛି । ଜଙ୍ଗଲ କ୍ଷୟ ଯୋଗୁଁ କେନ୍ଦୁଝର ଜିଲ୍ଲାରେ ହାତୀ ଭଳି ବିଶାଳକାୟ ଜୀବଙ୍କ ଅବସ୍ଥା ସଂକଟାପନ୍ନ ହୋଇପଡିଛି । ଜଙ୍ଗଲ ନଥିବା କାରଣରୁ ହାତୀମାନେ ଜନବସତି ଅଞ୍ଚଳକୁ ଆସୁଛନ୍ତି ଏବଂ ଏହା ଦ୍ୱାରା ଉଭୟ ମଣିଷ ଓ ହାତୀ ମଧ୍ୟରେ ସଂଘର୍ଷ ଘଟୁଛି । ଗତ କିଛି ବର୍ଷ ଧରି ହାତୀ ଆକ୍ରମଣରେ ଯେଉଁ ମାତ୍ରାରେ ମଣିଷଙ୍କ ଜୀବନ ହାନି ହୋଇଛି ତା'ଠାରୁ ଉଦ୍‌ବେଗଜନକ ଭାବେ ମଣିଷର ପାଲଟା ଆକ୍ରମଣରେ ହାତୀଙ୍କର ମଧ୍ୟ ମୃତ୍ୟୁ ଘଟିଛି । ମଣିଷ-ହାତୀ ମଧ୍ୟରେ ଚାଲିଥିବା ଏ ସଂଘର୍ଷ କେନ୍ଦୁଝର ଜିଲ୍ଲାର ଜୈବ ବିବିଧତା ପ୍ରତି ଏକ ସତର୍କ ଘଣ୍ଟି ପାଲଟିଛି ।

ଅପରପକ୍ଷେ, ଲୁହାପଥରକୁ ନେଇ ଗଢି ଉଠିଥିବା ଶିଳ୍ପଜନିତ ପ୍ରଦୂଷଣ ମଧ୍ୟ କେନ୍ଦୁଝର ଜିଲ୍ଲା ପାଇଁ ଚିନ୍ତାର କାରଣ ପାଲଟିଛି । ଆଜି ଶିଳ୍ପପତିମାନେ ଲୁହାପଥରକୁ ନେଇ କେନ୍ଦୁଝର ଜିଲ୍ଲା ଓ ଏହାର ଆଖପାଖ ଅଞ୍ଚଳରେ ବଡ଼ବଡ଼ କଳକାରଖାନା ପ୍ରତିଷ୍ଠା ପାଇଁ ଯେଭଳି ଭାବେ ଉତ୍ସାହିତ ହୋଇ ପଡିଛନ୍ତି, ଠିକ୍ ସମ ପରିମାଣରେ ପର୍ଯ୍ୟଟନ ଶିଳ୍ପକୁ ନେଇ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ପ୍ରଶ୍ନ ଉଠେ, ଯେଉଁ ଶିଳ୍ପରୁ ପ୍ରଚୁର ମାତ୍ରାରେ ଧୂଳି ଓ ଧୂଆଁ ନିର୍ଗତ ହୋଇଥାଏ ଏବଂ ପ୍ରଦୂଷଣ କାରଣରୁ ଜନଜୀବନ ଅସ୍ତବ୍ୟସ୍ତ ହୋଇ ପଡିଥାଏ ସେଭଳି ଶିଳ୍ପ ପ୍ରତି ଏତେ ଆଗ୍ରହ କାହିଁକି? ଅପରପକ୍ଷେ, ପର୍ଯ୍ୟଟନ ଭଳି ଧୂଳି, ଧୂଆଁ ଆଦୌ ନଥିବା ଶିଳ୍ପ *(industry without smoke)* ପ୍ରତି କାହିଁକି ଆଗ୍ରହ ସୃଷ୍ଟି ହୋଇପାରୁନାହିଁ । ବର୍ତ୍ତମାନ ଏଥିନେଇ ଅଧିକ ଚିନ୍ତା କରିବାର ସମୟ ଉପନୀତ ।

କେନ୍ଦୁଝର ଜିଲ୍ଲାରେ ଅନେକ ଆକର୍ଷଣୀୟ ପର୍ଯ୍ୟଟନ ସ୍ଥଳ ଓ ଦର୍ଶନୀୟ ସ୍ଥାନ ରହିଛି । ଏଗୁଡିର ଅଧିକ ବିକାଶ କରାଇ ଉଭୟ ଦେଶ ଓ ବିଦେଶ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିପାରିଲେ କେନ୍ଦୁଝର ଜିଲ୍ଲା ରାଜ୍ୟ ରାଜକୋଷକୁ ଅଧିକ ସମୃଦ୍ଧ କରି ପାରନ୍ତା । କେନ୍ଦୁଝରକୁ ଅନେକ 'ଜଳପ୍ରପାତର ଜିଲ୍ଲା' *(district of water falls)* ବୋଲି କହିଥାନ୍ତି । ଏ ଜିଲ୍ଲାରେ ଛୋଟବଡ଼ ବହୁ ପରିମାଣରେ ଜଳପ୍ରପାତ ରହିଛି । କେନ୍ଦୁଝର ଜିଲ୍ଲାରେ ରାଜ୍ୟର ସବୁଠୁ ଦୀର୍ଘ ଓ ଆକର୍ଷଣୀୟ ଜଳପ୍ରପାତ 'ଖଣ୍ଡାଧାର' ରହିଛି । ମାତ୍ର ରାଜ୍ୟର ଦୀର୍ଘତମ ଜଳପ୍ରପାତ ଓ ମନୋରମ ପର୍ଯ୍ୟଟନସ୍ଥଳୀ ଭାବେ ସବୁ ଲୋକଙ୍କ ହୃଦୟ ଜିତି ପାରିଥିବା ଖଣ୍ଡାଧାର ଏବେ ଖଣି ମାଫିଆଙ୍କ ବିଷ ଦୃଷ୍ଟିକୁ ଆସି ଯାଇଛି । କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍ ଓ ସୁନ୍ଦରଗଡ ଜିଲ୍ଲାର ବଣେଇ ମଧ୍ୟରେ ରହିଥିବା

ବିଶାଳ ପର୍ବତମାଳାର ନାମ ହେଉଛି ଖଣ୍ଡାଧାର । ରାଶିରାଶି ପର୍ବତ ସାଙ୍ଗକୁ ସବୁଜ ବନାନୀ ଓ ଶୀତଦିନର ମନୋରମ ପ୍ରାକୃତିକ ଶୋଭା ହିଁ ଖଣ୍ଡାଧାରର ବିଶେଷତ୍ୱ । ଶୀତଦିନେ ଏଠାରେ ତୁଷାରପାତ ସବୁଠୁ ବଡ଼ ଆକର୍ଷଣ । ଏହି ଜଳପ୍ରପାତଟି ପାହାଡର ଶୀର୍ଷରୁ ଶୂନ୍ୟରୁ ଖସିପଡିଲା ଭଳି ମନେ ହୋଇଥାଏ । ଶୂନ୍ୟରୁ ଖସି ପଡୁଥିବା ଜଳବିନ୍ଦୁମାନଙ୍କ ସମାହାରରେ ଇନ୍ଦ୍ରଧନୁର ଯେଉଁ ଏକ ବିଶାଳ ବଳୟ ସୃଷ୍ଟି ହୋଇଥାଏ ତାହା ଅନ୍ୟ ଜଳପ୍ରପାତମାନଙ୍କରେ ଦେଖା ଯାଇ ନଥାଏ । କେନ୍ଦୁଝର ସବ୍ ଡ଼ିଭିଜନ ଅର୍ନ୍ତଗତ ବାଂଶପାଳ ବ୍ଲକ୍‌ର ନୟାକୋଟ ନିକଟରେ ଆଉ ଏକ ଜଳପ୍ରପାତ ରହିଛି ଯାହାର ନାଁ 'କୁଣ୍ଡପାଣି' । ଏହା ମଧ୍ୟ ଏକ ମନୋରମ ପର୍ଯ୍ୟଟନ ସ୍ଥଳ । ପ୍ରାୟ ୫୦ ଫୁଟ ଉଚ୍ଚତା ବିଶିଷ୍ଟ ଏହି ଜଳପ୍ରପାତଟି ବେଶ ଆକର୍ଷଣୀୟ । ସେହିଭଳି ବାଂଶପାଳ ବ୍ଲକ୍‌ରେ ଆଉ ଏକ ଜଳ ପ୍ରପାତ ରହିଛି ଯାହାର ନାମ 'ରାଜାମ୍' । କାଦକଲା ଗାଁଠାରୁ ପନ୍ଦର କିଲୋମିଟର ଦୂରରେ ଏହା ଅବସ୍ଥିତ । ବାଂଶପାଳ ବ୍ଲକ୍‌ରେ ରହିଛି 'ଝିଲ୍ଲୀପାଣି' ଜଳ ପ୍ରପାତ । କେନ୍ଦୁଝର ଜିଲ୍ଲାରେ ଆଉ ଦୁଇଟି ଜଳ ପ୍ରପାତ କେବଳ ରାଜ୍ୟ କାହିଁକି ସମଗ୍ର ଭାରତବର୍ଷର ପର୍ଯ୍ୟଟନ ମାନଚିତ୍ରକୁ ସମୃଦ୍ଧ କରିପାରିଛି । ତାହା ହେଉଛି ସାନଘାଗରା ଓ ବଡ଼ଘାଗରା । କେନ୍ଦୁଝରଗଡ଼ ନିକଟରେ ମାଛକାନ୍ଦଣା ନଦୀରୁ ଏହି ଦୁଇଟି ଜଳପ୍ରପାତ ସୃଷ୍ଟି ହୋଇଛି । ସେହିଭଳି ହରିଚନ୍ଦନପୁର ବ୍ଲକ୍‌ରେ ଆଉ ଏକ ଚିତ୍ତାକର୍ଷକ ଜଳପ୍ରପାତ ରହିଛି ଯାହା କି ସବୁଠୁ ବେଶ୍ ମନୋରମ । ଏହି ଜଳପ୍ରପାତର ନାମ ହେଉଛି 'ଗୁଣ୍ଡିଚାଘାଗି' । ଯୋଡା ବ୍ଲକ୍‌ରେ ଦୁଇଟି ମନୋରମ ଜଳପ୍ରପାତ ରହିଛି । ଗୋଟିଏ ହେଉଛି ଯୋଡା ବ୍ଲକ୍‌ର ବଳଦା ଗ୍ରାମପଞ୍ଚାୟତର ହାଣ୍ଡିଭଙ୍ଗା ଜଳପ୍ରପାତ ଓ ଦେଓଝର ପଞ୍ଚାୟତରେ ଅବସ୍ଥିତ ମୁର୍ଗା ମହାଦେବ ଜଳପ୍ରପାତ । ହାଣ୍ଡିଭଙ୍ଗା ଜଳପ୍ରପାତଟି ବୋଧହୁଏ କେନ୍ଦୁଝର ଜିଲ୍ଲାର ସବୁଠୁ ଆକର୍ଷଣୀୟ ଓ ମନୋରମ ଜଳପ୍ରପାତ ହୋଇପାରେ । ଏହାକୁ ଅନ୍ୟ ଅର୍ଥରେ 'ଗୁପ୍ତ ପର୍ଯ୍ୟଟନ' *(hidden tourism)* ବୋଲି କୁହାଯାଏ । ଝୁଂପୁରା ବ୍ଲକ୍‌ରେ ରହିଛି ଅନ୍ୟତମ ମନୋରମ ଜଳପ୍ରପାତ ଅସୁରଖୋଲ । ଏଠାରେ ଦୁଇଟି ଆକର୍ଷଣୀୟ ଜଳପ୍ରପାତ ପର୍ଯ୍ୟଟକଙ୍କ ମନ ମୋହିଥାଏ । ଆନନ୍ଦପୁର ଉପଖଣ୍ଡରେ ଚକ୍ରତୀର୍ଥରେ ମଧ୍ୟ ଏକ ଆକର୍ଷଣୀୟ ଜଳପ୍ରପାତ ରହିଛି । ଏହାବ୍ୟତୀତ ଯୋଡା ବ୍ଲକ୍‌ର ବଲାଣି ଓ ଗୁଆଲି ପଞ୍ଚାୟତର ସୀମାନ୍ତ ଜଙ୍ଗଲରେ ରହିଛି ଚିତ୍ତାକର୍ଷକ 'ଫୁଲବାଳି' ଜଳପ୍ରପାତ । ଏସବୁ ଜଳପ୍ରପାତର ଉପଯୁକ୍ତ ବିକାଶ କରାଯାଇପାରିଲେ ଏଠାକୁ ବର୍ଷତମାମ୍ ପର୍ଯ୍ୟଟକଙ୍କ ଆତଯାତ ହୋଇପାରନ୍ତା ।ମାତ୍ର, କିଏ ଏସବୁ କଥା ଚିନ୍ତା କରୁଛି?

ରାଜ୍ୟରେ ପୁରୀକୁ ଛାଡିଦେଲେ ଯଦି କେଉଁ ସ୍ଥାନକୁ ସର୍ବାଧିକ ସଂଖ୍ୟାରେ ପର୍ଯ୍ୟଟକ ଓ ତୀର୍ଥଯାତ୍ରୀ ଆସିଥାନ୍ତି ତାହା ହେଉଛି ଘଟଗାଁର ମା' ତାରିଣୀ ପୀଠ । ତେବେ ତାରିଣୀଙ୍କ ପୀଠ ଯେଭଳି ଭାବେ ବିକଶିତ ହେବା ତାହା କ'ଣ ହୋଇପାରିଛି?

କେନ୍ଦୁଝରକୁ ପୁରାତନ ବୈତରଣୀ ନଦୀ ସଭ୍ୟତାର ସ୍ୱାକ୍ଷର ଭାବେ ବର୍ଣ୍ଣନା କରାଯାଉଛି । ଅନ୍ୟପକ୍ଷରେ, ବୈତରଣୀ ନଦୀକୁ କେନ୍ଦୁଝର ଜିଲ୍ଲାର 'ଜୀବନ ରେଖା' *(life line)* କୁହାଯାଉଛି ।

ଏହି ପ୍ରସିଦ୍ଧ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' କେନ୍ଦୁଝର ଜିଲ୍ଲାର ଆଉ ଏକ କିମ୍ବଦନ୍ତୀପୂର୍ଣ୍ଣ ପର୍ଯ୍ୟଟନସ୍ଥଳ । ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଂଗମାନଙ୍କ ବାସସ୍ଥାନ । 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ପରିଚିତ ଜୁଆଙ୍ଗମାନେ ଏ ଅଞ୍ଚଳରେ କାହିଁ କେଉଁ କାଳରୁ ବସବାସ କରିଆସୁଛନ୍ତି । ବୈତରଣୀ ନଦୀ କୂଳରେ ବସବାସ କରୁଥିବା ଆଦିମ ଅଧିବାସୀମାନେ ସୀତାବିଞ୍ଜି, ଅସନପାଟ ଆଦି ସ୍ଥାନରେ ନଗର ପ୍ରତିଷ୍ଠା କରି ବସବାସ କରୁଥିଲେ । ଏହିସବୁ ଅଞ୍ଚଳରୁ ନୂତନ ପ୍ରସ୍ତର ଓ ପୁରାତନ ପ୍ରସ୍ତର ଯୁଗର ଅନେକ ନିଦର୍ଶନ ଆଜି ବି ଦେଖିବାକୁ ମିଳିଥାଏ । କେନ୍ଦୁଝର ଜିଲ୍ଲାର ରାମଲା, ଜଗନ୍ନାଥପୁର, ସରେଇ, ଅସନପାଟ, ଧଳେଇପାଟ, ସୀତାବିଞ୍ଜି, ପାଟଣା ଆଦି ଅଞ୍ଚଳରୁ ପ୍ରସ୍ତର ଯୁଗର ଅନେକ ଅବଶେଷ ମିଳିବା ଘଟଣା ଏ ଅଞ୍ଚଳର ପ୍ରାଚୀନତା ସଂପର୍କରେ ଅନେକ ତଥ୍ୟ ପ୍ରଦାନ କରିଥାଏ ।

କେନ୍ଦୁଝରର ପ୍ରସିଦ୍ଧ ବଳଦେବଜୀଉ ମନ୍ଦିର ଓ ରାଜପ୍ରାସାଦ ମଧ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନସ୍ଥଳ । ବଳଦେବଜୀଉ ହେଉଛନ୍ତି କେନ୍ଦୁଝରର ଆରାଧ୍ୟ ଦେବତା ଏବଂ ଏଠାରେ ପ୍ରତି ସକାଳ ଆରମ୍ଭ ହୁଏ ମହାପ୍ରଭୁ ବଳଦେବଜୀଉଙ୍କ ସ୍ତୁତି ବନ୍ଦନାରୁ । କେନ୍ଦୁଝର ସହରର ଅନତି ଦୂରରେ ରହିଛି ବେଶ୍ ମନୋରମ ତୀର୍ଥସ୍ଥଳୀ 'ସିଦ୍ଧମଠ' । ସିଦ୍ଧ ଜଗନ୍ନାଥ, ସିଦ୍ଧ ହନୁମାନ, ସିଦ୍ଧକାଳୀ ଓ ମୋହନ ଗୁମ୍ଫା ପାଇଁ ଏହି ସ୍ଥାନଟି ବେଶ୍ ପ୍ରସିଦ୍ଧିଲାଭ କରିଛି ।

ଆନନ୍ଦପୁର ସବ୍ ଡିଭିଜନ ଅନ୍ତର୍ଗତ ଦେଓଗାଁଠାରେ କୁଶେଇ ନଦୀ କୂଳରେ ଜିଲ୍ଲାର ପ୍ରାଚୀନତମ ଶୈବପୀଠ 'କୁଶଳେଶ୍ୱର' ମନ୍ଦିର ଅବସ୍ଥିତ । ଏଠାରୁ ମିଳିଥିବା ପ୍ରାଚୀନମୂର୍ତ୍ତି ଓ କାରୁକାର୍ଯ୍ୟ ବହୁ ପ୍ରାଚୀନ ବୋଲି ବିଶ୍ୱାସ କରାଯାଏ । ଏହି ସବ୍ ଡିଭିଜନ ଅନ୍ତର୍ଗତ ଚକ୍ରତୀର୍ଥ, ଗଡ଼ଚଣ୍ଡୀ,ଫକୀରପୁର, ବୈଦ୍ୟାଖିଆ, ପୋତାସିଙ୍ଗିଡି, କୁଶଳେଶ୍ୱର ଆଦି ସ୍ଥାନ ରାଜ୍ୟର ପ୍ରାଚୀନ ବୌଦ୍ଧ ଓ ଜୈନପୀଠ ଭାବେ ବେଶ ପରିଚିତ । ଚକ୍ରତୀର୍ଥରେ ଥିବା ଆଦିଜିନ ଋଷଭନାଥଙ୍କର ପ୍ରାଚୀନ ମୂର୍ତ୍ତି ଏହି ସ୍ଥାନର ପ୍ରାଚୀନତା ସଂପର୍କରେ ବହୁ ତଥ୍ୟ ପ୍ରଦାନ କରିଥାଏ । ସେହିଭଳି ଆନନ୍ଦପୁରଠାରୁ କୋଡିଏ କିଲୋମିଟର ଦୂରରେ ଐତିହାସିକ ସ୍ଥଳ 'ପୋତାସିଙ୍ଗିଡି ଗଡ଼' ଅବସ୍ଥିତ । ପୋତାସିଙ୍ଗିଡି ଓ ବୈଦ୍ୟାଖିଆରୁ ଉଦ୍ଧାର କରାଯାଇଥିବା ଅନେକ ଜୈନ ମୂର୍ତ୍ତି ଏବେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ ହୋଇ ରହିଛି । ପୋତାସିଙ୍ଗିଡିରେ ଭଗ୍ନ ଦୁର୍ଗ ଓ ଅନେକ ପ୍ରାଚୀନ ବୌଦ୍ଧ, ଜୈନ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳିଥାଏ । ଆନନ୍ଦପୁର ଉପଖଣ୍ଡର ସିଆଡିମାଳିଆ, କେନ୍ଦୁଝର ଉପଖଣ୍ଡର ପିପିଳିଆ, ଢେଙ୍କିକୋଟ, ସଛେଇଭଞ୍ଜ ପାହାଡ ଗୁମ୍ଫା, ଧଳେଇପାଟ, ଲକ୍ଷ୍ମୀପାଦ ଉପତ୍ୟକା ଆଦି ଗୋଟିଏ ଗୋଟିଏ ପ୍ରାଚୀନ ବୌଦ୍ଧ ତନ୍ତ୍ର ପୀଠ ଭାବେ ବେଶ୍ ଜଣାଶୁଣା ।

କେନ୍ଦୁଝରଠାରୁ ଯୋଡା ଯିବା ରାସ୍ତାରେ ପଳାସପଙ୍ଗା ନିକଟରେ ଐତିହାସିକ ସଛେଇଭଞ୍ଜ ହୁଡି ଜିଲ୍ଲାର ଅନ୍ୟ ଏକ ଆକର୍ଷଣୀୟ ପର୍ଯ୍ୟଟନସ୍ଥଳ । ପ୍ରତିବର୍ଷ ରଜ ସଂକ୍ରାନ୍ତିରେ ଏଠାରେ ଜନ୍ତାଳ ପର୍ବ ପାଳନ କରାଯାଇଥାଏ । ଏଠାରେ ମଧ୍ୟ ବହୁ ପ୍ରାଚୀନ ବୌଦ୍ଧ ଓ ଜୈନ ମୂର୍ତ୍ତି ଦେଖିବାକୁ ମିଳିଥାଏ ।

ସେହିଭଳି ଜିଲ୍ଲାର ଆଉ ଏକ ଆକର୍ଷଣୀୟ ଐତିହାସିକ ପୀଠ ହେଉଛି 'ସୀତାବିଞ୍ଜି' । କେନ୍ଦୁଝର ସହରଠାରୁ ୩୦ କିଲୋମିଟର ଦୂରରେ ଘଟଗାଁ ବ୍ଲକ୍‌ରେ ଅବସ୍ଥିତ ଏହି ପ୍ରସିଦ୍ଧ ପର୍ଯ୍ୟଟନ ସ୍ଥଳ । ଏଠାରେ ଦୁଇଟି ବିଶାଳ ପର୍ବତ ଗୁମ୍ଫା ରହିଛି । ସୀତାବିଞ୍ଜିର ପାହାଡର ପଥର ଉପରେ ପ୍ରାଚୀନ କାଳର ରାଜକୀୟ ଯୁଦ୍ଧଯାତ୍ରାର ଚିତ୍ର ରହିଛି, ଯାହାର ପ୍ରାଚୀନତା ସଂପର୍କରେ ଆଜି ସୁଦ୍ଧା ଚର୍ଚ୍ଚାର ଅନ୍ତ ଘଟିନି । ଏଠାରେ ପଥରର ଛାତରେ ରହିଥିବା ଚିତ୍ରକୁ 'ରାବଣଛାୟା' ବୋଲି କୁହାଯାଏ ।

ପୃଥିବୀର ସର୍ବ ପ୍ରଥମ ବୌଦ୍ଧ ସନ୍ନ୍ୟାସୀ ହେଉଛନ୍ତି କେନ୍ଦୁଝରର ଦୁଇ ଭୂୟାଁ ବଣିକ ତପସୁ ଓ ଭଲ୍ଲିକ । ଏ ଦୁହେଁ ବୁଦ୍ଧଙ୍କର ପ୍ରଥମ ଶିଷ୍ୟତ୍ୱ ଲାଭ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲେ । ଏଣୁ କେନ୍ଦୁଝରରେ ବୌଦ୍ଧ ଧର୍ମର ପ୍ରାଚୀନତା ନେଇ ଆଲୋଚନାର ସୁଯୋଗ ସୃଷ୍ଟି ହୋଇଥାଏ । ଗୌତମ ବୁଦ୍ଧ ଯେତେବେଳେ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ସମାଧିରୁ ଉଠିଲେ ସେତେବେଳେ ତପସୁ ଓ ଭଲ୍ଲିକ ନାମକ ଦୁଇ ଜଣ ଭୂୟାଁ ବଣିକ ତାଙ୍କୁ ଆରିସା ପିଠା ଖାଇବାକୁ ଦେଇ ତାଙ୍କର ବ୍ରତ ଉଦ୍‌ଯାପନ କରାଇଥିଲେ । ବୁଦ୍ଧଦେବଙ୍କ ପ୍ରଥମ ଶିଷ୍ୟଦ୍ୱୟ ତପସୁ ଓ ଭଲ୍ଲିକ ବୁଦ୍ଧଦେବଙ୍କ ମହାପ୍ରୟାଣ ପରେ ତାଙ୍କର କେଶକୁ ନେଇ କେଶସ୍ତୂପ ଓ ଦନ୍ତକୁ ନେଇ ଦନ୍ତସ୍ତୂପ ଏବଂ ବୁଦ୍ଧଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ସ୍ମୃତିପୀଠମାନ ସ୍ଥାପନ କରିଥିଲେ ।

ପାଟଣା ବ୍ଲକ୍‌ରେ ରହିଛି ବହୁ ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ 'ଭୀମକୁଣ୍ଡ' । ପବିତ୍ର ବୈତରଣୀ ନଦୀରେ ଅବସ୍ଥିତ ଏହି ଜଳପ୍ରପାତଟି ସବୁଠୁ ମନମୁଗ୍‌ଧକର । ଏହାବ୍ୟତୀତ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ରେ ରହିଛି କେଶରୀକୁଣ୍ଡ, ରାମତୀର୍ଥ, ନନ୍ଦପୁରର ପ୍ରସିଦ୍ଧ ଐତିହାସିକ ପୀଠ କପିଳମୁନି ମଠ (ବିଷ୍ଣୁ ପୀଠ) ଓ ସାତକୁଟୁଣିଆହୁଡି । ଏହା ସାଙ୍ଗକୁ କେନ୍ଦୁଝର ଜିଲ୍ଲାରେ ଆହୁରି ଅନେକ ଛୋଟବଡ଼ ପର୍ଯ୍ୟଟନସ୍ଥଳୀ ଓ ତୀର୍ଥ ସ୍ଥାନ ରହିଛି । ଏସବୁର ଉଚିତ୍ ବିକାଶ କରାଯାଇପାରିଲେ କେନ୍ଦୁଝର ଜିଲ୍ଲା ପର୍ଯ୍ୟଟନ ମାନଚିତ୍ରରେ ଏକ ଆଗୁଆ ଜିଲ୍ଲା ଭାବେ ପରିଗଣିତ ହୋଇପାରିବ । ଏଥିରେ ଦ୍ୱିମତ ନାହିଁ ।

ଝୁଂପୁରା ବ୍ଲକ୍‌ର ଐତିହାସିକ ଅସନପାଟ ଗ୍ରାମଟି ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରାମର ମାନ୍ୟତା ଲାଭ କରିଛି । ଏହା କେବଳ କେନ୍ଦୁଝର ଜିଲ୍ଲା କାହିଁକି ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ସ୍ଥାନର ମାନ୍ୟତା ଲାଭ କରିଛି । ଏଠାରୁ ମିଳିଥିବା ଉଭୟ ପୁରାତନ ଓ ନୂତନ ପ୍ରସ୍ତର ଯୁଗ *(old stone age & new stone age)*ର ବହୁ ଅସ୍ତ୍ରଶସ୍ତ୍ର, କୃଷି ଉପକରଣ ଓ ଅନ୍ୟାନ୍ୟ ବ୍ୟବହାର ସାମଗ୍ରୀକୁ ଲକ୍ଷ୍ୟ କଲେ ଏହି ସ୍ଥାନରେ ପ୍ରସ୍ତର ଯୁଗର ମଣିଷଙ୍କ ସଂପର୍କରେ ବହୁ କଥା ଜାଣିବାକୁ ମିଳେ । ଏହା ବ୍ୟତୀତ ଏଠାରୁ ମିଳିଥିବା ଅଷ୍ଟଭୁଜା ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଲେଖ ମଧ୍ୟ ଏଠାକାର ପ୍ରାଚୀନତା ସଂପର୍କରେ ବହୁ ପ୍ରମାଣ ଉପସ୍ଥାପନ କରିଥାଏ । ଅସନପାଟରୁ ଉଦ୍ଧାର କରାଯାଇଥିବା ଅଷ୍ଟଭୁଜ ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଭିଲେଖ ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ରହିଛି । ମୟୁରଭଞ୍ଜ ଓ ପୁରୁଲିଆ ଭଳି ଅସନପାଟର ଛଉ ନାଚ ସମଗ୍ର

ରାଜ୍ୟ କାହିଁକି ରାଜ୍ୟ ବାହାରେ ଏକ ସ୍ୱତନ୍ତ୍ର ମାନ୍ୟତା ଅର୍ଜନ କରିପାରିଛି ।

କେନ୍ଦୁଝର ଜିଲ୍ଲାର ଜ୍ୟୋତିପୁରଗଡ, ହୁଣ୍ଡା ଦଣ୍ଡପାଟ, ରାଜନଗର, ଚମକପୁର ଆଦି ଗ୍ରାମ ଐତିହାସିକ ଦୃଷ୍ଟିକୋଣରୁ ଗୋଟିଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦସ୍ତାବିଜ୍ ବହନ କରୁଥିବା ସ୍ଥାନ । ଏହାଛଡା କେନ୍ଦୁଝର ଜିଲ୍ଲାର କିରିବୁରୁ ହିଲ୍ ଷ୍ଟେସନ ଓ ମେଘାତୁବୁରୁ 'ସନ୍ ସେଟ୍ ଭ୍ୟୁ ପଏଣ୍ଟ' ରାଜ୍ୟ କାହିଁକି ସମଗ୍ର ଦେଶରେ ଏକ ବିରଳ ମନୋରଂଜନ ସ୍ଥାନର ମାନ୍ୟତା ଲାଭ କରିପାରିଛି । ଏଠାକାର ମନୋରମ ସୂର୍ଯ୍ୟାସ୍ତ ଦୃଶ୍ୟ ଦେଖିବାକୁ ରାଜ୍ୟ ଓ ରାଜ୍ୟ ବାହାରୁ ବହୁସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି ।

କେନ୍ଦୁଝର ଜିଲ୍ଲାରେ ପର୍ଯ୍ୟଟନ କ୍ଷେତ୍ରର ଏଭଳି ସୁଯୋଗ ଓ ସମ୍ଭାବନା ରହିଥିଲେ ମଧ୍ୟ ଏହାର ଉପଯୁକ୍ତ ବିକାଶ ହୋଇପାରିନାହିଁ । ଏହା ହିଁ ଦୁର୍ଭାଗ୍ୟ ।

କେନ୍ଦୁଝର ଜିଲ୍ଲା ସଂପର୍କରେ ଜାଣିବାକୁ ମୁଁ ଦିନରାତି ଏକ କରିଦେଇଛି । ବାବନା ଭୂତ ଭଳି ଏଣେତେଣେ ବୁଲିଛି । ମୋତେ ଏହି କାର୍ଯ୍ୟରେ ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର ଡ· ବିମ୍ବାଧର ବେହେରା, ଅବସରପ୍ରାପ୍ତ ଉଇଙ୍ଗ୍ କମାଣ୍ଡର ତଥା 'କେନ୍ଦୁଝର ନାଗରିକ ମଂଚ'ର ସଭାପତି କିରଣ ଶଂକର ସାହୁ, ମୋ ପତ୍ନୀ ପ୍ରଜ୍ଞା, ସାମ୍ବାଦିକ ପ୍ରଦୀପ ମହାନ୍ତି (ମାନୁ), ଇତିହାସ ଗବେଷକ ନିରଂଜନ ବାରିକ୍, ସାମ୍ବାଦିକ ଧୀରେନ୍ଦ୍ର ରାଉତ (କାନ୍ଦିରି ଭାଇ), ଉଖୁଣ୍ଡାର 'ସମ୍ବାଦ' ପ୍ରତିନିଧି ଭୀମସେନ୍ ମହାନ୍ତ, ପଳାସପଙ୍ଗା ପ୍ରତିନିଧି ପ୍ରଦୀପ ଗିରି, 'ଶତାବ୍ଦୀ'ର ନିର୍ଦ୍ଦେଶକ ବନ୍ଧୁ ସଂଗ୍ରାମ ଦାସ, ପ୍ରିୟ ବନ୍ଧୁ ଖାଳିଆମେଣ୍ଟା ଗ୍ରାମର ଡ· ବିଜୟ ମହାରଣା, ବଡ଼ଭାଇ ତଥା ସାମ୍ବାଦିକ ବନ୍ଧୁ ଆନନ୍ଦପୁରର ମୁନା ସିଂ, ଭଣ୍ଡା ଗ୍ରାମର ସାହିତ୍ୟିକ ଡମ୍ବରୁ ମହାନ୍ତ, ତୁରୁମୁଙ୍ଗା ଦଧିବାମନ ମହାବିଦ୍ୟାଳୟର ଅଧ୍ୟକ୍ଷ ତଥା କବିପ୍ରାଣ ଚିତ୍ତ ମିଶ୍ର, ଆନନ୍ଦପୁରିଆ କବି ଅଗ୍ରଜ ଅଶୋକ ପୁହାଣ, ବାଂଶପାଳର ତାରିଣୀ ନନ୍ଦ, ସପୁ ନନ୍ଦ, କବି ପ୍ରଦୀପ ରାଉତ ଏବଂ କେନ୍ଦୁଝର ଜିଲ୍ଲାର ଅନେକ ବ୍ୟକ୍ତି ମୋତେ ସହାୟତା କରିଛନ୍ତି । ଏମାନେ ମୋ' ସାଥୀରେ ବିଭିନ୍ନ ସମୟରେ ଭିନ୍ନଭିନ୍ନ ସ୍ଥାନକୁ ଗସ୍ତ କରିଛନ୍ତି ଏବଂ ମୋ' କାର୍ଯ୍ୟରେ ଅକୁଣ୍ଠିତ ସହଯୋଗ କରିଛନ୍ତି ଏବଂ ଅନେକ ମୂଲ୍ୟବାନ୍ ପରାମର୍ଶ ଦେଇଛନ୍ତି । 'ଓଡ଼ିଶା ସାହିତ୍ୟ ଏକାଡେମୀ' ସଭାପତି ତଥା ବରିଷ୍ଠ ସାହିତ୍ୟିକ ଡ· ରାମଚନ୍ଦ୍ର ବେହେରା, ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ କବି ଡ· ଶରତ ଚନ୍ଦ୍ର ପ୍ରଧାନ, କାଳଜୟୀ ଓଡ଼ିଆ ଗଦ୍ୟ ସାହିତ୍ୟ ସ୍ରଷ୍ଟା, ଓଡ଼ିଶା ସରକାରଙ୍କ ପୂର୍ବତନ ମୁଖ୍ୟ ଶାସନ ସଚିବ ତଥା ମୁଖ୍ୟ ସୂଚନା କମିଶନର ତରୁଣକାନ୍ତି ମିଶ୍ରଙ୍କ ମୂଲ୍ୟବାନ୍ ପରାମର୍ଶ ମୋତେ ଏହି କାର୍ଯ୍ୟ ପାଇଁ ବେଶ୍ ସହାୟକ ହୋଇଛି । କେନ୍ଦୁଝର ମାଟିର ଏହି ସନ୍ତାନମାନଙ୍କ ନିକଟରେ ମୁଁ ଋଣୀ । ବହିଟିକୁ ପ୍ରସ୍ତୁତ କରିବାବେଳେ ବହୁ ସତର୍କତା ଅବଲମ୍ବନ କରିଥିବା ସତ୍ତ୍ୱେ ଯଦି କିଛି ତ୍ରୁଟି ରହିଯାଇଥାଏ ତେବେ ମୁଁ କ୍ଷମାପ୍ରାର୍ଥୀ ।

**-ରଂଜନ ପ୍ରଧାନ**

## ବହିକୁ ନେଇ ମତ ଓ ମନ୍ତବ୍ୟ

**"ବହିଟି ପଢିବା ଭିତରେ ମୁଁ ରହସ୍ୟ ଉପନ୍ୟାସର କେତୋଟି ଅଧ୍ୟାୟ ପଢିଲା ଭଳି ମନେ ହୋଇଛି ..."**

ଏ ବହିଟି ପ୍ରଥମେ ହାତରେ ଧରିବାବେଳେ ମୋତେ ଲାଗିଥିଲା ମୋ ହାତ ମୁଠାରେ ରହିଛି କିଛି ସ୍ୱପ୍ନ, କିଛି ଅଭିଳାଷ ଓ କିଛି ଆବେଗରଂଜିତ କୋମଳ ଅନୁଭବ । ମୋର ଜନ୍ମ କେନ୍ଦୁଝରଗଡ଼ରେ । ଶୈଶବର ପ୍ରଥମ ଚାରୋଟି ବର୍ଷ ସେହି ସହରରେ କଟିଛି । ଧୂଳିର ରହସ୍ୟମୟତାରେ, ନୈସର୍ଗିକ ସୁଷମାରେ ଭରା ଥିଲା ସେ ଭିନ୍ନ ଏକ ପୃଥିବୀ, ସରଳ, ସୁନ୍ଦର ମଣିଷକୁ ନେଇ ଗଢା ଏକ ଅନନ୍ୟ ବସୁଧା । ସମୟକ୍ରମେ ମୋତେ ଯିବାକୁ ପଡିଥିଲା ଏ ସହର ଛାଡି ଅନ୍ୟ ସହରକୁ, ଅନ୍ୟ ରାଜ୍ୟକୁ ଓ କିଛି କାଳ ପାଇଁ ଅନ୍ୟ ମହାଦେଶକୁ । ଏସବୁ ସତ୍ତ୍ୱେ, ମୋ ପ୍ରାଣପିଣ୍ଡର ଅଭ୍ୟନ୍ତର କେନ୍ଦୁଝରର ଅନନ୍ୟ ମହକରେ ସୁରଭିତ ।

ବହିଟି ପଢିବା ଭିତରେ ମୁଁ ରହସ୍ୟ ଉପନ୍ୟାସର କେତୋଟି ଅଧ୍ୟାୟ ପଢିଲା ଭଳି ମନେ ହୋଇଛି । ପୁଣି କେତେବେଳେ ଜୀବନର ନିଷ୍ଠୁର ଦୃଶ୍ୟଦୃଶ୍ୟାନ୍ତରକୁ ଆବିଷ୍କାର କରି ବିଷଣ୍ଣ ହୋଇଯାଇଛି । କେନ୍ଦୁଝର ଏକ ଅନନ୍ୟ ଜଗତ, ସଂପଦ ଓ ସୁଷମାରେ । ଦୁର୍ଭାଗ୍ୟର ବିଷୟ, କେନ୍ଦୁଝରର ସେହି ସଂପଦ ଓ ସୌନ୍ଦର୍ଯ୍ୟ ଗତ ଅର୍ଦ୍ଧଶତାବ୍ଦୀ ଭିତରେ କ୍ରମଶଃ ଅବଲୁପ୍ତ ହେବାରେ ଲାଗିଛି । ତାହାର ଅନେକ କାରଣ ଅଛି, ତନ୍ମଧ୍ୟରୁ ବେଶ୍ କେତୋଟି କାରଣ ମୋତେ ଜଣାନାହିଁ । ମୋର ଆଶା ଓ ବିଶ୍ୱାସ 'କେନ୍ଦୁଝରର ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ' ବହିରେ ଏ ପ୍ରଶ୍ନର ସାମ୍ଭାବ୍ୟ ଉତ୍ତର ରହିଛି ।

ଗତକାଲିରେ ସ୍ମୃତିରେ ହଜିଯିବାକୁ ନୁହେଁ ବା ଆଜିର ସ୍ଥିତିକୁ ଘେନି ବିମର୍ଷ ହୋଇଯିବାକୁ ନୁହେଁ, ଆଗାମୀ ଦିନର ଶୁଭ୍ର ସକାଳରେ ଅଧିକ ସମୃଦ୍ଧ ଓ ସୁଷମାମଣ୍ଡିତ କେନ୍ଦୁଝରର ଗୋଟିଏ ଚିତ୍ର ଆବିଷ୍କାର କରିବା ଏହି ଗ୍ରନ୍ଥଟିର ମୂଳ

ଲକ୍ଷ୍ୟ । ଗଭୀର ନିଷ୍ଠାର ସହିତ, ଅନେକ ଶାରୀରିକ କ୍ଲେଶ ଓ ମାନସିକ ଅଧ୍ୟବସାୟ ଭିତରେ ଯୁବ ସାହିତ୍ୟିକ ଶ୍ରୀମାନ୍ ରଂଜନ ପ୍ରଧାନ ଏ ବହିର ପ୍ରତିଟି ପୃଷ୍ଠା ଲେଖିଛନ୍ତି । ଅସନପାଟର ନଟରାଜ ମୂର୍ତ୍ତି ବା ଶିଳାଲେଖର ଗୋଟିଏ ଆଲେଖ୍ୟ ପାଇଁ ହେଉ ବା ମାଛକାନ୍ଦଣା ନଦୀର ଅପରିଜ୍ଞାତ ଜଳପ୍ରପାତ ହେଉ ଅବା କେନ୍ଦୁଇଶୁଣି ଦେବୀଙ୍କ ପୀଠରେ ମାଜଣା କରିବାର ବିରଳ ଦୃଶ୍ୟ ହେଉ, ପ୍ରତିଟି ବିଷୟରେ ଅଜସ୍ର କୌତୁହଳ ଘେନି ସେ ଘୁରି ବୁଲିଛନ୍ତି ଯାଯାବର ଭଳି । ତୀବ୍ର ଅନୁସନ୍ଧିତ୍ସା ସହିତ କୋମଳ ଗଭୀର ଅନୁରାଗ ତାଙ୍କ ଦୃଷ୍ଟିଭଙ୍ଗୀରେ ଏକ ଅନନ୍ୟ ପରିପୂର୍ଣ୍ଣତା ଆଣି ଦେଇଛି । ଏତେ କଥା ଜାଣିବାର ଅଛି ପାହାଡ ପର୍ବତଘେରା କେନ୍ଦୁଝରକୁ ଘେନି, ଏ ବହିଟି ନ ପଢିଲେ ବିଶ୍ବାସ କରିହେବ ନାହିଁ । ଶ୍ରୀଯୁକ୍ତ ପ୍ରଧାନଙ୍କ ଦ୍ୱାରା ଲିଖିତ ଏ ବହିଟି କେନ୍ଦୁଝର ସଂପର୍କିତ ଜ୍ଞାନକୋଷ ହିସାବରେ ସର୍ବତ୍ର ଆଦରଲାଭ କରିବ, ମୋର ଏ ବିଶ୍ବାସ ରହିଛି ।

**-ତରୁଣକାନ୍ତି ମିଶ୍ର**

ପୂର୍ବତନ ମୁଖ୍ୟ ଶାସନ ସଚିବ, ମୁଖ୍ୟ ସୂଚନା କମିଶନର, ଓଡ଼ିଶା

“ **କେନ୍ଦୁଝରର ଜଣେ ବ୍ୟକ୍ତିଙ୍କୁ ନିଜ ଜିଲ୍ଲା ସହ ଘନିଷ୍ଠ ଭାବେ ପରିଚିତ କରାଇବା ପାଇଁ ଏ ବହି ଯଥେଷ୍ଟ...** ”

କେନ୍ଦୁଝର ଜିଲ୍ଲା ସଂପର୍କରେ ଅତୀତରେ କେତୋଟି ବହି ମୋର ଦୃଷ୍ଟି ଆକର୍ଷଣ କରିଛି । ମାତ୍ର, ଏହି ବହିଗୁଡିକ ଜିଲ୍ଲାର ସାମଗ୍ରିକ ଚିତ୍ର ଦେବାରେ ସଫଳ ହୋଇପାରିନାହାନ୍ତି, ଯେଉଁ ସଫଳତା ହାସଲ କରିପାରିଛି ଶ୍ରୀ ରଂଜନ ପ୍ରଧାନଙ୍କ ଲିଖିତ ଏହି ବହିଟି । ସାମ୍ବାଦିକତା ସହିତ ଶ୍ରୀ ପ୍ରଧାନଙ୍କର ବିଶେଷତଃ ଆଦିବାସୀ ଜୀବନଚର୍ଯ୍ୟା ପ୍ରତି ଉନ୍ମୁଖତା ଓ ଆବେଗସିକ୍ତ ଆଗ୍ରହ ଆମେ ଦେଖୁ ତାଙ୍କ ଦ୍ୱାରା ଲିଖିତ ଆଉ କେତୋଟି ବହିରେ । ଏହି ବହିରେ କିନ୍ତୁ ଅଛି କେନ୍ଦୁଝରର କେବଳ ଶରୀର ନୁହେଁ, ତା'ର ଆତ୍ମା ଓ ହୃଦୟର ଆଲେଖ, ପୂର୍ଣ୍ଣାଙ୍ଗ ଭାବେ । କେନ୍ଦୁଝର ଜିଲ୍ଲାର ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, କଳା, ପରଂପରା, ପର୍ବପର୍ବାଣୀ, ଜୀବନଯାତ୍ରା ଓ ଅନ୍ୟାନ୍ୟ ମୂଲ୍ୟବାନ୍ ତଥ୍ୟ ସମ୍ବଳିତ ଏକ ବହୁମୂଲ୍ୟ ଗ୍ରନ୍ଥ ବୋଲି ଏ ବହି ଘୋଷଣା କରେ । ଏହା ପଢିବା ପରେ ମୁଁ ଏହି ଘୋଷଣାକୁ ସମର୍ଥନ କରୁଛି । ଜିଲ୍ଲାରେ ରହିଥିବା ପୁରାଣ ସଂପର୍କିତ ସ୍ଥାନ ଏବଂ ପ୍ରାଚୀନ ଧର୍ମପ୍ରବାହ ଛାଡିଯାଇଥିବା ସ୍ମାରକୀଠାରୁ ଆରଂଭ କରି ଜିଲ୍ଲାର ପର୍ବପର୍ବାଣୀ, ଚାଷ ଓ ଦର୍ଶନୀୟ ସ୍ଥାନ ଇତ୍ୟାଦିର ବିସ୍ତୃତ ଉଲ୍ଲେଖ ଅଛି ଏଥିରେ । କେନ୍ଦୁଝର ଜିଲ୍ଲା ସଂପର୍କରେ ଏ ବହି ଏକ ଜ୍ଞାନକୋଷ । ଏଥିରେ ଦ୍ୱିମତ ନାହିଁ ।

ଏତେ ତଥ୍ୟ ସଂଗ୍ରହ କରିବା ପାଇଁ ଲେଖକଙ୍କୁ ଜିଲ୍ଲାର ସମସ୍ତ ଉଲ୍ଲେଖଯୋଗ୍ୟ ସ୍ଥାନ ଭ୍ରମଣ କରିବାକୁ ପଡିଥିବ । ତା' ପରେ ଏତେ ବଡ଼ ବହିଲେଖା । ଲେଖକଙ୍କୁ ତାଙ୍କର ଶ୍ରମ ପାଇଁ ଅଭିନନ୍ଦନ ଜଣାଉଛି । ଏ ଜିଲ୍ଲାରେ ମୁଁ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ ଧନ୍ୟବାଦ ବି ଦେଉଛି । ସ୍ୱୀକାର କରିବାରେ ଦ୍ୱିଧା ନାହିଁ ଯେ, ଏଥିରେ

ସନ୍ନିବେଶିତ କେତେକ ତଥ୍ୟ ସଂପର୍କରେ ମୁଁ ଅଜ୍ଞ ଥିଲି । କେନ୍ଦୁଝରର ଜଣେ ବ୍ୟକ୍ତିଙ୍କୁ ନିଜ ଜିଲ୍ଲା ସହ ଘନିଷ୍ଠ ଭାବେ ପରିଚିତ କରାଇବା ପାଇଁ ଏ ବହି ଯଥେଷ୍ଟ । ମୁଁ ଆନ୍ତରିକ ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଉଛି ଶ୍ରୀ ପ୍ରଧାନଙ୍କୁ ।

ଆମ ଗାଁ ବାର୍ହାଟିପୁରା । କେନ୍ଦୁଝର ଜିଲ୍ଲା ସହିତ ମୋର ସଂପର୍କ କ୍ଷୀଣ ହେଲା ଅପରିହାର୍ଯ୍ୟ କାରଣ ଯୋଗୁଁ । ପାଠପଢା ଓ ପରେ ଚାକରୀର ଅନିବାର୍ଯ୍ୟତା ହେତୁ ଜିଲ୍ଲାଠାରୁ ବିଚ୍ଛିନ୍ନ ହେବାକୁ ପଡିଲା । ଗାଁ ମଧ୍ୟ ଇଂରାଜୀ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବା ପର୍ଯ୍ୟନ୍ତ ମୁଁ ଥିଲି ଗାଁରେ । ଏବେ ମଧ୍ୟ ଗାଁ ଓ କେନ୍ଦୁଝରର ନାମ ଉଚ୍ଚାରଣ କରିବା ମାତ୍ରେ ସେତେବେଳର ଗାଁର ଚିତ୍ର ଦଣ୍ଡାୟମାନ ହୋଇଯାଏ ମୋ' ଆଖି ଆଗରେ । ସବୁଜିମା ଉତୁରି ପଡୁଥିବା ପାହାଡ, ଟିକିଏ ଦୂରରେ ଥିବା ଘଞ୍ଚ ଜଂଗଲ, ବନ୍ୟ ପଶୁପକ୍ଷୀ । ଉଜୁଡି ଯାଇଥିବା ରାସ୍ତାଘାଟ, ଛିଣ୍ଡି ଯାଉଥିବା ଘର ଛପର, ଉତ୍କଟ ଦାରିଦ୍ର୍ୟ, ନିଷ୍କପଟ ସରଳପଣ । କେଉଁଠି ମନ ମତାଣିଆ ଗୀତର ସ୍ୱର, ସଂକୀର୍ତ୍ତନ, ଭାଗବତ ପଢା, ବଚସା । ମନେ ହେଉଥିଲା ଝିଅ ଶାଶୁଘରକୁ ଗଲାବେଳେ କିମ୍ବା ଶ୍ମଶାନରେ ଚିତା ଜଳିବା ବେଳେ, ଆକାଶ, ପାହାଡ, ଜଙ୍ଗଲ ସତେ ଅବା ଘୁଞ୍ଚି ଆସୁଥିଲେ ପାଖକୁ ନିଛକ ସମ୍ବେଦନଶୀଳ ହୋଇ । ସଂଗୀତମୁଖର ରଜ ତିନିଦିନ, ଦୋଳିର କେଁ କଟର ଶବ୍ଦ ଗହଳରେ । କୋଳାହଳମୟ ମକର ଯାତ୍ରା ଓ ଆହୁରି ଅନେକ ।

ସେଦିନର ପରିପାଟୀ ଓ ଲୋକ ଚରିତ୍ର ଆଉ ନାହିଁ । ମୋବାଇଲ୍, ବାଇକ୍, ଟି.ଭି ସଂକ୍ରମିତ ଜୀବନ ଦ୍ୱାରା କେମିତି ନିଷ୍କରୁଣ ଆତ୍ମକୈନ୍ଦ୍ରିକ ଓ ନକଲି ହୋଇପଡିଛି । ଅତୀତରେ ଦାରୁଣ ଅଭାବ ଥିଲା, ତା' ସହିତ ଥିଲା ପ୍ରାଣ ପ୍ରାଚୁର୍ଯ୍ୟ । ଏବେ ଉତ୍କଟ ଦାରିଦ୍ର୍ୟ ନାହିଁ, ଅଛି କିନ୍ତୁ ଗଭୀର ଅବସାଦ, ନୈରାଶ୍ୟ ଓ କ୍ରୋଧ ।

ଏସବୁ ଲେଖିବାର ତାତ୍ପର୍ଯ୍ୟ ହେଉଛି ଶ୍ରୀ ପ୍ରଧାନଙ୍କର ବହି ପଢିବାବେଳେ ମୁଁ ବାରମ୍ବାର ଫେରୁଥିଲି ଅତୀତର କେନ୍ଦୁଝରକୁ । ଅନେକ ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ହରାଇ ସାରିଥିବା ଜଣେ ବ୍ୟକ୍ତି ଅତୀତର ନିଜ ଫଟୋକୁ ଯେମିତି ଦେଖେ ଏବଂ ନିଜ ଅଜାଣତରେ ଦୀର୍ଘଶ୍ୱାସ ଛାଡେ । ଆଉ କ'ଣ ଫେରିବା ସମ୍ଭବ ଅତୀତର ଦିନ? ଏବେ ଗାଁଗଣ୍ଡାର ପାହାଡି ଝରଣା ପୋତି ହୋଇ ପଡୁଛି, ବିବସ୍ତ୍ର ହୋଇଯାଇଛି ପାହାଡ, ଯାହା ଦେହର ଅଂଶ ଲଦା ଯାଉଛି ସଂଖ୍ୟାହୀନ ଟ୍ରକ୍‌ରେ । ସରି ଯାଉଛି

ହୁଏତ କେନ୍ଦୁଝର । ଏପରି ଆଶଙ୍କା ମଧ୍ୟ ପ୍ରକଟିତ ହୋଇଛି ଶ୍ରୀ ପ୍ରଧାନଙ୍କ ଏହି ବହିରେ ।

କେନ୍ଦୁଝରର ପାହାଡ, ଜଙ୍ଗଲ, ଜଳଧାରା ଇତ୍ୟାଦି କମି ଯାଉଛି । ଏହାର ଜୀବନଶକ୍ତିକୁ ଶୋଷି ନେବାର ପ୍ରକ୍ରିୟା କୋହଳ ହେବା ଦେଖାଯାଉନାହିଁ । ଜାତୀୟ ରାଜପଥର ମାନ୍ୟତା ପାଇଥିବା ସଡ଼କରେ ଅଛି ମାନ୍ଧାତା ଅମଳର ବିପଦସଂକୁଳ ପୋଲ । ଅଣନିଶ୍ୱାସୀ ହୁଏ ଏ ରାସ୍ତା ହଜାର ହଜାର ଟ୍ରକ୍ ଦ୍ୱାରା । ରାସ୍ତା ପ୍ରଶସ୍ତ କରାଯିବା ପାଇଁ କଟାଗଲା ସଂଖ୍ୟାହୀନ ଗଛ । ଏହା ଦେହରେ ସୃଷ୍ଟି କରାଯାଉଛି ଅସଂଖ୍ୟ କ୍ଷତ, ଖଣିଜ ଦ୍ରବ୍ୟ ନେବା ପାଇଁ । ଏ ଜିଲ୍ଲାରୁ ସବୁ ଯାଏ, କିଛି ମଧ୍ୟ ଏଠାକୁ ଆସେନାହିଁ । ପ୍ରଦେଶର କୌଣସି ଜିଲ୍ଲା ଏଭଳି ନିଃସହାୟ ଛେଉଣ୍ଡ ହୋଇ ରହିନାହିଁ ।

ପୁନରାବୃତ୍ତି କରୁଛି ଯେ, ଶ୍ରୀ ପ୍ରଧାନଙ୍କର ଏହି ବହି କେନ୍ଦୁଝରର ଯେଉଁ ପ୍ରାଣ ମୁଖରତା ଓ ପ୍ରବାହର ଚିତ୍ର ଦେଉଛି, ତାହା କିଞ୍ଚିତ୍ ଅତିରଂଜିତ ମନେହୁଏ । ଜିଲ୍ଲାର ଅନ୍ତଃସାରଶୂନ୍ୟତା ହିଁ ବର୍ତ୍ତମାନ ଏକମାତ୍ର ସତ୍ୟ । ଲେଖକଙ୍କର ଭାଷା ସହଜ । ଜଣେ ସାମ୍ବାଦିକର ମନ ଓ ଦୃଷ୍ଟି ନେଇ ଏହା ରଚିତ ହୋଇଥିବାରୁ ଉପସ୍ଥାପନା ଆବେଗରହିତ ଓ ନିରାସକ୍ତ ହେବା ସ୍ୱାଭାବିକ । ଶ୍ରୀ ପ୍ରଧାନ ଯାହା ଯେଉଁଠି ଦେଖିଲେ ତାହାର ବର୍ଣ୍ଣନା କଲେ । ମାତ୍ର, ଏସବୁ ପ୍ରତି ନିଜର ପ୍ରତିକ୍ରିୟା ଓ ଅନୁଭବ ପ୍ରକଟ କରିବାରୁ ସେ ବିରତ ଅଛନ୍ତି ।

କେନ୍ଦୁଝରର ଲୋକେ ଆହୁରି ଭଲ ଭାବେ ଚିହ୍ନିବେ ନିଜ ଜିଲ୍ଲାକୁ ଏହି ବହି ଜରିଆରେ । ଏହା ପଢୁପଢୁ ସେମାନେ ହୁଏତ ଉପଲବ୍ଧି କରିବେ କେଉଁ ଅମୂଲ୍ୟ ସଂପଦ ହଜି ଯାଉଛି ଏଠାରୁ ସବୁଦିନ ପାଇଁ । କେନ୍ଦୁଝର ପ୍ରତି ଆଗ୍ରହୀ ସମସ୍ତ ପାଠକ ଏ ବହି ଦ୍ୱାରା ଉପକୃତ ହେବେ –ଏ ବିଶ୍ୱାସ ଅଛି ।

**ଡ. ରାମଚନ୍ଦ୍ର ବେହେରା**

ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ

"ଟିକେ ଆଶା, ଟିକେ ଭରସା
ଓ ଟିକେ ସଂଭାବନାର ବାର୍ତ୍ତା
ଆଣିଛି ..."

କେନ୍ଦୁଝର ଉତ୍କଳଲକ୍ଷ୍ମୀଙ୍କ ଶୋଭାସଦନ ଓ ଲୀଳାଭୂମି । ଏଠାରେ ହ୍ରୀ ଓ ଶ୍ରୀର ଯୁଗପତ ବିଳାସ । ଏବେ ଏହା ହ୍ରୀ ଓ ଶ୍ରୀ ବିବର୍ଜିତା ଧୂସରଭୂମି ପାଲଟିବାକୁ ଯାଉଛି । ଏହାର ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ ସଂପର୍କରେ କେହି ନେତ୍ର ଢାଳି ଥରୁଟିଏ ଚାହିଁବାର ଦେଖାଯାଉନାହିଁ । ସବୁଠି କେବଳ ଲୁଣ୍ଠନକାରୀ ଏବଂ ମାଫିଆଙ୍କ ସମାବେଶ । ଏ ଭୂମି ସତେକି ଅନାବୃତା ଦ୍ରୌପଦିଟିଏ । ଏହାର ଲଜ୍ୟା ନିବାରଣ ନିମିତ୍ତ ଡାକ ଛାଡିବାର ଅବକାଶ ବା କାହିଁ? ଏହାର ସ୍ତନନ୍ଧୟେ ସତେକି ପାଷାଣ ପ୍ରତିମା । କାହାରି ମୁହଁରୁ ପ୍ରତିବାଦର ସ୍ୱରଟିଏ ବାହାରୁନାହିଁ । ସମସ୍ତେ ଯେମିତିକି ଆପଣା ସୁଖେ ଆପେ ବାଇ ହୋଇପଡିଛନ୍ତି । ଷଠୀଭୂଇଁ କଥା ସ୍ମରୁଛି କିଏ । ଅନ୍ୟ ଭାଷାରେ କହିଲେ କେନ୍ଦୁଝର ମାଟିକୁ କେହି ଆହା ସାହା କହିବାକୁ, ତା'ର ଖଣି ଖାଦାନ, ତା'ର ପ୍ରାକୃତିକ ବିଭବ ଲୁଟ୍ ପ୍ରସଙ୍ଗକୁ, ତା'ର ପ୍ରାକୃତିକ ସୁଷମାର କ୍ରମବିଲୟନର ରୂପରେଖ ଜନସମକ୍ଷରେ ଉଦାତ୍ତ କଣ୍ଠରେ ବଖାଣିବାକୁ କେହି ଦେଖା ଯାଉନାହାନ୍ତି । କେନ୍ଦୁଝର ଲୋକଙ୍କର ଅଜବ ଠାଣି, ଶାସକର କ୍ରମାଗତ ଅବହେଳା ଓ ଆଡ ଦୃଷ୍ଟି । ସମସ୍ତଙ୍କୁ ହତଚକିତ କରୁଛି ।

ଏହିପରି ପ୍ରେକ୍ଷାପଟରେ ଶ୍ରଦ୍ଧେୟ ରଂଜନ ପ୍ରଧାନଙ୍କ 'ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର' ଶୀର୍ଷକ ଗଦ୍ୟକୃତିଟି ଟିକେ ଆଶା, ଟିକେ ଭରସା ଓ ଟିକେ ସଂଭାବନାର ବାର୍ତ୍ତା ଆଣିଛି । ଶ୍ରୀ ପ୍ରଧାନ କେନ୍ଦୁଝରର ଦୀପ୍ତି ଓ ଦ୍ୟୁତିକୁ ଲୋକଲୋଚନକୁ ଆଣିବାରେ ପ୍ରୟାସ କରିଛନ୍ତି । ରଂଜନ ପେସାରେ ସାମ୍ବାଦିକ ଓ ନିଶାରେ ଲେଖକ । ତାଙ୍କ କୃତିଟିରେ ବି ସାମ୍ବାଦିକସୁଲଭ ମନନଧର୍ମିତା ଓ ଠାଣି ହିଁ ମୁଖ୍ୟତଃ ପ୍ରକାଶ ପାଇଛି । ସେ ଏଥିରେ କ୍ଷେତ୍ର ଅଧ୍ୟୟନ ପଦ୍ଧତି

ଅନୁସରଣ କରିଛନ୍ତି । ଲୋକଚେତନା, ଲୋକଦୃଷ୍ଟି ଓ ଲୋକବିଶ୍ୱାସରେ ଅବଗାହୀ ସତ୍ତା ସେ । ଯାହା ଦେଖିଲି, ତାହା ବୟାନ କଲି ଶୈଳୀକୁ ସେ ଆଧାର କରି ରଚନାଟିକୁ ରୂପ ଦେଇଛନ୍ତି । ଗବେଷକ ସୁଲଭ ମନ ଓ ମନନ ନେଇ ଗଭୀର ଅନ୍ତଃଦୃଷ୍ଟିରେ ସେ କେବଳ ନିରୀକ୍ଷଣ କରିଛନ୍ତି । ନୃତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ଓ ପ୍ରତ୍ନତାତ୍ତ୍ୱିକ ଆଭିମୁଖ୍ୟ ଏ କୃତିଟିରେ ଠାଏ ଠାଏ ଉପାମେଘ ପରି ସଂଚରି ଯାଇଛି । ବାରିପାତ ହୋଇପାରିନାହିଁ ।

ତେବେ ରଂଜନ କେନ୍ଦୁଝରର ପ୍ରକୃତି, ସାଂସ୍କୃତିକ ବିଭବ, ପର୍ଯ୍ୟଟନ ସ୍ଥଳ, ଲୋକବିଶ୍ୱାସ, ଧାର୍ମିକ ଅବବୋଧ, ଭୂ ସଂପଦ, ଜନଜାତି ଓ ଲୋକଚଳଣିକୁ ରୂପ ଦେବାକୁ ପ୍ରଚେଷ୍ଟା କରିଛନ୍ତି । ସଂସ୍କୃତି, ଐତିହ୍ୟ ଓ ଭାଷା ସାହିତ୍ୟ ତ ହାତ ଧରାଧରି ହୋଇ ଚାଲନ୍ତି । କିନ୍ତୁ ଶ୍ରୀ ପ୍ରଧାନଙ୍କ ଲେଖାରେ ଭାଷା ସାହିତ୍ୟ ପ୍ରତି ଦୃଷ୍ଟିପାତ କରାଯାଇ ପାରିନାହିଁ । ଏଥିପ୍ରତି ଧ୍ୟାନ ଦେଇଥିଲେ ଭଲ ହୋଇଥା'ନ୍ତା ।

ପୁଣି ଏଇଠି କହିରଖେ ଲେଖକଙ୍କ ଅଧ୍ୟୟନ, ପଠନସ୍ପୃହା ଓ ସଂବେଦୀ ମନ ଏ କୃତିଟିରେ ଠାଏ ଠାଏ ଫୁଟି ଉଠିଛି । ଲେଖାରେ ଜାଙ୍ଗଲିକ ସୁଷମା ରହିଛି କିନ୍ତୁ ଉଦ୍ୟାନୀୟ ଶୃଙ୍ଖଳା ନାହିଁ । ଭାଷା ଅତି ସରଳ ଓ ସାବଲୀଳ ଭାବେ ବ୍ୟକ୍ତ ହୋଇଥିବାରୁ ପାଠକଟି ଏକ ନିଶ୍ୱାସରେ ଏହାକୁ ଶେଷ କରିବାକୁ ଇଛା ପ୍ରକାଶ କରିବ । ଏହି ଯୁବ ଲେଖକ ଦିନେ ଓଡ଼ିଆ ବାଣୀରାଣୀଙ୍କର ଯଥାର୍ଥ ସେବାୟତ ହୋଇପାରିବେ । ଲେଖକଙ୍କର ଶୁଭ ଭବିଷ୍ୟତ କାମନା କରି ରହିଲି ।

**ଡ. ଶରତ ଚନ୍ଦ୍ର ପ୍ରଧାନ**

ବାହୁଡା ଦଶମୀ, ୨୯ ।୦୬ ।୨୦୧୨

"କେନ୍ଦୁଝରକୁ ନେଇ
ଏହା ଏକ ଅନନ୍ୟ
ଓ କାଳଜୟୀ ସୃଷ୍ଟି ..."

ତରଙ୍ଗାୟିତ ପର୍ବତମାଳା, ଘଞ୍ଚ ବନାନୀ, ପୁଣ୍ୟତୋୟା ବୈତରଣୀ ସମେତ ଅନେକ ନଦୀନାଳ, ବଣପାହାଡ, ଜଳପ୍ରପାତଘେରା, ଆଦିମ ଅଧିବାସୀ ଜୁଆଙ୍ଗ, ଭୂୟାଁ ସଂପ୍ରଦାୟ, ପ୍ରସ୍ତର ଯୁଗର ଅବଶେଷଠାରୁ ଆରମ୍ଭକରି ପ୍ରାଗ୍ ଐତିହାସିକ ଯୁଗ, ବୌଦ୍ଧ ତନ୍ତ୍ର ସମୟ, ଏବର ବଳଦେବଜୀଉ ମନ୍ଦିର ସମେତ ଅନ୍ୟାନ୍ୟ ବହୁ ପ୍ରାଚୀନ ମନ୍ଦିର, ଘଟଗାଁର ମା' ତାରିଣୀ ପୀଠରୁ କୁଶଳେଶ୍ୱର, ଏହାର ସଂସ୍କୃତିରେ ରହିଥିବା ଆତିଥେୟତା, ଉଚ୍ଚ ମାନର ଲୁହାପଥରଠାରୁ ଆରଂଭ କରି ଅନେକ ଧାତବ ପଦାର୍ଥ ଏପରିକି ସୁନା, ଥୋରିୟମ, ପ୍ଲାଟିନମ୍ ପର୍ଯ୍ୟନ୍ତ ଯେଉଁ ପୁଣ୍ୟ ବୈତରଣୀ ପ୍ରବାହ ଏ ଭୂମିରେ ରହିଛି ସେହି ମାଟିର ସମ୍ମିଳିତ ଗୌରବ ଗାଥା ବହନ କରୁଛି ଶ୍ରୀଯୁକ୍ତ ରଂଜନ ପ୍ରଧାନଙ୍କ 'ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର' ପୁସ୍ତକ । ବାସ୍ତବରେ କେନ୍ଦୁଝରକୁ ନେଇ ଏହା ଏକ ଅନନ୍ୟ ଓ କାଳଜୟୀ ସୃଷ୍ଟି । କେନ୍ଦୁଝରର ଅତୀତ, ବର୍ତମାନ ଓ ଭବିଷ୍ୟତ କାଳର ତିନୋଟି ବିନ୍ଦୁକୁ ଏକାକାର କରିଛି ଉକ୍ତ ଗ୍ରନ୍ଥ । ଏହାର ବିବରଣୀ କେବଳ ସୂଚନାତ୍ମକ ନୁହେଁ, ଯୁକ୍ତିନିଷ୍ଠ ଓ ଯଥାର୍ଥ ।

ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଲେଖୁଥିବା ଶ୍ରୀଯୁକ୍ତ ପ୍ରଧାନ କେବଳ ଜଣେ ଯୁବ ଉତ୍ସାହୀ ନୁହଁନ୍ତି ବରଂ ସାହସିକ ଅଭିଯାନରେ ଧୁରନ୍ଧର । ଅଗମ୍ୟ ବଣପାହାଡ ଡେ଼ିଇଁ ସେ ବାସ୍ତବ ଦୃଶ୍ୟ ଅନୁଧ୍ୟାନ କରିବାକୁ ଚାହାଁନ୍ତି । ତାଙ୍କର ରୋମାଣ୍ଟିକ୍ ଭାବପ୍ରବଣତା କବିତା ଓ ଗଳ୍ପ ସଂକଳନଗୁଡିକରେ ପ୍ରକାଶିତ ହୋଇଅଛି । ନବରଙ୍ଗପୁରରେ ଥିବାବେଳେ ସେ ଅବିଭକ୍ତ କୋରାପୁଟର ଆଦିବାସୀ ଜନଜୀବନ ଓ ଲୋକକଥାକୁ ଉଭୟ ଓଡ଼ିଆ ଓ ଇଂରାଜୀରେ ରୂପ ଦେଇ ବେଶ୍ ସଫଳତା ହାସଲ କରିଛନ୍ତି ।

ଉକ୍ତ ଗ୍ରନ୍ଥରେ କେନ୍ଦୁଝରର ଟିକିନିଖି ବିବରଣୀ ଜରିଆରେ କଳା, ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ, ଲୋକ ପରଂପରା, ପର୍ବପର୍ବାଣୀ, ପ୍ରାଚୀନ ମନ୍ଦିର ସହ ବର୍ତ୍ତମାନର

ଅନେକ ଧାର୍ମିକ ପୀଠ ଏବଂ ସେମାନଙ୍କ ସହ ସଂଲଗ୍ନ ଲୋକବିଶ୍ୱାସ ଓ ଲୋକକାହାଣୀ ସେ ଯେପରି ଢଙ୍ଗରେ ପ୍ରକାଶ କରିଛନ୍ତି ତାହା ବାସ୍ତବରେ ତାଙ୍କର ସ୍ୱତନ୍ତ୍ର ଉପସ୍ଥାପନ ଶୈଳୀର ପରିଚୟ ଦିଏ । ସେ ଅନେକ ସ୍ଥାନର ବିବରଣୀ ଲୋକଲୋଚନକୁ ଆଣିଛନ୍ତି ଯାହା ପୂର୍ବରୁ ସ୍ଥାନୀୟ ଲୋକମାନେ ମଧ୍ୟ ଭଲ ଭାବେ ଜାଣି ନଥିଲେ । ଶ୍ରଲୋକଲୋଚନର ଆଢୁଆଳରେ ରହି ଯାଇଥିବା ଅନେକ ସ୍ଥାନକୁ ଶ୍ରୀଯୁକ୍ତ ପ୍ରଧାନ ବେଶ୍ ଆକର୍ଷଣୀୟ ଭାବେ ଉପସ୍ଥାପନ କରିପାରିଛନ୍ତି ।

କେବଳ ସେତିକି ନୁହେଁ, ଏ ଅଞ୍ଚଳର ଜୀବନଧାରା ପୁଣ୍ୟତୋୟା ବୈତରଣୀ ସମେତ ସମସ୍ତ ନଦୀ, ନାଳ, ଗନ୍ଧମାର୍ଦ୍ଦନ ସମେତ ସମସ୍ତ ପାହାଡ ପର୍ବତ ଓ ସେମାନଙ୍କ ସହ ସଂଲଗ୍ନ ଜୈବ ବିବିଧତା, ଜଙ୍ଗଲର ବିଭିନ୍ନ ବୃକ୍ଷ ସହ ବନୌଷଧି, ଖଣିଖାଦାନ, ପ୍ରକ୍ରିୟାକରଣ, ପରିବହନ ଦ୍ୱାରା ଜଙ୍ଗଲ ଓ ପରିବେଶ ଅସନ୍ତୁଳନ, ବିଲୁପ୍ତ ଝରଣା ଓ ନାଳ ପ୍ରଭୃତିର ସବିଶେଷ ଚିତ୍ର ମାଧ୍ୟମରେ କେନ୍ଦୁଝରର ଭୌଗୋଳିକ, ଭୂ-ତାତ୍ତ୍ୱିକ ଚିତ୍ର ଉପସ୍ଥାପନ କରିବା ତାଙ୍କର ପରିବେଶ ପ୍ରେମର ସୂଚନା ପ୍ରଦାନ କରେ ।

ଆଦିବାସୀ ଜୀବନଯାତ୍ରାରେ ଥିବା ପର୍ବପର୍ବାଣୀଗୁଡିକର ବୈଶିଷ୍ଟ୍ୟ ଉପସ୍ଥାପନ କରିବା ଜରିଆରେ ତାଙ୍କର ଆଦିବାସୀମାନଙ୍କ ପ୍ରତି ସହାନୁଭୂତିଶୀଳ ଦୃଷ୍ଟିକୋଣ ବାରିହୋଇ ପଡେ । ପର୍ଯ୍ୟଟନ ଦୃଷ୍ଟିରୁ ଲୋକଲୋଚନର ଆଢୁଆଳରେ ରହି ଯାଇଥିବା ଅନେକ ସ୍ଥାନ ଓ ପୀଠକୁ ସେ ଆବିଷ୍କାର କରି ଏ ଅଞ୍ଚଳର ଲୋକବିଶ୍ୱାସ ଓ କାହାଣୀସଂଲଗ୍ନ ଚିତ୍ରପ୍ରଦାନପୂର୍ବକ ପର୍ଯ୍ୟଟନକୁ ପରିବେଶ ସହ ସଂଲଗ୍ନ କରି ଉନ୍ନୟନର ମାର୍ଗ ପ୍ରତି ଧ୍ୟାନ ଆକର୍ଷଣ କରିଛନ୍ତି ।

ବାସ୍ତବରେ ଶ୍ରୀଯୁକ୍ତ ପ୍ରଧାନଙ୍କର 'ଐତିହ୍ୟ, ସଂସ୍କୃତି ଓ ପର୍ଯ୍ୟଟନ: କେନ୍ଦୁଝର' ଏ ଅଞ୍ଚଳର ତଥ୍ୟ ପ୍ରଦାନରେ ଏକ ବିରାଟ ଜ୍ଞାନକୋଷ, ଏଥିରେ ସନ୍ଦେହ ନାହିଁ । ତାଙ୍କର ଏ ଅଦମ୍ୟ ପ୍ରଚେଷ୍ଟା ଫଳବତୀ ହେଉ ଏହା ହିଁ କାମନା । କେନ୍ଦୁଝରକୁ କେନ୍ଦୁଝର ଓ କେନ୍ଦୁଝର ବାହାରେ ପରିଚିତ କରାଇବା ପାଇଁ ଏ ଗ୍ରନ୍ଥର ଭୂମିକା ଗୁରୁତ୍ୱପୂର୍ଣ୍ଣ । କେନ୍ଦୁଝର ଜିଲ୍ଲାର ପ୍ରତି ପରିବାରରେ ଏହି ବହିଟି ସାଇତି ରଖିଲା ଭଳି ଏକ ଅମୂଲ୍ୟ ସଂପଦ ।

**ଡ. ବିମ୍ବାଧର ବେହେରା**

**ଏମ୍.ଏ. ପିଏଚ୍‌ଡି, ପରିବେଶବିତ୍, ଲେଖକ ଓ ଆଦିବାସୀ**

**ଗବେଷକ, ଘୁଟୁରୁ, କେନ୍ଦୁଝର**

## ସଂକ୍ଷେପରେ କେନ୍ଦୁଝର




| | |
|---|---|
| ଜିଲ୍ଲାର କ୍ଷେତ୍ରଫଳ | ୮୩୦୩ ବର୍ଗ କିଲୋମିଟର |
| ଜିଲ୍ଲାର ଅବସ୍ଥିତି | ୨୦·୧°-୨୨·୧୦° ଅକ୍ଷାଂଶ, |
| | ୮୫·୧୧°-୮୬·୨୨° ଦ୍ରାଘିମା |
| | ଉତ୍ତରରେ ସିଂହଭୂମ୍ (ଝାଡ଼ଖଣ୍ଡ) |
| | ଦକ୍ଷିଣରେ ଢେଙ୍କାନାଳ ଓ ଯାଜପୁର |
| | ପୂର୍ବରେ ମୟୂରଭଞ୍ଜ ଓ ଭଦ୍ରକ |
| | ପଶ୍ଚିମରେ ଅନୁଗୁଳ ଓ ସୁନ୍ଦରଗଡ |

| | |
|---|---|
| ହାରାହାରି ବୃଷ୍ଟିପାତ | ୧୫୩୪.୫ ମି.ମି |
| **ତାପମାତ୍ରା** | |
| ସର୍ବୋଚ୍ଚ | ୪୯ ଡିଗ୍ରୀ ସେଣ୍ଟିଗ୍ରେଡ୍ |
| ସର୍ବନିମ୍ନ | ୦୩ ଡିଗ୍ରୀ ସେଣ୍ଟିଗ୍ରେଡ୍ |
| ହାରାହାରି ଆର୍ଦ୍ରତା | ୬୨.୫ ପ୍ରତିଶତ |
| ଜନସଂଖ୍ୟା | ୧,୮୦୨,୭୭୭ (୨୦୧୧ ଜନଗଣନା ରିପୋର୍ଟ) |
| ପୁରୁଷ | ୯୦୭,୧୩୫ |
| ମହିଳା | ୮୯୫,୬୪୨ |
| ଜନସଂଖ୍ୟା ଘନତା | ୨୧୭ |
| ସାକ୍ଷରତା ହାର | ୬୯.୦୦ |
| ପୁରୁଷ | ୭୯.୨୨ |
| ମହିଳା | ୫୮.୭୦ |
| ମୋଟ ସାକ୍ଷର ବ୍ୟକ୍ତି | ୧,୦୬୯,୦୨୩ |
| ସାକ୍ଷର ପୁରୁଷଙ୍କ ସଂଖ୍ୟା | ୬୧୬,୦୨୫ |
| ସାକ୍ଷର ମହିଳାଙ୍କ ସଂଖ୍ୟା | ୪୫୨,୯୯୮ |

* *All datas as per provisional data of population census-2011.*

## କେନ୍ଦୁଝର ଜିଲ୍ଲାର ପ୍ରାଶାସନିକ ବ୍ୟବସ୍ଥା

| | |
|---|---|
| ସବ୍ ଡିଭିଜନ | ୩ଟି (ଆନନ୍ଦପୁର, କେନ୍ଦୁଝର ସଦର ଓ ଚଂପୁଆ) |
| ତହସିଲ | ୧୩ଟି<br>(ଆନନ୍ଦପୁର, ଘସିପୁରା, ହାଟଡିହି, ବାଂଶପାଳ, ଘଟଗାଁ, ହରିଚନ୍ଦନପୁର, କେନ୍ଦୁଝର, ପାଟଣା, ସାହାରପଡା, ତେଲକୋଇ, ଚଂପୁଆ, ଝୁମ୍ପୁରା, ଯୋଡା) |
| ବ୍ଲକ୍ | ୧୩ଟି<br>(ଆନନ୍ଦପୁର, ଘସିପୁରା, ହାଟଡିହି, ବାଂଶପାଳ, ଘଟଗାଁ, ହରିଚନ୍ଦନପୁର, କେନ୍ଦୁଝର, ପାଟଣା, |

| | |
|---|---|
| | ସାହାରପଡା, ତେଲକୋଇ, ଚଂପୁଆ, ଝୁଂପୁରା, ଯୋଡା) |
| ଆଇଟିଡିଏ | ୨ଟି (କେନ୍ଦୁଝର ଓ ଚଂପୁଆ) |
| ଜୁଆଙ୍ଗ ଉନ୍ନୟନ ସଂସ୍ଥା | ୦୧ଟି (ଗୋନାସିକା) |
| **ଜଙ୍ଗଲ ବିଭାଗ** | |
| ଡିଭିଜନ | ୦୩ଟି (କେନ୍ଦୁଝର ବନ ଡିଭିଜନ, କେନ୍ଦୁଝର ବନ୍ୟଜନ୍ତୁ ଡିଭିଜନ, କେନ୍ଦୁଝର କେନ୍ଦୁପତ୍ର ଡିଭିଜନ) |
| ରେଞ୍ଜ | ୦୫ଟି (କେନ୍ଦୁଝର, ତେଲକୋଇ, ଚଂପୁଆ, ବିଜେପି (ଭୂୟାଁ-ଜୁଆଙ୍ଗ-ପୀଢ), ଘଟଗାଁ) |
| ରାଜସ୍ୱ ସର୍କଲ | ୫୦ଟି |
| ଟ୍ରେଜେରୀ | ୭ଟି |
| ଗ୍ରାମ ପଞ୍ଚାୟତ | ୨୮୭ |
| ରାଜସ୍ୱ ଗ୍ରାମ | ୨୧୩୨ |
| ପଡାଗ୍ରାମ | ୯୪୦ |
| ମୋଟ ବିପିଏଲ୍ ପରିବାର | ୨,୩୮,୫୬୪ |
| ୱାର୍ଡ | ୩୬୮୦ |
| ପୌରପାଳିକା/ବିଜ୍ଞାପିତ ଅଞ୍ଚଳ | |
| ପରିଷଦ | ୪ |
| | (କେନ୍ଦୁଝରଗଡ଼, ଯୋଡା, ବଡ଼ବିଲ, ଆନନ୍ଦପୁର) |
| ଜିଲ୍ଲାର ପ୍ରମୁଖ ଶସ୍ୟ, ତୈଳବୀଜ : | ଧାନ, ମକା, ରାଶି, ଶୋରିଷ, ବିରି, ମୁଗ, ଚିନାବାଦାମ, ମସୁର, କୋଳଥ |
| **ଶିକ୍ଷାନୁଷ୍ଠାନ ସୂଚନା** | |
| ପ୍ରାଥମିକ ଶିକ୍ଷାକେନ୍ଦ୍ର | ୧୬୮୮ |
| ୟୁଜିଏମ୍ଇ ସ୍କୁଲ | ୮୭୬ |
| ଏମ୍.ଇ ସ୍କୁଲ | ୪୨୩ |
| ହାଇସ୍କୁଲ | ୪୩୬ |
| ଏଚ୍ ଆଣ୍ଡ ଟି.ଡବ୍ଲ୍ୟୁ ସ୍କୁଲ | ୭୬ |

| | |
|---|---|
| ଧର୍ମମୂଳକ ଶିକ୍ଷାନୁଷ୍ଠାନ | ୦୯ |
| ସଂସ୍କୃତ ଟୋଲ୍ | ୦୩ |
| ଶିକ୍ଷା ପ୍ରଶିକ୍ଷଣ ଅନୁଷ୍ଠାନ | ୦୩ |
| ମଦ୍ରାସା | ୦୨ |
| ଅଙ୍ଗନବାଡି କେନ୍ଦ୍ର | ୧୫୯୦ |
| ଅଙ୍ଗନବାଡି ଉପକେନ୍ଦ୍ର | ୧୨୮୫ |
| ମୋଟ ଚାଷପୋଯୋଗୀ ଜମି | ୨,୯୭,୮୭୩ ହେକ୍ଟର |

**ଜଳସେଚିତ ଜମି**

| | |
|---|---|
| ଖରିଫ୍ | ୭୪,୧୮୮ ହେକ୍ଟର |
| ରବି | ୩୨,୫୭୧ ହେକ୍ଟର |

**ସ୍ୱାସ୍ଥ୍ୟାନୁଷ୍ଠାନ**

କେନ୍ଦୁଝର ଜିଲ୍ଲାରେ କେତେ ସଂଖ୍ୟାରେ ହସ୍ପିଟାଲ୍ ଓ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ଅନୁଷ୍ଠାନ ରହିଛି ତାହାର ଏକ ଚିତ୍ର ନିମ୍ନରେ ପ୍ରଦାନ କରାଗଲା।

| | |
|---|---|
| ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ | ୦୧ଟି |
| ନୂତନ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର | ୬୪ଟି |
| ଗୋଷ୍ଠୀ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୩ଟି |
| ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର | ୦୯ଟି |
| ଉନ୍ନୀତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୧ଟି (ଘଟଗାଁ) |
| ଏରିଆ ହସ୍ପିଟାଲ | ୦୧ଟି |
| ଅତିରିକ୍ତ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର | ୩୭ଟି |
| ଡିସ୍‌ପେନ୍‌ସାରି | ୪ଟି |
| ବେସରକାରୀ ଡାକ୍ତରଖାନା | ୧୩ଟି |
| ଭ୍ରାମ୍ୟମାଣ ସ୍ୱାସ୍ଥ୍ୟକେନ୍ଦ୍ର | ୨ଟି |
| ଉପକେନ୍ଦ୍ର | ୩୧୬ଟି |
| ଶିଶୁ ଓ ମାତୃମଂଗଳ କେନ୍ଦ୍ର | ୧ଟି |
| କୁଷ୍ଠ ରୋଗ ନିୟନ୍ତ୍ରଣ କେନ୍ଦ୍ର | ୧ଟି |
| ପ୍ରସବୋତ୍ତର ସେବା କେନ୍ଦ୍ର | ୪ଟି |
| ପୋଲିସ ଥାନା | ୨୪ଟି |

| | |
|---|---|
| ପୋଲିସ ଫାଣ୍ଡି | ୧୦ଟି |
| ପୋଲିସ ବିଟ୍ ହାଉସ୍ | ୦୪ଟି |

## ଇତିହାସର ଆଇନାରେ କେନ୍ଦୁଝର

ପୂର୍ବେ କେନ୍ଦୁଝର ଓ ମୟୂରଭଞ୍ଜ ମିଶି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟର ନାମ ଥିଲା ହରିହରପୁର ଗଡ଼ । ଏହି ରାଜ୍ୟଟି ସେତେବେଳେ ଖିଜିଂ (ଖିଚିଂ) ମଣ୍ଡଳରେ ଅନ୍ତର୍ଭୁକ୍ତ ଥିଲା । ଖିଚିଂ ଏହାର ରାଜଧାନୀ ଥିଲା । ଏହାର ବହୁ ପୂର୍ବରୁ ବୌଦ୍ଧ ଧର୍ମାବଲମ୍ବୀ ରାଜାଙ୍କ ଶାସନ କାଳରେ ହରିହରପୁରଗଡ଼ 'ଜାହୋର' ରାଜ୍ୟ ଭାବେ ପ୍ରସିଦ୍ଧିଲାଭ କରିଥିଲା । ଜାହୋର ରାଜ୍ୟ ଗଠନ ପୂର୍ବରୁ ଏହି ରାଜ୍ୟ 'ବିନ୍ଧ୍ୟାଟବୀ' ନାମରେ ପରିଚିତ ଥିଲା । ଏହା ପୂର୍ବରୁ ଏହି ଭୂ-ଖଣ୍ଡଟି ଯମଗର୍ଣ୍ଣ ମଣ୍ଡଳ ନାମରେ ଚିହ୍ନିତ ହେଉଥିଲା । ତେବେ ହରିହରପୁର ରାଜ୍ୟ ବିଭାଜିତ ହୋଇ ପରେ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଭାବେ ମୁଣ୍ଡ ଟେକିଲା । ରାୟସାହେବ କ୍ଷେତ୍ରମୋହନ ମିଶ୍ରଙ୍କ ରଚିତ 'କେନ୍ଦୁଝର' ପୁସ୍ତକରେ ଥିବା ତଥ୍ୟ ଅନୁସାରେ, କେନ୍ଦୁଝର ଓ ମୟୂରଭଞ୍ଜକୁ ମିଳିତ ଭାବେ ହରିହରପୁର ରାଜ୍ୟ କୁହାଯାଉଥିଲା । ଏହି ରାଜ୍ୟର ରାଜା ଜୟସିଂହଙ୍କର ଦୁଇ ପୁତ୍ର ଥିଲେ । ଜଣେ ଆଦି ସିଂ ଓ ଅନ୍ୟ ଜଣେ ଜ୍ୟୋତି ସିଂ । ପରବର୍ତ୍ତୀ କାଳରେ ହରିହରପୁରଗଡ଼ ବିଭାଜିତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର ଦୁଇଟି ଅଲଗା ରାଜ୍ୟ ହୋଇଗଲେ । ଆଦି ସିଂ (ଆଦି ଭଞ୍ଜ) ହେଲେ ମୟୂରଭଞ୍ଜର ରାଜା ଓ ଜ୍ୟୋତି ସିଂ (ଜ୍ୟୋତି ଭଞ୍ଜ) ହେଲେ କେନ୍ଦୁଝରର ରାଜା । କେନ୍ଦୁଝରର ପ୍ରଥମ ରାଜା ଭାବେ ଜ୍ୟୋତିଭଞ୍ଜ ଶାସନ ଗାଦିରେ ବସିଥିଲେ । ଜ୍ୟୋତିପୁରଗଡ଼ରେ ଜ୍ୟୋତିଭଞ୍ଜ ନିଜର ରାଜଧାନୀ ପ୍ରତିଷ୍ଠା କରି କେନ୍ଦୁଝରର ଶାସନ ଭାର ଗ୍ରହଣ କରିଥିଲେ । ଦୀର୍ଘ ବର୍ଷ ଧରି ଜ୍ୟୋତିପୁରଗଡ଼ରେ ଶାସନ ପ୍ରତିଷ୍ଠା ହେବାର ବହୁ ପରେ କେନ୍ଦୁଝରଗଡ଼କୁ ରାଜଧାନୀ ପରିବର୍ତ୍ତନ ହୋଇଥିଲା ।

## ପର୍ବତମାଳିନୀ କେନ୍ଦୁଝର

ସମ୍ଭବତଃ କେନ୍ଦୁଝରକୁ କେହିକେହି ପର୍ବତମାଳିନୀ ଓ ଜଳ ପ୍ରପାତର ରାଜ୍ୟ ବୋଲି କହିଥାନ୍ତି । ବାସ୍ତବରେ ଏହା ହିଁ ସତ୍ୟ । ପର୍ବତମାଳିନୀ କେନ୍ଦୁଝରରେ ଗୋନାସିକା, ଖଣ୍ଡାଧାର, ମେଘାସନ, ମାଲ୍ୟଗିରି, ପଞ୍ଚେଭଞ୍ଜ, ବଉଳା, ଠାକୁରାଣୀ, ବଳି ପର୍ବତ, ଦୈତାରୀ, ଗନ୍ଧମାର୍ଦ୍ଦନ, ମାଙ୍କଡ଼ନଚା, ମାଲାଂଟୋଲି, ଖଜାରୁ, ରଂଗା ପାହାଡ, ଚନ୍ଦନଗିରି ପ୍ରମୁଖ ପର୍ବତମାଳା ରହିଛି । ଏହିସବୁ ପର୍ବତମାଳା ଘଞ୍ଚ ଜଂଗଲପୂର୍ଣ୍ଣ ହୋଇଥିବାବେଳେ ଖଣିଜ ପଦାର୍ଥ, ବନଜାତ ଦ୍ରବ୍ୟ, ଔଷଧୀୟ ବୃକ୍ଷଲତା, ମୂଲ୍ୟବାନ

ଗୁଳ୍ମ, ବହୁ ବିରଳ ବନ୍ୟପ୍ରାଣୀରେ ପରିପୂର୍ଣ୍ଣ । କେନ୍ଦୁଝରଗଡଠାରୁ ମାତ୍ର ୧୦ କିଲୋମିଟର ଦୂରରେ ଗନ୍ଧମାର୍ଦ୍ଦନ ପର୍ବତମାଳା ରହିଛି । ବର୍ତ୍ତମାନ ଏଠାରୁ ଲୁହାପଥର ଉତ୍ତୋଳନ ହୋଇ ବିଦେଶକୁ ରପ୍ତାନୀ ହେଉଛି । ଏହି ପର୍ବତର ପାଦଦେଶରେ ଏକ ଔଷଧୀୟ ବଗିଚା ରହିଛି । ଗନ୍ଧମାର୍ଦ୍ଦନ ପର୍ବତକୁ ନେଇ ଅନେକ ପୌରାଣିକ କିମ୍ବଦନ୍ତୀ ରହିଛି । କୁଷ୍ଠ ରୋଗର ଆରୋଗ୍ୟ ପାଇଁ ଏଠାରେ 'ଭ୍ରମରମାରି' ଔଷଧୀୟ ବୃକ୍ଷ ରହିଛି ବୋଲି ଶୁଣିବାକୁ ମିଳେ । ତ୍ରେତୟା ଯୁଗରେ ରାମାୟଣରେ ରାବଣ ପୁତ୍ର ଇନ୍ଦ୍ରଜିତ୍ ଓ ଲକ୍ଷ୍ମଣଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧ ଓ ଲକ୍ଷ୍ମଣଙ୍କ ଶକ୍ତିଭେଦ ସମୟରେ ବନ୍ୟପଶୁ ଜାମ୍ବବାନ ଓ ସୁଷେଣ ବୈଦ୍ୟଙ୍କ ନିର୍ଦ୍ଦେଶକ୍ରମେ ମହାବୀର ହନୁମାନ ଏହି ଗନ୍ଧମାର୍ଦ୍ଦନ ପର୍ବତରୁ 'ବିଶଲ୍ୟକରଣୀ' ଓ 'ମୃତ୍ୟୁ ସଂଜୀବନୀ' ନାମକ ବନ ଔଷଧି ନେଇ ଲକ୍ଷ୍ମଣଙ୍କୁ ବଞ୍ଚାଇଥିଲେ । ଏହି ପର୍ବତଟି ବନୌଷଧିରେ ପୂର୍ଣ୍ଣ ହୋଇଥିବାରୁ ଏହା ଗନ୍ଧର୍ବମାନଙ୍କ ବାସସ୍ଥାନ ଅଟେ । ଏହାର ପବନ ଅତ୍ୟନ୍ତ ସୁଗନ୍ଧ ଓ ରୋଗନାଶକ ବୋଲି ସ୍ଥାନୀୟ ଅଞ୍ଚଳରେ କଥିତ ଅଛି । ପ୍ରାକୃତିକ ଶୋଭାଭରା ଗନ୍ଧମାର୍ଦ୍ଦନ ପର୍ବତଟି ଧନ୍ୱନ୍ତରୀଙ୍କ ପ୍ରାକୃତିକ ଔଷଧ ଭଣ୍ଡାର ଭାବେ ଏ ଅଞ୍ଚଳରେ ପରିଚିତ । ଏହି ପର୍ବତର ଶୀର୍ଷ ଦେଶରେ ପ୍ରବାହିତ ପବନ ସୁଗନ୍ଧଭରା ଓ ଔଷଧୀୟ ଗୁଣ ବହନ କରୁଥିବାରୁ ଏହା ଭଞ୍ଜ ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ଦଣ୍ଡ ଦେବୀଙ୍କର କ୍ରୀଡାସ୍ଥଳି ବୋଲି କେନ୍ଦୁଝରର ପୁରୁଣା ଲୋକମାନଙ୍କଠାରୁ ଶୁଣିବାକୁ ମିଳେ । ଅପରପକ୍ଷେ, ଗନ୍ଧମାର୍ଦ୍ଦନ ପର୍ବତଟି ଭୂୟାଁ ପୀଢରେ ଅବସ୍ଥିତ ଥିବାରୁ ଏହା କେନ୍ଦୁଝରର ଆଦିମ ଅଧିବାସୀ ଭୂୟାଁମାନଙ୍କର ବାସସ୍ଥଳି ଅଟେ । ସେହିଭଳି ଖଣ୍ଡଧାର, ମାଲାଂଟୋଲି, ମାଙ୍କଡ଼ନଚା ଆଦି ପାହାଡରେ ଦେଶର ସର୍ବାଧିକ ଓ ଉନ୍ନତ ମାନର ଲୁହାପଥର ଗଚ୍ଛିତ ରହିଛି ।

## କେନ୍ଦୁଝରର ନଦନଦୀ

ପୁଣ୍ୟତୋୟା ବୈତରଣୀ ହେଉଛି କେନ୍ଦୁଝରର ପ୍ରମୁଖ ଓ ପବିତ୍ରତମ ନଦୀ । ଏହାକୁ କେନ୍ଦୁଝର ଜିଲ୍ଲାର 'ଜୀବନ ରେଖା' *(life line)* କୁହାଯାଉଛି । ଏହି ନଦୀଟି ପବିତ୍ର ଗୋନାସିକା ପୀଠରୁ ଉତ୍ପତ୍ତିଲାଭ କରି ସମଗ୍ର କେନ୍ଦୁଝର ଜିଲ୍ଲା ଦେଇ ପ୍ରବାହିତ ହେବାପରେ ଯାଜପୁର, ଭଦ୍ରକ ଦେଇ ଶେଷରେ ବଂଗୋପସାଗର (କଳିଙ୍ଗ ସାଗର)ରେ ପଡିଛି । ବୈତରଣୀ ବ୍ୟତୀତ କେନ୍ଦୁଝର ଜିଲ୍ଲାରେ କାନ୍‌ଝାରୀ, ଷେଣ୍ଢେଇ, କୁଶଭଦ୍ରା, ରେମାଳ, ଅରଡେଇ, ସୀତା, କୁକୁରକଟା, ଶାଳନ୍ଦୀ, ମୁଷଳ, ମୁହାଁଣ, ମାଛକାନ୍ଦଣା, ହନୁମନ୍ତିଆ, ସୁନା, କାରୋ, ସମାକୋଇ ଆଦି ଅନେକ ଛୋଟବଡ଼ ନଦୀ ପ୍ରବାହିତ ହେଉଛି । 'ଶାଳନ୍ଦୀ' କେନ୍ଦୁଝର ଜିଲ୍ଲା ମଧ୍ୟରେ ପ୍ରବାହିତ ଅନ୍ୟତମ ବଡ଼ ନଦୀ । ଏହା ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପର୍ବତରୁ ବାହାରି ଭଦ୍ରକ ଜିଲ୍ଲା ମଧ୍ୟ ଦେଇ ପ୍ରବାହିତ ହେବା ପରେ ବୈତରଣୀ ନଦୀ ସହ ମିଳିତ ହୋଇଛି । ବିଦ୍ୟାଧରପୁର (ହଦଗଡ଼)ଠାରେ ଏହି ନଦୀ ଉପରେ



ଆନନ୍ଦପୁର-ଘସିପୁରା ମଧ୍ୟରେ ଥିବା ବୈତରଣୀ ନଦୀ ଘାଟ

ଏକ ବୃହତ୍ ଜଳପ୍ରକଳ୍ପ ନିର୍ମାଣ କରାଯାଇଛି । ଜିଲ୍ଲାର ଅନ୍ୟତମ ପ୍ରମୁଖ ନଦୀ ଅରଡେଇ ବୈତରଣୀର ପ୍ରଧାନ ଉପନଦୀ । ଏହା ବାର୍ହାରାଶି ପର୍ବତରୁ ବାହାରି କେନ୍ଦୁଝର, ଝୁଂପୁରା, ଚଂପୁଆ ଆଦି ଦେଇ ପ୍ରବାହିତ ହେବାପରେ ଚଂପୁଆ ବ୍ଲକ୍‌ର ସରେଇ ଗ୍ରାମ ନିକଟରେ ବୈତରଣୀ ନଦୀ ସହ ମିଳିତ ହୋଇଛି । କାଳିଞ୍ଜର (କାନ୍‌ଝାରୀ) ଗୋନାସିକା ପର୍ବତର ନିମ୍ନ ଭାଗରେ ଅବସ୍ଥିତ ଡାମୁଡିହା ଗ୍ରାମରୁ ବାହାରି ଉଦୟପୁର ନିକଟବର୍ତ୍ତୀ ଅଁଳାଡିହା ନିକଟରେ ବୈତରଣୀ ନଦୀ ସହ ମିଶିଛି । ସେହିଭଳି ସୀତା ନଦୀ ସାରୁପାଟ ଗ୍ରାମରୁ ବାହାରି ସୀତାବିନ୍‌ଝି, ଡାଂଗୁଆପଶି ଦେଇ ବୈତରଣୀ ନଦୀରେ ମିଳିତ ହୋଇଛି । କୁକୁରକଟା ନଦୀଟି ଝାରବେଡା ନିକଟରୁ ବାହାରିଛି । ଏହି ନଦୀର ସ୍ରୋତ ଅତ୍ୟନ୍ତ ପ୍ରଖର । ଏହା ବୈତରଣୀର ଅନ୍ୟ ଏକ ପ୍ରମୁଖ ଉପନଦୀ । କୁଶଭଦ୍ରା (କୁଶେଇ) ନଦୀ କାଳିଆହଡାର ମେଘନାଦ ପର୍ବତରୁ ବାହାରିଛି । ଏହା କୂଳରେ ଦେଓଗାଁର ପ୍ରତିଷ୍ଠିତ ଶୈବପୀଠ କୁଶଳେଶ୍ୱର ଅବସ୍ଥିତ । ଏହା ଆନନ୍ଦପୁରଠାରୁ ୧୪ କିଲୋମିଟର ଦୂରରେ ବୈତରଣୀ ନଦୀ ସହିତ ମିଳିତ ହୋଇଛି । ମୂଷଳ ନଦୀଟି ମଧ୍ୟ କାଳିଆହଡାର ମେଘନାଦ ପର୍ବତରୁ ବାହାରି ଆନନ୍ଦପୁର ଉପଖଣ୍ଡର ଶିମିଳିଆଠାରେ ବୈତରଣୀ ନଦୀ ସହ ମିଳିତ ହୋଇଛି । ସମାକୋଇ ନଦୀଟି ହୁଣ୍ଡି ଗ୍ରାମରୁ ବାହାରି ଚାରିଗଡ଼ (ତେଲକୋଇ) ଅଞ୍ଚଳରେ ପ୍ରବାହିତ ହୋଇ ଢେଂକାନାଳ ଜିଲ୍ଲାରେ ବ୍ରାହ୍ମଣୀ ନଦୀ ସହ ମିଳିତ ହୋଇଛି । ମାଛକାନ୍ଦଣା ନଦୀଟି ବାର୍ହାରାଶି ପର୍ବତରୁ ବାହାରି ବାଙ୍କମାରୁଣି

ନିକଟରେ ଅରଡେଇ ନଦୀ ସହିତ ମିଳିତ ହୋଇଛି ।

କେନ୍ଦୁଝର ଜିଲ୍ଲାଟି ମୁଖ୍ୟତଃ ବୈତରଣୀ ଓ ବ୍ରାହ୍ମଣୀ ନଦୀଦ୍ୱୟର ଜଳଛାୟା ଅଞ୍ଚଳରେ ଅବସ୍ଥିତ । ଜିଲ୍ଲାର ଶତକଡା ୮୫ ଭାଗ ଅଞ୍ଚଳରେ ବୈତରଣୀ ନଦୀର ଜଳଛାୟା ରହିଥିବାବେଳେ ପ୍ରାୟ ୧୫ ଭାଗ ଅଞ୍ଚଳରେ ବ୍ରାହ୍ମଣୀ ନଦୀର ଜଳଛାୟା ଅଞ୍ଚଳ ରହିଛି ।

## ବୈତରଣୀ

ବୈତରଣୀ ନଦୀକୁ ଯଥାର୍ଥରେ କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' କୁହାଯାଇଥାଏ । ଜିଲ୍ଲାର ପଶ୍ଚିମ ଭାଗରେ ଅବସ୍ଥିତ ଗୋନାସିକା ପର୍ବତରୁ ଏହାର ଉତ୍ପତ୍ତି । ଉତ୍ପତ୍ତି ସ୍ଥଳରୁ ବାହାରି ପ୍ରଥମେ ଏହା ଦକ୍ଷିଣ ଦିଗକୁ, ପରେ ଉତ୍ତର ଏବଂ ପରେ ଉତ୍ତର-ପୂର୍ବ ଦିଗକୁ ଏକ ପାହାଡିଆ ନଦୀ ଭାବେ ପ୍ରବାହିତ ହେବା ପରେ ଝାଡଖଣ୍ଡ ରାଜ୍ୟର ସୀମା ଦେଇ ପଶ୍ଚିମକୁ ପ୍ରବାହିତ ହୋଇଛି । ଝାଡଖଣ୍ଡ ରାଜ୍ୟର ପଶ୍ଚିମ ସିଂଭୂମ ଜିଲ୍ଲା, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତ ପଥ ଦେଇ ବୈତରଣୀ କ୍ରମେ ଦକ୍ଷିଣାଭିମୁଖୀ ହୋଇଛି । ଏଠାରେ ବୈତରଣୀର ଅନ୍ୟତମ ଉପନଦୀ ଜଂଗିରା ବୈତରଣୀ ସହିତ ମିଶିଛି । ଏହାପରେ ବୈତରଣୀ ଦକ୍ଷିଣ-ପୂର୍ବ ଦିଗକୁ ଯୋଡା ବ୍ଲକ୍‌ର ବାସୁଦେବପୁର ଆଡକୁ ଗତି କରି ଉଭୟ କେନ୍ଦୁଝର-ମୟୂରଭଞ୍ଜ ସୀମା ଅଞ୍ଚଳ ଦେଇ ପାଟଣା ବ୍ଲକ୍‌ର ତୁରୁମୁଙ୍ଗା ଆଡକୁ ପ୍ରବାହିତ ହୋଇଛି । ଏହାପରେ ବୈତରଣୀ କେନ୍ଦୁଝର-ମୟୂରଭଞ୍ଜ ସୀମା ରାଜନଗର, ଭୀମକୁଣ୍ଡ ଦେଇ ପ୍ରବାହିତ ହୋଇଛି । ଏଠାରେ ଅନ୍ୟତମ ଉପନଦୀ ସିମ୍ ନଦୀ ବୈତରଣୀ ସହ ମିଶିଛି । ଏଠାରୁ ବୈତରଣୀ କିଛିବାଟ କେନ୍ଦୁଝର-ମୟୂରଭଞ୍ଜ ସୀମା ଦେଇ ପ୍ରବାହିତ ହେଲାପରେ ପୁନର୍ବାର ଦକ୍ଷିଣ ଦିଗରେ କେନ୍ଦୁଝର ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ଏହା ପରଠାରୁ ବୈତରଣୀ ଆନନ୍ଦପୁର ଉପଖଣ୍ଡ ଦେଇ ପ୍ରବାହିତ ହେଲାପରେ ଦକ୍ଷିଣ-ପୂର୍ବାଭିମୁଖୀ ହୋଇ ଯାଜପୁର, ଭଦ୍ରକ ଜିଲ୍ଲାକୁ ସ୍ପର୍ଶ କରିଛି । ଭଦ୍ରକ ଜିଲ୍ଲାରେ ବୈତରଣୀ ରାଜ୍ୟର ଅନ୍ୟତମ ପ୍ରମୁଖ ନଦୀ ବ୍ରାହ୍ମଣୀ ସହ ମିଶି ଶେଷରେ ବଙ୍ଗୋପସାଗରରେ ମିଶିଛି । ବୈତରଣୀ ନଦୀର ମୋଟ ଦୈର୍ଘ୍ୟ ୩୪୪ କିଲୋମିଟର ଥିଲାବେଳେ କେନ୍ଦୁଝର ଜିଲ୍ଲା ମଧ୍ୟରେ ଏହାରର ଦୈର୍ଘ୍ୟ ୨୨୦ କିଲୋମିଟର । ଏହି ନଦୀ କୂଳରେ କେନ୍ଦୁଝର ଜିଲ୍ଲାର ବାଂଶପାଳ, ଚଂପୁଆ, ବାସୁଦେବପୁର, ଉଚବାଲି, ଜ୍ୟୋତିପୁର, ତୁରୁମୁଙ୍ଗା, ଉଦୟପୁର, ପାଟଣା, ଭୀମକୁଣ୍ଡ, ଆନନ୍ଦପୁର, ବେଲବାହାଲି, ବାଲିବାରୁଆ, ହାବଳେଶ୍ୱର ଆଦି ସ୍ଥାନଗୁଡିକ ଅବସ୍ଥିତ ।

## ବୈତରଣୀ ନଦୀର ପ୍ରମୁଖ ଉପନଦୀ

ବୈତରଣୀ ନଦୀର ଉପନଦୀଗୁଡିକ ମଧ୍ୟରେ ଅରଡେଇ, ଚାମତା, ବାମିନୀ, ସୁନା, ମାଛକାନ୍ଦଣା, ମେର୍ମଦା, ନେଉଳିଯୋଡି, କାନ୍‌ଝାରୀ, ସୀତା, କୁକୁରକଟା, ମୂଷଳ, କୁଶେଇ ପ୍ରମୁଖ ଦକ୍ଷିଣ ପାର୍ଶ୍ୱରୁ ଆସି ମିଶିଥିବାବେଳେ ରାମାଣୀ, ମାଲ୍‌ଦା, ବଇତ, ଦେଓ, ତେଲ ଓ ସାଳନ୍ଦୀ ଆଦି ଉପନଦୀ ବାମ

ପାର୍ଶ୍ୱରୁ ଆସି ମିଶିଛନ୍ତି । ସେହିପରି ଜଙ୍ଗିରା, ଖଇରଭଞ୍ଜନ, ସିମ୍ ଆଦି ଉପନଦୀଗୁଡିକ କେନ୍ଦୁଝର ଜିଲ୍ଲାର ସୀମାରେ ବୈତରଣୀ ନଦୀର ବାମ ପାର୍ଶ୍ୱରୁ ମୟୂରଭଞ୍ଜରୁ ଆସି ମିଶିଛନ୍ତି ।ଏହାବ୍ୟତୀତ ଜିଲ୍ଲାର ପ୍ରମୁଖ କ୍ଷୁଦ୍ର ଜଳଧାର ରୂପେ କୁନ୍ଦୁରା, ଜନାଇ, ନାକଜୋର, ଜହ୍ନେଇ, ସିମିଳି, ଧୋବାପିଟା, ଟମକାଯୋଡି, ଭିରୋଳ, କଣ୍ଟାମୂଳି, କାଠୂପକା, ଧୋବୁଆ, ଭାଲୁକା, ଘଜରା–ଘଣ୍ଟିଆ– ଚାରିନାଳିଆ, କାଳିଆପାଳ, ଗଣ୍ଡ, ବାଳଧର, ଖଗଡ଼ିଆ, କଳାତେରା, ଚାଟୁରୀ ଆଦି ବୈତରଣୀ ସହ ମିଶିଛନ୍ତି ।

# ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରୁ ମିଶିଥିବା ପ୍ରମୁଖ ଉପନଦୀ

## ଅରଡେଇ

ଅରଡେଇ ନଦୀଟି କେନ୍ଦୁଝରଗଡ଼ର ଦକ୍ଷିଣ-ପୂର୍ବ ଭାଗରେ ଅବସ୍ଥିତ ବାହ୍ମିରାଶି ପାହାଡରୁ ଉତ୍ପତ୍ତିଲାଭ କରିଛି । ଉତ୍ପତ୍ତି ସ୍ଥଳରୁ ଏହା ଉତ୍ତର ଦିଗକୁ ପ୍ରବାହିତ ହୋଇ ପଳାସପଂଗାର ୩ କିଲୋମିଟର ଦକ୍ଷିଣରେ ମାଛକାନ୍ଦଣା ନଦୀ ସହିତ ମିଶିଛି । ଏହାପରେ ନଦୀଟି ଉତ୍ତର ଦିଗରେ ପ୍ରବାହିତ ହୋଇ ଚଂପୁଆଠାରୁ ୮ କିଲୋମିଟର ଦକ୍ଷିଣ ଦିଗରେ ବୈତରଣୀ ନଦୀ ସହିତ ମିଶିଛି । ମାଛକାନ୍ଦଣା ହେଉଛି ଅରଡେଇ ନଦୀର ଏକ ଉପନଦୀ । ଏହା ବ୍ୟତୀତ କଡ଼ଇ, ସୋଠି ବା କାଶିଆ ଆଦି ଅରଡେଇର ଉପନଦୀ ଅଟନ୍ତି ।

## ମାଛକାନ୍ଦଣା

ମାଛକାନ୍ଦଣା ନଦୀଟି କେନ୍ଦୁଝରଗଡ଼ର ଦକ୍ଷିଣ ଦିଗରେ ଅବସ୍ଥିତ ବାହ୍ମିରାଶି ପାହାଡରୁ ବାହାରି ଉତ୍ତର ଦିଗକୁ ପ୍ରବାହିତ ହୋଇ ଅରଡେଇ ନଦୀ ସହିତ ମିଶିଛି । ମାଛକାନ୍ଦଣା ନଦୀରେ ବଡ଼ଘାଗରା ଓ ସାନଘାଗରା ନାମରେ ଦୁଇଟି ଜଳପ୍ରପାତ ରହିଛି । ଏହି ନଦୀର ଜଳ କେନ୍ଦୁଝର ସହରବାସୀଙ୍କ ପାଇଁ ପାନୀୟ ଜଳ ଭାବେ ବ୍ୟବହୃତ ହୋଇ ଆସୁଛି ।

## କାନ୍‌ଝାରୀ (କାଣିଝରି)

କାନ୍‌ଝାରୀ ନଦୀଟି ସ୍ଥାନୀୟ ଅଞ୍ଚଳରେ କାଣିଝରି ବା କାଳିଂଜର ନାମରେ ପରିଚିତ । ଏହି ନଦୀଟି ଗୋନାସିକା ନିକଟସ୍ଥ ପାହାଡରୁ ବାହାରି ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହୋଇ ଉଦୟପୁରର ଦକ୍ଷିଣ ପାର୍ଶ୍ୱରେ କେନ୍ଦୁଆପଦା ନିକଟରେ ବୈତରଣୀ ନଦୀ ସହିତ ମିଶିଛି । ଏହି ନଦୀର ଦୈର୍ଘ୍ୟ ପ୍ରାୟ ୫୬ କିଲୋମିଟର ।

## ସୀତା ନଦୀ

ଢେଙ୍କିକୋଟ ନିକଟସ୍ଥ ସରୁପାଟ ପର୍ବତରୁ ବାହାରି ଦକ୍ଷିଣ-ପୂର୍ବ ଦିଗକୁ ପ୍ରାୟ ୧୬ କିଲୋମିଟର ପ୍ରବାହିତ ହେଲାପରେ ସୀତା ନଦୀ ସହିତ କୁକୁରକଟା ନଦୀ ଆସି ମିଶିଛି । ମହୁଲଡିହା ନିକଟରେ

କୁକୁରକଟା ନଦୀ ମିଶିବା ପରେ ଏହା ଯାଇ ବୈତରଣୀ ନଦୀ ସହିତ ମିଶିଛି । ଏହା କୂଳରେ ବାଘଘର, କୁଟ୍ରାବେଡା, ଡାଙ୍ଗୁଆ ପଶି, ସୀତାବିଞ୍ଜି ଅବସ୍ଥିତ ।

## କୁକୁରକଟା

ଝାରବେଡା ନିକଟସ୍ଥ ଜଙ୍ଗଲରୁ କୁକୁରକଟା ନଦୀ ବାହାରି ପୂର୍ବ ଦିଗକୁ ପ୍ରବାହିତ ହୋଇ ମହୁଲଡିହା ନିକଟରେ ସୀତା ନଦୀ ସହିତ ମିଶିଛି । ଏହି ନଦୀର ଦୈର୍ଘ୍ୟ ପ୍ରାୟ ୩୨ କିଲୋମିଟର । ଏହି ନଦୀ କୂଳରେ କୁଣ୍ଡପିଠା, ଆଖୁପାଳ, ଗଦାଧରପୁର, ବାଣେଶ୍ୱର, ବାର୍ହାଟିପୁରା, କୁକୁରକଟା ଗ୍ରାମଗୁଡିକ ଅବସ୍ଥିତ ।

## ମୂଷଳ

ମେଘନାଦ ପର୍ବତରୁ ମୂଷଳ ନଦୀ ଉତ୍ପତ୍ତିଲାଭ କରିଛି । ଏହାର ଦୈର୍ଘ୍ୟ ପ୍ରାୟ ୫୩ କିଲୋମିଟର । ଉତ୍ପତ୍ତି ସ୍ଥଳରୁ କିଛି ବାଟ ଉତ୍ତର ଦିଗକୁ ପ୍ରବାହିତ ହେବାପରେ ନଦୀଟି ଆକସ୍ମିକ ଭାବେ ପୂର୍ବକୁ ଓ ଦକ୍ଷିଣ-ପୂର୍ବ ଦିଗରେ ପ୍ରବାହିତ ହୋଇ କୁଣ୍ଡକୋଟ ନିକଟରେ ବୈତରଣୀ ନଦୀ ସହିତ ମିଶିଛି । ଏହି ନଦୀ ସହିତ ଅନେକ ପାହାଡିଆ କ୍ଷୁଦ୍ର ନାଳଗୁଡିକ ମିଶିଛନ୍ତି । ଏହି ନଦୀ କୂଳରେ ହରିଚନ୍ଦନପୁର, ରଘୁନାଥପୁର, ତିନିଧାରିଆ, ଆଖୁପାଳ, କାଦୁଅଡିହ, କାଳିମାଟି ଓ ସମିଳିଆ ଗ୍ରାମଗୁଡିକ ଅବସ୍ଥିତ ।

## କୁଶେଇ



କୁଶେଇ ନଦୀର ଅନ୍ୟ ନାମ କୁଶଭଦ୍ରା । ମେଘନାଦ ପର୍ବତର ଦକ୍ଷିଣ ଦିଗରେ ଅବସ୍ଥିତ ରେବଣା ସଂରକ୍ଷିତ ଜଙ୍ଗଲରୁ କୁଶେଇ ନଦୀ ଉତ୍ପତ୍ତିଲାଭ କରିଛି । ଏହି ନଦୀଟି ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇ କୁକୁରୁଙ୍ଗି ନଦୀ ସହିତ ମିଶିବା ପରେ ନଦୀଟି ଅତ୍ୟନ୍ତ ଅଙ୍କାବଙ୍କା ପଥ ଦେଇ ଗତି କରି ଆନନ୍ଦପୁର ସବ୍‌ଡିଭିଜନର ବାଡୋ ନିକଟରେ ବୈତରଣୀ ନଦୀ ସହ ମିଶିଛି । ଏହି ନଦୀ ସହିତ ଷେଣ୍ଢେଇ ଓ ଗଣ୍ଡ ନଦୀ ମିଶିଛି । କୁଶେଇ ନଦୀ କୂଳରେ କୁଶଳେଶ୍ୱର, ବେଳବାହାଳି, ଜଳପୁଆଁ, ମାଣଡିରି, ନୟାଗଡ ଆଦି ସ୍ଥାନ ଅବସ୍ଥିତ ।

## ବୈତରଣୀର ଅନ୍ୟ କ୍ଷୁଦ୍ର ଉପନଦୀ (ଦକ୍ଷିଣ ପାର୍ଶ୍ୱରେ ଥିବା)

ବୈତରଣୀ ନଦୀର ଅନ୍ୟ ପ୍ରମୁଖ କ୍ଷୁଦ୍ର ଉପନଦୀ ନେର୍ମଦା ନଦୀଟି ରୁଆଁଗୁଡା ନିକଟରେ ବୈତରଣୀ

ନଦୀ ସହିତ ମିଶିଛି । ଏହାକୂଳରେ କାନପରା, ଉଚବାଲି ଓ ପୁରୁତପଣି ଗ୍ରାମଗୁଡ଼ିକ ରହିଛି । **ଜନେଇନାଳ** ପୁରୁଣାସାହି ଓ ସରିଙ୍ଗ ନିକଟରେ ବୈତରଣୀ ନଦୀ ସହିତ ମିଶିଛି । **ନେଉଳିଯୋଡି** ନଦୀ ନୂଆସାହି ନିକଟରେ ୬ ନମ୍ବର ଜାତୀୟ ରାଜପଥ (ତୁରୁମୁଂଗା)ର ଉପରମୁଣ୍ଡରେ ବୈତରଣୀ ନଦୀ ସହିତ ମିଶିଛି । ଏହା କୂଳରେ ନୂଆସାହି, ଝାରବେଡା ଓ ତେନ୍ତୁଳିଖୁଣ୍ଟି ଗ୍ରାମଗୁଡିକ ରହିଛି । **ନାଜଯୋର** ନଦୀଟି ରାଜନଗର ଉପରମୁଣ୍ଡରେ ବୈତରଣୀ ନଦୀ ସହ ମିଶିଛି । ଏହାକୂଳରେ ବଳଭଦ୍ରପୁର ଓ ଭୃଙ୍ଗରାଜ ଗ୍ରାମ ରହିଛି । **ଜହ୍ନେଇନାଳ** ତୁରୁମୁଂଗା ନିକଟସ୍ଥ କିଆପଡା ପାଖରେ ବୈତରଣୀ ନଦୀରେ ମିଶିଛି । ଏହାକୂଳରେ କୋଚିଲାପଡା, ଜହ୍ନେଇପୁର ଗ୍ରାମ ରହିଛି । **ସିମିଳି ନାଳ** ସ୍ୱାମ୍‌ପାଟଣାର ତଳ ମୁଣ୍ଡରେ ମଙ୍ଗଳପୁରଠାରେ **ଗଞ୍ଜେଇ ଘୁରା ନାଳ** ସହିତ ଏକତ୍ର ମିଶି ବୈତରଣୀ ନଦୀରେ ପଡିଛନ୍ତି । **ମୁହାଁଣ ନାଳ** ବୀରଗୋବିନ୍ଦପୁର ନିକଟରେ ବୈତରଣୀ ନଦୀ ସହ ମିଶିଛି । ଏହା କୂଳରେ ଚନ୍ଦେଇବାହାଳ, ଭାଲୁଗଣ ଗ୍ରାମଗୁଡିକ ରହିଛି । **କାଳିଆପାଳ ନାଳ** ରଣପୁରଠାରେ ବୈତରଣୀ ନଦୀ ସହ ମିଶିଛି । **ଗଣ୍ଡନାଳ** ସହ ମିଶି **କବାଟିନାଳ** ଦକ୍ଷିଣ ପୂର୍ବ ଦିଗକୁ ପ୍ରବାହିତ ହୋଇ ବୈତରଣୀ ନଦୀ ସହ ମିଶିଛି । ଏହା କୂଳରେ ରଗଡା, କଙ୍କଡାଯୋର ଓ କାଳିଆପାଳ ଗ୍ରାମଗୁଡିକ ରହିଛି । ଏହା ବ୍ୟତୀତ ବାମିନୀ ହେଉଛି ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଥିବା ଅନ୍ୟତମ କ୍ଷୁଦ୍ର ଉପନଦୀ ।

## ବୈତରଣୀ ନଦୀର ବାମ ପାର୍ଶ୍ୱରୁ ଆସି ମିଶିଥିବା ପ୍ରମୁଖ ଉପନଦୀ

### କୁନ୍ଦୁରା ନଦୀ

ସୁନ୍ଦରଗଡ ଜିଲ୍ଲାର ଦକ୍ଷିଣ-ପୂର୍ବ ସୀମା ନିକଟରେ **ଡେହେରାଇ** ଓ **ସୁନା** ନାମକ ଦୁଇଟି କ୍ଷୁଦ୍ର ନଦୀ ମିଶି କୁନ୍ଦୁରା ନଦୀର ସୃଷ୍ଟି ହୋଇଛି । କୁନ୍ଦୁରା ନଦୀ ମାଲ୍‌ଦା ନିକଟ ଦେଇ କେନ୍ଦୁଝର ଜିଲ୍ଲାର ଉତ୍ତର-ପଶ୍ଚିମ ଦିଗରେ ଜିଲ୍ଲା ମଧ୍ୟକୁ ପ୍ରବେଶ କରି ପରେ ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହୋଇ ବୈତରଣୀ ନଦୀ ସହ ମିଶିଛି ।

### ନିଙ୍ଗିରା ନଦୀ

ବୈତରଣୀ ନଦୀର ସମସ୍ତ ପ୍ରମୁଖ ଉପନଦୀଗୁଡିକରୁ ଜଙ୍ଗିରା ବା ନିଙ୍ଗିରା ନଦୀ ହେଉଛି ଏକ ବଡ଼ ଉପନଦୀ । ଏହି ନଦୀ ଝାଡଖଣ୍ଡ ରାଜ୍ୟର ପଶ୍ଚିମ ସିଂଭୂମ୍ ଜିଲ୍ଲାରୁ ବାହାରିଛି । ମୟୂରଭଞ୍ଜ ଜିଲ୍ଲା ସୀମା ଦେଇ ଦକ୍ଷିଣ-ପଶ୍ଚିମ ଦିଗରେ ପ୍ରବାହିତ ହୋଇ ଚଂପୁଆର ତଳମୁଣ୍ଡରେ କେନ୍ଦୁଝର-ମୟୂରଭଞ୍ଜ-ଝାଡଖଣ୍ଡର ସିମାରେ ବୈତରଣୀ ନଦୀ ସହ ମିଳିତ ହୋଇଛି । କେନ୍ଦୁଝର ଜିଲ୍ଲା ମଧ୍ୟ ଦେଇ ନଦୀଟି ପ୍ରବାହିତ ନ ହେଲେ ମଧ୍ୟ ଏହି ନଦୀର ଜଳରେ ବୈତରଣୀର ଗର୍ଭ ସମୃଦ୍ଧ ହୋଇଛି ।

## ଖଇରିଭଣ୍ଡନ ନଦୀ

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପାର୍ବତ୍ୟ ଅଞ୍ଚଳରୁ ଆସିଥିବା ଖଇରିଭଣ୍ଡନ ନଦୀଟି ଉଜବାଲିର ଅପରପାର୍ଶ୍ୱରେ ବୈତରଣୀ ନଦୀ ସହ ମିଳିତ ହୋଇଛି । କେନ୍ଦୁଝର ଜିଲ୍ଲା ମଧ୍ୟ ଦେଇ ଏହି ନଦୀ ପ୍ରବାହିତ ନ ହେଲେ ବି ବୈତରଣୀ ନଦୀର ଏହା ଏକ ପ୍ରମୁଖ ଉପନଦୀ ।

## ଦେଓ ନଦୀ

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ପର୍ବତର ପଶ୍ଚିମ ଭାଗରୁ ବାହାରି ଏହି ନଦୀଟି ସାହାରପଡା ନିକଟ ଦେଇ ଉତ୍ତର-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ କେନ୍ଦୁଝର-ମୟୂରଭଞ୍ଜ ଜିଲ୍ଲାର ସୀମାରେ କିଛି ବାଟ ପ୍ରବାହିତ ହେବାପରେ ତୁରୁମୁଂଗାର ଉପର ମୁଣ୍ଡରେ ବୈତରଣୀ ନଦୀ ସହ ମିଶିଛି ।

## ତେଲ ନଦୀ

ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ସୀମାନ୍ତବର୍ତ୍ତୀ ଇଲାକାର ସାହାରପଡାର ଦକ୍ଷିଣକୁ ପ୍ରବାହିତ ହୋଇ ମାଛକାନ୍ଦ ନାଳ ସହିତ ମିଶିବା ପରେ ତେଲ ନଦୀ ଭୀମକୁଣ୍ଡର ଉପର ମୁଣ୍ଡରେ ବୈତରଣୀ ସହ ମିଳିତ ହୋଇଛି । ଏହି ନଦୀ କୂଳରେ ଗୁରୁବାଟାଙ୍ଗର, ଗୋଲକୁଦ, କମାରମରା ଗାଁଗୁଡିକ ରହିଛି ।

## ସିମ୍ ନଦୀ

କେନ୍ଦୁଝର ଜିଲ୍ଲାର ସୀମାରେ ସିମ୍ ନଦୀ ଆସି ବୈତରଣୀ ନଦୀର ବାମ ପାର୍ଶ୍ୱରେ ମିଳିତ ହୋଇଛି । କେନ୍ଦୁଝର ଜିଲ୍ଲା ମଧ୍ୟରେ ଏହି ନଦୀ ପ୍ରବାହିତ ନ ହେଲେ ମଧ୍ୟ ଏହାର ଜଳ ବୈତରଣୀକୁ ଅଧିକ ସମୃଦ୍ଧ କରିପାରିଛି ।

## କଣ୍ଡେମୁଳି ନଦୀ

ପୁରୁଣାପାଣିର ଉପର ମୁଣ୍ଡରେ କଣ୍ଡେମୁଳି ନଦୀ ପ୍ରବାହିତ ହୋଇ ଶେଷରେ ବୈତରଣୀ ସହ ମିଶିଛି ।

## ଶାଳନ୍ଦୀ ନଦୀ

ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ଅଭୟାରଣ୍ୟ ଅନ୍ତର୍ଗତ ମେଘାସନୀ ପର୍ବତର ଦକ୍ଷିଣ ଭାଗରୁ ବାହାରି ଚଂପାପାଳ ଗ୍ରାମ ନିକଟରେ ଶାଳନ୍ଦୀ ନଦୀ କେନ୍ଦୁଝର ଜିଲ୍ଲା ମଧ୍ୟକୁ ପ୍ରବେଶ କରିଛି । ଏହାପରେ ନଦୀଟି ହଦଗଡ, ପଢିଆରୀପଲ୍ଲୀ ଓ ସୋସୋ ଅଞ୍ଚଳରେ ଦକ୍ଷିଣ-ପୂର୍ବ ଦିଗକୁ ପ୍ରାୟ ୧୯ କିଲୋମିଟର ପ୍ରବାହିତ ହେଲାପରେ ଭଦ୍ରକ ଜିଲ୍ଲାକୁ ପ୍ରବେଶ କରି ସେଠାରେ ବୈତରଣୀ ସହ

ମିଳିତ ହୋଇଛି । ଏହି ନଦୀ ଉପରେ ହଦଗଡ଼ଠାରେ ଏକ ବୃହତ୍ ଜଳଭଣ୍ଡାର ନିର୍ମାଣ କରାଯାଇ ଉଭୟ ଭଦ୍ରକ ଓ ଆନନ୍ଦପୁର ଅଞ୍ଚଳର ଚାଷୀମାନଙ୍କ ଜମିକୁ ଜଳସେଚିତ କରାଯାଇପାରୁଛି ।

## ବୈତରଣୀର ଅନ୍ୟ କ୍ଷୁଦ୍ର ଉପନଦୀ (ବାମ ପାର୍ଶ୍ୱରେ ଥିବା)

ବୈତରଣୀ ନଦୀର ବାମ ପାର୍ଶ୍ୱରୁ ଆସି ମିଶିଥିବା କ୍ଷୁଦ୍ର ଜଳଧାରଗୁଡିକ ମଧ୍ୟରେ **ଧୋବାପିଟା, ଟମକାଯୋଡି-କଚିମଯୋର, ଭିରାଳ-ସୀତା, ଭିରୋଳ-ଯମୁନା, କାଠୁପକା, ଧୋଲୁଆ, ଭାଲୁଘର ବା ବାଉତିଆ, ଘାଗରା-ଘଣ୍ଟିଆ- ଚାରିନାଳିଆ** ଆଦି ଅନ୍ୟତମ । **ଧୋବାପିଟା ନାଳ** ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହେବାପରେ ବୈତରଣୀ ନଦୀରେ ମିଳିତ ହୋଇଛି । **ଟମକାଯୋଡି-କଚିମଯୋର** ନାଳଦ୍ୱୟ ମିଳିତ ଭାବେ ପ୍ରବାହିତ ହୋଇ ପାଟଣାର ଉପରମୁଣ୍ଡରେ ବୈତରଣୀ ନଦୀ ସହ ମିଶିଛନ୍ତି । **ଭିରାଳ-ସୀତା** ନାଳଦ୍ୱୟ ମିଳିତ ଭାବେ ପ୍ରବାହିତ ହେବାପରେ ମିରିଗିଖୋଜ ନିକଟରେ ବୈତରଣୀ ନଦୀ ସହ ମିଶିଛନ୍ତି । **ଭିରୋଳ-ଯମୁନା** ନାଳଦ୍ୱୟ ମିଳିତ ଭାବେ ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ବୈତରଣୀ ନଦୀ ସହ ମିଶିଛନ୍ତି । ଏହି ନାଳକୂଳରେ ଖଡ଼ିକାପଦା, ହିନାଳଗାଡିଆ, ଦୁଧନାଳି ଓ ଗୁରପ ଆଦି ଗ୍ରାମ ରହିଛି । **କାଠୁପକା ନାଳ** ବଣିଆଯୋଡି ପାର୍ଶ୍ୱରୁ ବାହାରି ବୈତରଣୀ ନଦୀ ସହ ମିଶିଛି । **ଧୋଲୁଆ ନାଳ** ଟେଣେଇପାଳ ନିକଟରେ ବୈତରଣୀ ସହ ମିଶିଛି । **ଭାଲୁଘର ନାଳ** ବା **ବାଉତିଆ ନାଳ** ଗଉତଡିହା ନିକଟରେ ବୈତରଣୀ ସହ ମିଳିତ ହୋଇଛି । **ଘାଗରା ନାଳ** ବାଉଁଶପାଣି ଦେଇ ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରବାହିତ ହୋଇ **ଘଣ୍ଟିଆ ନାଳ** ସହିତ ମିଶିବା ପରେ **ଚାରିନାଳିଆ** ନାମ ଧାରଣ କରି ଆମ୍ବ ନିକଟରେ ବୈତରଣୀ ସହ ମିଶିଛି । ଏହା ବ୍ୟତୀତ ବୈତରଣୀ ନଦୀର ବାମ ପାର୍ଶ୍ୱରେ ଥିବା ଅନ୍ୟ କ୍ଷୁଦ୍ରତମ ଉପନଦୀଗୁଡିକ ମଧ୍ୟରେ **ଉଳପା ନାଳ, ଦଲ୍‌କି ନଳା, ଘାଗରା, ମଳଦା, ତଣ୍ଡିଯୋଡା, ରାଣୀମା** ଆଦି ଜଳ ଉତ୍ସଗୁଡ଼ିକ ବୈତରଣୀ ନଦୀ ଗର୍ଭ ବୃଦ୍ଧିରେ ସହାୟକ ହୋଇପାରିଛନ୍ତି ।

## କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ବ୍ରାହ୍ମଣୀ ନଦୀର ପ୍ରମୁଖ ଉପନଦୀ

ବ୍ରାହ୍ମଣୀ ନଦୀ କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ନ ହେଲେ ବି ଏହାର ଅନେକ ପ୍ରମୁଖ ଉପନଦୀମାନ କେନ୍ଦୁଝର ଜିଲ୍ଲାରୁ ବାହାରି କେନ୍ଦୁଝର ଜିଲ୍ଲା ଦେଇ ପ୍ରବାହିତ ହୋଇ ଶେଷରେ ବ୍ରାହ୍ମଣୀ ନଦୀରେ ପଡିଛନ୍ତି । କେନ୍ଦୁଝର ଜିଲ୍ଲାରେ ପ୍ରବାହିତ କାରୋ, ମକାର, ସମାକୋଇ, ରାମିଆଳ ଆଦି ନଦୀ କେନ୍ଦୁଝର ଜିଲ୍ଲାରେ ପ୍ରବାହିତ ହୋଇ ଶେଷରେ ବ୍ରାହ୍ମଣୀ ନଦୀରେ ମିଶିଛନ୍ତି ।

### କାରୋ ନଦୀ

ସୁନ୍ଦରଗଡ଼ ଜିଲ୍ଲାର ବଣେଇ ସବ୍ ଡିଭିଜନରୁ ଏହି ନଦୀଟି ବାହାରି କେନ୍ଦୁଝର ଜିଲ୍ଲାର ଚଂପୁଆ ସବ୍ ଡିଭିଜନର ଉତ୍ତର-ପଶ୍ଚିମ ଭାଗରେ ପ୍ରବାହିତ ହୋଇଛି । ଏହି ନଦୀଟି କେନ୍ଦୁଝର ଜିଲ୍ଲାର

ବଡ଼ବିଲ ସହର ମଧ୍ୟ ଦେଇ ଉତ୍ତର-ପୂର୍ବ ଦିଗକୁ ପ୍ରବାହିତ ହୋଇ ଝାଡଖଣ୍ଡ ପ୍ରଦେଶରେ ପ୍ରବେଶ କରି ବ୍ରାହ୍ମଣୀର ଅନ୍ୟତମ ଉପନଦୀ ଦକ୍ଷିଣ କୋଏଲ୍ ସହିତ ମିଶିଛି । ଏହି ନଦୀକୂଳରେ କେନ୍ଦୁଝର ଜିଲ୍ଲାର ବଲାଣୀ, ବଡ଼ବିଲ୍ ସହର ଅବସ୍ଥିତ ।

## ମଙ୍କାର ନଦୀ

କେନ୍ଦୁଝର ଜିଲ୍ଲାର ପଶ୍ଚିମ ଭାଗରେ ବେଣୀତିହି ନିକଟରୁ ବାହାରି ଏହି ନଦୀଟି ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ଅନୁଗୁଳ ଜିଲ୍ଲାର ପାଲଲହଡା ନିକଟ ଦେଇ ପ୍ରବାହିତ ହେବା ପରେ ବ୍ରାହ୍ମଣୀ ନଦୀ ସହ ମିଳିତ ହୋଇଛି ।

## ସମାକୋଇ ନଦୀ

କେନ୍ଦୁଝର ଜିଲ୍ଲାର ଦକ୍ଷିଣ-ପଶ୍ଚିମ ଭାଗରେ ଅବସ୍ଥିତ ଗେଣ୍ଡାଚୁଆ ପାହାଡରୁ ସମାକୋଇ ନଦୀଟି ଉପ୍ତତ୍ତିଲାଭ କରିଛି । ମାତ୍ର, ହୁଣ୍ଡା ଗ୍ରାମ ନିକଟସ୍ଥ କୁଲାବିରା ପାହାଡରୁ ସମାକୋଇ ନଦୀଟି ଉପ୍ତତ୍ତିଲାଭ କରିଛି ବୋଲି ସ୍ଥାନୀୟ ଲୋକଙ୍କଠାରୁ ପ୍ରକାଶ । ଅତ୍ୟନ୍ତ ଅଂକାବଂକା ପଥ ଦେଇ ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ସମାକୋଇ ନଦୀଟି ଢେଙ୍କାନାଳ ଜିଲ୍ଲାକୁ ପ୍ରବେଶ କରି ସମଲ ବ୍ୟାରେଜ୍ ଉପର ମୁଣ୍ଡରେ ବ୍ରାହ୍ମଣୀ ନଦୀ ସହିତ ମିଳିତ ହୋଇଛି । ଏହି ନଦୀଟି କେନ୍ଦୁଝର ଜିଲ୍ଲା ମଧ୍ୟରେ ପ୍ରାୟ ୫୦ କିଲୋମିଟର ପ୍ରବାହିତ ହୋଇଛି । ଏହି ନଦୀ କୂଳରେ କେନ୍ଦୁଝର ଜିଲ୍ଲାର ତେଲକୋଇ ବ୍ଲକ୍ ଅବସ୍ଥିତ । ତେଲକୋଇ ବ୍ଲକ୍‌ର ଚାଷୀମାନଙ୍କ ପାଇଁ ଏହି ନଦୀଟି ଏକ ଗୁରୁତ୍ୱପୂର୍ଣ୍ଣ ନଦୀ ।

## ରାମିଆଳ ନଦୀ

କେନ୍ଦୁଝର ଜିଲ୍ଲାର ଦକ୍ଷିଣ ଭାଗସ୍ଥିତ କଳାପାଟ ପର୍ବତରୁ ରାମିଆଳ ନଦୀ ଉପ୍ତତ୍ତିଲାଭ କରିଛି । ଏହି ନଦୀଟି ଦକ୍ଷିଣ ଦିଗକୁ କାଳିଆହତା ଗ୍ରାମ ଦେଇ ପ୍ରବାହିତ ହୋଇ ଶେଷରେ ଢେଙ୍କାନାଳ ଜିଲ୍ଲାର କଂକଡାହାଡ ନିକଟ ଦେଇ ବ୍ରାହ୍ମଣୀ ନଦୀ ସହିତ ମିଳିତ ହୋଇଛି ।

# କେନ୍ଦୁଝର ଜିଲ୍ଲାର ଝରଣା ଓ ଜଳପ୍ରପାତ

କେନ୍ଦୁଝର ଜିଲ୍ଲାକୁ ଯଥାର୍ଥରେ ଜଳପ୍ରପାତର ଜିଲ୍ଲା କୁହାଯାଇଥାଏ । ଏହି ଜିଲ୍ଲାରେ ରାଶିରାଶି ପାହାଡମାଳା ସହିତ ଜଳପ୍ରପାତ ରହିଛି । ରାଜ୍ୟ ତଥା ଦେଶର ସବୁଠୁ ସୁନ୍ଦରତମ ଓ ଆକର୍ଷଣୀୟ ଜଳପ୍ରପାତ କୁହାଯାଉଥିବା ଖଣ୍ଡାଧାର କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ରେ ଅବସ୍ଥିତ । ଯଦିଓ ଏହାର ଅପରପାର୍ଶ୍ୱଟି ସୁନ୍ଦରଗଡ ଜିଲ୍ଲାରେ ପ୍ରବାହିତ ତେବେ କେନ୍ଦୁଝର ଜିଲ୍ଲାରେ ଅବସ୍ଥିତ ଖଣ୍ଡାଧାର ଜଳପ୍ରପାତଟି ପ୍ରକୃତିର ଏକ ଅନନ୍ୟ ଉପହାର ସଦୃଶ । ଏହା ବ୍ୟତୀତ ଜିଲ୍ଲାରେ ସାନ ଘାଗରା, ବଡ଼ଘାଗରା, ହାଣ୍ଡିଭଙ୍ଗା, ଅସୁରଖୋଲ, ଗୁଣ୍ଡିଚାଘାଗି, ମୁର୍ଗା ଜଳପ୍ରପାତ, ଗଦଗଦି, ରାକାମ୍, କୁଣ୍ଡପାଣି, ଝିଲିଘାଗି, ମୁଣ୍ଡାପାଣି, ଚକ୍ରତୀର୍ଥ ଆଦି ଅନେକ ଜଳପ୍ରପାତ ରହିଛି ।

## କେନ୍ଦୁଝର ଜିଲ୍ଲାର ଆଦିମ ଜନଜାତି

କେନ୍ଦୁଝର ଏକ ଆଦିବାସୀବହୁଳ ଜିଲ୍ଲା ଭାବେ ନିଜର ପରିଚୟ ସୃଷ୍ଟି କରିପାରିଛି । ଏଠାରେ ଭୂୟାଁ, ଜୁଆଙ୍ଗ, କୋହ୍ଲ, ମୁଣ୍ଡା, ବାଥୁଡ଼ି, ସାନ୍ତାଳ, ହୋ, ସାଉଁତି, ରାଜୁଆର, ଗଣ୍ଡ ଆଦି ବିଭିନ୍ନ ଶ୍ରେଣୀର ଆଦିବାସୀ ବସବାସ କରନ୍ତି । ଜୁଆଙ୍ଗ ହେଉଛନ୍ତି ପୃଥିବୀର ଏକ ସର୍ବ ପୁରାତନ ଜନଜାତି *(primitive tribal group)* । ଏମାନେ ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକା ଅଞ୍ଚଳରେ ବସବାସ କରନ୍ତି । ଜୁଆଙ୍ଗ ସଂପ୍ରଦାୟର ଉନ୍ନତି ପାଇଁ ୧୯୭୮ ମସିହାରେ 'ଜୁଆଙ୍ଗ ଉନ୍ନୟନ ସଂସ୍ଥା' (ଜେଡିଏ) ଗଠନ କରାଯାଇଛି । ଏହାବ୍ୟତୀତ କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ଶ୍ରେଣୀର ତଫସିଲଭୁକ୍ତ ଜାତିର ଲୋକେ ବସବାସ କରନ୍ତି । ସେମାନଙ୍କ ମଧ୍ୟରେ ଧୋବା, ଝରା, ଚମାର, ଡ଼ମ, ଘାସି, ହାଡ଼ି, ଗୋଖା, ପାଣ, ପାଣତନ୍ତୀ, ପାତ୍ରତନ୍ତୀ, ତାମଡ଼ିଆ ଆଦି ପ୍ରମୁଖ ।

## ପୁଣ୍ୟତୋୟା ବୈତରଣୀ ଓ ଏହାର ଉତ୍ପତ୍ତି ସ୍ଥଳ ଗୋନାସିକା



ରାମାୟଣ ଓ ମହାଭାରତ ଭଳି ଭାରତୀୟ ପୁରାଣ ଶାସ୍ତ୍ରର ଅନେକ ସ୍ଥାନରେ ପୁଣ୍ୟତୋୟା ବୈତରଣୀ ନଦୀ ସଂପର୍କରେ ବର୍ଣ୍ଣନା ରହିଛି । ଏହି ପବିତ୍ର ନଦୀଟି କେନ୍ଦୁଝରର ଗୋନାସିକା ପର୍ବତମାଳାରୁ ଉତ୍ପତ୍ତିଲାଭ କରିଛି । ବୈତରଣୀ ନଦୀର ଉତ୍ପତ୍ତିସ୍ଥଳଟି ଗୋରୁ ନାକ ଆକାରର ଏକ ପଥରରୁ ହୋଇଥିବାରୁ ଏ ସ୍ଥାନର ନାମ 'ଗୋନାସିକା' ହୋଇଛି ବୋଲି ବିଶ୍ୱାସ କରାଯାଏ । ଗୋନାସିକା ପର୍ବତମାଳାଟି କେନ୍ଦୁଝରଗଡ଼ଠାରୁ ୩୦



କିଲୋମିଟର ଦୂରରେ ଅବସ୍ଥିତ । ଏହାର ଉଚ୍ଚତା ୩.୨୧୯ ଫୁଟ ଅଟେ । ବୈତରଣୀ ନଦୀଟି ଏହି ପର୍ବତମାଳାରୁ ୩୧୦୦ ଫୁଟ ଉଚ୍ଚରୁ ନିମ୍ନ ଅଞ୍ଚଳକୁ ପ୍ରବାହିତ ହୋଇ ୩୪୪ କିଲୋମିଟର ପଥ ଅତିକ୍ରମ କରିବା ପରେ ଧାମରା ମୁହାଁଣରେ ଅବସ୍ଥିତ ଚାନ୍ଦବାଲିଠାରେ ବଂଗୋପ ସାଗର (କଳିଂଗ ସାଗର) ସହିତ ମିଶିଛି । ମୋଟ ୧୦.୪୪୦ ବର୍ଗ କିଲୋମିଟର ବିଶିଷ୍ଟ ବୈତରଣୀ ଅବବାହିକା ମଧ୍ୟରୁ କେନ୍ଦୁଝର ଜିଲ୍ଲାରେ ୨୦୦ ବର୍ଗକିଲୋମିଟର ଅଞ୍ଚଳ ଦେଇ ଏହା ପ୍ରବାହିତ ହେଉଛି । ପୁରାଣ ମତ ଅନୁଯାୟୀ. ବୈତରଣୀ ନଦୀଟି ସ୍ୱର୍ଗ. ମର୍ତ୍ତ୍ୟ ଓ ପାତାଳଲୋକରେ ପ୍ରବାହିତ ହୋଇ ତିନି ପୁରକୁ ତ୍ରାଣ କରୁଥିବାରୁ ଏହାର ନାମ 'ବୈତରଣୀ' ହୋଇଛି । ତେବେ ପୁରାଣ ଅନୁଯାୟୀ ସ୍ୱର୍ଗଲୋକର ଏକ ନଦୀର ନାମ 'ବୈତରଣୀ' ଅଛି ବୋଲି ବିଶ୍ୱାସ କରାଯାଏ । ଏଣୁ ବୈତରଣୀକୁ ପବିତ୍ର ଦେବ ନଦୀ ଭାବେ ପୁରାଣରେ ବର୍ଣ୍ଣନା କରାଯାଇଛି । ବୈତରଣୀ ହେଉଛି ସ୍ୱର୍ଗରେ ପ୍ରବାହିତ ଦେବତାମାନଙ୍କର ନଦୀ । ତେବେ ମର୍ତ୍ତ୍ୟପୁରରେ ପ୍ରବାହିତ ବୈତରଣୀ ନଦୀର ଅନ୍ୟ ନାମ 'ଶୋଣିତ-ସୁରା-ଗଂଗା' ଅଟେ । ପୁରାଣ ଅନୁଯାୟୀ. ଗୁପ୍ତଗଂଗା ପର୍ବତର ଶୀର୍ଷ ଦେଶରେ ଜଳ ଓ ରଜ ଏକତ୍ର ପ୍ରବାହିତ ହୋଇଥାଏ । ବୈତରଣୀ ନଦୀଟି ଗୋନାସିକାରୁ ବାହାରି ଗୁପ୍ତଗଂଗାଠାରୁ ପାତାଳଗାମୀ ହୋଇ ବଦ୍ଧେଶ୍ୱର ମନ୍ଦିର ସନ୍ନିକଟ ତ୍ରିବେଣୀ କୁଣ୍ଡଠାରେ ପୁନର୍ବାର ଆବିର୍ଭୁତ ହୋଇଛି । ରଜ ପର୍ବ ସମୟରେ ଜୁଆଙ୍ଗମାନଙ୍କ ଦ୍ୱାରା ବୈତରଣୀ ନଦୀ ପଶୁରକ୍ତ ରଂଜିତ ହେଉଥିବାରୁ



ଏହାକୁ 'ଶୋଣିତ ଗଂଗା' କୁହାଯାଇଥାଏ । କିମ୍ବଦନ୍ତୀ ଅନୁସାରେ, ରାଜା ଯଯାତି କେଶରୀ ବିରଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୂତି ପାଇଁ ବ୍ରାହ୍ମଣମାନଙ୍କର ବ୍ରହ୍ମତ୍ୱର ପରୀକ୍ଷା ନିମନ୍ତେ ବୈତରଣୀ ଜଳଧାରରେ ଅଗ୍ନି ସଂଯୋଗ କରାଇବାକୁ ବ୍ରାହ୍ମଣମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର, ଜଳରେ ଅଗ୍ନି ସଂଯୋଗ କରିବା ସହଜ ନ ହେବାରୁ ନିମନ୍ତ୍ରିତ ବ୍ରାହ୍ମଣମାନେ ଭୟରେ ଯଜ୍ଞସ୍ଥଳ ଛାଡି ପଳେଇଥିଲେ । ତେବେ ବ୍ରାହ୍ମଣ ସମାଜର ମର୍ଯ୍ୟାଦା ରକ୍ଷା କରିବାକୁ ଯାଇ ଜନୈକ ବୃଦ୍ଧ ବ୍ରାହ୍ମଣ ସ୍ଥାନୀୟ ଜଣେ ଶୁଣ୍ଡିର ସହାୟତାରେ ନଦୀ ଜଳଧାରରେ ସୁରା (ମଦ) ଢାଳି ସେଥିରେ ଅଗ୍ନି ସଂଯୋଗ କରିଥିଲେ । ଏଣୁ ଯାଜପୁରଠାରୁ କେନ୍ଦୁଝର ମଧ୍ୟରେ ବୈତରଣୀର ନାମ 'ଶୋଣିତ-ସୁରା-ଗଂଗା' ନାମରେ ପରିଚିତ । ବୈତରଣୀର ନାମକରଣ ନେଇ ଆଉ ଏକ କିମ୍ବଦନ୍ତୀ ରହିଛି । ବୈରୋଚନ ନାମକ ଜଣେ ଦୈତ୍ୟ (ରାକ୍ଷସ) ଏକଦା ଗୋନାସିକା ପାର୍ବତ୍ୟ ଅଞ୍ଚଳରେ ଭ୍ରମଣ କରୁଥିବା ସମୟରେ ସେ ଖୁବ୍ ଶୋଷ ଅନୁଭବ କରିଥିଲା । ତୃଷାର୍ତ୍ତ ହୋଇ ଦୈତ୍ୟ ବୈରୋଚନ ଗୋନାସିକା ପର୍ବତ ବକ୍ଷକୁ ନିଜ ତ୍ରିଶୂଳରେ ପ୍ରଚଣ୍ଡ ପ୍ରହାର କରିବାରୁ ପଥର ବକ୍ଷ ଫାଟିଯାଇ ସେଠାରୁ ତିନି ଧାର ହୋଇ ଜଳ ପ୍ରବାହିତ ହେବାକୁ ଆରମ୍ଭ କରିଥିଲା । ଏହି ତ୍ରିଧାରବିଶିଷ୍ଟ ଜଳ ପ୍ରବାହକୁ ପରେ 'ବୈରୋଚନୀ' ବା 'ବୈତରଣୀ' କୁହାଗଲା । ଏହାର ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର, ବକ୍ଷ ଦେଶରେ ଝାଡେଶ୍ୱର, ନାଭି ଦେଶରେ ବରାହେଶ୍ୱର ଓ ପାଦଦେଶରେ ଆଖଣ୍ଡଳେଶ୍ୱର କୁଶଲିଂଗ ରହିଛି । ଏହାର ପ୍ରତି ଏକ କୋଶ ଦୂରତାରେ ଜଳ ମଧ୍ୟରେ ଗୋଟିଏ ଗୋଟିଏ କୁଶଲିଂଗ ଥିବାରୁ ଏହାର ଜଳଧାରା ସର୍ବତ୍ର ପବିତ୍ର ଅଟେ । ବୈତରଣୀ ନଦୀର କୂଳେକୂଳେ ଆହୁରି ଅନେକ ଶୈବକ୍ଷେତ୍ର ରହିଛି । ଗୋନାସିକା

ନିକଟବର୍ତ୍ତୀ ବୈତରଣୀ ଜଳର ରଂଗ ବର୍ଷର ଅଧିକାଂଶ ସମୟରେ ଚଂପକ ବର୍ଣ୍ଣ ଭଳି ଦୃଶ୍ୟମାନ ହୋଇଥାଏ । ଏଣୁ ଏହି ଦୃଷ୍ଟିରୁ ବୈତରଣୀକୁ 'ଚଂପାବରଣୀ ବୈତରଣୀ' ବୋଲି କୁହାଯାଇଥାଏ । ଅପରପକ୍ଷେ, ଗୋନାସିକା ପର୍ବତର ପାଦଦେଶରେ ଅବସ୍ଥିତ ବରୋଦା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ 'ପାଟ ବୈତରଣୀ' ହୋଇଥିବାରୁ ନଦୀର ନାମ 'ବୈତରଣୀ' ହୋଇଛି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି ।

ପରମ ବୈଷ୍ଣବ ବ୍ରହ୍ମେଶ୍ୱରଙ୍କ ମନ୍ଦିର ବେଢାରେ ପଶୁବଳି ସଂକ୍ରାନ୍ତରେ ଜୁଆଙ୍ଗମାନେ କହନ୍ତି- ବ୍ରହ୍ମେଶ୍ୱର ନିଖିଳ ଜଗତର ବ୍ରହ୍ମଲିଂଗ ଅଟନ୍ତି । ଗୁପ୍ତଗଂଗାର ବିଶ୍ୱ ଯୋନୀ ମଣ୍ଡଳରୁ ପ୍ରବାହିତ ଜଳଧାର ରଜ ମିଶ୍ରିତ ଅଟେ । ମାତୃରଜ ସହିତ ପିତାର ବ୍ରହ୍ମବୀର୍ଯ୍ୟ ଏହି ପୀଠରେ ବୈତରଣୀ ଜଳରେ ପ୍ରବାହିତ ହୋଇଥାଏ । ପୂର୍ବ ଜନ୍ମରେ ପାପ କରିଥିବା ନାସ୍ତିକମାନେ ଇହ ଜନ୍ମରେ ପଶୁ ଯୋନୀରେ ଜାତ ହୋଇ କୃତ ପାପ କ୍ଷୟ ନିମନ୍ତେ ଏଠାରେ ବଳି ପଡିଥାନ୍ତି । ବ୍ରହ୍ମେଶ୍ୱର ପୀଠରେ ବୈତରଣୀ ନଦୀ କୂଳରେ ଏହି ପଶୁମାନେ ବଳି ପଡିବା ପରେ ମୋକ୍ଷପ୍ରାପ୍ତି ପାଉଥିବାରୁ ବୈତରଣୀକୁ ଅନ୍ୟ ଭାଷାରେ 'ବ୍ରହ୍ମତାରିଣୀ' ବୋଲି ବିବେଚନା କରାଯାଇଥାଏ । ତେବେ ଏଭଳି ପୌରାଣିକ ବିଶ୍ୱାସକୁ ବର୍ତ୍ତମାନର ଲୋକେ ଆଉ ବିଶ୍ୱାସ କରନ୍ତି ନାହିଁ ।

ମହାଭାରତ ବର୍ଣ୍ଣନା ଅନୁସାରେ, ବୈତରଣୀ ନଦୀ କୂଳରେ ଦକ୍ଷଙ୍କ ଯଜ୍ଞ ଭଗ୍ନ କରାଯାଇଥିଲା ।


ଗୋନାସିକାର ପ୍ରାଚୀନ ବ୍ରହ୍ମେଶ୍ୱର ଶିବ ମନ୍ଦିର

ମୟୂରଭଞ୍ଜରୁ ମିଳିଥିବା ତାମ୍ର ଶାସନରୁ ଜଣାଯାଏ, ବୈତରଣୀ ନଦୀ ତୀରରେ ଅବସ୍ଥିତ କେନ୍ଦୁଝର ରାଜ୍ୟ 'ଯମଗର୍ତ୍ତ' ମଣ୍ଡଳ ନାମରେ ଖ୍ୟାତ ଥିଲା । ଦୀର୍ଘତମା ଋଷି ଏହି 'ଯମଗର୍ତ୍ତ' ମଣ୍ଡଳରେ ଅବସ୍ଥାନ କରି ଯମ ସାଧନା ପୂର୍ବକ ସମାଜରେ ସର୍ବ ପ୍ରଥମେ ଗାନ୍ଧର୍ବ ବିବାହ ବ୍ୟବସ୍ଥା ପ୍ରଚଳନ କରିଥିଲେ ।

## ଗୋନାସିକାର ବାରୁଣି ସ୍ନାନ

ଗୋନାସିକା ପର୍ବତର ପାଦଦେଶରେ ପୂଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ ମହାଦେବ ବ୍ରହ୍ମେଶ୍ବର ପୂଜିତ ହେଉଛନ୍ତି । ପ୍ରତିବର୍ଷ ପ୍ରସିଦ୍ଧ ଗୋନାସିକାସ୍ଥିତ ବ୍ରହ୍ମେଶ୍ବର ପୀଠରେ ଚୈତ୍ର ମାସ କୃଷ୍ଣ ଦ୍ୱାଦଶୀ ତିଥିରେ ବାରୁଣି ସ୍ନାନ ଓ ମେଳା ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଭକ୍ତମାନେ ବୈତରଣୀ ନଦୀର ଏନ୍ତୁଡିଶାଳ ବା ସୂତିକାଗାର ଦର୍ଶନ କରି ପୂର୍ଣ୍ଣତା ଲାଭ କରିଥାନ୍ତି । ପବିତ୍ର ବାରୁଣୀ ଯୋଗରେ ତୀର୍ଥ ଯାତ୍ରୀ ପ୍ରଭାତରେ ବ୍ରହ୍ମକୁଣ୍ଡର ବୈତରଣୀ ଜଳରେ ପବିତ୍ର ସ୍ନାନ କରନ୍ତି । ସ୍ନାନ ପରେ ଭକ୍ତମାନେ ପ୍ରତ୍ୟକ୍ଷ ବ୍ରହ୍ମେଶ୍ବର ଦେବଙ୍କୁ ଦର୍ଶନ କରିଥାନ୍ତି । ଷୋଡଶ' ଶତାବ୍ଦୀରେ କେନ୍ଦୁଝର ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜଙ୍କ ଦ୍ୱାରା ଏଠାରେ ବ୍ରହ୍ମେଶ୍ବର ମନ୍ଦିର ଓ ସିଦ୍ଧ ଜଗନ୍ନାଥ ମନ୍ଦିର ସ୍ଥାପନ କରାଯାଇଥିଲା । ଗୋନାସିକା ନିକଟରେ ଥିବା ଏକ ପଥର ଚଟାଣକୁ 'ଋଷିସଭା' କୁହାଯାଏ । ପ୍ରବାଦ ଅଛି, ଭାର୍ଗବ ଋଷି ଶିଷ୍ୟମାନଙ୍କ ଗହଣରେ ଏଠାରେ ଧର୍ମଶାସ୍ତ୍ର ଆଲୋଚନା କରୁଥିଲେ । ଏହି ବିରାଟ ପ୍ରସ୍ତର ଚଟାଣର ଗୋଟିଏ ପ୍ରାନ୍ତରେ ଦୁଇ ତିନି ଇଞ୍ଚ ପରିଧି ବିଶିଷ୍ଟ ଗୋଟିଏ ଗର୍ତ୍ତ ଅଛି । ସର୍ବଦା ଗର୍ତ୍ତର ମୁଖରେ ଏକ ପଥର ଖଣ୍ଡ ଘୋଡଣୀ ଭଳି ଢଂକା ଯାଇଥାଏ । ବର୍ଷର ପ୍ରାୟ ସବୁ ସମୟରେ ଏଠାରୁ ନିର୍ମଳ ଜଳ ଝରିଥାଏ । ଏହି ଗର୍ତ୍ତର ଅପରପାର୍ଶ୍ୱରେ ଏକ ଔଷଧବଟା ଶିଳ ପଡି ରହିଛି । ତ୍ରେତୟା ଯୁଗରେ ଇନ୍ଦ୍ରଜିତ୍-ଲକ୍ଷ୍ମଣ ଯୁଦ୍ଧ ଏବଂ ଲକ୍ଷ୍ମଣ ଶକ୍ତିଭେଦ ସମୟରେ ହନୁମାନ ଗନ୍ଧମାର୍ଦ୍ଦନ ପର୍ବତରୁ ସଂଗ୍ରହ କରି ଆଣିଥିବା ବିଶଲ୍ୟକରଣୀ ଔଷଧ ଏହି ଶିଳରେ ବଟା ଯାଇଥିଲା । ପରବର୍ତ୍ତୀ ସମୟରେ ଭାର୍ଗବ ଋଷି ଏହି ଶିଳରେ ଔଷଧ ବାଟି ରୋଗୀମାନଙ୍କୁ ପ୍ରଦାନ କରୁଥିଲେ ବୋଲି କିମ୍ବଦନ୍ତୀ ରହିଛି । ଗୋନାସିକାଠାରେ ଆୟୋଜିତ ବାରୁଣୀ ଯାତ୍ରା ଦେଖିବାକୁ ପ୍ରତିବର୍ଷ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏହି ସ୍ନାନ ଅବସରରେ ମହାଦେବ ବ୍ରହ୍ମେଶ୍ବରଙ୍କ ବିଶେଷ ସ୍ନାନ ଉପଚାର ଓ ପୂଜାର୍ଚ୍ଚନା ପାରଂପାରିକ ରୀତିରେ ସଂପନ୍ନ ହୋଇଥାଏ । ବାରୁଣି ତିଥିରେ ପୂଣ୍ୟତୋୟା ବୈତରଣୀ ଜଳରେ ସ୍ନାନ କଲେ ଶରୀରରୁ ରୋଗ ଓ ମନରୁ କାମନା, ବାସନା ଦୂର ହୋଇଯାଏ ଓ ମାନସିକ ଶାନ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି ।

## ବୈତରଣୀ ନଦୀ ଉପତ୍ୟକା ସଭ୍ୟତା ପ୍ରତି ବିପଦ!

ପୃଥିବୀର ବିଭିନ୍ନ ଭାଗରେ ପ୍ରବାହିତ ହୋଇଥିବା ନଦନଦୀ ମୁଖ୍ୟତଃ ସେହି ଅଞ୍ଚଳର ସଭ୍ୟତା,

ସଂସ୍କୃତି, ସମାଜ, ପରଂପରା ଓ ଜୀବନଶୈଳୀକୁ ବିଶେଷ ଭାବେ ପ୍ରଭାବିତ କରିଥାଏ । ନଦୀମାନଙ୍କର ଆଚରଣ ଓ ପ୍ରବାହର ଧାରାକୁ ନେଇ ସଭ୍ୟତାର ରୂପରେଖ ପ୍ରସ୍ତୁତ ହୋଇଥାଏ । ଚୀନ୍‌ର ୟାଂସିକିୟାଂ, ମିଶରର ନୀଳନଦୀ, ମେସୋପୋଟାମିଆଁର ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍, ଭାରତର ସିନ୍ଧୁ ଓ ଗଙ୍ଗା ନଦୀ ସଭ୍ୟତା ଭଳି 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ଅତି ପ୍ରାଚୀନ ବୋଲି ଗବେଷକ ମତବ୍ୟକ୍ତ କରିଛନ୍ତି । ଏପରିକି ଭାରତର ସିନ୍ଧୁ ଓ ଗଂଗା ନଦୀ ସଭ୍ୟତାଠାରୁ ବୈତରଣୀ ସଭ୍ୟତା ଅତି ପ୍ରାଚୀନ ବୋଲି ବିଭିନ୍ନ ଗବେଷଣାରୁ ଜଣାପଡିଛି ।

ଭାରତୀୟ ଧର୍ମଧାରଣାରେ ଗଂଗା ଯେଭଳି ପବିତ୍ର ନଦୀ ଅନୁରୂପ ବୈତରଣୀ ଓଡ଼ିଆମାନଙ୍କ ମାନସପଟରେ ପୁଣ୍ୟତୋୟା ଭାବେ ନିଜର ପରିଚୟ ସୃଷ୍ଟି କରିଛି । ଗବେଷକଙ୍କ ମତରେ ଭାରତରେ ଆର୍ଯ୍ୟ ସଭ୍ୟତା ବିକାଶର ଯଥେଷ୍ଟ ପୂର୍ବରୁ ଦ୍ରାବିଡମାନେ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ସିନ୍ଧୁ ନଦୀକୂଳରେ ମହେଞ୍ଜୋଦାରୋ ଓ ହରପ୍ପା ନଗର ସଭ୍ୟତା ପ୍ରତିଷ୍ଠା କରିଥିଲେ । ଆଦିମ ଅଧିବାସୀ କାଳକ୍ରମେ ବିପଦସଂକୁଳ ଓ ଭୟଙ୍କର ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲ ଛାଡି ନଦୀକୂଳଗୁଡିକୁ ନିଜର ବସତି ପାଇଁ ଉପଯୁକ୍ତ ମନେକଲା ଏବଂ ନଦୀକୂଳରେ ଘରଦ୍ୱାର ଗଢି ବସବାସ ଆରମ୍ଭ କଲା । କାଳକ୍ରମେ ପୃଥିବୀର ବିଭିନ୍ନ ଭାଗରେ ଥିବା ନଦୀକୂଳଗୁଡିକରେ ସଭ୍ୟତାର ସୂତ୍ରପାତ ଆରମ୍ଭ ହେଲା । ଅନୁରୂପ ଭାବେ ଓଡ଼ିଶାର 'ବୈତରଣୀ ନଦୀ ଉପତ୍ୟକା ସଭ୍ୟତା' ମଧ୍ୟ ସୃଷ୍ଟି ହୋଇଛି ।

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଂଗମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦି କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଏହି ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ବୈତରଣୀ ନଦୀ କୂଳରେ ବସବାସ କରୁଥିବା ଆଦିମ ଅଧିବାସୀମାନେ ସୀତାବିଞ୍ଜି, ଅସନପାଟ ଆଦି ସ୍ଥାନରେ ନଗର ପ୍ରତିଷ୍ଠା କରି ବସବାସ କରୁଥିଲେ । ଏହିସବୁ ଅଞ୍ଚଳରେ ପ୍ରସ୍ତର ଯୁଗର ଅନେକ ଅବଶେଷ ଆଜି ବି ଦେଖିବାକୁ ମିଳିଥାଏ ।

ଭାରତୀୟଙ୍କ ସର୍ବପୁରାତନ ଗ୍ରନ୍ଥ ବେଦରେ ବୈତରଣୀ ନଦୀର ଉତ୍ପତ୍ତି ଓ ବ୍ରହ୍ମଦେବଙ୍କ ସଂପର୍କରେ ଉଲ୍ଲେଖ ରହିଥିବାରୁ ଏହି ନଦୀ ସହିତ ପୌରାଣିକ ଓ ଧାର୍ମିକ ଭାବନା ମଧ୍ୟ ଯୋଡି ହୋଇ ରହିଛି । କୁହାଯାଉଛି, ଭଗବାନ ବ୍ରହ୍ମା ଏହି ଗୋନାସିକା ସ୍ଥଳକୁ ସ୍ୱୟଂ ଅବତରଣ କରି ଏଠାରେ ଧ୍ୟାନସ୍ଥ ହୋଇଥିଲେ । ବୋଧହୁଏ ଏହି କାରଣରୁ ଗୋନାସିକାରେ ମହାଦେବ ବ୍ରହ୍ମେଶ୍ୱର ପୂଜା ପାଇଆସୁଛନ୍ତି । ୩୨୧୯ ଫୁଟ ଉଚ୍ଚତାବିଶିଷ୍ଟ ଗୋନାସିକା ପର୍ବତରୁ ବୈତରଣୀ ନଦୀ ବହି ଆସି କିଛି ବାଟ ପରେ ଅର୍ନ୍ତଧ୍ୟାନ ହୋଇଯାଇଛି । ଏହାକୁ 'ଗୁପ୍ତଗଂଗା' ବୋଲି କୁହାଯାଇଥାଏ । ତେବେ ବୈତରଣୀ ନଦୀ ଗୋନାସିକାରୁ ବାହାରି କିଛି ବାଟ ପାତାଳି ହୋଇଯାଇ ପୁନର୍ବାର ବ୍ରହ୍ମେଶ୍ୱର ମନ୍ଦିର ନିକଟସ୍ଥ ବ୍ରହ୍ମକୁଣ୍ଡଠାରେ ଆବିର୍ଭୂତ ହୋଇଛି । ଏହା 'ଆଦି ବୈତରଣୀ କ୍ଷେତ୍ର'

ରୂପେ ପରିଚିତ ଏବଂ ଏହିଠାରେ ହିଁ ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଙ୍ଗମାନେ ହଜାର ହଜାର ବର୍ଷ ଧରି ଆଜି ପର୍ଯ୍ୟନ୍ତ ବସବାସ କରି ଆସୁଛନ୍ତି ।

ବୈତରଣୀ ନଦୀଟି ଗୋନାସିକାରୁ ବାହାରି କେନ୍ଦୁଝର ଜିଲ୍ଲାର ବାଂଶପାଳ, ଯୋଡା ବ୍ଲକ୍‌ର ଅନେକ ଅଞ୍ଚଳରେ ପ୍ରବାହିତ ହୋଇ ଝାଡଖଣ୍ଡର ପଶ୍ଚିମ ସିଂହଭୂମ୍ ଜିଲ୍ଲାର କିଛି ଅଂଶ ମଧ୍ୟକୁ ପ୍ରବେଶ କରିଛି । ଏହା ପରେ ପୁନର୍ବାର କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡ, ମୟୂରଭଞ୍ଜ ଓ କେନ୍ଦୁଝର ସୀମାରେ ଅନେକ ଦୂର ପ୍ରବାହିତ ହୋଇଛି । କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ଦେଇ ପ୍ରବାହିତ ହେବାପରେ ବିରଜା କ୍ଷେତ୍ରରେ ପ୍ରବେଶ କରିଛି ଏବଂ ଏହାପରେ ଭଦ୍ରକ ଜିଲ୍ଲା ଦେଇ ଶେଷରେ ଧାମରା ମୁହାଁଣରେ ଅବସ୍ଥିତ ଚାନ୍ଦବାଲିଠାରେ ବଂଗୋପସାଗର (କଳିଂଗ ସାଗର)ରେ ମିଳିତ ହୋଇଛି । ବୈତରଣୀ ଯେଉଁଯେଉଁ ଅଞ୍ଚଳ ଦେଇ ପ୍ରବାହିତ ହୋଇଛି ସେସବୁ ସ୍ଥାନଗୁଡିକ ଓଡ଼ିଶାରେ ଧାର୍ମିକ ଓ ପବିତ୍ର ପୀଠର ମାନ୍ୟତା ଲାଭ କରିପାରିଛି । ବୈତରଣୀ ନଦୀ ସର୍ବ ପାପ ହରଣ କରିଥାଏ ଏବଂ ଏହି ନଦୀରେ ସ୍ନାନ କଲେ ସମସ୍ତ ପ୍ରକାର ପାପ ମୋଚନ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି ।

ବୈତରଣୀ ନଦୀର ଅବସ୍ଥିତି ଦୃଷ୍ଟିରୁ ଏହାର ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର (କେନ୍ଦୁଝର), ବକ୍ଷ ଦେଶରେ ଝାଡେଶ୍ୱର (କେନ୍ଦୁଝର), ନାଭି ଦେଶରେ ବରାହେଶ୍ୱର (ଯାଜପୁର) ଏବଂ ପାଦଦେଶରେ ଆଖଣ୍ଡଳେଶ୍ୱର (ଭଦ୍ରକ) ଶୈବପୀଠ ରହିଛି । ଏହା ସହିତ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରୁ ଆରମ୍ଭ କରି ଧାମରା ମୁହାଣ ପର୍ଯ୍ୟନ୍ତ ନଦୀର କୂଳେକୂଳେ ଶତାଧିକ ଶୈବପୀଠ ରହିଛି । ଏହି ନଦୀର ପ୍ରତି ଏକ କୋଶ ଦୂରରେ ଜଳ ମଧ୍ୟରେ ଶିବ ଲିଙ୍ଗ ରହିଥିବାରୁ ବୈତରଣୀର ଜଳ ପବିତ୍ର ବୋଲି କୁହାଯାଏ ।

ପୁରାଣ ମତ ଅନୁସାରେ, ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱସ୍ଥ ଉପତ୍ୟକା ଅଞ୍ଚଳକୁ ମତ୍ସ୍ୟ ଦେଶ ଏବଂ ବୈତରଣୀର ଉତ୍ତର ଦିଗରୁ ଗଙ୍ଗା ନଦୀର ଦକ୍ଷିଣ ପାର୍ଶ୍ୱ ଅଞ୍ଚଳ ପର୍ଯ୍ୟନ୍ତ ଅଞ୍ଚଳକୁ ମଘ ଦେଶ ଭାବେ ପରିଚିତ ଥିଲା । ସାରଳା ମହାଭାରତର ବିରାଟ ପର୍ବର ବର୍ଣ୍ଣନା ଅନୁସାରେ, 'ମଘ-ମତ୍ସ୍ୟ' ରାଜ୍ୟଦ୍ୱୟ ବିରାଟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । 'ମଘ-ମତ୍ସ୍ୟ' ରାଷ୍ଟ୍ରଦ୍ୱୟ ମିଳିତ ହୋଇ ଏକ ବିଶାଳ ସାମ୍ରାଜ୍ୟରେ ପରିଣତ ହୋଇଥିଲା । କାଳକ୍ରମେ 'ମଘ-ମତ୍ସ୍ୟ' ସାମ୍ରାଜ୍ୟ 'ଖିଜିଙ୍ଗ୍' ମଣ୍ଡଳ ନାମରେ ପରିଚିତ ହେଲା । ବର୍ତ୍ତମାନର ମୟୂରଭଞ୍ଜ ରାଜ୍ୟ ମହାଭାରତର ମଘ ଦେଶ ଥିଲା ଏବଂ ମୟୂରଭଞ୍ଜର ଖିଚିଂଠାରେ ବିରାଟଗଡର ଧ୍ୱଂସାବଶେଷ ଓ କିଚକେଶ୍ୱରୀ ମନ୍ଦିର ରହିଛି । ଅପରପକ୍ଷେ, ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ମତ୍ସ୍ୟ ଦେଶ ଆଧୁନିକ କେନ୍ଦୁଝର ବୋଲି କୁହାଯାଉଛି । କେନ୍ଦୁଝର ରାଜ୍ୟର ଚଂପୁଆ ନିକଟରେ ହସ୍ତିନା, ଜଇନ୍ତା, ବାରୁଣା, ଯମପ୍ରସ୍ଥ, ଇନ୍ଦ୍ରପ୍ରସ୍ଥ ନାମରେ ପାଞ୍ଚୋଟି ଗ୍ରାମ ପଞ୍ଚୁପାଣ୍ଡବଙ୍କୁ ସ୍ମରଣ କରାଇଥାଏ । ପୁଣ୍ୟତୋୟା ବୈତରଣୀ ତୀର୍ଥ

ଜଳରେ ସ୍ନାନ କରି ବିରଜା କ୍ଷେତ୍ରରେ ପିତୃପୁରୁଷଙ୍କୁ ପିଣ୍ଡଦାନ କଲେ ସପ୍ତପୁରୁଷ ଉଦ୍ଧାର ପାଇଥାନ୍ତି ବୋଲି ବିଶ୍ୱାସ ରହିଛି । ବିରଜା କ୍ଷେତ୍ରର ପ୍ରତିଷ୍ଠାତା ରାଜା ଯଯାତିକେଶରୀ ଏଠାରେ ଦଶାଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୁତି ଦେଉଥିବା ସମୟରେ ମା' ବିରଜା ହିଁ ଯଜ୍ଞକୁଣ୍ଡରୁ ଆବିର୍ଭୂତ ହୋଇଥିଲେ ବୋଲି ପୁରାଣମତ ରହିଛି । ରାଜା ଯଯାତିକେଶରୀ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଅବସ୍ଥିତ 'ଯାଜନଗ୍ର' ଅର୍ଥାତ୍ ଆଜିର ଯାଜପୁରଠାରେ ଦଶାଶ୍ୱମେଧ ଯଜ୍ଞ ପାଇଁ କାନ୍ୟକୁବ୍ଜ ରାଜ୍ୟରୁ ଦଶ ସହସ୍ର ବୈଦିକ ବ୍ରାହ୍ମଣମାନଙ୍କୁ ଅଣାଇ ଏହି ଯଜ୍ଞ କରାଇଥିଲେ । ତେବେ ବିରଜା କ୍ଷେତ୍ରର ପ୍ରତିଷ୍ଠାତା ରାଜା ଯଯାତି ହେଉଛନ୍ତି ପୁରାଣ ଯୁଗର ରାଜା ଏବଂ ସେ ମହାଭାରତ ଯୁଗର ବହୁ ପୂର୍ବରୁ ବୈତରଣୀ ନଦୀ କୂଳରେ ଏହି କ୍ଷେତ୍ର ପ୍ରତିଷ୍ଠା କରିଥିଲେ ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଅପରପକ୍ଷେ, ପାଞ୍ଚ ହଜାର ବର୍ଷ ତଳେ ବ୍ୟାସଦେବଙ୍କ ରଚିତ ମହାଭାରତରେ କଳିଙ୍ଗର ଏହି ବିରଜା କ୍ଷେତ୍ର ସଂପର୍କରେ ଉଲ୍ଲେଖ ଥିବାରୁ ବୈତରଣୀ ନଦୀ ଗଂଗାଠାରୁ ପ୍ରାଚୀନ ବୋଲି ଗବେଷକମାନେ ଦାବି କରନ୍ତି । ଏହାକୁ 'ନାଭିଗୟା' କୁହାଯିବା ସାଙ୍ଗକୁ ଏଠାରେ ପିଣ୍ଡଦାନ କଲେ ସପ୍ତପୁରୁଷ ଉଦ୍ଧାର ହେବାର ବିଶ୍ୱାସ ରହିଛି ।

ଆଜି ପୁଣ୍ୟତୋୟା ବୈତରଣୀର ଶୁଦ୍ଧପବିତ୍ର ଜଳକୁ ରାଜ୍ୟ ସରକାର ବିଭିନ୍ନ ଘରୋଇ କଂପାନୀ ହାତରେ ଟେକିଦେବାକୁ ସଂକଳ୍ପବଦ୍ଧ । ଏଭଳି ସ୍ଥଳେ କେବଳ କେନ୍ଦୁଝର ଜିଲ୍ଲାବାସୀ ନୁହଁନ୍ତି ବରଂ ମୟୂରଭଞ୍ଜ, ଯାଜପୁର ଓ ଭଦ୍ରକ ଜିଲ୍ଲାରେ ଏହାକୁ ନେଇ ପ୍ରତିକ୍ରିୟା ପ୍ରକାଶ ପାଇଛି । କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' କୁହାଯାଉଥିବା ବୈତରଣୀ ନଦୀର ଜଳକୁ କୌଣସି ପରିସ୍ଥିତିରେ କଂପାନୀମାନଙ୍କ ହାତରେ ଟେକି ଦିଆଯିବ ନାହିଁ ବୋଲି କେନ୍ଦୁଝରରେ ବିଦ୍ରୋହ ଦାନା ବାନ୍ଧିବାରେ ଲାଗିଛି । 'ବୈତରଣୀ ନଦୀ ମୁକ୍ତି ଅଭିଯାନ' ନାମରେ ଏକ ବିରାଟ ଆନ୍ଦୋଳନ ମୁଣ୍ଡ ଟେକିଛି ।

ବୈତରଣୀ ଓ ଏହାର ଶାଖାନଦୀମାନଙ୍କର ଜଳ ହିଁ କେନ୍ଦୁଝରବାସୀଙ୍କ ଜୀବନ ରକ୍ଷା କରିଥାଏ । ଜିଲ୍ଲାର ମୋଟ ୮,୨୪୦ ବର୍ଗକିଲୋମିଟର କ୍ଷେତ୍ରଫଳରୁ ୬୮୨୪ ବର୍ଗକିଲୋମିଟର କ୍ଷେତ୍ରଫଳ ଜମି ଉପରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ବୈତରଣୀର ଜଳ ସେଚିତ ହୋଇଥାଏ । ଜିଲ୍ଲାର ମୋଟ କ୍ଷେତ୍ରଫଳର ଶତକଡା ୮୩ ପ୍ରତିଶତ ଜମି ଓ ଏଥିରେ ବସବାସ କରୁଥିବା ଜନସାଧାରଣ ବୈତରଣୀ ଉପରେ ନିର୍ଭରଶୀଳ । ମାତ୍ର, କେନ୍ଦୁଝର ଜିଲ୍ଲାର ଅଧିକାଂଶ ଖଣିଖାଦାନ, ଲୁହାପଥର ଶିଳ୍ପ ଓ କାରଖାନା ଯୋଗୁଁ ଏବେ ବୈତରଣୀର ଜଳ ଦୂଷିତ ହେବାରେ ଲାଗିଛି । କେନ୍ଦୁଝର ଜିଲ୍ଲାରେ ବର୍ତ୍ତମାନ ୨୪ଟି ଲୁହାପଥର ଭିତ୍ତିକ କାରଖାନା, ୧୦୦ରୁ ଊର୍ଦ୍ଧ୍ୱ ଖଣିଖାଦାନ ଓ ୩୦୦ରୁ ଊର୍ଦ୍ଧ୍ୱ ଆଇରନ୍ କ୍ରସର ଯୋଗୁଁ ବୈତରଣୀର ଜଳ ଆଜି ବିଷ ପାଲଟିଛି । ବ୍ୟାପକ ଜଙ୍ଗଲ ଧ୍ୱଂସ ଓ ଖଣି ଖନନ କାରଣରୁ ବୈତରଣୀ ନଦୀର ଜଳସ୍ତର ମଧ୍ୟ ହ୍ରାସ ପାଇବାରେ ଲାଗିଛି । ଏହା ସାଙ୍ଗକୁ ବର୍ତ୍ତମାନର ଅତ୍ୟାଧୁନିକ ଜ୍ଞାନକୌଶଳର ପ୍ରୟୋଗସ୍ୱରୂପ 'ସ୍ଲରି ଇଣ୍ଡଷ୍ଟ୍ରୀଜ୍'ଗୁଡିକ ଏବେ ବୈତରଣୀ

ପ୍ରତି ସର୍ବାଧିକ ବିପଦ ସୃଷ୍ଟି କରିଛି । ରାଜ୍ୟରେ ପ୍ରତିଷ୍ଠିତ ବହୁ ବଡ଼ବଡ଼ କଂପାନୀ ପାଇପ୍ ଯୋଗେ ପାଣି ସହିତ ଲୁହାପଥରର ମିଶ୍ରଣ (ସ୍ଲରି) ପରିବହନ କରିବାକୁ ରାଜ୍ୟ ସରକାରଙ୍କ ସହ ଚୁକ୍ତି କରିଛନ୍ତି । ସାଧାରଣତଃ, ଏହି 'ସ୍ଲରି'ରେ ପାଣିର ପରିମାଣ ଶତକଡା ୭୫ ଭାଗ ହୋଇଥିବାବେଳେ ଲୁହାପଥର ଗୁଣ୍ଡର ପରିମାଣ ୨୫ ପ୍ରତିଶତ ହୋଇଥାଏ । ତେବେ ଏହି କଂପାନୀମାନେ କେଉଁ ପରିମାଣରେ ପାଣି ବ୍ୟବହାର କରିବେ, ତାହା ଏଥିରୁ ସ୍ପଷ୍ଟ ଅନୁମେୟ । ୪୦୦ ମି.ମି ବ୍ୟାସାର୍ଦ୍ଧ ବିଶିଷ୍ଟ ପାଇପ୍‌ରେ ଏହି ସ୍ଲରି ପରିବହନ ବେଳେ କିଭଳି ଭାବେ ବୈତରଣୀର ପାଣି ଚାଲାଣ ହେବ ତାହା ଭାବିଲାବେଳକୁ ମୁଣ୍ଡ ଘୂରେଇଦିଏ । କେନ୍ଦୁଝର ଜିଲ୍ଲାର ପାଣି ପାରାଦୀପ, ଯାଜପୁର, ଅନୁଗୁଳ, ଢେଂକାନାଳ ଭଳି ଜିଲ୍ଲାକୁ ଏହି 'ସ୍ଲରି' ଯୋଗେ ଚାଲାଣ ହେବ, ଏହା ହିଁ କେନ୍ଦୁଝରବାସୀଙ୍କ ପାଇଁ ଚିନ୍ତାର କାରଣ ପାଲଟିଛି ।

ଖଣିଖାଦାନ ଓ ଦ୍ରୁତ ଶିଳ୍ପାୟନ ଯୋଗୁଁ କେନ୍ଦୁଝର ଜିଲ୍ଲାର କେବଳ ବୈତରଣୀ ନୁହେଁ, ବରଂ ଅନ୍ୟାନ୍ୟ ଜଳ ଉତ୍ସମାନଙ୍କର ସର୍ବନାଶ ଘଟିବାକୁ ବସିଛି । ଜିଲ୍ଲାର ସୁନା, କାରୋ, ସୀତା, ଅରଡ଼େଇ, କାଳିଞ୍ଜର ଭଳି ଛୋଟବଡ ନଈ, ମୁର୍ଗା, ହାଣ୍ଡିଭଙ୍ଗା , ଖଣ୍ଡାଧାର ଭଳି ବଡ଼ବଡ଼ ଜଳପ୍ରପାତର ଅସ୍ତିତ୍ୱ ଏବେ ହଜିଯିବାକୁ ବସିଛି । ଏଭଳି ପରିସ୍ଥିତିରେ ଆଗାମୀ ଦିନରେ କେନ୍ଦୁଝର ଜିଲ୍ଲାରେ ଜଳସଂକଟ କିଭଳି ଉତ୍କଟ ହେବ ଏବଂ ପୁଣ୍ୟତୋୟା ବୈତରଣୀ ନଦୀର ଭାଗ୍ୟ କ'ଣ ହେବ ସେଥିନେଇ ବ୍ୟାପକ ଚିନ୍ତା କରିବାର ସୁଯୋଗ ସୃଷ୍ଟି ହୋଇଛି ।

## ହଜିଗଲେଣି 'ବୈତରଣୀ'ର ନଅ ଭଉଣୀ!

ଦ୍ରୁତ ଜଙ୍ଗଲ କ୍ଷୟ, ଶିଳ୍ପାୟନ ଓ ବ୍ୟାପକ ଖଣି ଖନନ ଯୋଗୁଁ କେନ୍ଦୁଝର ଜିଲ୍ଲାରେ ବହୁତ କିଛି ପରିବର୍ତ୍ତନ ସମ୍ଭବ ହୋଇଛି । ଜଙ୍ଗଲ କ୍ଷୟ କାରଣରୁ କେନ୍ଦୁଝର ଜିଲ୍ଲାରେ ବୃଷ୍ଟିପାତ ହ୍ରାସ ପାଇବା ସାଙ୍ଗକୁ ଭୂ-ତଳ ଜଳସ୍ତର ଅସ୍ୱାଭାବିକ ଭାବେ ହ୍ରାସ ପାଇଛି । ଏହାର ଫଳସ୍ୱରୂପ କେନ୍ଦୁଝର ଜିଲ୍ଲାରେ ଥିବା ଅତୀତର ଅନେକ ପାହାଡ, ନଦୀ ଓ ଝରଣାର ଅପମୃତ୍ୟୁ ଘଟିଛି ।

ପୁରାଣ ବର୍ଣ୍ଣିତ ପୁଣ୍ୟତୋୟା ବୈତରଣୀ ନଦୀର ଅନ୍ୟ ନଅ ଭଉଣୀ କୁହାଯାଉଥିବା ଜଳ ଉତ୍ସ ଗୁଡିକ ଆଜି ବିପନ୍ନ । ଗୋନାସିକା ପର୍ବତରୁ ବାହାରିଥିବା ବୈତରଣୀ ନଦୀ ଏବଂ ତା'ର ଅନ୍ୟ ନଅ ଜଣ ଭଉଣୀ ଝିରିପାଣି, ଢୋଲକଟା, ଯମୁନାପଶି, କଣ୍ଡରାଣିମୁଣ୍ଡ, କିଆଦଲକ, ଠେଲାଝରଣା, କରତକଟା, କାଇଁଝରୀ, ଚଂପାଝରଣ ମଧ୍ୟରୁ ଅଧିକାଂଶ ଝରଣା ଏବେ ମୃତପ୍ରାୟ । କେବଳ ବୈତରଣୀକୁ ଛାଡି ଦେଲେ ଗୋନାସିକା ପର୍ବତରାଜାଙ୍କର ଅନ୍ୟ ୯ଟି କନ୍ୟା ପୃଥିବୀ ପୃଷ୍ଠରୁ ବିଦାୟ ନେବାକୁ ବସିଲେଣି । ବ୍ୟାପକ ଜଙ୍ଗଲ କ୍ଷୟ ଓ ଖଣି ଖନନ ପାଇଁ ଏହିସବୁ ଜଳ ଉତ୍ସ ଶୁଖି ଯାଇଛି । ତେବେ ବଞ୍ଚି ରହିଥିବା ବୈତରଣୀ ନଦୀକୁ କିଭଳି ଏହି ବିପଦରୁ ରକ୍ଷା କରାଯାଇପାରିବ

ତାହା ଏବେ ସମସ୍ତଙ୍କ ଚିନ୍ତାର କାରଣ ପାଲଟିଛି । ପୃଥିବୀର ବିଭିନ୍ନ ଭାଗରେ ପ୍ରବାହିତ ହୋଇଥିବା ନଦନଦୀ ମୁଖ୍ୟତଃ ସେହି ଅଞ୍ଚଳର ସଭ୍ୟତା, ସଂସ୍କୃତି, ସମାଜ, ପରଂପରା ଓ ଜୀବନଶୈଳୀକୁ ବିଶେଷ ଭାବେ ପ୍ରଭାବିତ କରିଥାଏ । ନଦୀମାନଙ୍କର ଆଚରଣ ଓ ପ୍ରବାହର ଧାରାକୁ ନେଇ ସଭ୍ୟତାର ରୂପରେଖ ପ୍ରସ୍ତୁତ ହୋଇଥାଏ । ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ 'ଗୋନାସିକା' ହେଉଛି ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ 'ଜୁଆଙ୍ଗ'ମାନଙ୍କ ବାସସ୍ଥାନ । ସୃଷ୍ଟିର ଆଦି କାଳରୁ 'ବୈତରଣୀ ସଭ୍ୟତା'ର ଦାୟାଦ୍ ଭାବେ ଏହି ଜୁଆଙ୍ଗମାନେ ଏ ଅଞ୍ଚଳରେ ବସବାସ କରିଆସୁଛନ୍ତି । ବୈତରଣୀ ନଦୀ କୂଳରେ ବସବାସ କରୁଥିବା ଆଦିମ ଅଧିବାସୀମାନେ ସୀତାବିଞ୍ଜି, ଅସନପାଟ ଆଦି ସ୍ଥାନରେ ନଗର ପ୍ରତିଷ୍ଠା କରି ବସବାସ କରୁଥିଲେ । ଏହିସବୁ ଅଞ୍ଚଳରେ ନୂତନ ପ୍ରସ୍ତର ଯୁଗର ଅନେକ ନିଦର୍ଶନ ଆଜି ବି ଦେଖିବାକୁ ମିଳିଥାଏ ।

ଭାରତୀୟଙ୍କ ସର୍ବପୁରାତନ ଗ୍ରନ୍ଥ ବେଦରେ ବୈତରଣୀ ନଦୀର ଉତ୍ପତ୍ତି ଓ ବ୍ରହ୍ମଦେବଙ୍କ ସଂପର୍କରେ ଉଲ୍ଲେଖ ରହିଥିବାରୁ ଏହି ନଦୀ ସହିତ ପୌରାଣିକ ଓ ଧାର୍ମିକ ଭାବନା ମଧ୍ୟ ଯୋଡି ହୋଇ ରହିଛି । କୁହାଯାଉଛି, ଭଗବାନ ବ୍ରହ୍ମା ଏହି ଗୋନାସିକା ସ୍ଥଳକୁ ସ୍ୱୟଂ ଅବତରଣ କରି ଏଠାରେ ଧ୍ୟାନସ୍ଥ ହୋଇଥିଲେ । ବୋଧହୁଏ ଏହି କାରଣରୁ ଗୋନାସିକାରେ ମହାଦେବ ବ୍ରହ୍ମେଶ୍ୱର ପୂଜା ପାଇଆସୁଛନ୍ତି । ୩୨୧୯ ଫୁଟ ଉଚ୍ଚତାବିଶିଷ୍ଟ ଗୋନାସିକା ପର୍ବତରୁ ବୈତରଣୀ ନଦୀ ବହି ଆସି କିଛି ବାଟ ପରେ ଅର୍ନ୍ତଧାନ ହୋଇଯାଇଛି । ଏହାକୁ 'ଗୁପ୍ତଗଙ୍ଗା' ବୋଲି କୁହାଯାଇଥାଏ । ତେବେ ବୈତରଣୀ ନଦୀ ଗୋନାସିକାରୁ ବାହାରି କିଛି ବାଟ ପାତାଳି ହୋଇଯାଇ ପୁନର୍ବାର ବ୍ରହ୍ମେଶ୍ୱର ମନ୍ଦିର ନିକଟସ୍ଥ ବ୍ରହ୍ମକୁଣ୍ଡଠାରେ ପ୍ରତୀୟମାନ ହୋଇଛି । ଏହା 'ଆଦି ବୈତରଣୀ କ୍ଷେତ୍ର' ରୂପେ ପରିଚିତ ଏବଂ ଏହିଠାରେ ହିଁ ପୃଥିବୀର ସର୍ବପୁରାତନ ଆଦିମ ଅଧିବାସୀ ଜୁଆଙ୍ଗମାନେ ହଜାର ହଜାର ବର୍ଷ ଧରି ବସବାସ କରି ଆସୁଛନ୍ତି ।

## କେନ୍ଦୁଝରର ଆରାଧ୍ୟ ଦେବୀ: ଘଟଗାଁର ମା' ତାରିଣୀ

ଯେଉଁ ଦେବୀଙ୍କ ସ୍ମରଣରେ କେନ୍ଦୁଝରବାସୀଙ୍କ ପ୍ରତିଟି ସକାଳ ଆରମ୍ଭ ହୋଇଥାଏ, ସେ ହେଉଛନ୍ତି ପ୍ରତ୍ୟକ୍ଷ ଦେବୀ ଘଟଗାଁର ମା' ତାରିଣୀ । କେନ୍ଦୁଝରବାସୀଙ୍କ ଇଷ୍ଟ ଦେବୀ ମା' ତାରିଣୀଙ୍କ ପ୍ରସିଦ୍ଧି ରାଜ୍ୟ କାହିଁକି ସମଗ୍ର ଦେଶରେ ବିସ୍ତାରଲାଭ କରିପାରିଛି । ଓଡ଼ିଶାରେ ପୁରୀ ଶ୍ରୀଜଗନ୍ନାଥ ପୀଠକୁ ଛାଡିଦେଲେ ବାକି ଯେଉଁ ସ୍ଥାନକୁ ସର୍ବାଧିକ ଭକ୍ତ ଓ ପର୍ଯ୍ୟଟକ ଆସିଥାନ୍ତି, ତାହା ହେଉଛି ଘଟଗାଁର ତାରିଣୀ ପୀଠ । ଏଠାକୁ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଭକ୍ତଙ୍କ ଆଗମନ ଘଟିଥାଏ । କେନ୍ଦୁଝର ଜିଲ୍ଲାକୁ ଆଗନ୍ତୁକଟିଏ ଆସିଲେ କିମ୍ବା ନୂଆକରି ଚାକିରୀରେ ଯୋଗ ଦେଉଥିବା ଅଫିସରଟିଏ ପ୍ରଥମେ ତାରିଣୀଙ୍କଠାରୁ ଆଶୀର୍ବାଦ ଭିକ୍ଷା କରି ନିଜର କାମ ଆରମ୍ଭ କରିଥାନ୍ତି ।



ଘଟଗାଁ ପୀଠରେ ତାରିଣୀଙ୍କ ଆବିର୍ଭାବ ନେଇ ଏକ ଐତିହାସିକ କିମ୍ବଦନ୍ତୀ ରହିଛି । ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କର ଦ୍ୱିତୀୟ ବାର କାଞ୍ଚି ଅଭିଯାନ ସମୟରେ କେନ୍ଦୁଝର ରାଜ୍ୟର ଯୁବରାଜ ଗୋବିନ୍ଦ ଭଞ୍ଜ ସେନାପତି ଥିଲେ । ସେ କାଞ୍ଚିର ଇଷ୍ଟଦେବୀ ତାରିଣୀଙ୍କର ଶରଣ ନେଇ କାଞ୍ଚି ଯୁଦ୍ଧରେ ଗଜପତି ମହାରାଜାଙ୍କୁ ବିଜୟୀ କରାଇଥିଲେ । ଗୋବିନ୍ଦ ଭଞ୍ଜଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ମା' ତାରିଣୀ କାଞ୍ଚି ରାଜ୍ୟରୁ ତାଙ୍କ ସହିତ କେନ୍ଦୁଝର ଆସିଥିଲେ । ଗୋବିନ୍ଦ ଭଞ୍ଜଙ୍କ ପିତା ତ୍ରିଲୋଚନ ଭଞ୍ଜଙ୍କର କେନ୍ଦୁଝରଗଡଠାରେ ଦେହାନ୍ତ ହେବାର ଖବର ପାଇ ଗୋବିନ୍ଦ ଭଞ୍ଜ ମା' ତାରିଣୀଙ୍କୁ ଶ୍ରୀକ୍ଷେତ୍ର ପୁରୀ ଧାମରୁ କେନ୍ଦୁଝର ଆସିବା ପାଇଁ ପ୍ରାର୍ଥନା କରିଥିଲେ । ମା' ତାରିଣୀ ଗୋବିନ୍ଦଙ୍କ ସହ କେନ୍ଦୁଝର ଆସିବାକୁ ସମ୍ମତି ପ୍ରକାଶ କରିଥିଲେ । ମାତ୍ର, ମା' ଗୋଟିଏ ସର୍ତ୍ତ ରଖିଲେ ଯେ, ସେ ଗୋବିନ୍ଦ ଭଞ୍ଜଙ୍କ ପଛେପଛେ ଯିବେ ଏବଂ ତାଙ୍କ ପାଦର ନୂପୁର ଶବ୍ଦ ଶୁଣିଶୁଣି ଗୋବିନ୍ଦ ଆଗେଆଗେ ଯିବେ । ଯେଉଁଠି ଗୋବିନ୍ଦ ବୁଲିକରି ପଛକୁ ଚାହିଁଦେବେ, ସେଠାରେ ହିଁ ମା' ଅଟକିଯିବେ ବୋଲି ମା' ତାରିଣୀ ଏହି କଡ଼ା ସର୍ତ୍ତ ରଖିଥିଲେ । ଏହି ସର୍ତ୍ତରେ ମା' ତାରିଣୀ ଗୋବିନ୍ଦ ଭଞ୍ଜଙ୍କ ସହ ଆସୁଥା'ନ୍ତି, ବାଟରେ ଘଟଗାଁର ଘଞ୍ଚ ଜଂଗଲର ଶୁଖିଲା ପତ୍ରର ମର୍ମର ଶବ୍ଦରେ ସେ ଆଉ ମା'ଙ୍କ ନୂପୁର ଶବ୍ଦ ଶୁଣିପାରିଲେ ନାହିଁ । କାଳେ ମା' ଆଉ ଆସୁନାହାନ୍ତି ଭାବେ ଗୋବିନ୍ଦ ଭଞ୍ଜ ଯେତେବେଳେ ବୁଲିକରି ପଛକୁ ଚାହିଁଦେଲେ ମା' ତାରିଣୀ ସେହି ଘନ ଅରଣ୍ୟ ମଧ୍ୟରେ ଶୂନ୍ୟବାଣୀ ଦେଲେ -ହେ ରାଜନ୍, ତୁମେ, ତୁମ ପ୍ରତିଶ୍ରୁତି ରକ୍ଷା କରିବାରେ ବିଫଳ ହୋଇଛ । ଏଣୁ ମୁଁ ଏହି ଘଟଗାଁର ଘଞ୍ଚ ଜଂଗଲରେ ଅବସ୍ଥାନ କରିବି ଏବଂ

ମୋର ପ୍ରତୀକ ଶିଳାକୁ ତୁମେ ଏଠାରେ ପୂଜା କରିବ । ବ୍ୟଥିତ ମନରେ ରାଜା ଏହି ବନ ମଧ୍ୟରେ ମା' ତାରିଣୀଙ୍କର ପୂଜାର ବ୍ୟବସ୍ଥା କରି କେନ୍ଦୁଝର ରାଜ ଉଆସକୁ ଫେରିଥିଲେ । ସେହି ଦିନଠାରୁ କାଂଚିର ମା' ତାରିଣୀ ଘଟଗାଁରେ ପୂଜା ପାଇଆସୁଛନ୍ତି ।

ଘଟଗାଁରେ ମା' ତାରିଣୀଙ୍କ ପ୍ରତିଷ୍ଠା ନେଇ ଭିନ୍ନଭିନ୍ନ ଗବେଷକଙ୍କ ଭିନ୍ନ ମତ ରହିଛି । ମା' ତାରିଣୀ ଜୈନ ପରଂପରା ସହ ଜଡ଼ିତ ଥିବା କଥା ଆଉ କିଛି ଗବେଷକ ମତବ୍ୟକ୍ତ କରନ୍ତି । ଜୈନ ସିଦ୍ଧ ସାଧକ ନାଗାର୍ଜୁନ ଓ ବୌଦ୍ଧ ସିଦ୍ଧ ସାଧିକା ଢେଙ୍କିପାଦ ଏଠାରେ ମା' ତାରିଣୀଙ୍କ ତନ୍ତ୍ର ପୂଜାର୍ଚ୍ଚନା କରି ସିଦ୍ଧିଲାଭ କରିଥିଲେ । ଏ ଅଞ୍ଚଳ ଅତୀତରେ ଏକ ବୌଦ୍ଧକ୍ଷେତ୍ର ଭାବେ ଖ୍ୟାତି ଅର୍ଜନ କରିଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ସମ୍ଭବତଃ, ପ୍ରାଚୀନ କାଳର ଏହି ତନ୍ତ୍ରପୂଜା ଲୋପ ପାଇଯାଇଥିଲା ଏବଂ ରାଜା ଗୋବିନ୍ଦ ଭଞ୍ଜଙ୍କ ସମୟରେ ଏହି ପୀଠର ପୁନର୍ବିକାଶ ଘଟିଥାଇପାରେ ବୋଲି ଅନୁମାନ କରାଯାଏ । ତେବେ ଗୋବିନ୍ଦ ଭଞ୍ଜଙ୍କ ପରଠାରୁ ମା' ତାରିଣୀଙ୍କୁ କେନ୍ଦୁଝରର ରାଷ୍ଟ୍ର ଦେବୀ ଭାବେ ଗ୍ରହଣ କରାଯାଇଛି । ଘଟଗାଁ ମା' ତାରିଣୀଙ୍କ ନିକଟରେ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ତାରିଣୀଙ୍କ ପୀଠରେ ବର୍ଷର ବିଭିନ୍ନ ସମୟରେ ଆଷାଢ଼ି, ରଜ ପର୍ବ, ପଣା ସଂକ୍ରାନ୍ତି, ଚୈତ୍ର ପରବ୍, ନୂଆଖିଆ, ମକର ସଂକ୍ରାନ୍ତି, ବିଷୁବ ସଂକ୍ରାନ୍ତି ଆଦି ପ୍ରମୁଖ ପର୍ବ ପାଳନ କରାଯାଇଥାଏ ।



ମା' ତାରିଣୀ ଯେଉଁ ଶାଳ ଗଛ ମୂଳେ ପୂଜା ପାଉଥିଲେ, ସେଠାରେ ଭକ୍ତମାନେ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନଲାଭ କରିପାରୁନଥିଲେ । ସେହି ଅଞ୍ଚଳ ବାଘ, ଭାଲୁ ଆଦି ହିଂସ୍ରଜନ୍ତୁଙ୍କ ଉପଦ୍ରୁତ ଅଞ୍ଚଳ ଥିଲା । ମାତ୍ର, ଏବେ ମା' ତାରିଣୀ ୨୧୫ ନମ୍ବର ଜାତୀୟ ରାଜପଥର ପାର୍ଶ୍ୱସ୍ଥ ଘଟକେଶ୍ୱର ଶିବ ମନ୍ଦିର ନିକଟରେ ବିଦ୍ୟମାନ ହୋଇ ଭକ୍ତମାନଙ୍କୁ ଦର୍ଶନ ଦେଉଛନ୍ତି । କେହିକେହି ମା' ତାରିଣୀଙ୍କୁ ଦୁଆରଶୁଣୀ ମଧ୍ୟ କହିଥାନ୍ତି । କିନ୍ତୁ କିଛି ଭକ୍ତମାନେ ପ୍ରଥମେ ଉଭାଶାଳରେ ଦର୍ଶନ କରିବା ପରେ ମୁଖ୍ୟପୀଠକୁ ଯାଇ ଦେବୀଙ୍କୁ ଦର୍ଶନ କରି ଭୋଗରାଗ କରୁଛନ୍ତି । ଏଠାକୁ ବର୍ଷରେ ଲକ୍ଷାଧିକ ଭକ୍ତ ଆସିଥାନ୍ତି । ସ୍ଥାନୀୟ ଲୋକଙ୍କ କହିବା ଅନୁଯାୟୀ, ବିଷୁବ ସଂକ୍ରାନ୍ତି ଦିନ ହିଁ ମାଆ ତାରିଣୀ ନିଜ ସ୍ୱରୂପ ପ୍ରଦର୍ଶନ କରିଥିଲେ ଏବଂ ସେହିଦିନଠାରୁ ମାଆ କେନ୍ଦୁଝରର ଏହି ଶାଳବଣ ମଧ୍ୟରେ ପୂଜା ପାଇ ଆସୁଛନ୍ତି । କରୁଣାମୟୀ ମାଆଙ୍କ ଆବିର୍ଭାବ, ଅବସ୍ଥାନ ଓ ସ୍ୱରୂପ ଦର୍ଶନ ପରେ ଏହି ସ୍ଥାନଟି ପବିତ୍ର ହୋଇଯାଇଛି । ଘଞ୍ଚ ଶାଳ ବଣର ମହତ୍ତ୍ୱ ବଢିଯାଇଛି । ଶାଳ ବଣର ଦେବୀଙ୍କ ଆସ୍ଥାନକୁ ସ୍ଥାନୀୟ ଲୋକମାନେ ତାରିଣୀ ଶାଳ କହିଥାନ୍ତି ।

ଶ୍ରୀକ୍ଷେତ୍ର ଓ ବିରଜା କ୍ଷେତ୍ରରେ ଯେପରି ସ୍ୱତନ୍ତ୍ର ପଞ୍ଜିକା ରହିଛି ଠିକ ସେହିପରି ମା'ତାରିଣୀଙ୍କ ବାର, ତିଥି, ବ୍ରତ, ଦିନ, ଓଷା, ମେଳା ଆଦିକୁ ନେଇ ବାର୍ଷିକ ସରଣୀ ପ୍ରସ୍ତୁତ ହୋଇଛି । ତାରିଣୀ ସଂସ୍କୃତିର ପ୍ରଭାବରେ ଏହି ଅଞ୍ଚଳର ପ୍ରତି ଗ୍ରାମରେ ମା'ତାରିଣୀ ଗ୍ରାମଦେବୀ ହୋଇ ରହିଛନ୍ତି ଓ ପ୍ରତି ଗ୍ରାମର ସାମାଜିକ, ଧାର୍ମିକ କାର୍ଯ୍ୟରେ ମା'ତାରିଣୀଙ୍କୁ ଅରାଧନା କରାଯାଇଥାଏ । ତେବେ ମା'ତାରିଣୀ କେବଳ ଗୋଟିଏ ଅଞ୍ଚଳ କି ଜିଲ୍ଲାରେ ସୀମିତ ହୋଇ ରହିନାହାନ୍ତି, ସେ ସମଗ୍ର ସଂସାରର ତ୍ରାଣକର୍ତ୍ତ୍ରୀ, ମମତାମୟୀ ମାଆ ପାଲଟି ଯାଇଛନ୍ତି ।

ନିକଟରେ କେନ୍ଦୁଝର ଜିଲ୍ଲା ପ୍ରଶାସନ ସହାୟତାରେ ମା' ତାରିଣୀ ମନ୍ଦିର ଟ୍ରଷ୍ଟର ଏକ 'ୱେବ୍ ସାଇଟ୍' *www.maatarini.nic.in* ପ୍ରସ୍ତୁତ କରାଯାଇଛି । ଏହି ସାଇଟ୍‌ରେ ମା' ତାରିଣୀଙ୍କ ମନ୍ଦିର ପ୍ରଶାସନ ଓ ମା'ଙ୍କ ରୀତିନୀତି, ପରମ୍ପରା ଓ ଅନ୍ୟାନ୍ୟ ବହୁ ତଥ୍ୟ ଉପଲବ୍ଧ ହୋଇପାରିବ । ଏହି ୱେବ୍ ସାଇଟ୍ ସହାୟତାରେ ସମଗ୍ର ବିଶ୍ୱରେ ଥିବା ଭକ୍ତମାନେ ମା' ତାରିଣୀଙ୍କ ସଂପର୍କରେ, ମନ୍ଦିରର ପୂଜା ନୀତି, କାର୍ଯ୍ୟନିର୍ଘଣ୍ଟ, ଦର୍ଶନ ସମୟ, ଦାନ ଦକ୍ଷିଣା, ମନ୍ଦିର ପ୍ରଶାସନ ଓ ପରିଚାଳନା, ଟ୍ରଷ୍ଟ ବୋର୍ଡର କାର୍ଯ୍ୟାବଳି, ଘଟଗାଁକୁ ଗମନାଗମନ ସେବା, ଯାତ୍ରୀ ନିବାସ ବୁକିଂ ସଂପର୍କିତ ତଥ୍ୟ ପାଇପାରିବେ ।

## କେନ୍ଦୁଝରର ପ୍ରସିଦ୍ଧ ଐତିହାସିକ ପୀଠ ସୀତାବିଞ୍ଜି, ରାବଣଛାୟାର ପ୍ରାଚୀନ ଚିତ୍ରାଙ୍କନ ଓ ଧ୍ୱଂସପ୍ରାପ୍ତ ବୌଦ୍ଧବିହାର

ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ସୀତାବିଞ୍ଜି ସମଗ୍ର ଦେଶର ଏକ ଗୁରୁତ୍ୱପୂର୍ଣ୍ଣ




ସ୍ଥାନ ଅଟେ । ଏଠାରେ ପ୍ରସ୍ତର ଯୁଗ(*stone age*)ର ନଗର ସଭ୍ୟତା ଗଢି ଉଠିଥିବାର ବହୁ ପ୍ରମାଣ ମିଳିଛି । ପରେ ଏହା ଏକ ବୌଦ୍ଧ କ୍ଷେତ୍ର ଭାବେ ପରିଚିତ ହୋଇପାରିଥିଲା । ପ୍ରାକୃତିକ ସୌନ୍ଦର୍ଯ୍ୟଭରା ବଣପାହାଡ ମଧ୍ୟରେ ଏହି ଐତିହାସିକ ପ୍ରତ୍ନତାତ୍ତ୍ୱିକ ସ୍ଥଳଟି ରାଜ୍ୟ ସରକାରଙ୍କ ଦ୍ୱାରା ଚିର ଅବହେଳିତ ହୋଇ ପଡି ରହିଛି । ଏହି ସୀତାବିଞ୍ଜି ପର୍ଯ୍ୟଟନସ୍ଥଳ ଘଟଗାଁ ବ୍ଲକ୍ ଅନ୍ତର୍ଗତ ମନୋହରପୁର ପଞ୍ଚାୟତର ତାଂଗୁଆପଣି ରାଜସ୍ୱ ଗ୍ରାମରେ ଅବସ୍ଥିତ । ୨୧୫ ନମ୍ବର ଜାତୀୟ ରାଜପଥର ଘଟଗାଁ-କେନ୍ଦୁଝର ମଧ୍ୟବର୍ତ୍ତୀ କଟରାବେଡା ଛକରୁ ସୀତାବିଞ୍ଜିର ଦୂରତା ମାତ୍ର ଛଅ କିଲୋମିଟର । ରେଳଯାତ୍ରୀମାନଙ୍କୁ ଏଠାକୁ ଆସିବା ପାଇଁ ସୀତାବିଞ୍ଜିଠାରେ ଏକ ରେଳ ଷ୍ଟେସନ୍ ରହିଛି । ହିନ୍ଦୁ ପୁରାଣ ମତରେ, ସୀତାବିଞ୍ଜି ହେଉଛି ତ୍ରେତୟା ଯୁଗର ଦେବୀ ସୀତାଙ୍କ ଏନ୍ଟୁତିଶାଳ । ଏଠାରେ ସୀତା ଲବ, କୁଶଙ୍କୁ ଜନ୍ମ ଦେଇଥିଲେ । ସୀତାଙ୍କ ଏହି ଏନ୍ଟୁତିଶାଳ ଏକ ବିଶାଳ ପର୍ବତ ଉପରେ ଅବସ୍ଥିତ । ଏହି ସୀତାବିଞ୍ଜି ପର୍ବତର ଉଚ୍ଚତା ୨୨୦୦ ଫୁଟ । ଏଠାରେ ୮୦ ଫୁଟ ଓ ୮୫ ଫୁଟ ଉଚ୍ଚତାର ଦୁଇଟି ଶୈଳଗୁମ୍ଫା ରହିଛି । କିମ୍ବଦନ୍ତୀ ଅନୁସାରେ ତ୍ରେତୟା ଯୁଗରେ ମାତା ସୀତା ଏଠାକାର ବାଲ୍ମିକ ଆଶ୍ରମରେ ରହି ଲବ-କୁଶଙ୍କୁ ଜନ୍ମ ଦେଇଥିଲେ । ଏଠାରେ ଲବ, କୁଶ ଓ ମାତା ସୀତାଙ୍କୁ ପୂଜା କରାଯିବା ସହ ବିଶାଳ ପ୍ରସ୍ତର ଗୁମ୍ଫାରେ ସୀତାଙ୍କ ଏନ୍ଟୁତିଶାଳ ଥିବା କଥା ସ୍ଥାନୀୟ ଅଧିବାସୀ ଦାବି କରନ୍ତି । ସୀତାଙ୍କ ଏନ୍ଟୁତିଶାଳରେ ଦେବୀ ସୀତାଙ୍କ ସମେତ

ଲବ, କୁଶ ପୂଜିତ ହୋଇଥାନ୍ତି । ଏଠାରେ ତିନୋଟି କଳାମୁଗୁନି ପଥର ରହିଛି । ବଡ଼ ପଥରଟି ଦେବୀ ସୀତା ଭାବେ ଏବଂ ସାନସାନ ଦୁଇଟି ପଥର ଲବ, କୁଶ ଭାବେ ପୂଜା ପାଇଥାନ୍ତି । ସୀତାବିଞ୍ଜି ପର୍ବତର ପାଦଦେଶରେ ପୁଣ୍ୟତୋୟା ସୀତାନଦୀ ବହିଯାଇ ଶେଷରେ ବୈତରଣୀ ନଦୀରେ ମିଳିତ ହୋଇଛି । ସୀତାବିଞ୍ଜିକୁ ନେଇ ଅନେକ କିମ୍ବଦନ୍ତୀ ଓ ଲୋକକଥା ରହିଛି । ଲୋକକଥା ଅନସାରେ, ସୀତାବିଞ୍ଜି ଦସ୍ୟୁ ରତ୍ନାକରର ଆଖ୍ଡାସ୍ଥଳି ଥିଲା । ଦସ୍ୟୁ ରତ୍ନାକର ପରବର୍ତ୍ତୀ ପର୍ଯ୍ୟାୟରେ ଏଠାରେ ହିଁ ମହର୍ଷି ବାଲ୍ମିକ ଭାବେ ପ୍ରସିଦ୍ଧି ଅର୍ଜନ କରିବା ସାଙ୍ଗକୁ ଆଶ୍ରମ ପ୍ରତିଷ୍ଠା କରିଥିଲେ । ତ୍ରେତୟା ଯୁଗର ପ୍ରଭୁ ରାମଚନ୍ଦ୍ରଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ ଦେବୀ ସୀତାଙ୍କୁ ଏହି ବାଲ୍ମୀକ ଆଶ୍ରମରେ ଛାଡିଦେଇ ଯାଇଥିଲେ । ଦେବୀ ସୀତା ଏହିଠାରେ ହିଁ ଲବ, କୁଶଙ୍କୁ ଜନ୍ମ ଦେଇଥିଲେ । ଏହାର ସ୍ମାରକ ସ୍ୱରୂପ ସୀତାବିଞ୍ଜି ପର୍ବତରେ ଲବ, କୁଶ ନାମରେ ଦୁଇଟି ଛୋଟଛୋଟ ଶିଳା ଏବଂ ମାତା ସୀତାଙ୍କ ନାମରେ ଗୋଟିଏ ବଡ଼ ଶିଳା ପୂଜା ପାଉଛି । ଏଠାକୁ ବନ୍ଧ୍ୟା ନାରୀ ଆସି ଏହି ଲବ, କୁଶ ନାମକ ପଥର ଦୁଇଖଣ୍ଡକୁ ଛାତିରେ ଧରି ଦେବୀ ସୀତାଙ୍କ ଶିଳା ଚତୁର୍ପାର୍ଶ୍ୱରେ ପରିକ୍ରମା କଲେ ତାହାର ବନ୍ଧ୍ୟା ଦୋଷ କଟିଯାଏ ଏବଂ ସେ ପୁତ୍ରକନ୍ୟା ଲାଭ କରିଥାଏ ବୋଲି ଲୋକବିଶ୍ୱାସ ରହିଛି ।

## ସୀତାବିଞ୍ଜିକୁ ନେଇ କିଛି କିମ୍ବଦନ୍ତୀ ଓ ଲୋକବିଶ୍ୱାସ

ସୀତାବିଞ୍ଜି ଦସ୍ୟୁ ରତ୍ନାକରର ଆଖ୍ଡାସ୍ଥଳୀ ଥିବାର ପ୍ରମାଣସ୍ୱରୂପ ସୀତାବିଞ୍ଜି ପର୍ବତର ଅଳ୍ପ ଦୂରରେ **'ଖଣ୍ଟଘର'** ନାମରେ ଏକ ଗାଁ ଏବେବି ରହିଛି । ଏହି ଖଣ୍ଟଘର ଗ୍ରାମ ନିକଟରେ ପ୍ରାୟ ଏକ କିଲୋମିଟର ପରିଧି ବିଶିଷ୍ଟ ଗୋଟିଏ ଗୋଲାକାର ପଥର ଉପର ଦେଇ ଚାଲିଚାଲି ଗଲାବେଳେ ପଥର ଭିତରେ ଏକ ସୁଡ଼ଙ୍ଗ ଥିବା ପରି ମନେହୋଇଥାଏ । ଏହି ପଥର ସୁଡ଼ଙ୍ଗ ଭିତରକୁ ଯିବା ପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ଅଛି ଏବଂ ସେହି ଦ୍ୱାରଦେଶରେ ଖିଲାଣଲଗା ପଥର କବାଟ ଲାଗିଛି ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି ସୁଡ଼ଙ୍ଗଟି ଦସ୍ୟୁ ରତ୍ନାକରର ଘର ଥିଲା ଏବଂ ରତ୍ନାକର ଏଠାରେ ଚୋରି ଜିନିଷ ଓ ଅଳଂକାର ସାଇତି ରଖିଥିବା କଥା ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ ।

ସୀତାବିଞ୍ଜି ପାହାଡର କିଛି ଦୂରରେ ଏକ ଛୋଟ ମୁଣ୍ଡିଆ ପାହାଡ ରହିଛି ଯାହାକୁ **'ଡ଼କେଇତ ହୁଡି'** କହନ୍ତି । ଏହି ହୁଡିରେ ଥିବା ଗୁମ୍ଫା ମଧ୍ୟରେ ଏକ ଦେବୀଙ୍କ ମୂର୍ତ୍ତି ରହିଛି । ଏହି ସ୍ଥାନଟି ଦସ୍ୟୁ ରତ୍ନାକରର ଆଖଡାଘର ଥିଲା ଏବଂ ଏଠାରେ ଦସ୍ୟୁ ରତ୍ନାକର ଦେବୀଙ୍କୁ ପୂଜା କରୁଥିଲା ବୋଲି ସ୍ଥାନୀୟ ଅଞ୍ଚଳରେ ଲୋକବିଶ୍ୱାସ ରହିଛି ।

ସୀତାବିଞ୍ଜି ନିକଟରେ ଥିବା ପିଠାଗୋଳା ଗାଁ (ହରିଚନ୍ଦନପୁର)ରେ ଚନ୍ଦନଗିରି ନାମରେ ଏକ ପର୍ବତ ରହିଛି । ଏହାର ଉଚ୍ଚତା ଏକ ହଜାର ଫୁଟ । ଏହି ପର୍ବତ ଉପରେ **'ପାଟହରା'** ନାମରେ




ଏକ ଗୁମ୍ଫା ଅଛି । ଗୁମ୍ଫା ମଧ୍ୟକୁ ପ୍ରବେଶ ପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ରହିଛି । ଏହି ଗୁମ୍ଫା ମଧ୍ୟରେ ବିଭିନ୍ନ ପ୍ରକାର ମୂଲ୍ୟବାନ ରତ୍ନପଥର ଓ ଧନସଂପଦ ରହିଥିବାର ଲୋକବିଶ୍ୱାସ ରହିଛି । ଦସ୍ୟୁ ରତ୍ନାକର ବହୁ ମୂଲ୍ୟବାନ ରତ୍ନପଥର ଚୋରିକରି ଆଣି ଏହି ପାଟହରା ଗୁମ୍ଫାରେ ଗଚ୍ଛିତ ରଖିଥିବା କଥା ଲୋକେ କହନ୍ତି । ଏହି ଚନ୍ଦନଗିରି ପର୍ବତରୁ କେନ୍ଦୁଝରର ଅନ୍ୟତମ ଚିରସ୍ରୋତା ନଦୀ ମୂଷଳ ପ୍ରବାହିତ ହୋଇ ବୈତରଣୀରେ ମିଶିଛି ।

ସୀତାବିଞ୍ଜି ପର୍ବତର ଉତ୍ତର ଦିଗରେ ପିପିଳିଆ ଗ୍ରାମଠାରେ ଠାକୁରାଣୀ ନାମରେ ଏକ ପର୍ବତ ରହିଛି । ଏହି ପର୍ବତର ଶୀର୍ଷ ଦେଶରେ ଏକ ବିରାଟ ଗୋଲାକାର ଏବଂ ଚନ୍ଦନପେଡି ସଦୃଶ ପଥର ଖଣ୍ଡ ରହିଛି । ସ୍ଥାନୀୟ ଲୋକେ ଏହାକୁ **'ଚନ୍ଦନପେଡି'** କହିଥାନ୍ତି । ଏଠାରୁ ବିଭିନ୍ନ ରଂଗର ବର୍ତ୍ତୁଳାକାର ପଥରଖଣ୍ଡ ସଂଗ୍ରହ କରି ସ୍ଥାନୀୟ ଅଞ୍ଚଳର ଲୋକେ ମୂଲ୍ୟବାନ୍ ମାଳି ପ୍ରସ୍ତୁତ କରିଥାନ୍ତି । ଏହି ପର୍ବତରୁ ସ୍ୱର୍ଣ୍ଣ ରେଣୁ ଝରୁଥିବାର ପ୍ରବାଦ ରହିଛି । ଏହି ପଥର ମାଳିଗୁଡିକ ସ୍ୱର୍ଣ୍ଣରେଣୁ ଆକୃତିର ହୋଇଥିବାରୁ ଏହି ପର୍ବତକୁ **'ସ୍ୱର୍ଣ୍ଣଝରା'** ବୋଲି କୁହାଯାଇଥାଏ । ସୀତାବିଞ୍ଜିରେ ବ୍ୟବହୃତ ହୋଇଥିବା ପଥର ମାଳିଗୁଡିକ ଏଠାରୁ ସଂଗୃହୀତ ହୋଇଥିବା ବିଶ୍ୱାସ କରାଯାଏ ।

ସୀତାବିଞ୍ଜି ପର୍ବତର ଅଳ୍ପ ଦୂରରେ ଏକ ପର୍ବତ ରହିଛି ଯାହାର ନାମ **'ବୁଢିପାଟ'** । ଏଠାରେ ଥିବା ଗୁମ୍ଫା ରୁ ନିକଟସ୍ଥ ଡାଂଗୁଆପଶି ଗ୍ରାମର ଧନେଶ୍ୱର ନାମକ ଜଣେ ଗଣ୍ଡଲୋକ ଏକ ବିଶାଳ ଲୌହ ଖଣ୍ଡ ପ୍ରାପ୍ତ ହୋଇଥିଲେ । ସବୁଠୁ ବଡ଼ କଥା ହେଉଛି, ଏହି ଖଣ୍ଡରେ ଆଜି ପର୍ଯ୍ୟନ୍ତ

କଳଙ୍କି ଲାଗିନାହିଁ । ଦସ୍ୟୁ ରତ୍ନାକର ଏହି ତରବାରୀ ବ୍ୟବହାର କରୁଥିଲା ବୋଲି ସ୍ଥାନୀୟ ଲୋକେ କହନ୍ତି ।

ସୀତାବିଞ୍ଜି ପର୍ବତର ପୂର୍ବ ଭାଗରେ ରହିଛି ଆଉ ଏକ ପାହାଡ ଯାହାର ନାଁ **'ଜଇରାଷଣ୍ଢ'** ପାହାଡ । ଏହାର ଉଚ୍ଚତା ଏକ ହଜାର ଫୁଟ । ଏଠାରେ ଥିବା ଗୁମ୍ଫା ମଧ୍ୟରେ ଏକ ଚିତ୍ରିତ ଡ଼ମ୍ବରୁ ଚିହ୍ନ ଦେଖିବାକୁ ମିଳିଥାଏ । ଜଇରାଷଣ୍ଢ ଗୁମ୍ଫାରେ ଥିବା ପଥର ଉପରେ ଅନେକ ଶିଳାଭିଲେଖ ଦେଖାଯାଏ । ଏଠାରେ ରାତିରେ ଗୁମ୍ଫାର ଦ୍ୱାର ଦେଶରେ ହମ୍ବା ହମ୍ବା ରଡି ଶୁଭେ । ଏହି ପାହାଡଟି ଏକ ମସ୍ତକଶୂନ୍ୟ ଷଣ୍ଢର ଆକାର ଭଳି ଦିଶିଥାଏ । କଥିତ ଅଛି ଏହି ଷଣ୍ଢର ମସ୍ତକକୁ ଛେଦନ


ଭରତ ବାଟୁଳି



କରି କୌଣସି ଋଷି ତାକୁ ଗୋନାସିକା ପର୍ବତ ଉପରେ ଫିଙ୍ଗି ଦେଇଥିଲେ । ସେହିଦିନଠୁ ଗୋନାସିକା ପର୍ବତରେ ଏହି ଷଣ୍ଢଟିର ମୁଣ୍ଡ ରହିଥିବାବେଳେ ଏଠାରେ ଶରୀର ରହିଛି ବୋଲି ଲୋକ କଥା ରହିଛି ।

ସୀତାବିଞ୍ଜିର ପଶ୍ଚିମରେ ଗୋନାସିକା ପର୍ବତର ପାଦଦେଶରେ ରହିଛି ଏକ ପାହାଡ ଯାହାର ନାମ **'ଚନ୍ଦ୍ରମଣ୍ଡଳ ଗିରି'** । ବ୍ରହ୍ମେଶ୍ୱର ମହାଦେବଙ୍କ ମସ୍ତକରୁ ଚନ୍ଦ୍ରକାନ୍ତମଣି ସଦୃଶ ବୈତରଣୀ ନଦୀ ଉପତ୍ତିଲାଭ କରିଥିବାରୁ ଏହି ପର୍ବତର ନାମ ଚନ୍ଦ୍ରମଣ୍ଡଳ ଗିରି ହୋଇଛି ବୋଲି ଲୋକବିଶ୍ୱାସ ରହିଛି । ପ୍ରବାଦ ଅଛି, ଏହି ପର୍ବତରୁ ଚନ୍ଦ୍ରକାନ୍ତମଣି ପଥର ମିଳିଥାଏ । ସନ୍ଧ୍ୟା ସମୟରେ ଏହି


ଲବ, କୁଶ ଓ ମାତା ସୀତା

ଚନ୍ଦ୍ରମଣ୍ଡଳ ଗିରିର ଶୀର୍ଷଦେଶ ଏକ ଧଳା ରଙ୍ଗର ଆଲୋକରେ ଉଦ୍‌ଭାସିତ ହୋଇ ସମଗ୍ର ଅଞ୍ଚଳ ଉଜ୍ଜ୍ୱଳ ଦିଶିଥାଏ ।

ସୀତାବିଞ୍ଜିର ଯୋଡାଗଡଠାରେ **'ଫୁଲବାଡି'** ନାମରେ ଏକ ସ୍ଥାନ ରହିଛି । ପୂର୍ବେ ଏହା ମହର୍ଷି ବାଲ୍ମିକଙ୍କ ତପୋବନରେ ଏକ ସୁନ୍ଦର ପୁଷ୍ପ ଉଦ୍ୟାନ ଥିବା କଥା ଲୋକବିଶ୍ୱାସ ରହିଛି । ଏଠାରେ **'ଷଣ୍ଢବଳଦ'** ନାମରେ ଏକ ପାହାଡ ରହିଛି ଯେଉଁଠୁ **'କାଲିଂଜର'** ନଦୀ ପ୍ରବାହିତ ହୋଇଛି । ଥରେ ମହିର୍ଷିଙ୍କ ଫୁଲ ବାଡରେ ଗୋଟିଏ ଷଣ୍ଢ ପଶି ସମସ୍ତ ଫୁଲକୁ ନଷ୍ଟ କରିଦେବାରୁ ମହର୍ଷି କ୍ରୋଧିତ ହୋଇ ପଡିଥିଲେ । ବାଲ୍ମିକଙ୍କ କ୍ରୋଧାଗ୍ନିରେ ଷଣ୍ଢର ମୁଣ୍ଡଟି ଛିଣ୍ଡିଯାଇ ଗୋନାସିକାରେ ପଡିଲା ଏବଂ ତହିଁରୁ ବୈତରଣୀ ନଦୀର ଉତ୍ପତ୍ତି ହୋଇଛି । ଏହାପରେ ଏହି ପର୍ବତର ନାମ ଗୋନାସିକା ହୋଇଛି ବୋଲି ଲୋକବିଶ୍ୱାସ ରହିଛି । ଏହି ଷଣ୍ଢର ଶରୀର ଫୁଲବାଡିଠାରେ ପଡିରହି ତହିଁରୁ କାଲିଂଜର ନଦୀର ଉତ୍ପତ୍ତି ହୋଇଛି ।

ସୀତାଠାକୁରାଣୀଙ୍କ ଏନ୍ତୁଡିଶାଳର ଦକ୍ଷିଣ-ପୂର୍ବରେ ଭଣ୍ଡାରଘର ପର୍ଯ୍ୟନ୍ତ ପ୍ରାୟ ତିନି କିଲୋମିଟର ବ୍ୟାପୀ ଏକ ଭଗ୍ନ ପ୍ରାଚୀର ରହିଛି । ଏହାକୁ **'ଯୋଡା ପ୍ରାଚୀର'** କୁହାଯାଏ । ଏହି ଯୋଡା ପ୍ରାଚୀର କାନ୍ଥଦ୍ୱୟ ମଧ୍ୟରେ ଜଣେ ଦୁଇଜଣ ଲୋକ ଯିବା ଭଳି ଏକ ସୁଡ଼ଙ୍ଗପଥ ରହିଛି । ଏଠାରେ ଏକ ପ୍ରାଚୀନ ଗଡ଼ ଥିବାର ବିଶ୍ୱାସ କରାଯାଏ । ଏହା ହେଉଛି **'ଯୋଡାଗଡ଼'** । ଏହି ଯୋଡାଗଡ ମଧ୍ୟରୁ ସ୍ଥାନୀୟ ଲୋକେ ବିଭିନ୍ନ ପ୍ରକାର ପଥର ମାଳି ସଂଗ୍ରହ କରିଥାନ୍ତି । ସବୁଠୁ ବଡ଼କଥା ହେଉଛି, ସୀତାବିଞ୍ଜି ନିକଟରୁ ପ୍ରାଚୀନ କାଳର ବହୁ ବୃହତ୍ ଆକାରର ଭଗ୍ନ ଇଟାମାନ ମିଳିଛି । ଇଟାର ଏହି

ଭଗ୍ନସ୍ତୂପକୁ ଲକ୍ଷ୍ୟ କଲେ ଏଠାରେ ଏକ ପ୍ରାଚୀନ ଗଡ କିମ୍ବା ଦୁର୍ଗ ଥିବାର ଅନୁମାନ କରିହୁଏ । ଏହା ସାଙ୍ଗକୁ ଏଠାରୁ ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର, ଲୌହ, ତାମ୍ର ନିର୍ମିତ ଅନେକ ଧ୍ୱଂସାବଶେଷ ମିଳିଛି ।

ସୀତାବିଞ୍ଜି ପାହାଡର ଅନତି ଦୂରରେ ଏକ ବିରାଟ ପ୍ରସ୍ତର ଖଣ୍ଡ ରହିଛି ଯାହାକୁ ଦେବୀ ସୀତାଙ୍କ '**ଭଣ୍ଡାର ଘର**' ବୋଲି କୁହାଯାଉଛି । କୁହାଯାଉଛି, ବାଲ୍ମିକ ଆଶ୍ରମର ସମସ୍ତ ଧନରତ୍ନ ଏହି ଭଣ୍ଡାର ଘରେ ଗଚ୍ଛିତ ରହିଛି । ଏହି ଭଣ୍ଡାରଘରଟି ଏତେ ବିଶାଳ ଯେ, ଆଖି ପାଏନା ।


ବାଲ୍ମିକ ଆଶ୍ରମରେ ଥିବା ଲବ, କୁଶଙ୍କ ଏନ୍ଟୁତିଶାଳ

ଭଣ୍ଡାରଘରର ଦୁଇ ପାର୍ଶ୍ୱରେ ଦୁଇଟି ପ୍ରସ୍ତର ଖଣ୍ଡ ଦୁଇଟି କବାଟ ସଦୃଶ ଏହାକୁ ଢାଙ୍କି ରହିଛି । ଦେବୀ ସୀତାଙ୍କ ଏହି ଭଣ୍ଡାର ଘରର ଏହି ଦୁଇଟି ପ୍ରସ୍ତର କବାଟକୁ ଯାଉଁଳି କବାଟ ବୋଲି କୁହାଯାଏ । ଏହି କବାଟ ଦୁଇଟିର ଉଚ୍ଚତା ୬୫ ଫୁଟ ହେବ ।

ଭଣ୍ଡାର ଘର ନିକଟରେ ଥିବା ଭଗ୍ନସ୍ତୂପକୁ ବାଲ୍ମିକ ଆଶ୍ରମର ରନ୍ଧାଘର ବୋଲି କୁହାଯାଏ । ଏହି '**ରାନ୍ଧୁଣୀଖନ୍ଦା**'ରୁ ପ୍ରାଚୀନ ଯୁଗର ବହୁ ମୃତ୍ତିକା ପାତ୍ର, ଭୋଜନ ପାତ୍ର ଓ ବାସନକୁସନ ମିଳିଛି ।

ସୀତାବିଞ୍ଜି ନିକଟରେ '**ଋଷି ଗୁମ୍ଫା**' ନାମରେ ଏକ ବୃହତ୍ ପଥର ସ୍ତୂପ ରହିଛି । ଚାରି ପାଞ୍ଚ ଖଣ୍ଡ ବିଶାଳ ଗୋଲାକୃତି ପଥରର ସମାହାରରେ ଏହି ଗୁମ୍ଫା ସୃଷ୍ଟି ହୋଇଛି । ଏହି ଗୁମ୍ଫାରେ

ବିଶ୍ରାମ ନେଲେ ସମସ୍ତ ପ୍ରକାର ରିଷ୍ଟ ଖଣ୍ଡନ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏହାର ନିକଟରେ ଇଟାରେ ନିର୍ମିତ ପ୍ରାଚୀନ ଗଡର ଏକ ଭଗ୍ନସ୍ତୂପ ରହିଛି । ଏହି ଇଟାର ବିଶେଷତ୍ୱ ହେଉଛି, ମାଟି ସହିତ ଧାନ ଚଷୁର ମିଶ୍ରଣରେ ପ୍ରସ୍ତୁତ ହେବା ପରେ ପୋଡାଯାଇଛି । ଏହି ସ୍ତୂପ ନିକଟରେ ଅନେକ ଶିଳାଲିପି ଏଣେତେଣେ ପଡି ରହିଛି । ତେବେ ସରକାରଙ୍କ ପକ୍ଷରୁ ତାହାକୁ ଏକ ତାରବାଡ ଘେରେଇ ସୁରକ୍ଷିତ ରଖାଯାଇଛି । ତେବେ ଏହି ଲିପି ସଂପର୍କରେ ଅଧିକ ଜାଣିବା ପାଇଁ ସରକାରଙ୍କ ପକ୍ଷରୁ ସେମିତି କିଛି ପଦକ୍ଷପ ଗ୍ରହଣ କରାଯାଇପାରିନି ।

ସୀତାବିଞ୍ଜିର ଅଳ୍ପ ଦୂରରେ ଅବସ୍ଥିତ ଏକ ସ୍ଥାନକୁ ଘୋଡାବନ୍ଧା କୁହାଯାଏ । ଏଠାରେ ଲବ, କୁଶ ପ୍ରଭୁ ଶ୍ରୀରାମଙ୍କ ଯଜ୍ଞାଶ୍ୱ ବାନ୍ଧି ରଖିଥିବାର ଲୋକବିଶ୍ୱାସ ରହିଛି । ଲବ, କୁଶ ଯେଉଁଠାରେ ଘୋଡାର ମୁହଁରୁ ତୁଣ୍ଡି ଖୋଲି ଦେଇଥିଲେ ସେହି ସ୍ଥାନର ନାମ '**ତୁଣ୍ଡିବେଡା**' ବା 'ଚଣ୍ଡୀବେଡା' ହୋଇଛି । ଏହି ତୁଣ୍ଡିବେଡା ଗ୍ରାମରେ ସୀତାନଦୀ କୂଳରେ 'ଦିଗଧରା' ନାମରେ ଏକ ସ୍ଥାନ ରହିଛି । ପ୍ରବାଦ ଅଛି, ଶ୍ରୀରାମଙ୍କ ଯଜ୍ଞ ଅଶ୍ୱକୁ ମୁକୁଳେଇବା ପାଇଁ ଶତ୍ରୁଘ୍ନ ଓ ଲବ, କୁଶଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା ଏବଂ ଶତ୍ରୁଘ୍ନ ପରାସ୍ତ ହୋଇଥିଲେ । ସୀତାବିଞ୍ଜି ବାଲ୍ମୀକ ଆଶ୍ରମ ନିକଟରେ ଏକ ପାହାଡର ଶୀର୍ଷରେ ଏକ ବର୍ତ୍ତୁଳାକାର ପଥର ଆଶ୍ଚର୍ଯ୍ୟଜନକ ଭାବେ ସଂଯୋଗ ହୋଇ ରହିଛି । ଏହି ବର୍ତ୍ତୁଳାକାର ପଥରକୁ '**ଭରତ ବାଟୁଳି**' କୁହାଯାଏ । ହନୁମାନ ଅଯୋଧ୍ୟାର ଆକାଶରେ ଉଡିଉଡି ଯାଉଥିବାବେଳେ ଏହି ପଥର ଗୁଳି*(pellet)*କୁ ଭରତ ତାଙ୍କ ବାଟୁଳିଖଡାରୁ ନିକ୍ଷେପ କରିଥିଲେ ବୋଲି ଲୋକ ମୁହଁରୁ ଶୁଣିବାକୁ ମିଳେ ।


ସୀତାବିଞ୍ଜିର ଶିଳାଲିପି

## ରାବଣଛାୟା ଓ ଏଠାରେ ଥିବା ପ୍ରାଚୀନ ଚିତ୍ରାଙ୍କନ, ଶିଳାଲେଖ

*"In the cave-shelter Ravanachhaya, a small inscription is found below the fresco-paintings which reads as Maharaja Sri Disabhanja. This inscription as well as the paintings have been attributed to 5th century A.D. Maharaja Sri Disabhanja, like Maharaja Satruhanja of Asanapat inscription, may be attributed to the Naga dynasty"*

*(Orissa District Gazetteers, Kendujhar (1986, P-41, P-42, Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)*



ରାବଣଛାୟାର ଚିତ୍ରାଙ୍କନ

ସୀତାବିଞ୍ଜି ନିକଟରେ ରହିଛି ପ୍ରସିଦ୍ଧ ରାବଣଛାୟା ପ୍ରାକୃତିକ ଆଶ୍ରୟସ୍ଥଳୀ । ଏହି ଆଶ୍ରୟସ୍ଥଳୀର ଛାତର ନିମ୍ନ ଭାଗରେ ଏକ ବିଶେଷ ଧରଣର ଚିତ୍ରାଙ୍କନ ରହିଛି । ଏହି ଚିତ୍ରାଙ୍କନ ହିଁ ସୀତାବିଞ୍ଜିର ଅନ୍ୟତମ ଆକର୍ଷଣ । ଏହି ଚିତ୍ରାଙ୍କନ କେତେ ପ୍ରାଚୀନ ତାହା ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ତେବେ ଏହି ଚିତ୍ରାଙ୍କନ ପଞ୍ଚମ ଶତାବ୍ଦୀରେ ଏଠାରେ ଶାସନ କରୁଥିବା ନାଗ ବଂଶୀୟ ଭଞ୍ଜ ରାଜା ମହାରାଜା ଦିଶାଭଞ୍ଜଙ୍କ ସମୟର ବୋଲି କୁହାଯାଉଛି । ଗୋଟିଏ ବିଶାଳକାୟ ପ୍ରସ୍ତରଖଣ୍ଡର ୨୨ ଫୁଟ ଉପରେ ଅନ୍ୟ ଏକ ପଥର ରହି ଏକ ଆଶ୍ରୟସ୍ଥଳୀ ସଦୃଶ କୋଠରୀଟିଏ ସୃଷ୍ଟି ହୋଇଛି । ଏହାକୁ କେହି ମଣିଷ ନିର୍ମାଣ କରିନାହାନ୍ତି. ପ୍ରାକୃତିକ ଉପାୟରେ

ଏହା ସୃଷ୍ଟି ହୋଇଛି । ଏହି ଆଶ୍ରୟସ୍ଥଳୀର ଛାତର ନିମ୍ନଭାଗରେ ଏକ ରାଜକୀୟ ଯୁଦ୍ଧ ବିଜୟଯାତ୍ରାର ଚିତ୍ରାଙ୍କନ ରହିଛି । ଏହି ଚିତ୍ରରେ ମୁଖ୍ୟତଃ ମାଟିଆ, ଗେରୁଆ, ଧଳା, ଲାଲ୍ ଓ ହଳଦି ରଙ୍ଗ ବ୍ୟବହୃତ ହୋଇଛି । ଚିତ୍ରଟିରେ ଜଣେ ରାଜା ହସ୍ତୀ ଉପରେ ବସି ହାତରେ ଅସ୍ତ୍ରଶସ୍ତ୍ର ଧରି ଯାତ୍ରା କରୁଥିବାର ଦର୍ଶାଯାଇଛି । ହୁଏତ ଏହା ରାଜାଙ୍କର ଯୁଦ୍ଧରେ ବିଜୟୀ ହେବା ପରର ଦୃଶ୍ୟ କିମ୍ବା ଯୁଦ୍ଧ କ୍ଷେତ୍ରକୁ ଯାତ୍ରା କରିବା ବେଳର ମୁହୂର୍ତ୍ତ । ଏହା ସହିତ ରାଜାଙ୍କର ପଛପଟକୁ ଜଣେ ଅନୁଚର ହାତରେ ଚାମର ଓ ଛତ୍ର ଧରିଥିବାର ଚିତ୍ର ରହିଛି । ହାତୀ ସମ୍ମୁଖରେ ଜଣେ ଅଶ୍ୱାରୋହୀ ଓ କିଛି ପଦାତିକବାହିନୀ ମଧ୍ୟ ଅଛନ୍ତି । ଏହି ଚିତ୍ରରେ ଜଣେ ନାରୀ ସ୍ୱଳ୍ପ ବସ୍ତ୍ର ପରିଧାନ କରିଥିବାର ଦୃଶ୍ୟ ମଧ୍ୟ ଦେଖିବାକୁ ମିଳିଥାଏ । ହସ୍ତୀ ଚିତ୍ରର ଠିକ୍ ତଳେ ଏକ କ୍ଷୁଦ୍ର ଅଭିଲେଖ ଦେଖାଯାଏ ଏବଂ ଏହି ଅଭିଲେଖଟି 'ଚାଣକ ଦିଶାଭଞ୍ଜ' ବୋଲି ପାଠ କରାଯାଇଛି । ଏହି ଅଭିଲେଖଟିରେ ଦିଶାଭଞ୍ଜଙ୍କର ନାମ ଉଲ୍ଲେଖ ରହିଥିବାରୁ ଭଞ୍ଜବଂଶୀ ରାଜା ଦିଶାଭଞ୍ଜ ଚିତ୍ରାଙ୍କନଟି କରାଇଥାଇ ପାରନ୍ତି ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି । ଆଉ କିଛି ଗବେଷକ ଏହାକୁ ଖଣ୍ଡନ କରିବା ସହିତ ଏହି ଚିତ୍ରାଙ୍କନ ଦିଶାଭଞ୍ଜଙ୍କଠାରୁ ଆହୁରି ପ୍ରାଚୀନ ବୋଲି ମତବ୍ୟକ୍ତ କରିଛନ୍ତି ।

ସୀତାବିଞ୍ଜିରେ ଥିବା ଚିତ୍ରାଙ୍କନର ପ୍ରାଚୀନତା ନେଇ ଭିନ୍ନ ମତ ରହିଛି । ଟି.ଏନ୍. ରାମଚନ୍ଦ୍ରନ୍ ତାଙ୍କ ଲିଖିତ ***'Tempera painting in Sitabinjhi, District Keonjhar, Orissa'*** ଶିରୋନାମା ପ୍ରବନ୍ଧ ନିୟୁୟର୍କ ବିଶ୍ୱବିଦ୍ୟାଳୟର ***institute of fine arts***ର ଏକ ପତ୍ରିକାରେ



ସୀତାବିଞ୍ଜିର ଶିଳାଲିପି



ପ୍ରକାଶ କରି ସୀତାବିଞ୍ଜିର ଚିତ୍ରକଳାକୁ *Tempera painting* ବୋଲି ବର୍ଣ୍ଣନା କରିଛନ୍ତି । ସେହିଭଳି ଗବେଷକ ଅର୍ଜୁନ ଯୋଶୀ ମଧ୍ୟ ଏହି ଚିତ୍ରାଙ୍କନକୁ *Tempera painting* ବୋଲି ବର୍ଣ୍ଣନା କରିଛନ୍ତି । କାନ୍ଥ ବା ଛାତରେ ଜିଙ୍କ୍ ଅକ୍ସାଇଡ୍ ଲେପ ଦେଇ ଏହା ଉପରେ ଅଣ୍ଡା ଘୋଳରେ ଗୋଳାଯାଇଥିବା ରଙ୍ଗ ଦ୍ୱାରା ଚିତ୍ରାଙ୍କନକୁ *Tempera painting* କୁହାଯାଏ । ଏହି ଚିତ୍ରାଙ୍କନ ପଦ୍ଧତି ନବମ ଶତାବ୍ଦୀ ବେଳକୁ ୟୁରୋପରେ ପ୍ରଚଳିତ ହେଉଥିଲା । ମାତ୍ର ଗବେଷକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହାକୁ *'Fresco painting'* ବୋଲି କହିଛନ୍ତି । *'Fresco painting'* ବା ପାଣି ରଙ୍ଗ ଚିତ୍ରାଙ୍କନ ଶୈଳୀ ଭିନ୍ନ ଅଟେ । ଚୂନ ଲିପା କାନ୍ଥ ବା ଛାତ ଦେହରେ ପାଣିରେ ରଙ୍ଗ ଗୋଳେଇ ତୂଳୀରେ ଏହି ଚିତ୍ରାଙ୍କନ କରାଯାଏ । ଚୂନ ପାଣିକୁ ଶୀଘ୍ର ଶୋଷି ନେଇ ଚିତ୍ରକୁ ଶୁଖାଇ ଦିଏ । ପଞ୍ଚଦଶ ଓ ଷୋଡଶ ଶତାବ୍ଦୀରେ କେତେକ ଇଟାଲୀୟ ଚିତ୍ରାଙ୍କନକୁ ଫ୍ରେସ୍କୋ ପେଣ୍ଟିଂ ବା ପାଣି ରଙ୍ଗଚିତ୍ର କୁହାଯାଇଛି । ଗବେଷକ ଇନାମ୍ ଅନ୍‌ସାରୀ ସୀତାବିଞ୍ଜି ସମ୍ପର୍କରେ ଏକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ସେ ଟି.ଏନ୍. ରାମଚନ୍ଦ୍ରନ୍‌ଙ୍କ ଲିଖିତ *'Tempera painting'* ଏବଂ ଗବେଷକ ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ *'Fresco painting'* ବା ପାଣି ରଙ୍ଗଚିତ୍ରାଙ୍କନକୁ ଖଣ୍ଡନ କରିଛନ୍ତି । ଏହି ଦୁଇଟି ଶୈଳୀର ଚିତ୍ରାଙ୍କନକୁ ଅନ୍‌ସାରୀ ଅଗ୍ରାହ୍ୟ କରିବା ସହ ସୀତାବିଞ୍ଜିଠାରେ ଥିବା ଏହି ଚିତ୍ରାଙ୍କନକୁ *'Mural painting'* ବା କାନ୍ଥଚିତ୍ର ବୋଲି ବର୍ଣ୍ଣନା କରିଛନ୍ତି ।

## ସୀତାବିଞ୍ଜିର ଶିଳାଭିଲେଖ

*"There are as many as 14 votive inscriptions inscribed on boulders strewn in an area of Sitabinji where once existed a temple of lord Siva. The inscriptions are written in southern variety of Brahmi scripts belonging to 5th century A.D. Out of those 14 inscriptions 5 refer to a Saivacharya...*

*... Saivacharya named Sasidharapada came on pilgrimage to Sitabinji from Gangavadi, modern Karnataka"*

*(Orissa District Gazetteers, Kendujhar (1986, P-42) -Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)*

ସୀତାବିଞ୍ଜିର ଅନତିଦୂରରେ ଥିବା ରଷିଗୁମ୍ଫା ଠାରେ ୧୪ ଖଣ୍ଡ କୃଷ୍ଣବର୍ଣ୍ଣ ଅକର୍ମ ଶିଳା ଦେହରେ ୧୪ଟି ଲିପି ରହିଛି । ଏସବୁ ଲିପି ମହାଦେବ ଶିବଙ୍କ ସ୍ତୁତି ଉଦ୍ଦେଶ୍ୟରେ ଲିଖିତ ହୋଇଥିବା କୁହାଯାଉଛି । ଏଠାରେ ଖୋଦିତ ହୋଇଥିବା ଲିପିଗୁଡିକର ଆକାରପ୍ରକାର ଦକ୍ଷିଣ ଭାରତୀୟ ବ୍ରାହ୍ମି ଲିପିର ଆକାର ଭଳି ଅଟେ ବୋଲି କିଛି ଗବେଷକ ମତପ୍ରକାଶ କରିଛନ୍ତି । ଗଂଗାବାଡି ଅନୁଶାସନ (ଆଧୁନିକ କର୍ଣ୍ଣାଟକ)ର ନାୟକ ଶୈବାଚାର୍ଯ୍ୟ (ଶଶୀଧରପାଦ ନାମରେ ପରିଚିତ) ଉତ୍ତ ଦେଶ ମଧ୍ୟ ଦେଇ କୋଶଳ ରାଜ୍ୟକୁ ଗଲାବେଳେ ସୀତାବିଞ୍ଜିଠାରେ ତାଙ୍କର ଅଭିଯାନର ବିଜୟ ସ୍ମୃତି ରକ୍ଷା ପାଇଁ ଏ ପ୍ରକାର ପଥର ଖଣ୍ଡ ଦେହରେ ଲିପି ଓ ଚିତ୍ରାଙ୍କନ କରିଯାଇଛନ୍ତି । ପରିବ୍ରାଜକ ବ୍ୟତୀତ ଅନ୍ୟ କେହି ଏଠାରେ ପଥର ଦେହରେ ଏଭଳି ଲିପି ଖୋଦନ କରିବା ଏକପ୍ରକାର ଅସମ୍ଭବ ବୋଲି କିଛି ଗବେଷକ ଯୁକ୍ତି ବାଢନ୍ତି । ଅପରପକ୍ଷେ, ଏହି ପଥରଖଣ୍ଡଗୁଡିକ ଯଦି କୌଣସି ଭଗ୍ନ ଗୃହ ବା ପ୍ରାଚୀରର ଅଂଶବିଶେଷ ହୋଇଥା'ନ୍ତା, ତେବେ ତାହା ମସୃଣ ହୋଇଥାନ୍ତା । ଏହିସବୁ ପଥରଖଣ୍ଡ ସେଭଳି ହୋଇ ନଥିବାରୁ ଓ ଲିପିର ଆକାର ଦକ୍ଷିଣ ଭାରତୀୟ ଲିପି ସଦୃଶ ହୋଇଥିବାରୁ ଏବଂ କଳିଙ୍ଗରୁ କୋଶଳକୁ ଯିବା ରାସ୍ତାରେ ଏହା ଅବସ୍ଥିତ ଥିବାରୁ ଏହା ଦକ୍ଷିଣଭାରତୀୟ ପରିବ୍ରାଜକଙ୍କ ଦ୍ୱାରା ଲିଖିତ ହୋଇଥାଇପାରେ ବୋଲି ଅନୁମାନ କରାଯାଉଛି । ମାତ୍ର, ଆଉ କିଛି ଗବେଷକ ଏହି ଲିପିକୁ ଏଠାରେ ବସବାସ କରୁଥିବା ସ୍ଥାନୀୟ ଆଦିବାସୀଙ୍କ ଲିପି ବୋଲି ଦାବି କରନ୍ତି ।

## ଧ୍ୱଂସପ୍ରାପ୍ତ ପ୍ରାଚୀନ ବୌଦ୍ଧବିହାର

ସୀତାବିଞ୍ଜିଠାରେ ରହିଛି ଏକ ଚତୁର୍ମୁଖୀ ଶିବଲିଙ୍ଗ, ପ୍ରାଚୀନ ପ୍ରସ୍ତର ଯୁଗର ହସ୍ତୀମୂର୍ତ୍ତି ଏବଂ ଭଗ୍ନ ବୌଦ୍ଧବିହାର । ଏଠାରେ ଥିବା ଇଟାର ପ୍ରାଚୀନ ଧ୍ୱଂସ ସ୍ତୂପକୁ ଦେଖିଲେ ମନେହୁଏ ଏଠାରେ ଦିନେ ଏକ ବୌଦ୍ଧବିହାର ଥିଲା । ହଜାର ହଜାର ବର୍ଷ ତଳର ଇଟାଗଦା ଓ ଶିଳାଲିପିକୁ ଦେଖିଲେ ଏହା ଏକ ଭଗ୍ନ ବୌଦ୍ଧବିହାରର ସୂଚନା ଦେଇଥାଏ । ବୌଦ୍ଧ ଯୁଗରେ ଏଠାରେ ଏକ ବୃହତ୍ ଶିକ୍ଷାନୁଷ୍ଠାନ ଥିଲା ବୋଲି ଅନୁମାନ କରାଯାଏ । ଏଠାରେ ନାଳନ୍ଦା, ତକ୍ଷଶିଳା ଭଳି ବିଶ୍ୱସ୍ତରର ବୌଦ୍ଧ ବିଶ୍ୱବିଦ୍ୟାଳୟ ଥିବାର ଐତିହାସିକମାନେ ଦାବି କରନ୍ତି । ଏହି ଧ୍ୱଂସ ଇଟାସ୍ତୂପ ନିକଟରେ କୃଷ୍ଣବର୍ଣ୍ଣ ଅକର୍ମ ଶିଳା ଦେହରେ ଲିଖିତ ହୋଇଥିବା ଲିପିଗୁଡିକର ଆକାରପ୍ରକାର ଦକ୍ଷିଣ ଭାରତୀୟ ଲିପିର

ଆକାର ବୋଲି କିଛି ଗବେଷକ ମତବ୍ୟକ୍ତ କରିଛନ୍ତି । ଆଉ କିଛି ଗବେଷକ ଏଠାରେ ବସବାସ କରୁଥିବା ପ୍ରାଚୀନ ଆଦିବାସୀଙ୍କର ଲିପି ଭାବେ ବର୍ଣ୍ଣନା କରିଛନ୍ତି । ତେବେ ଏହି ଲିପିକୁ ନେଇ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଅପରପକ୍ଷେ, ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ ଏବଂ ବୌଦ୍ଧମାନଙ୍କ ଉପରେ ହୋଇଥିବା ଧାର୍ମିକ ଆକ୍ରମଣ କାରଣରୁ ଏହି ବୌଦ୍ଧବିହାରଟି ଧ୍ୱଂସ ପାଇ ଯାଇଛି ବୋଲି ଐତିହାସିକମାନେ ମତ ପ୍ରକାଶ କରନ୍ତି । ଆଜିକୁ ହଜାର ହଜାର ବର୍ଷ ତଳର ବୌଦ୍ଧସ୍ତୂପ, ବୌଦ୍ଧ ସଂଘ, ବିହାର ଓ ଶିକ୍ଷା, ସଂସ୍କୃତି ସଂର୍ପକରେ ମିଳିଥିବା ଅନେକ ସ୍ମାରକୀ ଏଠାକାର ପ୍ରାଚୀନ ବୌଦ୍ଧ ପରଂପରା ସଂପର୍କରେ ବହୁତ ତଥ୍ୟ ପ୍ରଦାନ କରେ । ଏଠାରେ ଥିବା ଧ୍ୱଂସାବଶେଷ ଭିତରେ ବୌଦ୍ଧକଳା, ସଂସ୍କୃତି ଓ ଧର୍ମ ସଂପର୍କରେ ଲୁକ୍କାୟିତ ତଥ୍ୟର ଉନ୍ମୋଚନ ହୋଇଛି । ଏଠାରେ ଥିବା ବୌଦ୍ଧ ଉପାସନା ଗୃହ, ବୌଦ୍ଧବିହାର, ବୌଦ୍ଧ ସନ୍ନ୍ୟାସୀଙ୍କ ତପସ୍ୟାସ୍ଥଳ ଏବେ ଧ୍ୱଂସର କବର ତଳେ ପୋତି ହୋଇପଡିଛି । ଏହା ଉପରେ ଅଧିକ ଗବେଷଣା ଜାରି ରହିଲେ ଏଠାରେ ଦିନେ ନାଳନ୍ଦା, ତକ୍ଷଶିଳା ଭଳି ଦେଶର ଏକ ବୃହତ୍ ବୌଦ୍ଧ ବିହାର ଥିବାର ପ୍ରମାଣ ମିଳିପାରନ୍ତା । ଦୁର୍ଭାଗ୍ୟର ବିଷୟ, ଏହି ଐତିହାସିକ ସ୍ଥଳଟି ବେଶ୍ ଅବହେଳିତ ଅବସ୍ଥାରେ ପଡିରହିଛି । କେବଳ ନାମକୁ ମାତ୍ର ପ୍ରତ୍ନତତ୍ତ୍ୱ ବିଭାଗ ଏକ ଚେତାବନୀ ଫଳକ ଟାଂଗିଦେଇ ବସିଯାଇଛି । ମାତ୍ର ଏହାର ରକ୍ଷଣାବେକ୍ଷଣ ଓ ଉପଯୁକ୍ତ ଯତ୍ନ ପ୍ରତି କେହି ଧ୍ୟାନ ଦେଉନାହାନ୍ତି । ସୂଚନାଯୋଗ୍ୟ, ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଏଠାରେ ଏକ ଫଳକ ଲଗାଯାଇଛି, ଯେଉଁଥିରେ 'ଏହା ଏକ ପ୍ରତ୍ନତାତ୍ତ୍ୱିକ ସ୍ଥଳ ଏବଂ ଏହାର ସୁରକ୍ଷା ସମସ୍ତଙ୍କ ଦାୟିତ୍ୱ' ବୋଲି ଲେଖାଯାଇଛି । ଏହି ପ୍ରାଚୀନ ସ୍ଥଳର ସୌନ୍ଦର୍ଯ୍ୟହାନି କିମ୍ବା କ୍ଷୟକ୍ଷତି କଲେ ୩ ମାସ ଜେଲ୍ କିମ୍ବା ୫,୦୦୦ ଟଙ୍କା ଜୋରିମାନା ଦେବାକୁ ପଡିବ ବୋଲି ଫଳକରେ ଲେଖାଯାଇଛି । ମାତ୍ର, ଏହି ଐତିହାସିକ ସ୍ଥଳର କୌଣସି ଗୁରୁତ୍ୱ ସଂପର୍କରେ ଫଳକରେ ଧାଡିଏ ହେଲେ ବି ଲେଖାଯାଇନାହିଁ । କେଉଁ ମୁହୂର୍ତ୍ତରେ ଏଠାରେ ଥିବା ଶିଳାଲିପି ଓ ପ୍ରାଚୀନମୂର୍ତ୍ତିସବୁକୁ କିଏ ଚୋରି କରି ନେଇଯିବ ତାହା ମଧ୍ୟ କହିହେବନି ।

## ରଜପର୍ବ ଅବସରରେ ସୀତାବିଞ୍ଜିରେ 'ବିହାର ଯାତ୍ରା'

ସପ୍ତମ-ଅଷ୍ଟମ ଶତାବ୍ଦୀର ଐତିହାସିକ ସ୍ମାରକୀ ସୀତାବିଞ୍ଜିରେ ପ୍ରତିବର୍ଷ ପାରଂପାରିକ ଲୋକମେଳା ବା 'ବିହାର ଯାତ୍ରା' ଅନୁଷ୍ଠିତ ହୋଇଥାଏ । ପ୍ରତିବର୍ଷ ରଜ ପର୍ବ ଅବସରରେ ଏହି ପ୍ରସିଦ୍ଧ ମେଳା ଆୟୋଜିତ ହୋଇଥାଏ । ଏହି ମେଳା ପହିଲି ରଜଠାରୁ ଆରମ୍ଭ ହୋଇ ତିନିଦିନ ଧରି ଚାଲେ । ଜ୍ୟେଷ୍ଠ ଶେଷ ଓ ଆଷାଢ ଆରମ୍ଭରେ ସ୍ଥାନୀୟ ଅଧିବସୀଙ୍କ ଦ୍ୱାରା ଆୟୋଜିତ ହେଉଥିବା ଏହି ଲୋକମେଳାରେ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ଲକ୍ଷାଧିକ ଲୋକେ ଏକତ୍ରିତ ହୋଇଥାନ୍ତି । ଏହି ଅବସରରେ ଏଠାରେ ଏକ ବିରାଟ ମେଳା ବସେ । ଅପେରା ଓ ମୀନାବଜାର ସାଙ୍ଗକୁ

ବଜାରରୁ ଲୋକେ କିଣାବିକା କରିଥାନ୍ତି । ପହିଲି ବର୍ଷା ମାଟିରେ ପଡିବା ପରେ ସେବର୍ଷ ଭଲ ଚାଷ ହେବା ଉଦ୍ଦେଶ୍ୟରେ ସ୍ଥାନୀୟ ଅଞ୍ଚଳର ଆଦିବାସୀ ସଂପ୍ରଦାୟର ଲୋକେ ଏଠାକୁ ଆସିଥାନ୍ତି । ଏହା ସହିତ ପରିବାରରେ ଶାନ୍ତି ବିରାଜମାନ ପାଇଁ ଓ ସନ୍ତାନସନ୍ତତି ଲାଭ ଆଶାରେ ଏଠାକୁ ବହୁ ଭକ୍ତ ଛୁଟି ଆସିଥାନ୍ତି । ପୁତ୍ର, କନ୍ୟା ସନ୍ତାନ ଲାଭ ଆଶାରେ ଭକ୍ତମାନେ ଏଠାକୁ ଆସି ଦେବୀ ସୀତାଙ୍କ ନିକଟରେ ଗୁହାରି କରନ୍ତି । ଏଠାକାର ଲୋକେ ଏହି ଅଞ୍ଚଳର ପାହାଡ, ପର୍ବତ ଓ ପଥରକୁ ଦେବଦେବୀ ଭାବେ ମାନିଥାନ୍ତି । ସୀତାନଦୀ କୂଳରେ ଥିବା ଦେବୀ ସୀତାଙ୍କ ଏନ୍ତୁଡିଶାଳ ସୀତାବିଞ୍ଜିକୁ ରଜ ସଂକ୍ରାନ୍ତିରେ ଲକ୍ଷାଧିକ ଭକ୍ତଙ୍କ ସୁଅ ଛୁଟିଥାଏ । ଅପରପକ୍ଷେ, ଏହି ସ୍ଥାନଟି ଐତିହାସିକ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ ସ୍ଥଳ । ଏଠାରେ ବୌଦ୍ଧ ଯୁଗର ବହୁ ସ୍ମାରକୀ ସହ ଶିଳାଲେଖ, ପ୍ରାଚୀନ ଚିତ୍ରକଳା ମଧ୍ୟ ରହିଁଛି । ଏଠାରେ ଏକ ବୌଦ୍ଧବିହାର ଥିଲା ବୋଲି ବହୁ ଗବେଷକ ଦାବି କରନ୍ତି । କାରଣ ସୀତାବିଞ୍ଜି ନକିଟରେ ଏକ ଧ୍ୱଂସସ୍ତୂପ ରହିଛି ଯାହା ଦିନେ ବୌଦ୍ଧବିହାର ଥିଲା ବୋଲି ଗବେଷକମାନେ ଦାବି କରନ୍ତି । ଗୋଟିଏ ପଟେ ବୌଦ୍ଧ କଳାକୀର୍ତ୍ତି, ଅନ୍ୟପଟେ ହିନ୍ଦୁ ଧର୍ମକୁ ନାନା ବିଶ୍ୱାସ । ସୀତାବିଞ୍ଜି ହେଉଛି ବୌଦ୍ଧ ଓ ହିନ୍ଦୁ (ବୈଷ୍ଣବ, ଶୈବ) ଧର୍ମର ଏକ ମିଳନ ସ୍ଥଳ । ଏଠାରେ ରହିଛି ଦଶମ ଶତାବ୍ଦୀର ବ୍ରାହ୍ମଣ୍ୟ ଧର୍ମର ବାଲ୍ମିକୀ ଆଶ୍ରମ, ମାତା ସୀତାଙ୍କ ପ୍ରସ୍ତର କୁଟୀର, ଭରତ ବାଟୁଳି, ରାବଣ ମସ୍ତକ, ଜରାସନ୍ଧ ପାହାଡ ଆଦି ଅନେକ ସ୍ମାରକୀ । ଏହାବ୍ୟତୀତ ଏଠାରେ ରହିଛି ବୌଦ୍ଧ ଧର୍ମର ସଂକେତ ଏକ ପ୍ରସ୍ତର ହସ୍ତୀ, ବୌଦ୍ଧ ତଥା ଗାନ୍ଧାର କଳାର ଏକ ଚତୁର୍ମୁଖୀ ଶିବ(ବୁଦ୍ଧ!)ଙ୍କ ମୂର୍ତ୍ତି ଓ ପଥର ଲିପି । ଏହାସହିତ ଏଠାରେ ଯେଉଁ ବୌଦ୍ଧ ବିହାର ରହିଥିଲା ସେଠାକୁ ବିଭିନ୍ନ ଅଞ୍ଚଳରୁ ପଣ୍ଡିତ, ଛାତ୍ର ଆସୁଥିଲେ ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହା ଏକ ବୌଦ୍ଧ ଶିକ୍ଷାକେନ୍ଦ୍ର ଥିଲା ବୋଲି ଐତିହାସିକମାନେ କହନ୍ତି । ଏଠାରେ ଏକ ବୌଦ୍ଧ ବିହାର ଥିବାରୁ ଏଠାରେ ପାଳିତ ହେଉଥିବା ରଜ ପର୍ବକୁ ଗବେଷକମାନେ 'ବିହାର ଯାତ୍ରା' ବୋଲି କହୁଛନ୍ତି ।

## ଅସନପାଟ ଶିଳାଲେଖ ଓ ଏହାର ଐତିହାସିକ ଗୁରୁତ୍ୱ

ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଗୁରୁତ୍ୱପୂର୍ଣ୍ଣ ଅବଶେଷ *(remains)* କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ବିଶେଷକରି କେନ୍ଦୁଝର ଜିଲ୍ଲାର 'ବୈତରଣୀ ନଦୀ ଉପତ୍ୟକା' ଅଞ୍ଚଳରୁ ପ୍ରସ୍ତର ଯୁଗର ବହୁ ଅଂଶବିଶେଷ ମିଳିଛି । କେନ୍ଦୁଝର ଜିଲ୍ଲାର ଚଂପୁଆ ଉପଖଣ୍ଡର ଚଂପୁଆ, ରାମଲା, ସରେଇ, ଅସନପାଟ, ଜଗନ୍ନାଥପୁର, ପାଟଣା, ସୀତାବିଞ୍ଜି ଆଦି ଅଞ୍ଚଳରୁ ପ୍ରସ୍ତର ଯୁଗର ବହୁ ଅଂଶବିଶେଷ ମିଳିଛି । ଏଥିମଧ୍ୟରୁ ଅସନପାଟ ଅଞ୍ଚଳରୁ ନୂତନ ପ୍ରସ୍ତର ଯୁଗର 'ନଗର ସଭ୍ୟତା'ର ବହୁ ଅଂଶବିଶେଷ ମିଳିବା ଘଟଣା ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ସର୍ବାଧିକ ଗୁରୁତ୍ୱ ବହନ କରିଥାଏ । ଅସନପାଟ ଗ୍ରାମରୁ ପଥର ନିର୍ମିତ ଖର୍ପର (ରାଂପିବା ଉପକରଣ),



ରାଜ୍ୟ ସଂଗ୍ରହାଳୟରେ ଥିବା ଅସନପାଟ ନଟରାଜ ମୂର୍ତ୍ତି ଓ ଶିଳାଭିଲେଖ

ମାଟି ଖୋଳା ଉପକରଣ, ମୁନିଆ ଅସ୍ତ୍ର, ବଟା ଶିଳ, ଚକ, ପଥର ନିର୍ମିତ ଶାବଳ ଭଳି ପୁରାତନ ଓ ନୂତନ ପ୍ରସ୍ତର ଯୁଗରେ ଆଦିମ ଅଧିବାସୀମାନେ ବ୍ୟବହାର କରୁଥିବା କୃଷି ଓ ଶିକାର ଉପକରଣ ମିଳିଛି । ଅସନପାଟରୁ ମିଳିଥିବା ଏହିସବୁ ପ୍ରସ୍ତର ଯୁଗର ଅବଶେଷ *(remains)* ଏ ଅଞ୍ଚଳରେ ପ୍ରସ୍ତର ଯୁଗର ମାନବ ସଭ୍ୟତା ସଂପର୍କରେ ବହୁ ତଥ୍ୟ ପ୍ରଦାନ କରିଥାଏ । ଅସନପାଟ ଗ୍ରାମଟି ଅତି ପ୍ରାଚୀନ ବୋଲି ବିବେଚନା କରାଯାଇଥାଏ । ଅପରପକ୍ଷେ, ଏହି ଗ୍ରାମରେ ଅଦ୍ୟାବଧି 'ବାଥୁଡି' ସଂପ୍ରଦାୟର ଆଦିମ ଅଧିବାସୀମାନେ ବସବାସ କରିଆସୁଛନ୍ତି । ଏଣୁ ଆଦିବାସୀବହୁଳ ଏହି ଗ୍ରାମଟିର ପ୍ରାଚୀନତା ସଂପର୍କରେ ଅନେକ ଚିନ୍ତା କରିବାର ସୁଯୋଗ ମିଳିଥାଏ ।

କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଝୁଂପୁରା ବ୍ଲକ୍‌ର ଅସନପାଟ ଗ୍ରାମଟି ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ଐତିହାସିକ ଗୁରୁତ୍ୱ ବହନ କରୁଥିବା ଏକ ପ୍ରମୁଖ ସ୍ଥାନ ଅଟେ । ଏହା କେବଳ କେନ୍ଦୁଝର ଜିଲ୍ଲା କାହିଁକି ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ସ୍ଥାନର ମାନ୍ୟତା ଲାଭ କରିଛି । ଏଠାରୁ ମିଳିଥିବା ଉଭୟ ପୁରାତନ ଓ ନୂତନ ପ୍ରସ୍ତର ଯୁଗ *(old stone age & new stone age)*ର ବହୁ ଅସ୍ତ୍ରଶସ୍ତ୍ର, କୃଷି ଉପକରଣ ଓ ଅନ୍ୟାନ୍ୟ ବ୍ୟବହାର ସାମଗ୍ରୀକୁ ଲକ୍ଷ୍ୟ କଲେ ଏହି ସ୍ଥାନରେ ପ୍ରସ୍ତର ଯୁଗ *(stone age)* ର ମଣିଷଙ୍କ ସଂପର୍କରେ ବହୁ କଥା ଜାଣିବାକୁ ମିଳେ । ଏହା ବ୍ୟତୀତ ଏଠାରୁ ମିଳିଥିବା ଅଷ୍ଟଭୁଜା ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଲେଖ ମଧ୍ୟ ଏଠାକାର ପ୍ରାଚୀନତା ସଂପର୍କରେ

ବହୁ ପ୍ରମାଣ ଉପସ୍ଥାପନ କରିଥାଏ । ଅସନପାଟରୁ ଉଦ୍ଧାର କରାଯାଇଥିବା ଅଷ୍ଟଭୁଜା ନଟରାଜ ମୂର୍ତ୍ତି ଓ ପ୍ରାଚୀନ ଶିଳାଲେଖ ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ରହିଛି । ଏହାବ୍ୟତୀତ ପୃଥିବୀର ସର୍ବପ୍ରାଚୀନ ଏକ ବିଶାଳ ପ୍ରସ୍ତରଖଣ୍ଡ ଅସନପାଟରେ ରହିଛି । ୧୦୦ ବର୍ଗକିଲୋମିଟର କ୍ଷେତ୍ରଫଳ ବିଶିଷ୍ଟ ଏହି ପ୍ରସ୍ତରଖଣ୍ଡଟି ପୃଥିବୀର ସବୁଠୁ ପ୍ରାଚୀନତମ ଶିଳା ବୋଲି ବିଚାର କରାଯାଉଛି । ଏହି ଶିଳା ୩୮,୦୦୦ ନିୟୁତ ବର୍ଷର ପୁରୁଣା ବୋଲି କୁହାଯାଉଛି । *"Kendujhar has the distinction of containing one of the oldest rocks of the world covering an area of 100 sq. km. at Asanpat. The rock is 38,000 million years old. It must have been there before peninsular India broke away from Antarctica and moved north."*
*(Orissa District Gazetteers, Kendujhar (1986, P-1), Nilamani*


ଅସନପାଟରୁ **ଉଦ୍ଧାର କରାଯାଇଥିବା ପ୍ରସ୍ତର ଯୁଗର ଅବଶେଷ**

*Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)*

ପୁରାତନ ପ୍ରସ୍ତର ଯୁଗର ବହୁ ପୂର୍ବରୁ ଏହି ଅସନପାଟ ଅଞ୍ଚଳଟି ପ୍ରାଚୀନ ଜାହୋର ରାଜ୍ୟର ଏକ ଐତିହାସିକ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର ଥିଲା । କୁଶାଣମାନେ ତତ୍କାଳୀନ କେନ୍ଦୁଝରକୁ ତିନୋଟି ଅଣୁ ଅଂଶରେ ବିଭକ୍ତ କରିଥିଲେ । ତନ୍ମଧ୍ୟରୁ ଚଂପୁଆ ଅଣୁ ଅଞ୍ଚଳ ବା ଅଣୁପାଟ ପରବର୍ତ୍ତୀ କାଳରେ ଲୋକ ଭାଷାରେ ପରିବର୍ତ୍ତିତ ହୋଇ ଅସନପାଟ ନାମରେ ନାମିତ ହୋଇଛି ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି । ଅଦ୍ୟାବଧି ଅସନପାଟ ପ୍ରାଚୀନ ସଂସ୍କୃତି ଓ ଐତିହାସିକ କୀର୍ତ୍ତିରାଜିର ଭଣ୍ଡାର ଭାବେ ସର୍ବଜନବିଦିତ । ଅସନପାଟ ଶିଳାଲେଖ ଓ ନଟରାଜ ମୂର୍ତ୍ତି ଐତିହାସିକ ଦୃଷ୍ଟିରୁ ବହୁ ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି । ଏହି ନଟରାଜ ମୂର୍ତ୍ତିରେ ଶିବଙ୍କର ନୃତ୍ୟରତ ଦୃଶ୍ୟ ଏବଂ ତଳେ

ଶିବଙ୍କୁ ପ୍ରାର୍ଥନା କରୁଥିବା ଜଣେ ରାଜାଙ୍କ ବିଗ୍ରହ ଖୋଦିତ ହୋଇଥିବା ଜଣାଯାଏ । ଏହା ତଳକୁ ୧୩ ଧାଡିର ପ୍ରାଚୀନ ଶିଳାଲିପି ମଧ୍ୟ ଖୋଦିତ ହୋଇଛି । ଖ୍ରୀ:ଅ ପଞ୍ଚମ ଶତାବ୍ଦୀ ବେଳକୁ ଗୁପ୍ତ ଯୁଗର ନରପତିଙ୍କ ଦ୍ୱାରା ଏହି ଶିଳାଲିପି ଖୋଦିତ ହୋଇଥିବାର ଜଣାଯାଏ । *"The Asanpat inscriription paleographically belongs to the Gupta period and may be ascribed to about 5th century A.D. The donor Maharaja Satrubhanja, son of Maharaja Manabhanja, was of Naga lineage born of Mahadevi Damayanti. Maharaja Satrubhanja was the ruler of the territory known as Vindhyatavi..."*

*(Orissa District Gazetteers, Kendujhar (1986, P-41, P-42, Nilamani Senapati, I.C.S, Nrusinha Ch. Behuria, I.A.S, Durga Ch. Kuanr)*

ଏଠାରେ ବିନ୍ଧ୍ୟାଟବୀ ନାମରେ ଏକ ବିଶାଳ ରାଜ୍ୟ ଥିବା କଥା ଏହି ଲିପିରୁ ଜଣାଯାଏ । ବିନ୍ଧ୍ୟର ପୂର୍ବ ଭାଗରେ ଯେଉଁ ଅଞ୍ଚଳଟି ନାଗ ବଂଶୀୟ ରାଜାମାନଙ୍କର ଅଧିକାରଭୁକ୍ତ ହୋଇଥିଲା ତାହା ବିନ୍ଧ୍ୟାଟବୀ ନାମ ବହନ କରିଥିବା କଥା ଐତିହାସିକ ସତ୍ୟ ନାରାୟଣ ରାଜଗୁରୁ ମତବ୍ୟକ୍ତ



ଅସନପାଟ ମା ପାଟ ବାସୁଳୀ ମନ୍ଦିର

କରନ୍ତି । ବିନ୍ଧ୍ୟାଟବୀରେ ଭଞ୍ଜ ଉପାଧିଧାରୀ ନାଗବଂଶୀୟ ରାଜାମାନେ ଚତୁର୍ଥ-ପଞ୍ଚମ ଖ୍ରୀ:ଅରେ ରାଜତ୍ୱ କରୁଥିଲେ । ଅସନପାଟ ଶିଳାଲିପିରୁ ପ୍ରାଚୀନ ବିନ୍ଧ୍ୟାଟବୀ ବା ଆଧୁନିକ କେନ୍ଦୁଝରର ଶାସନ ସଂପର୍କରେ ବହୁ ସୂଚନା ମିଳିଥାଏ । ଏହି ଶିଳାଲିପି ବ୍ୟତୀତ ବାମନଘାଟି ଶିଳାଲିପି, ଖଣ୍ଡଦେଉଳି ଶିଳାଲିପି, ସୀତାବିଞ୍ଜି ଶିଳାଲିପି ମଧ୍ୟ କେନ୍ଦୁଝରର ପ୍ରାଚୀନତା ସଂପର୍କରେ ଅନେକ ସୂଚନା ପ୍ରଦାନ କରିଥାଏ । ଏହିସବୁ ଶିଳାଲିପିରୁ ଜଣାଯାଏ, କେନ୍ଦୁଝର ଓ ମୟୂରଭଞ୍ଜ ଉଭୟ ଗଡ଼ରାଜ୍ୟ ପଞ୍ଚମ ଓ ଷଷ୍ଠ ଶତାବ୍ଦୀ ବେଳକୁ ବିନ୍ଧ୍ୟାଟବୀର ଅନ୍ତର୍ଭୁକ୍ତ ଥିଲା । ଅସନପାଟରୁ ଏବେଏବେ ବହୁ ପ୍ରାଚୀନ କଳାକୀର୍ତ୍ତି ଉଦ୍ଧାର କରାଯିବା ସହିତ ପୁରାତନ ଓ ନୂତନ ପ୍ରସ୍ତର ଯୁଗର ପଥର ନିର୍ମିତ ବହୁ ପ୍ରକାର ଅସ୍ତ୍ରଶସ୍ତ୍ର, ଶିକାର ସରଂଜାମ, କୃଷି ଉପକରଣ ଉଦ୍ଧାର କରାଯାଇଛି । ଗ୍ରାମରୁ ମିଳିଥିବା ପ୍ରସ୍ତର ଯୁଗର ପଥର ନିର୍ମିତ କୃଷି ଉପକରଣ, ଅସ୍ତ୍ରଶସ୍ତ୍ର ଏବେ ମଧ୍ୟ ଗ୍ରାମରେ ଗଚ୍ଛିତ ରହିଛି । ଆଉ କିଛି ଅବଶେଷ କାଳର କରାଳ ଗର୍ଭରେ ଲୀନ ହୋଇଗଲାଣି । ଏଠାରୁ ଅନେକ ତମ୍ବା ମୁଦ୍ରା ଓ ମୂର୍ତ୍ତି ମଧ୍ୟ ଉଦ୍ଧାର ହୋଇଛି । ଅସନପାଟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଖଗେଶ୍ୱର ନାଏକଙ୍କ ନିକଟରେ ପ୍ରାଚୀନ ଓ ନୂତନ ପ୍ରସ୍ତର ଯୁଗର ପଥର ନିର୍ମିତ କିଛି ଅସ୍ତ୍ରଶସ୍ତ୍ର ଓ କୃଷି ଉପକରଣଗୁଡିକ ରହିଛି । ତେବେ ଏହା ଉପରେ ଅଧିକ ଗବେଷଣାର ଆବଶ୍ୟକତା ରହିଥିବାବେଳେ ପ୍ରତ୍ନତତ୍ତ୍ୱ ବିଭାଗ ଏଥିପ୍ରତି ନିରବଦ୍ରଷ୍ଟା ସାଜିଛି । ଅସନପାଟ ପ୍ରତି ପ୍ରତ୍ନତତ୍ତ୍ୱ ବିଭାଗ ବିଶେଷ ଦୃଷ୍ଟି ଦେଇପାରିଲେ ଇତିହାସର ବହୁ ଗୁରୁତ୍ୱପୂର୍ଣ୍ଣ ସତ୍ୟର ଉନ୍ମୋଚନ ହୋଇପାରନ୍ତା । ରାଜ୍ୟର ଏଭଳି ଏକ ଐତିହାସିକ ଗୁରୁତ୍ୱ ବହନ କରୁଥିବା ଅଞ୍ଚଳ ପ୍ରତି ପ୍ରତ୍ନତତ୍ତ୍ୱ ବିଭାଗର ଅବହେଳା ଦୁର୍ଭାଗ୍ୟଜନକ ବୋଲି ସ୍ଥାନୀୟ ଅଞ୍ଚଳରେ ଅସନ୍ତୋଷ ପ୍ରକାଶ ପାଇଛି । ଏହି ଗ୍ରାମରୁ ମିଳିଥିବା ଏକ ପଥର ନିର୍ମିତ ମୁନିଆ ମାଟିଖୋଳା ଉପକରଣଟିକୁ ଲକ୍ଷ୍ୟ କଲେ ଏହା ନୂତନ ପ୍ରସ୍ତର ଯୁଗର ବୋଲି ସ୍ଥାନୀୟ ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହି ଉପକରଣଟି ଅତ୍ୟନ୍ତ ଚିକ୍କଣ ଏବଂ ମସୃଣ । ପୁରାତନ ପ୍ରସ୍ତର ଯୁଗର ଉପକରଣଗୁଡିକ ଅପେକ୍ଷାକୃତ କମ୍ ଚିକ୍କଣ ଓ ମସୃଣ । ଏହି ଗ୍ରାମରୁ ପଥର ନିର୍ମିତ ଏକ ଗୋଲାକୃତି ଚକ ମିଳିଛି । ପଥରର ଚକରେ କାଠ ନିର୍ମିତ ଯାନ ନିର୍ମାଣ କରିବାରେ ନୂତନ ପ୍ରସ୍ତର ଯୁଗର ମଣିଷମାନେ ସଫଳ ହୋଇପାରିଥିଲେ ବୋଲି ଅସନପାଟ ଗାଁରୁ ମିଳିଥିବା ପଥର ନିର୍ମିତ ଚକରୁ ସ୍ପଷ୍ଟ ହୋଇଛି । ନୂତନ ପ୍ରସ୍ତର ଯୁଗର ମଣିଷମାନେ ଜଙ୍ଗଲରୁ ଜାଳେଣୀକାଠ ଓ ଅନ୍ୟାନ୍ୟ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିବା ଉଦ୍ଦେଶ୍ୟରେ କାଠ ଓ ପଥର ନିର୍ମିତ ଯାନର ବ୍ୟବହାର କରୁଥିଲା । ଏହି ଯାନଗୁଡିକରେ ପଥର ନିର୍ମିତ ଚକ ବ୍ୟବହାର କରାଯାଉଥିଲା । ଏବେ ମଧ୍ୟ ଅସନପାଟର ଜମିକୁ ଖୋଳିଲେ ପୁରାତନ ଓ ନୂତନ ପ୍ରସ୍ତର ଯୁଗର ବହୁ ଉପକରଣ ଓ ସ୍ମାରକୀ ମିଳୁଛି । ତେବେ ଏଭଳି ଏକ ଐତିହାସିକ ଗୁରୁତ୍ୱ

ବହନ କରୁଥିବା ଅଞ୍ଚଳ ପ୍ରତି ପ୍ରତ୍ନତତ୍ତ୍ୱ ବିଭାଗ ନିରବ ରହିବା ଦୁର୍ଭାଗ୍ୟଜନକ ବୋଲି ସ୍ଥାନୀୟ ଗବେଷକ ମହଲରେ ଅସନ୍ତୋଷ ପ୍ରକାଶ ପାଇଛି ।

## ଓଡ଼ିଶା ପ୍ରସିଦ୍ଧ ଅସନପାଟ ଛଉ ନୃତ୍ୟ

କେନ୍ଦୁଝର ଜିଲ୍ଲାର ଅସନପାଟ ଛଉ ନୃତ୍ୟ କେନ୍ଦୁଝର ସମେତ ସମଗ୍ର ଓଡ଼ିଶାରେ ବେଶ୍ ଖ୍ୟାତି ଅର୍ଜନ କରିଛି । ଛଉ ନୃତ୍ୟର ପ୍ରଚାର ଓ ପ୍ରସାର ପାଇଁ ଏହି ଗ୍ରାମଟି 'ଛଉ ଗ୍ରାମ' ଭାବେ ପରିଚିତ । ପ୍ରତିବର୍ଷ ମହାବିଷୁବ ସଂକ୍ରାନ୍ତି ଅବସରରେ ଦୁଇ ଦିନ ଧରି ଏଠାରେ ଛଉ ନୃତ୍ୟ ପ୍ରତିଯୋଗିତା ହୋଇଥାଏ । ଛଉ ନୃତ୍ୟରେ ପ୍ରଥମେ ନଟରାଜ ନୃତ୍ୟ ପରିବେଷଣ କରାଯାଇଥାଏ । ଶିବଙ୍କର ତାଣ୍ଡବ ନୃତ୍ୟ ବା ଯୁଦ୍ଧ ଯାତ୍ରାର ଦୃଶ୍ୟ ଏହି ଯାତ୍ରାରେ ଦର୍ଶାଯାଇଥାଏ । କିଛି ବର୍ଷ ପୂର୍ବେ ଏହି ଗ୍ରାମରୁ ଏକ ନଟରାଜ ଶିବଙ୍କର ଏକ ପ୍ରସ୍ତର ମୂର୍ତ୍ତି ଉଦ୍ଧାର କରାଯାଇଥିଲା । ଅସନପାଟ ଗାଁରେ ବିଭିନ୍ନ ଛଉ ନୃତ୍ୟ ଦଳ ରହିଛି । ଏହି ଛଉ ନୃତ୍ୟ ଦଳ ନୃତ୍ୟ ପ୍ରଦର୍ଶନ କରି କେନ୍ଦୁଝର ଜିଲ୍ଲା ସମେତ ରାଜ୍ୟ ତଥା ରାଜ୍ୟ ବାହାରେ ବେଶ୍ ସୁନାମ ଅର୍ଜନ କରିପାରିଛନ୍ତି । କେନ୍ଦୁଝର ଜିଲ୍ଲାର ଝୁଂପୁରା ବ୍ଲକ୍‌ର ଅସନପାଟ ଗ୍ରାମଟି ଛଉ ପରଂପରାକୁ ବଞ୍ଚେଇ ରଖିବାରେ ସମର୍ଥ ହୋଇପାରିଛି । ଷଡ଼େଇକଳା, ମୟୂରଭଞ୍ଜ ଓ ପଶ୍ଚିମବଙ୍ଗର ପୁରୁଲିଆ ଛଉକୁ ଯେତେ ମାତ୍ରାରେ ସରକାରୀ ପ୍ରୋତ୍ସାହନ ମିଳୁଛି ଅନୁରୂପ ଅସନପାଟ ଛଉ ନୃତ୍ୟର ପ୍ରଚାର ଓ ପ୍ରସାର ପାଇଁ ସରକାରୀ ପ୍ରୋତ୍ସାହନ ମିଳିପାରିନାହିଁ । ଅସନପାଟ ଛଉ ନୃତ୍ୟ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠା ଲାଭ କରିପାରିଛି । ଏହି ଗ୍ରାମରେ ଏକଦା ବହୁ ଛଉ ନୃତ୍ୟ ଦଳ ଥିଲେ । ମାତ୍ର ପ୍ରୋତ୍ସାହନ ଅଭାବରୁ



ଆଜି ମାତ୍ର ହାତଗଣତି କେତୋଟି ଛଉ ନୃତ୍ୟ ଦଳ ରହିଛି । ଅସନପାଟ ଗ୍ରାମର ୯ଟି ସାହିରେ ୯ଟି ନାଟ୍ୟ ସଂଘ ବା ଦଳ ରହିଛି । ସେଗୁଡିକ ହେଲା ଲକ୍ଷ୍ମୀନାରାୟଣ ଛଉ ନାଟ୍ୟ ସଂଘ, ଶିବ ତାଣ୍ଡବ ଛଉ ନାଟ୍ୟ ସଂଘ, କେଦାରଗୌରୀ ନାଟ୍ୟ ସଂଘ, ହର ପାର୍ବତୀ ଛଉ ନାଟ୍ୟସଂଘ, ଦୁର୍ଗତିନାସିନୀ ନାଟ୍ୟସଂଘ, ବାସୁଳି କଳା ମନ୍ଦିର ଛଉ ନାଟ୍ୟ ସଂଘ, ବାସୁଳାଇ କଳା ଛଉ ନାଟ୍ୟ ସଂଘ, ମା' ପାଟ ବାସୁଳାଇ ଛଉ ନୃତ୍ୟ ସଂଘ । ପ୍ରତି ଛଉ ନୃତ୍ୟ ଦଳରେ ପାଖପାଖି ୨୦ରୁ ଊର୍ଦ୍ଧ୍ୱ କଳାକାର କାର୍ଯ୍ୟ କରନ୍ତି ; ବିଶେଷକରି ଏହି ଛଉ ନୃତ୍ୟଦଳ ପୌରାଣିକ ବିଷୟବସ୍ତୁ ଉପରେ ଆଧାରିତ ପ୍ରସଙ୍ଗକୁ ନେଇ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ପ୍ରତିବର୍ଷ ମହାବିଷୁବ (ପଣା ସଂକ୍ରାନ୍ତି)ରେ ଅସନପାଟ ଗ୍ରାମଟି ବେଶ୍ ଉତ୍ସବମୁଖର ହୋଇପଡିଥାଏ । ପଣା ସଂକ୍ରାନ୍ତିରେ ଗ୍ରାମର ଆରାଧ୍ୟ ଦେବୀ ମା' ବାସୁଳୀଙ୍କ ପୀଠରେ ପାରଂପରିକ ରୀତିନୀତିରେ ପୂଜା କରାଯାଇଥାଏ । ଦୁଇ ଦିନ ଧରି ଏହି ଗ୍ରାମର ବିଭିନ୍ନ ଗ୍ରୁପ୍‌ର କଳାକାରମାନେ ରଙ୍ଗବେରଙ୍ଗର ପୋଷାକରେ ସଜେଇ ହୋଇ ନୃତ୍ୟ ପରିବେଷଣ କରିଥାନ୍ତି । ନୃତ୍ୟ ପରିବେଷଣ ଉଦ୍ଦେଶ୍ୟରେ ଗ୍ରାମରେ ପେଣ୍ଡାଲ୍ (ମଞ୍ଚ) ପ୍ରସ୍ତୁତ କରାଯାଇଥାଏ । ଏହି ମଞ୍ଚଳରେ ବିଭିନ୍ନ ଦଳର କଳାକାରମାନେ ନୃତ୍ୟ ପରିବେଷଣ କରନ୍ତି । ରାତିତମାମ୍ ଅସନପାଟ ଗ୍ରାମରେ ଛଉ ନୃତ୍ୟ ଚାଲେ ଏବଂ ରାତି ଅନିଦ୍ରା ହୋଇ ହଜାର ହଜାର ସଂଖ୍ୟାରେ ଦର୍ଶକ ନୃତ୍ୟକୁ ଉପଭୋଗ କରିଥାନ୍ତି । ପଣା ସଂକ୍ରାନ୍ତିର ମାସେ ପୂର୍ବରୁ ଗାଁର କଳାକାରମାନେ ପୂର୍ବ ପ୍ରସ୍ତୁତି କରିଥାନ୍ତି । କଳାକାରମାନେ ରିହରସେଲ୍ କରି ପଣା ସଂକ୍ରାନ୍ତିର ଦୁଇଦିନ ପୂର୍ବରୁ ନୃତ୍ୟ ପାଇଁ ପ୍ରସ୍ତୁତ ହୋଇଥା'ନ୍ତି । ଏହି ଗାଁରେ ଥିବା ପେଣ୍ଡାଲ୍ (ମଞ୍ଚ)ଗୁଡ଼ିକ ସ୍ଥାୟୀ ଭାବେ ନିର୍ମିତ । ମାତ୍ର ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଏହି ମଞ୍ଚଗୁଡିକ ଧ୍ୱଂସ ପାଇଗଲାଣି । ଅପରପକ୍ଷେ, ସରକାରୀ ପ୍ରୋତ୍ସାହନ ଅଭାବ ଓ ଦାରିଦ୍ର୍ୟ କାରଣରୁ ଅନେକ କଳାକାର ଛଉ ନୃତ୍ୟ ପ୍ରତି ମୁହଁ ଫେରେଇ ନେଲେଣି । ଏହାକୁ ବୃତ୍ତି କରି ପେଟ ପୋଷି ହେବନି ବୋଲି କଳାକାରମାନେ ହୃଦୟଙ୍ଗମ କରିବା ପରେ ଛଉ ପ୍ରତି ବିମୁଖତା ପ୍ରଦର୍ଶନ କରୁଛନ୍ତି । ଛଉ ନୃତ୍ୟ ପାଇଁ ଆବଶ୍ୟକ ଜରି କାମକରା ରଂଗୀନ୍ ପୋଷାକ, ରଂଗ, ଅଳଂକାର, ବାଦ୍ୟଯନ୍ତ୍ର ଆଦି ମହଙ୍ଗା ହୋଇଯିବାରୁ ଏହା ଅତ୍ୟନ୍ତ ବ୍ୟୟବହୁଳ ହୋଇପଡିଛି । ଏଣୁ ଅସନପାଟ ଗ୍ରାମକୁ ସରକାର ଏକ ମଡେଲ୍ ଭିଲେଜ୍ ଭାବେ ନେଇ ଏହାକୁ 'ଛଉଗ୍ରାମ' ଭାବେ ଘୋଷଣା କରିବା ଆଜିର ସମୟ ପାଇଁ ଆହ୍ୱାନ ହୋଇପଡିଛି ।

## ପ୍ରାଚୀନ ବୌଦ୍ଧ ପୀଠ: ଐତିହାସିକ ଧଳେଇପାଟ

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ହାଣ୍ଡିଭଂଗା ନିକଟସ୍ଥ ଫକୀରପୁର ଗ୍ରାମରେ ଐତିହାସିକ ଧଳେଇପାଟ ପୀଠ ଅବସ୍ଥିତ । ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି କ୍ଷେତ୍ରଟି କେନ୍ଦୁଝର ଜିଲ୍ଲାର


ଧଳେଇପାଟରୁ ମିଳିଥିବା ଶିବ ପାର୍ବତୀଙ୍କ ମୂର୍ତ୍ତି

ଅନ୍ୟତମ ପ୍ରମୁଖ ପ୍ରାଚୀନ ପୀଠ ଭାବେ ଜଣାଶୁଣା । ଏଠାରୁ ଅନେକ ବୁଦ୍ଧ ମୂର୍ତ୍ତି ସମେତ ଶିବ-ପାର୍ବତୀ, ଗଣେଷ, କାର୍ତ୍ତୀକ, ବିଷ୍ଣୁ ଆଦି ମୂର୍ତ୍ତି ମିଳିଛି । ଏହା ସହିତ ଏଠାରେ ଏକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ମିଳିଛି । ଏଠାରେ ମନ୍ଦିରର ଚୂଡା ଓ ଅନ୍ୟାନ୍ୟ ଅଂଶର ଭଗ୍ନ ରୂପ ଏଣେତେଣେ ବିଛେଇ ହୋଇ ପଡିଛି । ମନ୍ଦିରରେ ବ୍ୟବହୃତ ହୋଇଥିବା ଅନେକ ଖୋଦେଇକରା ପଥର, ପଥର ଖିଲାଣ ଆଦି ଏଠାରେ ପରିତ୍ୟକ୍ତ ଅବସ୍ଥାରେ ପଡିରହିଛି । ଏସବୁ ମୂର୍ତ୍ତି ଓ ଭଗ୍ନ ମନ୍ଦିରର ଚୂଡା, ବ୍ୟବହୃତ ପଥର ଖଣ୍ଡକୁ ଅନୁଧ୍ୟାନ କଲେ ଏଠାରେ ଏକ ମନ୍ଦିର ଥିବାର ଅନୁମାନ କରାଯାଉଛି । ତେବେ ଏଠାରୁ ବେଶି ସଂଖ୍ୟାରେ ଶିବ-ପାର୍ବତୀଙ୍କ ଯୁଗଳ ମୂର୍ତ୍ତି, ଗଣେଷ, କାର୍ତ୍ତୀକ ଏବଂ ବିଷ୍ଣୁ ମୂର୍ତ୍ତି ମିଳିଥିବାରୁ ଏହା ଉଭୟ ଶୈବ ଓ ବିଷ୍ଣୁ କ୍ଷେତ୍ର ଥିବାର ଅନୁମାନ କରାଯାଉଛି । ମାତ୍ର ଏଠାରେ ବହୁ ସଂଖ୍ୟାରେ ବୁଦ୍ଧଙ୍କ ମୂର୍ତ୍ତି ମିଳିଥିବାରୁ ଏହା ନିଶ୍ଚୟ ଏକ ବୌଦ୍ଧ କ୍ଷେତ୍ର ଥିବାର ଗବେଷକମାନେ ଦୃଢ ଦାବି କରନ୍ତି । ହୁଏତ ପ୍ରଥମେ ଏହା ଏକ ପ୍ରାଚୀନ ବୌଦ୍ଧ କ୍ଷେତ୍ର ଥିଲା ଏବଂ ପରେ ଏହା ଶୈବ ଓ ବିଷ୍ଣୁ କ୍ଷେତ୍ର ଭାବେ ପରିଚିତ ହୋଇପାରିଛି । ତେବେ ଏହି ଗ୍ରାମଟି ନିକଟରେ ଚଂପୁଆ ଉପଖଣ୍ଡର ରାମଲା, ସରେଇ, ଅସନପାଟ, ନନ୍ଦପୁର ଆଦି ଐତିହାସିକ ସ୍ଥାନ ଥିବାରୁ ଏଠାକାର ପ୍ରାଚୀନତା ନେଇ ଅନେକ ପ୍ରମାଣ ମିଳିପାରିଛି ।


ଧଳେଇପାଟରୁ ମିଳିଥିବା ଶିବ ପାର୍ବତୀଙ୍କ ମୂର୍ତ୍ତି


ଧଳେଇପାଟରୁ ମିଳିଥିବା ଶିବ ପାର୍ବତୀଙ୍କ ମୂର୍ତ୍ତି

ଏ ଅଞ୍ଚଳମାନଙ୍କରୁ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଅବଶେଷ ମଧ୍ୟ ମିଳିଛି । ଅପନପାଟ ଭଳି ଏଠାରେ ମଧ୍ୟ ପ୍ରାଚୀନ କୀର୍ତ୍ତିରାଜି ଦେଖିବାକୁ ମିଳେ ।

ଧଳେଇପାଟ ଗାଁରେ ମାଟି ତଳୁ ଉଦ୍ଧାର କରାଯାଇଥିବା ଅନେକ କଳାକୀର୍ତ୍ତି ଏବେ ସ୍ଥାନୀୟ ଲୋକଙ୍କ ଦ୍ୱାରା ପୂଜିତ ହୋଇ ଆସୁଛନ୍ତି । ସବୁଠୁ ବଡ଼କଥା ହେଉଛି, ଧଳେଇପାଟରୁ ମିଳିଥିବା ବୁଦ୍ଧଙ୍କର ଏକ ପ୍ରାଚୀନ ମୂର୍ତ୍ତିକୁ ସ୍ଥାନୀୟ ଲୋକେ ଚୂନର ଏକ ପ୍ରଲେପ ଦେଇ ତାଙ୍କୁ ହିନ୍ଦୁ ଦେବଦେବୀଙ୍କ ଭଳି ପୂଜା କରୁଛନ୍ତି । ମାତ୍ର, ଏହି ବୁଦ୍ଧ ମୂର୍ତ୍ତିଟିକୁ ଧଳେଇପାଟ ଶିବ ମନ୍ଦିରର ସମ୍ମୁଖରେ ରଖାଯାଇଛି । ଏଠାରୁ ଅନେକ ମୂର୍ତ୍ତି ମଧ୍ୟ ଚୋରି ହୋଇଗଲାଣି । ତେବେ ଏହି ସ୍ଥାନରେ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅଧିକ ଖନନ କରାଯାଇ ପାରିଲେ ବହୁ ପ୍ରାଚୀନ କଳାକୀର୍ତ୍ତି ମିଳିପାରିବ ବୋଲି ଆଶା କରାଯାଉଛି । ନିକଟ ଅତୀତରେ ଧଳେଇପାଟ ଅଞ୍ଚଳର ଗ୍ରାମବାସୀ ମାଟି ଖୋଳୁଖୋଳୁ ଏକ ପୁରାତନ ମନ୍ଦିରର ଭଗ୍ନାବଶେଷ, ବହୁ ପୁରୁଣା ମୂର୍ତ୍ତିର ସନ୍ଧାନ ପାଇଥିଲେ । ଏହି ସ୍ଥାନରୁ ବହୁ ସଂଖ୍ୟାରେ ଶିବ-ପାର୍ବତୀଙ୍କ ଯୁଗଳ ମୂର୍ତ୍ତି ମିଳିଥିବାବେଳେ ଗଣେଷ, କାର୍ତ୍ତିକ, ବିଷ୍ଣୁ କେଶରଯୁକ୍ତ ଏକ ସିଂହ ମୂର୍ତ୍ତି ଏବଂ ସର୍ବୋପରି ବୁଦ୍ଧଙ୍କର ଏକ ମୂର୍ତ୍ତି ସଂଗୃହୀତ ହୋଇପାରିଛି । ଏସବୁ ମୂର୍ତ୍ତିମାନଙ୍କ ମଧ୍ୟରୁ ଶିବ-ପାର୍ବତୀଙ୍କୁ ଯୁଗଳ ମୂର୍ତ୍ତିଙ୍କ ସମେତ ଗଣେଷ, କାର୍ତ୍ତିକ ଓ ବିଷ୍ଣୁଙ୍କ ମୂର୍ତ୍ତିକୁ ମନ୍ଦିରରେ


ଧଳେଇପାଟରୁ ମିଳିଥିବା ଗଣେଷ ଓ କାର୍ତ୍ତିକଙ୍କ ମୂର୍ତ୍ତି



ସ୍ଥାପନ କରାଯାଇ ପୂଜା କରାଯାଉଛି । ଏଠାରେ ମହାଦେବ ଧବଳେଶ୍ୱର ପୂଜା ପାଉଛନ୍ତି ।

ଧଳେଇପାଟରୁ ମିଳିଥିବା ମୂର୍ତ୍ତିସବୁ ବହୁ ପ୍ରାଚୀନ ବୋଲି ସ୍ଥାନୀୟ ଲୋକେ ପ୍ରକାଶ କରିଛନ୍ତି । ଏହି କଳାକୀର୍ତ୍ତି ନାଗବଂଶୀୟ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କୁହାଯାଉଛି । ଏଠାରେ ଏହା ପଞ୍ଚମ ଶତାବ୍ଦୀରେ ନିର୍ମିତ ଏକ ମନ୍ଦିର ରହିଥିଲା ବୋଲି ବିଶ୍ୱାସ କରାଯାଉଛି । ଆହୁରି ମଧ୍ୟ ଏଠାରୁ ମିଳିଥିବା ବୁଦ୍ଧଙ୍କ ମୂର୍ତ୍ତିକୁ ଲକ୍ଷ୍ୟ କରି ଏହା ଏକ ବୌଦ୍ଧପୀଠ ଥିଲା ବୋଲି ସ୍ଥାନୀୟ ଗବେଷକ ମତବ୍ୟକ୍ତ କରନ୍ତି । ପରବର୍ତ୍ତୀ ଅବସ୍ଥାରେ ଏହା ଶୈବ ଓ ବିଷ୍ଣୁ ପୀଠ ଭାବେ



ଧଳେଇପାଟରୁ ମିଳିଥିବା ବୁଦ୍ଧଙ୍କ ମୂର୍ତ୍ତି


ଧଳେଇପାଟରୁ ମିଳିଥିବା ଶିବ ପାର୍ବତୀଙ୍କ ମୂର୍ତ୍ତି

ପରିଚିତ ହୋଇଥାଇପାରେ ବୋଲି ଗବେଷକଙ୍କ ମତ । ତେବେ ପ୍ରତ୍ନତତ୍ତ୍ୱ ବିଭାଗ ଏହି ଅଞ୍ଚଳରେ ବିଧିବଦ୍ଧ ଭାବେ ଖନନ କଲେ ବହୁ ପ୍ରାଚୀନ ରହସ୍ୟର ଉନ୍ମୋଚନ ହୋଇପାରିବା ସହିତ ପ୍ରାଚୀନ ସଭ୍ୟତାର ପ୍ରମାଣ ମିଳି ପାରନ୍ତା ବୋଲି ସ୍ଥାନୀୟ ଗବେଷକ ମହଲରେ ମତ ପ୍ରକାଶ ପାଇଛି । ଧଳେଇପାଟ, ଅସନପାଟ, ନନ୍ଦପୁର, ସୀତାବିଞ୍ଜି, ବୀରଗୋବିନ୍ଦପୁର, ଚକ୍ରତୀର୍ଥ, କୁଶଳେଶ୍ୱର, ଦେଓଗାଁ, ବିଷ୍ଣୁପାଟ (ଘୁଟୁରୁ), ମହାଘାଟ, ଲକ୍ଷ୍ମୀପାଦ, ସିଦ୍ଧମଠ, ସଛେିଭଞ୍ଜ ଆଦି କ୍ଷେତ୍ରରେ ବୌଦ୍ଧ ଓ ଜୈନ ଧର୍ମର ବହୁ ନିଦର୍ଶନ ମିଳୁଥିବାରୁ ଏହା ଉପରେ ଉଚ୍ଚତର ଗବେଷଣାର ଆବଶ୍ୟକତା ରହିଛି । ଏ ଅଞ୍ଚଳରେ ପୁରାତନ କଳାକୀର୍ତ୍ତିର ସୁରକ୍ଷା ପାଇଁ କେନ୍ଦୁଝରଠାରେ ଏକ ସଂଗ୍ରହାଳୟ ପ୍ରତିଷ୍ଠା ମଧ୍ୟ ଜରୁରୀ ହୋଇପଡିଛି ।

## କେନ୍ଦୁଝରର ରାଷ୍ଟ୍ରଦେବତା; ମହାପ୍ରଭୁ ଶ୍ରୀ ଶ୍ରୀ ବଳଦେବଜୀଉ

ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ବିଷ୍ଣୁ ମନ୍ଦିର ଭାବେ କେନ୍ଦୁଝର ବଳଦେବଜୀଉ ମନ୍ଦିରର ପ୍ରସିଦ୍ଧି ରହିଛି । ଉତ୍କଳର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥ ହୋଇଥିବାବେଳେ କେନ୍ଦୁଝରର ରାଷ୍ଟ୍ରଦେବତା ଭାବେ ଶ୍ରୀ ଶ୍ରୀ ବଳଦେବଜୀଉ ସର୍ବପୂଜିତ । କେନ୍ଦୁଝରର ଭଞ୍ଜ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ (୧୬୫୪-୧୬୮୮)ଙ୍କ ଦ୍ୱାରା କେନ୍ଦୁଝର ପୁରୁଣାବଜାରରେ ବଳଦେବଜୀଉଙ୍କ ଏକ ଭବ୍ୟ ମନ୍ଦିର ନିର୍ମିତ ହୋଇଛି । ଏହି ମନ୍ଦିରରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ, ଶ୍ରୀସୁଦର୍ଶନଙ୍କ ମୂର୍ତ୍ତି




ପ୍ରତିଷ୍ଠ ହେବାର ବହୁ ପୂର୍ବରୁ କେନ୍ଦୁଝରଗଡ଼ ଓ ରାଜନଗର ଗ୍ରାମରେ ଶ୍ରୀଦଧିବାମନଜୀଉ ନାମରେ ଶ୍ରୀ ବଳଦେବ, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ପୂଜା ପାଇ ଆସୁଥିଲେ । କେନ୍ଦୁଝରଗଡ଼ର ଶେଷ ଭାଗରେ ଚୂଳିଆ ଓ ଗୋବରା ପାହାଡର ପାଦଦେଶରେ ବଳଦେବଜୀଉଙ୍କ ଏହି ମନ୍ଦିର ପ୍ରତିଷ୍ଠ ହୋଇଛି । ବଳଦେବଜୀଉ ମନ୍ଦିର ସନ୍ନିକଟରେ ସିଦ୍ଧମଠଠାରେ ଜଗନ୍ନାଥଙ୍କ ଏକକ ମୂର୍ତ୍ତି ସହ ଏକ ବିଶାଳ ମନ୍ଦିର ରହିଛି । ଏହା ସିଦ୍ଧ ଜଗନ୍ନାଥ ପୀଠ । ଏହି ସିଦ୍ଧ ଜଗନ୍ନାଥ ମୂର୍ତ୍ତି ହିଁ କେନ୍ଦୁଝରରେ ଜଗନ୍ନାଥ ପୂଜନର ସର୍ବପ୍ରାଚୀନ ବିଗ୍ରହ ବୋଲି ଅନୁମାନ କରାଯାଏ । ରାଜା ଗୋବିନ୍ଦ ଭଞ୍ଜ ଶ୍ରୀକ୍ଷେତ୍ରରୁ ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିଦ୍ୱୟ ଆଣି କେନ୍ଦୁଝରଗଡ଼ ରାଜପ୍ରାସାଦରେ ରଖାଇଥିଲେ । କିନ୍ତୁ ସେତେବେଳେ ଶ୍ରୀବଳଦେବଜୀଉଙ୍କ ମୂର୍ତ୍ତି ନଥିଲା । ଗୋବିନ୍ଦ ଭଞ୍ଜଙ୍କ ରାଜତ୍ୱ କାଳ ଶେଷ ହେବା ପରେ ତାଙ୍କ ପୁତ୍ର ରୁଦ୍ର ନାରାୟଣ ଓ ପୌତ୍ର ଶିବ ନାରାୟଣଙ୍କ ସମୟରେ ମଧ୍ୟ ବଳଭଦ୍ରଙ୍କ ମୂର୍ତ୍ତି ପ୍ରତିଷ୍ଠ ହୋଇ ପାରି ନଥିଲା । ତେବେ ଶିବ ନାରାୟଣଙ୍କ ପୁତ୍ର ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ ରାଜା ହେବାପରେ ସେ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରାଇ ସେଥିରେ ଗୋବିନ୍ଦ ଭଞ୍ଜଙ୍କ ଅମଳରୁ ରାଜପ୍ରାସାଦରେ ରଖା ଯାଇଥିବା ସୁଭଦ୍ରା, ଜଗନ୍ନାଥଙ୍କ ମୂର୍ତ୍ତି ପୂଜା କରିଥିଲେ । ତେବେ ପରେ ରାଜା ସ୍ୱପ୍ନାଦେଶ ପାଇବା ପରେ ଆନନ୍ଦପୁରର ବଞ୍ଚୋ ଗ୍ରାମରୁ ମହାପ୍ରଭୁ ବଳଦେବଜୀଉଙ୍କ ମୂର୍ତ୍ତି ଆଣି କେନ୍ଦୁଝରରେ ପ୍ରତିଷ୍ଠ କରିଥିଲେ । ପରେ

ମହାପ୍ରଭୁ ବଳଦେବଜୀଉ ହିଁ କେନ୍ଦୁଝର ରାଜାଙ୍କର ରାଷ୍ଟ୍ରଦେବତାର ମାନ୍ୟତା ଲାଭ କରିଥିଲେ । ମନ୍ଦିର ଉପରେ ଚକ୍ର ପ୍ରତିଷ୍ଠା କରାଯାଇ ମନ୍ଦିର ମଧ୍ୟରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥଙ୍କ ସହିତ ସୁଦର୍ଶନଙ୍କୁ ରାଜପ୍ରାସାଦରୁ ଅଣାଯାଇ ରତ୍ନସିଂହାସନରେ ପ୍ରତିଷ୍ଠା କରାଗଲା । ରତ୍ନ



ସିଂହାସନରେ ଶ୍ରୀବଳଦେବଙ୍କ ବିଜେ ପ୍ରତିମା ବାସୁଦେବ, ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ନାରାୟଣ, ଶ୍ରୀଦେବୀ, ଭୂଦେବୀ, ମଦନମୋହନ, ଶିବ, ପାର୍ବତୀ, ରାଧାକୃଷ୍ଣ, ରଘୁନାଥ, ଲଡୁଗୋପାଳ, ଶୟନଠାକୁର, ନବପତ୍ରିକା ଦୁର୍ଗା, ଶାଳଗ୍ରାମ ଓ ଦ୍ୱାରାବତୀ ଶିଳା ପ୍ରତିଷ୍ଠା ହୋଇ ପୂଜା ପାଇଲେ । ଶ୍ରୀବଳଦେବଜୀଉଙ୍କୁ କେନ୍ଦୁଝରର ରାଷ୍ଟ୍ରଦେବତା ଭାବେ ଗ୍ରହଣ କରାଯାଇ ସ୍ୱୟଂ ରାଜା ତାଙ୍କର ମୁଖ୍ୟ ସେବକ ରହିଲେ । ଏହି ପୀଠରେ ତନ୍ତ୍ରର ପ୍ରାଧାନ୍ୟ ହେତୁ ସୁଭଦ୍ରାଙ୍କ ମୁଖମଣ୍ଡଳର ବର୍ଣ୍ଣ ହଳଦୀ ରଂଗ ପରିବର୍ତ୍ତେ ହିଙ୍ଗୁଳ ବର୍ଣ୍ଣ ହୋଇଛି ।

ରଥ ଦାଣ୍ଡର ଅପରପାର୍ଶ୍ୱରେ ଶ୍ରୀଗୁଣ୍ଡିଚା ମାଉସୀମା' ମନ୍ଦିର ରହିଛି । ବଳଦେବଜୀଙ୍କ ମନ୍ଦିର ପରିସରରେ ରହିଛି ପ୍ରସିଦ୍ଧ ଗୋକର୍ଣ୍ଣି ବଟବୃକ୍ଷ । ଗୋକର୍ଣ୍ଣି ବଟ ବୃକ୍ଷ ନିକଟରେ ରହିଛି ବଟ ମଙ୍ଗଳା ମନ୍ଦିର । ବଳଦେବଜୀଉଙ୍କ ମନ୍ଦିର ଗୁମ୍ଫଟ ପରେ ବାମ ପାର୍ଶ୍ୱରେ ଏକ ନୂତନ ଦଧିବାମନ ମନ୍ଦିର ରହିଛି । ଏଠାରେ ସୂର୍ଯ୍ୟନାରାୟଣ, ଏକପାଦୀ ଭୈରବଙ୍କ ସହ ଦଧିବାମନ ଭାବେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ରହିଛି । ଦଧିବାମନ ମନ୍ଦିର ନିକଟରେ ଅଗ୍ରପୂଜ୍ୟ ବିଘ୍ନବିନାଶକ ଗଣେଶଙ୍କ ମନ୍ଦିର ଅବସ୍ଥିତ । ବଡ଼ଦେଉଳ ପ୍ରତିଷ୍ଠା ସମୟରୁ ହିଁ ଏଠାରେ ଗଣେଶ ପ୍ରତିଷ୍ଠିତ ହୋଇଛନ୍ତି । ଏଠାରେ କଳାମୁଗୁନି ପଥର ନିର୍ମିତ ନୃତ୍ୟରତ ଗଣେଶଙ୍କ ମୂର୍ତ୍ତିର ଉଚ୍ଚତା ପ୍ରାୟ ତିନି ଫୁଟ । ବଡ଼ଦେଉଳର ବାଇଶି ପାହାଚର ଦକ୍ଷିଣ ଦିଗରେ ଏକାଦଶୀ ମଣ୍ଡପ ଅବସ୍ଥିତ ।

ମହାରାଜା ଜନାର୍ଦ୍ଦନ ଭଞ୍ଜ ଏହି ଏକାଦଶୀ ମଣ୍ଡପକୁ ସ୍ଥାପନ କରିଥିଲେ । ବଡ଼ଦେଉଳର ସମ୍ମୁଖ ଭାଗରେ ବାଇଶି ପାହାଚ ପୂର୍ବରୁ ଗରୁଡ ସ୍ତମ୍ଭ ଅବସ୍ଥିତ । ନାଟ ମନ୍ଦିରର ପୂର୍ବ ଭାଗରେ ରାଜା ବଳଭଦ୍ର ନାରାୟଣ ଭଞ୍ଜଦେବଙ୍କର ପୂର୍ଣ୍ଣ ଅବୟବ ମୂର୍ତ୍ତି ସ୍ଥାପିତ ହୋଇଛି । ସେ କେନ୍ଦୁଝରର ଶେଷ ଶାସକ ରାଜା ଥିଲେ । ଗରୁଡ ସ୍ତମ୍ଭର ପୂର୍ବ ଦିଗରେ ସମାନ୍ତର ଭାବେ ରହିଛି ହନୁମାନ ସ୍ତମ୍ଭ । ହନୁମାନ ସ୍ତମ୍ଭର ଦକ୍ଷିଣ ପାର୍ଶ୍ୱରେ ଯଜ୍ଞ ମଣ୍ଡପ ଅବସ୍ଥିତ । ଏହା ଏକ ବର୍ଗାକାର ଗୃହ । ଯଜ୍ଞମଣ୍ଡପର ଉତ୍ତର ଦିଗରେ ଶ୍ରୀରାମ ମନ୍ଦିର ଅବସ୍ଥିତ । ଏହି ମନ୍ଦିରଟି ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ମନ୍ଦିରରେ ପ୍ରତିବର୍ଷ ଶ୍ରୀରାମନବମୀ, ସୀତା ନବମୀ ପାଳିତ ହୋଇଥାଏ । ଶ୍ରୀରାମ ମନ୍ଦିରର ସମ୍ମୁଖ ଭାଗରେ ଏକ ସ୍ତମ୍ଭ ଉପରେ ହନୁମାନଙ୍କର ଏକ ମୂର୍ତ୍ତି ବିଦ୍ୟମାନ । ସେ ଦଣ୍ଡାୟମାନ ଅବସ୍ଥାରେ ଥାଇ ଦକ୍ଷିଣ ହସ୍ତରେ ଖଣ୍ଡା ଓ ବାମ ହସ୍ତରେ ଢାଲ ଧାରଣ କରିଛନ୍ତି । ଶ୍ରୀରାମ ମନ୍ଦିରର ଉତ୍ତର ଦିଗରେ ସମାନ୍ତର ଭାବେ ଶ୍ରୀବାଞ୍ଛେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିରର ଗର୍ଭଗୃହରେ ବାଞ୍ଛେଶ୍ୱର ଶିବଲିଙ୍ଗ, ବୃଷଭ, ପାର୍ବତୀ, ଗଣେଷଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ଶ୍ରୀବାଞ୍ଛେଶ୍ୱରଙ୍କ ମନ୍ଦିରର ପୂର୍ବ ଭାଗରେ ଶ୍ରୀଲୋକନାଥେଶ୍ୱର ଶିବ ମନ୍ଦିର ଶୋଭାପାଉଛି । ଶ୍ରୀବାଞ୍ଛେଶ୍ୱର ମହେଶଙ୍କ ମନ୍ଦିରର ଉତ୍ତର ଦିଗରେ ସ୍ନାନମଣ୍ଡପ ରହିଛି । ବଡ଼ଦେଉଳର ଉତ୍ତର-ପୂର୍ବ କୋଣରେ ବାଇଶି ପାହାଚରେ ସମାନ୍ତର


ବଳଦେବ ଜିଉଙ୍କ ପ୍ରସିଦ୍ଧ ଗୁଣ୍ଡିଚା ଯାତ୍ରା


ବଳଦେବ ଜିଉଙ୍କ ପ୍ରସିଦ୍ଧ ବାହୁଡ଼ା ଯାତ୍ରା

ଭାବେ ଅଧାପୋତା ଭଳି ଦୃଶ୍ୟମାନ ହେଉଥିବା ମନ୍ଦିରଟି ହେଉଛି ପାତାଳେଶ୍ୱର ମହାଦେବଙ୍କ ମନ୍ଦିର । ଭୂମି ପତନଠାରୁ ପାତାଳେଶ୍ୱରଙ୍କ ଆସ୍ଥାନ ପ୍ରାୟ ଦୁଇ ଫୁଟ ଗଭୀରରେ ଅବସ୍ଥିତ । ବଡ଼ଦେଉଳର ପଶ୍ଚିମ ଦିଗରେ ଶ୍ରୀକ୍ଷେତ୍ର ଭଳି ଏଠାରେ ମଧ୍ୟ ମହାଲକ୍ଷ୍ମୀଙ୍କ ମନ୍ଦିର ରହିଛି । ଭକ୍ତମାନେ ବଡ଼ଦେଉଳରେ ଚତୁର୍ଦ୍ଧା ମୂର୍ତ୍ତି ଦର୍ଶନ ସାରି ଉତ୍ତର ଦ୍ୱାର ବାଟେ ଆସି ମହାଲକ୍ଷ୍ମୀଙ୍କୁ ଦର୍ଶନ କରିଥାନ୍ତି । ପୁରୀ ଶ୍ରୀକ୍ଷେତ୍ର ଧାମ ପରି ଏଠାରେ ମଧ୍ୟ ବଡ଼ ଦେଉଳର ପଶ୍ଚିମ ଦିଗରେ ମା' ବିମଳାଙ୍କ ମନ୍ଦିର ରହିଛି । ଏଠାରେ ବିମଳାଙ୍କ ସହିତ ମା' ସରସ୍ୱତୀ ପୂଜିତ ହୋଇଥାନ୍ତି । ବଡ଼ ଦେଉଳର ପଶ୍ଚିମ ଦ୍ୱାର ନିକଟରେ ବେଢା ପାଚେରୀର ପିଣ୍ଡି ଉପରେ ପ୍ରାୟ ଅଢେଇ ହାତ ଉଚ୍ଚର ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ବେଢା ଠାକୁରାଣୀ ପୂଜା ପାଉଛନ୍ତି ।

ଏଠାରେ ପ୍ରତିବର୍ଷ ଆଷାଢ ଶୁକ୍ଳ ପକ୍ଷ ଦ୍ୱିତୀୟା ତିଥିରେ ରଥଯାତ୍ରା ଓ ଦଶମୀ ତିଥିରେ ବାହୁଡା ଯାତ୍ରା ଅନୁଷ୍ଠିତ ହୋଇଥାଏ । ଶ୍ରୀବଳଦେବଜୀଉଙ୍କ ମନ୍ଦିରରେ ପୁରୀ ଶ୍ରୀକ୍ଷେତ୍ର ଧାମ ଅନୁକରଣରେ ଦ୍ୱାଦଶ ଯାତ୍ରା ସହିତ ଅନେକ ପର୍ବପର୍ବାଣୀ ବର୍ଷସାରା ପାଳନ କରାଯାଇଥାଏ । ବୈଶାଖ ମାସର ସଂକ୍ରାନ୍ତି ଅବସରରେ ବଡ଼ଦେଉଳ ପରିସରରେ ପଣା ସଂକ୍ରାନ୍ତି ଉତ୍ସବ ପାଳନ କରାଯାଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ତୃତୀୟା ତିଥିରେ ବଡ଼ଦେଉଳ ପରିସରରେ ପବିତ୍ର ଅକ୍ଷୟ ତୃତୀୟା ପାଳନ ହୋଇଥାଏ । ଏହି ଦିନ ରଥ ତିଆରି ଅନୁକୂଳ ହୋଇଥାଏ । ଏହାପରେ


ବଳଦେବଜୀଉ ମନ୍ଦିର

ଶ୍ରୀଜୀଉଙ୍କ ଚନ୍ଦନ ଯାତ୍ରା ଅନୁଷ୍ଠିତ ହୋଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ନବମୀ ତିଥିରେ ମା' ସୀତାଙ୍କ ଜନ୍ମ ଦିନ ଉପଲକ୍ଷେ ଶ୍ରୀରାମ ମନ୍ଦିରରେ ସୀତା ନବମୀ ପାଳିତ ହୋଇଥାଏ । ବୈଶାଖ ମାସ ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ତିଥିରେ ନୃସିଂହ ଚତୁର୍ଦ୍ଦଶୀ ପାଳନ କରାଯାଏ । ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ ଶିବ ଓ ପାର୍ବତୀଙ୍କ ମଧ୍ୟରେ ବିବାହ ଉତ୍ସବ ସଂପାଦିତ ହୋଇଥାଏ । ଏକ୍ରାମ ବନବିହାରୀ ମନ୍ଦିରରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହା ପରଦିନ ଶୀତଳ ଷଷ୍ଠୀ ଯାତ୍ରା ଅବସରରେ ଶିବ-ପାର୍ବତୀ ନଗର ଭ୍ରମଣ କରନ୍ତି । ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ଏକାଦଶୀ ତିଥିରେ ରୁକ୍ମିଣୀ ବିବାହ ଅନୁଷ୍ଠିତ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଅବସରରେ ବଡ଼ଦେଉଳରେ ସ୍ନାନ ପୂର୍ଣ୍ଣିମା ମଧ୍ୟ ଧୁମଧାମରେ ପାଳିତ ହୋଇଥାଏ । ସ୍ନାନ ପୂର୍ଣ୍ଣିମା ପରେ ନେତ୍ର ଉତ୍ସବ ଦିନ ମହାପ୍ରଭୁଙ୍କ ନବଯୌବନ ଦର୍ଶନ ଅନୁଷ୍ଠିତ ହୋଇଥାଏ । ଶ୍ରାବଣ ମାସରେ ବଡ଼ଦେଉଳରେ ଦକ୍ଷିଣାୟନ ବନ୍ଦାପନା ଉତ୍ସବ, ଚିତାଲାଗି ଅମାବାସ୍ୟା, ଝୁଲଣ ଯାତ୍ରା ଓ ଗହ୍ମା ପୂର୍ଣ୍ଣିମା ମହାସମାରୋହରେ ପାଳିତ ହୋଇଥାଏ । ଭାଦ୍ରବ ମାସରେ ରେଖା ପଞ୍ଚମୀ, ହରି ଜନ୍ମ ଓ ନନ୍ଦୋତ୍ସବ, ସପ୍ତପୁରୀ ଅମାବାସ୍ୟା, ଗଣେଷ ଚତୁର୍ଥୀ, ନବାନ୍ନ ଭକ୍ଷଣ, ପାର୍ଶ୍ୱପରିବର୍ତ୍ତନ ଏକାଦଶୀ, ପୁନିଆ ପର୍ବ ଆଦି ପାଳିତ ହୋଇଥାଏ । ସେହିଭଳି ଆଶ୍ୱିନ ମାସରେ ମୂଳାଷ୍ଟମୀ ପାର୍ବଣ, କୁମାର ପୂର୍ଣ୍ଣିମା ପାଳିତ ହୋଇଥାଏ । କାର୍ତ୍ତୀକ ମାସରେ ବଡ଼ ଦେଉଳ ପରିସରରେ ରାଇଦାମୋଦର ପୂଜା, କାର୍ତ୍ତୀକ ସଂକ୍ରାନ୍ତି, ଦୀପାବଳି ଅମାବାସ୍ୟା, କାର୍ତ୍ତୀକ ଶୁକ୍ଳପକ୍ଷ ଏକାଦଶୀ ପାଳିତ ହୋଇଥାଏ । ମାର୍ଗଶିର ମାସରେ ପ୍ରଥମାଷ୍ଟମୀ, ମାର୍ଗଶିର ଗୁରୁବାର ଓଷା, ପ୍ରାବରଣ ଷଷ୍ଠୀ ଯାତ୍ରା ପାଳିତ ହୋଇଥାଏ । ସେହିଭଳି ବଡ଼ଦେଉଳ ପରିସରରେ ପୌଷ ମାସରେ ଧନୁ ସଂକ୍ରାନ୍ତି, ନବାଙ୍କ, ମକର ପର୍ବ, ବକୁଳ ଅମାବାସ୍ୟା, ସମ୍ବର ଦଶମୀ, ପୌଷ ପୂର୍ଣ୍ଣିମା ଆଦି ପାଳନ କରାଯାଇଥାଏ । ମାଘ ମାସରେ ବସନ୍ତ ପଞ୍ଚମୀ, ମାଘ ପୂର୍ଣ୍ଣିମା ଏବଂ ଫାଲ୍‌ଗୁନ

ମାସରେ ଶିବ ଚତୁର୍ଦ୍ଦଶୀ, ବାସନ୍ତିକ ଦୋଳପର୍ବ, ଡାଳଭଙ୍ଗା, ବରାହ ଜୟନ୍ତୀ, ଦୋଳ ପୂର୍ଣ୍ଣିମା ପାଳିତ ହୋଇଥାଏ । ଚୈତ୍ରମାସରେ ବଳଦେବଜୀଉଙ୍କ ମନ୍ଦିରରେ ପାଣି ଖେଳ, ଚୈତ୍ର ମଙ୍ଗଳବାର, ଅଶୋକାଷ୍ଟମୀ, ଶ୍ରୀରାମ ନବମୀ, ଦୟଣା ଚୋରି ଓ ଦମନକ ପର୍ବ, ଚୈତ୍ର ପୂର୍ଣ୍ଣିମା ଆଦି ଧୁମଧାମ୍‌ରେ ପାଳିତ ହୋଇଥାଏ ।

## ଶ୍ରୀ ସିଦ୍ଧ ବଳଦେବଜୀଉ ପୀଠ

କେନ୍ଦୁଝର ଗଡ଼ସ୍ଥ ପଶୁ ଡାକ୍ତରଖାନା ଓ ଦିଗ୍‌ଦହନ ପୁଷ୍କରିଣୀ ନିକଟରେ ଶ୍ରୀ ସିଦ୍ଧ ବଳଦେବଜୀଉଙ୍କ ମନ୍ଦିର ଅବସ୍ଥିତ । ଏଠାରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ପୂଜା ପାଆନ୍ତି । ଏଠାରେ କୌଣସି ବିଶେଷ ପର୍ବପର୍ବାଣୀ, ଉତ୍ସବ ଅନୁଷ୍ଠିତ ହୋଇ ନଥାଏ । ଅତୀତରେ ଏଠାରେ କିଛି ପର୍ବପର୍ବାଣୀ ହେଉଥିବା କଥା ପୁରୁଣା ଲୋକଙ୍କଠାରୁ ଶୁଣିବାକୁ ମିଳେ । ଏହି ଠାକୁରଙ୍କୁ ସ୍ଥାନୀୟ ଅଞ୍ଚଳରେ 'ଶ୍ୟାମରାୟ' ବୋଲି କୁହାଯାଇଥାଏ । ଅନ୍ୟ କିଛି ଲୋକ ଏହାକୁ 'ପୁଟୁକି ନାନୀ ଦେଉଳ' ବୋଲି କହନ୍ତି । କିନ୍ତୁ ଏହା ସିଦ୍ଧ ବଳଦେବଜୀଉ ମନ୍ଦିର ନାମରେ ଖ୍ୟାତ । ପୂର୍ବେ ଏହି ମନ୍ଦିର ଚତୁର୍ପାର୍ଶ୍ୱରେ ବେଢା ରହିଥିଲା । ମାତ୍ର, ଏବେ ତାହା ଭାଙ୍ଗିରୁଜି ଯାଇଛି । କେବଳ ମନ୍ଦିରଟିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ ରହିଛି । ଏହି ମନ୍ଦିରଟି ବଙ୍ଗ ଦେଶର ଗୌଡିୟ ରୀତିରେ ନିର୍ମିତ । କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ଭଞ୍ଜ (୧୭୬୨-୧୭୯୭) ବାମଣ୍ଡାର ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ବାରକୋଟଗଡ଼ରୁ ବିଜୟର ସ୍ମାରକୀ ସ୍ୱରୂପ



ଏହି ଠାକୁରଙ୍କୁ କେନ୍ଦୁଝରଗଡ଼ରେ ପ୍ରତିଷ୍ଠା କରିଥିଲେ । ପରେ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେଓ (୧୮୬୮-୧୯୦୫) ଏଠାରେ ଏହି ମନ୍ଦିର ନିର୍ମାଣ କରାଇଥିଲେ । ଏହି ସିଦ୍ଧବଳଦେବଙ୍କ ପୀଠ ଦୁଇ ଶହ ବର୍ଷର ଏକ ପୁରୁଣା ଦେବପୀଠ ହୋଇଥିଲେ ଏହା ଆଜି ଅବହେଳିତ ଅବସ୍ଥାରେ ପଡି ରହିଛି ।

## କେନ୍ଦୁଝର ସହରର ପ୍ରସିଦ୍ଧ ସିଦ୍ଧମଠ, ସିଦ୍ଧକାଳି, ସିଦ୍ଧ ଜଗନ୍ନାଥ ପୀଠ ଓ ଏହାର ମନୋରମ ଶୀତଳ ପରିବେଶ


ସିଦ୍ଧ ଜଗନ୍ନାଥ ମନ୍ଦିର

କେନ୍ଦୁଝର ସହରର ଉପକଣ୍ଠରେ ରହିଛି ବହୁ ପୁରାତନ ସିଦ୍ଧ କ୍ଷେତ୍ର; ସିଦ୍ଧମଠ । ଏହି ସିଦ୍ଧ କ୍ଷେତ୍ରରେ ସିଦ୍ଧ ଜଗନ୍ନାଥ ମୁଖ୍ୟ ଦେବତା ହୋଇଥିବାବେଳେ ଏଠାରେ ସିଦ୍ଧ କାଳି, ସିଦ୍ଧ ହନୁମାନ ଏବଂ ସିଦ୍ଧ ବଳଦେବଜୀଉ ଆଦି ଦେବଦେବୀ ପୂଜିତ ହୋଇଥାନ୍ତି । ଚୁଳିଆ ଓ ଗୋବରା ପାହାଡର ପାଦଦେଶ ତଥା ପ୍ରାକୃତିକ ସବୁଜ ଜଙ୍ଗଲଘେରା ପରିବେଶ ମଧ୍ୟରେ ଏହି ସିଦ୍ଧସାଧନା ପୀଠଟି ଅବସ୍ଥିତ । ଶ୍ରୀ ସିଦ୍ଧ ଜଗନ୍ନାଥ ହେଉଛନ୍ତି ସିଦ୍ଧପୀଠର ମୁଖ୍ୟ ଦେବତା । ଏହାବ୍ୟତୀତ ଏଠାରେ ମା' କାଳି ମନ୍ଦିର ରହିଛି । ଏହାକୁ ସିଦ୍ଧକାଳି ବୋଲି କୁହାଯାଏ । ଏଠାରେ ଅବସ୍ଥାପିତ ସିଦ୍ଧ ମହାବୀର ଏହି ପୀଠର ପୂଜା ପାଉଥିବା ଅନ୍ୟତମ ପ୍ରମୁଖ ଦେବତା । ସିଦ୍ଧ ଜଗନ୍ନାଥଙ୍କ ମନ୍ଦିରଟିର ଉଚ୍ଚତା ପ୍ରାୟ ୬୦ ଫୁଟ । ମନ୍ଦିର ତିନି ପାଖରେ ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଦିଗରେ ଯଥାକ୍ରମେ ବାମନ, ନୃସିଂହ ଓ ବରାହଙ୍କ କଳା ମୁଗୁନି ପଥର



ନିର୍ମିତ ମୂର୍ତ୍ତି ଶୋଭା ପାଉଛି । ଏହି ମନ୍ଦିରର ଗର୍ଭ ଗୃହରେ ସିଂହାସନ ଉପରେ ମୁଖ୍ୟ ଦେବତା ଭାବେ ଏକକ ଜଗନ୍ନାଥ ମୂର୍ତ୍ତି ଚକାପୀଠ ଉପରେ ଆସୀନ । ସିଂହାସନରେ ଶ୍ରୀଜୀଉଙ୍କ ବିଜେ ପ୍ରତିମା ଶ୍ରୀକୃଷ୍ଣଙ୍କ ଅଷ୍ଟଧାତୁ ମୂର୍ତ୍ତି ପୂଜା ପାଉଛି । ତାଙ୍କ ନିକଟରେ ଶିବଙ୍କର ଏକ ଦାରୁ ବିଗ୍ରହ ରହିଛି । ସିଦ୍ଧ ଜଗନ୍ନାଥଙ୍କ ରତ୍ନ ସିଂହାସନରେ ବଳଦେବଙ୍କର ଖୁବ୍ ଛୋଟ ମୂର୍ତ୍ତି ରହିଛି । ହୁଏତ, ବଳଦେବଜୀଉଙ୍କ ଏହି ଛୋଟ ମୂର୍ତ୍ତିଟିକୁ ପରବର୍ତ୍ତୀ କାଳରେ କେହି ପ୍ରତିଷ୍ଠା କରିଥାଇପାରନ୍ତି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ରତ୍ନ ସିଂହାସନ ପାର୍ଶ୍ୱରେ ମହାଲକ୍ଷ୍ମୀ ଓ ସରସ୍ୱତୀଙ୍କ ମୂର୍ତ୍ତି ପ୍ରତିଷ୍ଠା ହୋଇଛି । ମନ୍ଦିର ସମ୍ମୁଖ ଭାଗରେ ଗରୁଡ଼ ସ୍ତମ୍ଭ ବଦଳରେ ଏକ ସ୍ତମ୍ଭରେ ହନୁମାନ ଯୋଡ ହସ୍ତରେ ଶୋଭାପାଉଛନ୍ତି । ହନୁମାନ ସ୍ତମ୍ଭର କିଛି ଦୂରରେ ମହାଦେବ ସିଦ୍ଧେଶ୍ୱରଙ୍କ ଏକ ଛୋଟ ମନ୍ଦିର ରହିଛି । ପ୍ରତ୍ୟକ ବିଷ୍ଣୁ ମନ୍ଦିର ସମ୍ମୁଖରେ ଗରୁଡଙ୍କ ମୂର୍ତ୍ତି ରହିଥିବାବେଳେ ଏହି ଜଗନ୍ନାଥ ମନ୍ଦିର ସାମ୍ନାରେ ହନୁମାନଙ୍କ ମୂର୍ତ୍ତି ରହିଛି । ଏହି ହନୁମାନ ସ୍ତମ୍ଭ ନେଇ କିଛି ନିର୍ଦ୍ଦିଷ୍ଟ କାରଣ ଜଣାପଡି ନଥିଲେ ମଧ୍ୟ ଏହି ଜଗନ୍ନାଥଙ୍କୁ ଶ୍ରୀରାମ ରଘୁନାଥଙ୍କ ଅବତାର ଭାବେ ଗ୍ରହଣ କରାଯାଇଥାଏ । ସିଦ୍ଧ ଜଗନ୍ନାଥଙ୍କର ମନ୍ଦିର ଚର୍ତୁପାର୍ଶ୍ୱରେ ବେଢା ପାଚେରୀ ବୁଲାଯାଇଛି । ଏଠାରେ ରଥଯାତ୍ରା କିମ୍ବା ଶ୍ରୀଜୀଉଙ୍କର ବିଭିନ୍ନ ବେଶ ଅନୁଷ୍ଠିତ ହୋଇ ନଥାଏ ।


ମା' ସିଦ୍ଧକାଳୀଙ୍କର ମନ୍ଦିର

ସିଦ୍ଧ ଜଗନ୍ନାଥ ମନ୍ଦିର ବେଢ଼ା ବାହାରେ ମା' ସିଦ୍ଧକାଳୀଙ୍କର ମନ୍ଦିର ରହିଛି । ଏହି ମନ୍ଦିରର ଗର୍ଭଗୃହରେ ମା' ସିଦ୍ଧକାଳୀ ବିରାଜମାନ । ସେ ଦକ୍ଷିଣମୁଖୀ । ତାଙ୍କ ସମ୍ମୁଖରେ ଏକ ଶିବ ଲିଙ୍ଗ ରହିଛି । ପ୍ରାୟ ୮୦୦ ବର୍ଷ ପୁରୁଣା ଏହି କାଳି ମନ୍ଦିରରେ ମା' କାଳି ପୂଜା ପାଇ ଆସୁଛନ୍ତି । ମୁଗୁନି ପଥରରେ ନିର୍ମିତ ଦଶଭୂଜା ମା' କାଳିଙ୍କୁ ଏଠାରେ ପ୍ରତ୍ୟକ୍ଷ ଦେବୀ ଭାବେ ପୂଜା କରାଯାଇଥାଏ । ମା'ଙ୍କର ଦେହରେ କଂକାଳର ମାଳ ଥିବାବେଳେ ଦଶଭୂଜାରେ ଅଭୟ ମୁଦ୍ରା । ମା' ଖଡ୍ଗ, ଖପୁରୀ ଧାରଣ କରିଛନ୍ତି । ମା' ନିଜେ ନିଜ ହାତର ବୃଦ୍ଧାଙ୍ଗୁଳିକୁ କାମୁଡୁଥିବାର ଭୟଙ୍କର ମୁଦ୍ରାକୁ ନେଇ ଅନେକ ଭକ୍ତଙ୍କ ମହଲରେ ଭୟ ଥାଏ । ଅପରପକ୍ଷେ, ମାଆଙ୍କୁ ଏକ ତମ୍ବାର ଶିକୁଳିରେ ବନ୍ଧାଯାଇଛି । ପେଟ ଓ ମୁଣ୍ଡରେ ଗୋଟିଏ ଲେଖାଏ ଶିକୁଳି ମଧ୍ୟ ବନ୍ଧା ଯାଇଛି । ଏହାର କାରଣ ଅନେକ ଭକ୍ତ ଓ ଗବେଷକଙ୍କ ପାଇଁ ଅସ୍ପଷ୍ଟ । କୁହାଯାଏ, ବହୁବର୍ଷ ପୂର୍ବରୁ ତନ୍ତ୍ର ସାଧକମାନେ ସିଦ୍ଧମଠରେ ରହୁଥିଲେ । ସାଧକମାନେ ସିଦ୍ଧିଲାଭ କରିବା ପାଇଁ ଏଠାରେ ତନ୍ତ୍ର ସାଧନା କରିବା ସହିତ ତନ୍ତ୍ର ଦେବୀଙ୍କୁ ଆରାଧନା କରୁଥିଲେ । ଏଠାରେ ସିଦ୍ଧକାଳି ବ୍ୟତୀତ ସିଦ୍ଧ ଜଗନ୍ନାଥ, ସିଦ୍ଧ ହନୁମାନ, ସିଦ୍ଧ ଶିବ ଆଦି ପୂଜା ପାଇଆସୁଛନ୍ତି । ଏଠାରେ ପୂଜା ପାଉଥିବା ସିଦ୍ଧକାଳି ପ୍ରତ୍ୟକ୍ଷ ଦେବୀ । କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟାରେ ଏଠାରେ ମା'ଙ୍କ ପୂଜା, ଚଣ୍ଡୀପାଠ ଆଦି ଅନୁଷ୍ଠିତ ହୋଇଥାଏ । ପ୍ରତିବର୍ଷ କାଳିପୂଜା ଦିନ ଏଠାରେ ମା'ଙ୍କଠାରେ ସପ୍ତସତୀ ଚଣ୍ଡୀଙ୍କୁ ସଂପୂର୍ଣ୍ଣ ଆହୁତି ଦେବା ସହ ଚଣ୍ଡୀପାଠ, ଯଜ୍ଞ ଏବଂ ବିଳମ୍ବିତ ରାତ୍ରିରେ ନିଷାର୍ଦ୍ଧ ପୂଜା ଅନୁଷ୍ଠିତ ହୋଇଥାଏ । ପୂର୍ବକାଳରେ ମା'ଙ୍କ ପାଖକୁ ଯିବାକୁ ଲୋକେ ଭୟ କରୁଥିଲେ । କିନ୍ତୁ ୧୯୯୨ ମସିହାଠାରୁ କ୍ରମେକ୍ରମେ ଭକ୍ତମାନେ ଏଠାକୁ ଯିବାଆସିବା ଆରମ୍ଭ କରିଥିଲେ । ଏଠାରେ ମା' କାଳି ଦକ୍ଷିଣାମୁଖୀ ହୋଇ ପୂଜା ପାଉଛନ୍ତି । ଏଣୁ ଅନେକ ମା'ଙ୍କୁ ମନ୍ଦିର ବାହାରେ ଥାଇ ଗବାକ୍ଷ ଦେଇ ଦର୍ଶନ କରିଥାନ୍ତି । ମା'ଙ୍କ ନିକଟରେ ପୂଜା ପାଉଛନ୍ତି ମହାକାଳ ଅର୍ଥାତ୍ କାଳେଶ୍ୱର ଶିବ । କିନ୍ତୁ ଶିବ ଏଠାରେ ଶକ୍ତିହୀନ ବୋଲି କୁହାଯାଏ । ଏଠାରେ ଶିବଙ୍କର ଶକ୍ତି ଭାବରେ ମା' କାଳି ପୂଜା ପାଇଥାନ୍ତି । ମା'ଙ୍କର ପ୍ରସ୍ତର ମୂର୍ତ୍ତି ମାଟି ତଳକୁ କେତେଦୂରକୁ ଲମ୍ବିଛି ତାହା ସଠିକ୍ ଜଣାପଡିନାହିଁ ଏବଂ ମା'ଙ୍କ ଶରୀରରେ କିଏ ଓ କାହିଁକି ଶିକୁଳି ବାନ୍ଧିଛି ଏହା ସଂପର୍କରେ କିଛି ତଥ୍ୟ ନାହିଁ । ଏହା ଉପରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଏବେ ମଧ୍ୟ ନିଷାର୍ଦ୍ଧ ରାତିରେ ମା'ଙ୍କ ଦର୍ଶନ ନିମନ୍ତେ ଅଘୋରୀ ବାବାମାନେ ଏଠାକୁ ଆସୁଥିବାର ଶୁଣାଯାଏ । ରାଜାରାଜୁଡା ଶାସନ ଅମଳରେ କେନ୍ଦୁଝର ରାଜପରିବାରର ସଦସ୍ୟମାନେ ମା'ଙ୍କୁ ଅଧିଷ୍ଠାତ୍ରୀ ଦେବୀ ଭାବେ ପୂଜା କରିବା ସହିତ ରକ୍ଷଣାବେକ୍ଷଣ କରୁଥିଲେ । କିନ୍ତୁ ଏବେ ଏହି ପୀଠଟି ଅବହେଳିତ ହୋଇପଡିଛି । ଯଦିଚ କେନ୍ଦୁଝରରେ ମା' ତାରିଣୀଙ୍କୁ ରାଷ୍ଟ୍ରଦେବୀ ଭାବେ ସମସ୍ତେ ଗ୍ରହଣ କରନ୍ତି, ମାତ୍ର ସିଦ୍ଧକାଳି ହେଉଛନ୍ତି ଜିଲ୍ଲାର ସର୍ବପୁରାତନ ଦେବୀ । ପୂର୍ବେ ରାଜା, ସୈନ୍ୟସାମନ୍ତ ଧରି ଯୁଦ୍ଧକୁ ବାହାରିଲା ପୂର୍ବରୁ ଏଠାରେ ସିଦ୍ଧକାଳୀଙ୍କ ଆଶିର୍ବାଦ ଭିକ୍ଷା କରୁଥିଲେ ।



ସିଦ୍ଧ ମଠରେ ମହାଦେବ ଧବଳେଶ୍ୱର

ସିଦ୍ଧକାଳିଙ୍କ ଦକ୍ଷିଣ-ପୂର୍ବ ଦିଗକୁ ଅଳ୍ପ ଦୂରରେ ସିଦ୍ଧ ମହାବୀରଙ୍କ ମନ୍ଦିର ଅବସ୍ଥିତ । ଏଠାରେ ରାମେଶ୍ୱର ମହାଦେବଙ୍କ ମନ୍ଦିର, ନବଗ୍ରହ ମନ୍ଦିର, ଧ୍ୟାନ ମନ୍ଦିର, ଭଜନ ମନ୍ଦିର ନିର୍ମିତ ହୋଇଛି ।

ସିଦ୍ଧ ମଠରୁ କିଛି ଦୂର ଦକ୍ଷିଣ ଭାଗକୁ ଚାଲିଚାଲି ଗଲେ ସେଠାରେ ଏକ ପ୍ରାକୃତିକ ଝରଣା ପଡେ । ଏହି ଗିରି ଝରଣାର ଉତ୍ପତ୍ତି ସ୍ଥଳରେ ଏକ ଚାରିକୋଣିଆ ବଡ଼ କୁଣ୍ଡ ରହିଛି । ଏହାକୁ ଚୌବଜ୍ଜା କୁହାଯାଏ । ଏଠାରେ ମଧ୍ୟ ଏକ ଶିବ ମନ୍ଦିର ରହିଛି । ଏହି ମହାଦେବଙ୍କ ନାମ ଧବଳେଶ୍ୱର ।

ରାଜାରାଜୁଡା ଅମଳରୁ ସିଦ୍ଧମଠ ବିଭିନ୍ନ ଫଳ, ପୁଷ୍ପ ଓ ଔଷଧୀୟ ବୃକ୍ଷରେ ପରିପୂର୍ଣ୍ଣ ଏକ ମନୋରମ ସବୁଜ ଉଦ୍ୟାନର ମାନ୍ୟତା ଲାଭ କରିଥିଲା । ଏଠାରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଆମ୍ବ, ପଣସ, ଲିଚୁ, ପଫେଟା, କରମଂଗା, କଇଁଥ, ବେଲ, ବରକୋଳି, ଯେଉଠ, ଜାମୁ, କାଗିଜି, କମଳା, ଓଉ, ଅଶୋକ, ନାଗେଶ୍ୱର, ଛୁରୀଅନା, ମୁଚୁକୁନ୍ଦ, କଦମ୍ବ, କିଆ, କେତକୀ, ଚଂପା, ଚିନିଚଂପା, ତେଜପତ୍ର, ମଲ୍ଲୀ, ମାଳତୀ, ଯୁଈ, ଯାଇ, ହେନା, ହରିଡା, ବାହାଡା, ଅଁଳା, ପାତାଳଗରୁଡ଼ ଘିକୁଆଁରୀ, ପୋଦିନା, କାଠଚଂପା ଆଦି ନାନା ପ୍ରକାର ଫଳ, ଫୁଲ ଓ ଔଷଧୀୟ ବୃକ୍ଷ ରହିଥିଲା । ତେବେ ରକ୍ଷଣାବେକ୍ଷଣ ଅଭାବରୁ ଆଜି ସେହି ଉଦ୍ୟାନ ଏବେ ଶ୍ରୀହିନ ହୋଇଯାଇଛି ।

## ବଳଦେବଜୀଉଙ୍କ ମାଉସୀ ମା' ମନ୍ଦିର ଓ ପଞ୍ଚଲିଙ୍ଗେଶ୍ୱର

କେନ୍ଦୁଝର ସହରର ପୁରୁଣା ବଜାର ଅନ୍ତର୍ଗତ ବଳଦେବଜୀଉଙ୍କ ମନ୍ଦିର ନିକଟରେ ଶ୍ରୀଗୁଣ୍ଡିଚା ମନ୍ଦିର ଅଛି ଏବଂ ଏହାର ନିକଟରେ ପଞ୍ଚଲିଂଗେଶ୍ୱର ପୀଠ ରହିଛି । ଏହି ପଞ୍ଚଲିଙ୍ଗେଶ୍ୱରଙ୍କ ପାଇଁ ପାଞ୍ଚୋଟି ଛୋଟ ଛୋଟ ମନ୍ଦିର ଅଛି । ତେବେ ଏଠାରେ ଥିବା ପାଞ୍ଚୋଟି ଲିଙ୍ଗ ଭଗ୍ନ ଅବସ୍ଥାରେ



ମାଉସୀ ମା' ମନ୍ଦିର ନିକଟରେ ପଞ୍ଚଲିଙ୍ଗେଶ୍ୱର ମନ୍ଦିର

ପଡି ରହିଥିଲେ ମଧ୍ୟ ଏହାର ରକ୍ଷଣାବେକ୍ଷଣ ନେଇ କୌଣସି ଯତ୍ନ ନିଆଯାଉ ନଥିବା ଅଭିଯୋଗ ହୋଇଆସୁଛି । ଗୋଟିଏ ପରିସରରେ ପାଞ୍ଚୋଗୋଟି ଶିବ ମନ୍ଦିର ରହିଥିବାରୁ ଏହାକୁ ପଞ୍ଚଲିଙ୍ଗେଶ୍ୱର ମନ୍ଦିର ବୋଲି କୁହାଯାଏ । ଏହା ମଧ୍ୟ ପଞ୍ଚବକ୍ର ମହାଦେବ ଭାବେ ପରିଚିତ । କେନ୍ଦୁଝର ରାଜା ନରସିଂହ ଭଞ୍ଜଙ୍କ ଦ୍ୱାରା ଏହା ପ୍ରତିଷ୍ଠିତ ହୋଇଛି । ଏହି ପଞ୍ଚବକ୍ର ମହାଦେବଙ୍କୁ ନେଇ ଏକ କିମ୍ବଦନ୍ତୀ ରହିଛି । କେନ୍ଦୁଝର ରାଜା ଗୋପୀନାଥ ଭଞ୍ଜ (୧୭୧୯-୧୭୩୬)ଙ୍କ ପାଟରାଣୀ ଅପୁତ୍ରିକ ଥିବାରୁ ସେ ଦ୍ୱିତୀୟ ରାଣୀଙ୍କୁ ବିବାହ କରିଥିଲେ । ବିବାହର ଅଳ୍ପ ଦିନ ପରେ ସାନ ରାଣୀ ଏକ ପୁତ୍ର ସନ୍ତାନ ଜନ୍ମ ଦେଇଥିଲେ । ତାଙ୍କର ନାମ ଧନେଶ୍ୱର । ଏହାର କିଛି ଦିନ ପରେ ବଡ଼ରାଣୀଙ୍କର ଏକ ପୁତ୍ର ସନ୍ତାନ ଜନ୍ମ ହେଲା । ତାଙ୍କର ନାମ ନରସିଂହ । ସାନ ରାଣୀଙ୍କ ପୁତ୍ର ଧନେଶ୍ୱରଙ୍କଠାରୁ ବଡ଼ରାଣୀଙ୍କ ପୁତ୍ର ନରସିଂହ ବୟସରେ ସାନ । ମାତ୍ର ରାଜା ସାନ ରାଣୀଙ୍କ ପୁତ୍ର ଧନେଶ୍ୱରଙ୍କୁ ରାଜା କରିବାକୁ ଚାହୁଁଥିଲେ । ରାଜାଙ୍କ ଅନ୍ତେ ବଡ଼ରାଣୀଙ୍କ ପୁତ୍ର ନରସିଂହ ଯୁଦ୍ଧ କରି ସାନ ରାଣୀଙ୍କ ପୁତ୍ର ଧନେଶ୍ୱରଙ୍କୁ ପରାସ୍ତ କରି ସିଂହାସନ ଆରୋହଣ କରିଥିଲେ । ଏହି ଯୁଦ୍ଧରେ ପାଞ୍ଚ ଜଣ ବ୍ରାହ୍ମଣଙ୍କ ମୃତ୍ୟୁ ହୋଇଥିଲା । ଏଣୁ ରାଜା ନରସିଂହଙ୍କ ଉପରେ ବ୍ରହ୍ମହତ୍ୟା ଦୋଷ ଲାଗିବାରୁ ସେ ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ ବୀର ନରସିଂହପୁର ଶାସନ ପ୍ରତିଷ୍ଠା କଲେ । ଏହା ସହିତ ଯୁଦ୍ଧରେ ମୃତ୍ୟୁବରଣ କରିଥିବା ପାଞ୍ଚ ଜଣ ବ୍ରାହ୍ମଣଙ୍କ ମସ୍ତକକୁ ସମାଧି ଦେଇ ସେମାନଙ୍କ ମସ୍ତକ ପୋତା

ହୋଇଥିବା ସ୍ଥାନ ଉପରେ ଗୋଟିଏ ଲେଖାଏ ଶିବ ଲିଙ୍ଗ ପ୍ରତିଷ୍ଠା କଲେ । ରାଜା ଏହି ପାଞ୍ଚୋଟି ଶିବ ଲିଙ୍ଗ ପାଇଁ ପାଞ୍ଚଗୋଟି ମନ୍ଦିର ମଧ୍ୟ ପ୍ରତିଷ୍ଠା କରିଥିଲେ ।

## କେନ୍ଦୁଝର ପୁରୁଣା ବଜାରର ଲକ୍ଷ୍ମୀପାଦ ଉପତ୍ୟକା

କେନ୍ଦୁଝର ଜିଲ୍ଲାର ପ୍ରାଚୀନ ପୌରାଣିକ ପୀଠ ଲକ୍ଷ୍ମୀପାଦ ଉପତ୍ୟକାକୁ ନେଇ ଅନେକ କିମ୍ବଦନ୍ତୀ ଓ ଲୋକ କଥା ରହିଛି । କିଛି ଗବେଷକ ଏହାକୁ ଏକ ବୌଦ୍ଧପୀଠ ଭାବେ ଉପସ୍ଥାପନ କରୁଥିବାବେଳେ




ଆଉ କିଛି ଏହାକୁ ବୈଷ୍ଣବ ପୀଠ ଭାବେ ବର୍ଣ୍ଣନା କରନ୍ତି । ଶ୍ରୀବଳଦେବଜୀଉ ମନ୍ଦିର, ସିଦ୍ଧମଠ ଓ ରାଜବାଟୀର ନିକଟରେ ରହିଛି ଏହି 'ଲକ୍ଷ୍ମୀପାଦ' ଉପତ୍ୟକା । କେନ୍ଦୁଝରଗଡ଼ ନିକଟରେ 'ଲକ୍ଷ୍ମୀପାଦ ହୁଡି' ନାମରେ ଏକ ଛୋଟ ପାହାଡ ରହିଛି । ଏଠାରେ ପଥର ଉପରେ ଏକ ପାଦଚିହ୍ନ ରହିଛି । ଏହାକୁ ହିନ୍ଦୁ ଧର୍ମର ଧନସଂପଦର ଦେବୀ ବିଷ୍ଣୁପତ୍ନୀ ଲକ୍ଷ୍ମୀଙ୍କର ପାଦଚିହ୍ନ ବୋଲି ସ୍ଥାନୀୟ ଲୋକେ କହନ୍ତି । ମାତ୍ର, ଏହା ବୌଦ୍ଧ ଶ୍ରମଣା ସିଦ୍ଧାଚାର୍ଯ୍ୟା ଯୋଗିନୀ ଲକ୍ଷ୍ମୀଙ୍କରା (କେନ୍ଦୁଝରର ରାଜା ଶାନ୍ତିଭଂଜଙ୍କ ପତ୍ନୀ)ଙ୍କ ପାଦ ଚିହ୍ନ ହୋଇଥାଇପାରେ ବୋଲି ଆଉ କିଛି ଗବେଷକ ମତବ୍ୟକ୍ତ କରନ୍ତି । ସାଧାରଣତଃ ବୌଦ୍ଧ ଧର୍ମର ସିଦ୍ଧ ଆଚାର୍ଯ୍ୟ, ଆଚାର୍ଯ୍ୟାମାନଙ୍କ ସହିତ 'ପାଦ' ଶବ୍ଦ ଯୋଗ କରାଯାଇଥାଏ । ଏଣୁ ଲକ୍ଷ୍ମୀଙ୍କରାଙ୍କ ନାମ ସହିତ ପାଦ ଶବ୍ଦ ଯୋଗ କରାଯାଇ ଏହାକୁ ଲକ୍ଷ୍ମୀପାଦ ପାହାଡ ବୋଲି କୁହାଯାଉଛି । ଏଠାରେ ଏକ ଛୋଟ ଝରଣା ରାଜପ୍ରାସାଦ ଆଡକୁ




ପ୍ରବାହିତ ହୋଇଥାଏ । ଏଠାରେ ବିଷ୍ଣୁଙ୍କର ଏକ ମୂର୍ତ୍ତି ରହିଛି । ଅପରପକ୍ଷେ, ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହି ଲକ୍ଷ୍ମୀପାଦର ଉପସ୍ଥିତିକୁ ଗବେଷକମାନେ ପ୍ରତିଷ୍ଠିତ କରାଇପାରିଛନ୍ତି । କୁହାଯାଉଛି କେନ୍ଦୁଝରଗଡ଼ଠାରେ ଲକ୍ଷ୍ମୀଙ୍କର ଗୋଟିଏ ପାଦ ଥିବାବେଳେ ବଣେଇଗଡ଼ଠାରେ ଆଉ ଗୋଟିଏ ପାଦ ରହିଛି । ସବୁଠୁ ଆଶ୍ଚର୍ଯ୍ୟର ବିଷୟ କେନ୍ଦୁଝରଗଡ଼ ଓ ବଣେଇଗଡ଼ ଅଞ୍ଚଳ ହେଉଛି ଧନସଂପଦରେ ପରିପୂର୍ଣ୍ଣ । ଅର୍ଥାତ୍ ଏଠାରେ ଲକ୍ଷ୍ମୀ ଅବସ୍ଥାନ କରିଥାନ୍ତି ବୋଲି କିଛି ଗବେଷକ ମତବ୍ୟକ୍ତ କରିଥାନ୍ତି । କେନ୍ଦୁଝରଗଡ଼ ଓ ସୁନ୍ଦରଗଡ଼ର ବଣେଇ ମଧ୍ୟରେ ଦେଶର ସର୍ବାଧିକ ପରିମାଣରେ ଉନ୍ନତ ମାନର ଲୁହାପଥର ଗଛିତ ରହିଛି । ଏଣୁ ଏଠାରେ ଥିବା ଲକ୍ଷ୍ମୀ ପାଦକୁ ନେଇ ଲୋକ କଥାରେ ମଧ୍ୟ ଯଥେଷ୍ଟ ବୈଜ୍ଞାନିକ ସତ୍ୟତା ରହିଛି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହି ଉପତ୍ୟକାରେ ମହାଦେବ ଅଗ୍ନିଶ୍ୱରଙ୍କ ଏକ ମନ୍ଦିର ରହିଛି । ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ ବେଶ୍ ଧୂମଧାମରେ ପାଳିତ ହୋଇଥାଏ । ଏହା ସାଙ୍ଗକୁ ପ୍ରତି ସଂକ୍ରାନ୍ତି ଓ ସୋମବାର ଦିନ ଏଠାରେ ଭକ୍ତଙ୍କ ସମାବେଶ ଘଟିଥାଏ । କେନ୍ଦୁଝରଗଡ଼ରୁ ବାଂଶପାଳ ଯିବାବେଳେ ଦଅଁଳା ଗ୍ରାମ ପରେ ଗୋଟିଏ ବଡ଼ ନାଳ ପଡେ । ନାଳଟିର ନାମ 'ପଖାଳ ଭୁଞ୍ଜା' । ଲୋକବିଶ୍ୱାସ ଅନୁସାରେ ଲକ୍ଷ୍ମୀ ଠାକୁରାଣୀ ଏଠାରେ ପଖାଳ ଭୁଞ୍ଜିଥିଲେ । ଏଣୁ ଏହି ନାଳର ନାମ ପଖାଳଭୁଞ୍ଜା ହୋଇଛି ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି । ଭୂୟାଁ ପୀଢର ପ୍ରତ୍ୟକ ଗ୍ରାମରେ 'ଲକ୍ଷ୍ମୀଘର' ବୋଲି ଗୋଟିଏ ଗୋଟିଏ ଘର ରହିଥାଏ । ଲକ୍ଷ୍ମୀଙ୍କରାଙ୍କ ପ୍ରଭାବରେ ଏହି ଲକ୍ଷ୍ମୀଘର ଭୂୟାଁପୀଢରେ

ସୃଷ୍ଟି ହୋଇଥାଇପାରେ ବୋଲି ଗବେଷକ ମତବ୍ୟକ୍ତ କରନ୍ତି । କାରଣ ଭୂୟାଁ ପୀଢରେ ଥିବା 'ଲକ୍ଷ୍ମୀଘର'ରେ ବିଷ୍ଣୁପତ୍ନୀ ଲକ୍ଷ୍ମୀଙ୍କ ପୂଜା ହୋଇ ନଥାଏ । ଏଣୁ ଏହା ବୌଦ୍ଧ ଯୋଗିନୀ ଲକ୍ଷ୍ମୀଙ୍କରା ପ୍ରଭାବ ବୋଲି ଗବେଷକଙ୍କ ମତ ।

## କେନ୍ଦୁଝର ରାଜ ଉଆସରେ ଥିବା 'ଗଡ଼ ତାରିଣୀ', ରହସ୍ୟମୟ 'ଦଣ୍ଡଦେବୀ' ଏବଂ ଶ୍ରୀ ମଦନମୋହନଜୀଉ ମନ୍ଦିର

କେନ୍ଦୁଝର ରାଜପ୍ରାସାଦ ପରିସରରେ ମା' ତାରିଣୀଙ୍କ ମୂର୍ତ୍ତି ପୂଜା ହୋଇଆସୁଛି । ପୂର୍ବରୁ ରାଜ ଉଆସରେ ମା' ତାରିଣୀଙ୍କ ପ୍ରତୀକ ଶିଳା ପୂଜା ପାଉଥିଲା । ପ୍ରବାଦ ଅଛି ସେହି ଶିଳା ଘଟଗାଁରେ ପୂଜା ପାଉଥିବା ପ୍ରତୀକ ଶିଳାର ପାର୍ଶ୍ୱରୁ ଅଣାଯାଇଥିଲା । ଉଆସରେ ତାରିଣୀଙ୍କର ଏକ ଛତ୍ର ରହିଛି । ଘଟଗାଁ ମା' ତାରିଣୀଙ୍କ ସହିତ ଗଡ଼ ତାରିଣୀଙ୍କ ଛତ୍ର ମଧ୍ୟ ପୂଜା ପାଇଥାନ୍ତି ।ତାରିଣୀ ଛତ୍ରରେ ଲାଗିଥିବା ରୂପା ଆବୃତ ଦଣ୍ଡର ଉଚତା ପ୍ରାୟ ସାଢେ ଛଅ ଫୁଟ । ଛତ୍ରଟି ପାଟଳ ବର୍ଣ୍ଣର ପାଟ କନାରେ ଆବୃତ ।

କେନ୍ଦୁଝର ରାଜା ପ୍ରତିବର୍ଷ ଛତିଶା ନିଯୋଗରେ ଦଶହରା ପଦାକୁ ଯିବାବେଳେ ତାରିଣୀଙ୍କ ଛତ୍ର ମଧ୍ୟ ତାଙ୍କ ସହିତ ଛତିଶା ନିଯୋଗ ଶୋଭାଯାତ୍ରାରେ ଦଶହରା ପଦାକୁ ଯାଇଥାଏ । ଅତୀତରେ କେନ୍ଦୁଝର ରାଜା ଅନ୍ୟ ରାଜ୍ୟ ସହ ଯୁଦ୍ଧ କରିବାକୁ ଗଲାବେଳେ ସେତେବେଳେ ତାରିଣୀ ଛତ୍ର ସୈନ୍ୟବାହିନୀର ସମ୍ମୁଖ ଭାଗରେ ଯାତ୍ରା କରୁଥିଲେ । ରାଜା ଗୋବିନ୍ଦ ଭଞ୍ଜ ମା' ତାରିଣୀଙ୍କ ମୂର୍ତ୍ତି ପୂଜା ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ମା' ତାରିଣୀଙ୍କ ଏକ ପୀଢ ମନ୍ଦିର ନିର୍ମାଣ କରାଯାଇ ସମ୍ମୁଖ ଭାଗରେ ଏକ ଛାତଘର ସଂଯୋଗ କରାଯାଇଛି । ଛାତ ଘରଟି ମୁଖଶାଳା ଭାବେ ବ୍ୟବହୃତ ହୋଇଥାଏ । ପୂର୍ବରୁ ରାଜ ଉଆସ ମଧ୍ୟରେ ପୂଜା ପାଇଆସୁଥିବା ମା' ତାରିଣୀଙ୍କ ପ୍ରତୀକ ଶିଳାକୁ ନେଇ ମାଛକାନ୍ଦଣା ନଦୀର ସାନଘାଗରା ଜଳ ପ୍ରପାତର ନିମ୍ନ ଭାଗରେ ଥିବା ଦର୍ହ ମଧ୍ୟରେ ବିସର୍ଜନ କରାଯାଇଛି । ଏଣୁ ଏହାକୁ 'ତାରିଣୀ ଦର୍ହ' ମଧ୍ୟ କୁହାଯାଏ । କେନ୍ଦୁଝର ପୁରୁଣା ବଜାରର ବୈଦ୍ୟରାଜସାହି, ନଳାଘାଟସାହି, ଖିଡିକିଦ୍ୱାରସାହିର ଲୋକମାନେ ପ୍ରତିବର୍ଷ ଚୈତ୍ର ମାସରେ ଘରପୋଡିଆ ଭୋଜି କରିବାକୁ ସାନଘାଗରାକୁ ଯାଆନ୍ତି । ସେଠାରେ ମା' ତାରିଣୀଙ୍କ ଉଦ୍ଦେଶ୍ୟରେ ବୋଦା ବଳି ଦେଇ ଭୋଜିଭାତର ଆୟୋଜନ କରିଥାନ୍ତି ।

ମା' ତାରିଣୀ ଏଠାରେ ଚତୁର୍ଭୁଜା । ସେ ଦଣ୍ଡାୟମାନ ଅବସ୍ଥାରେ ପୂଜା ପାଉଛନ୍ତି । ମୂର୍ତ୍ତିର ପଛ ପାଖରେ ତୋରଣ ଆକାରର ଏକ ମେଢ ରହିଛି । ଏହି ମେଢର ଶୀର୍ଷ ଦେଶର ମଧ୍ୟ ଭାଗରେ ଏକ ରାହୁ ମୁଣ୍ଡ ରହିଛି । ମା' ତାରିଣୀ ଏକ ପଦ୍ମ ପୀଠ ଉପରେ ଦଣ୍ଡାୟମାନ । ଏଠାରେ ମା' ତାରିଣୀ, ସିଂହ ଓ ମହିଷାସୁରଙ୍କ ମୂର୍ତ୍ତି ରହିଛି । ମା'ଙ୍କର ଉର୍ଦ୍ଧ୍ୱ ବାମ ହସ୍ତରେ ଶଙ୍ଖ ଓ ଡାହାଣ

ହାତରେ ଚକ୍ର ଶୋଭା ପାଇଥାଏ । ସେ ବାମ ପାଦଟି ପଦ୍ମ ପୀଠରେ ରଖିଥିବାବେଳେ ଡାହାଣ ପାଦଟି ସିଂହ ପୃଷ୍ଠ ଉପରେ ରଖିଛନ୍ତି । ନିମ୍ନ ଦୁଇ ହସ୍ତରେ ଶୂଳ ଧାରଣ କରି ମହିଷାସୁର ବକ୍ଷକୁ ଭେଦ କରିଛନ୍ତି ।

ମନ୍ଦିରର ଗର୍ଭଗୃହର ମଧ୍ୟ ଭାଗରେ ତିନି ଫୁଟ ଉଚ୍ଚତା ବିଶିଷ୍ଟ ଏକ ସୁସଜ୍ଜିତ ସିଂହାସନ ଉପରେ ମା' ତାରିଣୀଙ୍କର କଳାମୁଗୁନି ପଥର ନିର୍ମିତ ପ୍ରତିମା ସ୍ଥାପିତ ହୋଇଛି । ମା' ତାରିଣୀଙ୍କ ଗର୍ଭଗୃହର ପୂର୍ବ, ଉତ୍ତର ଓ ଦକ୍ଷିଣ ଦିଗର କାନ୍ଥ ଧାରେଧାରେ ପଶୁପତି ଶିବ, ଗଣେଷ, କାର୍ତ୍ତିକ, ଅନ୍ଧାରୀ, ଦୁର୍ଗା, ଦ୍ୱାରପାଳ, କ୍ଷେତ୍ରପାଳ, ମହାଲକ୍ଷ୍ମୀ ପ୍ରମୁଖ ପୂଜା ପାଉଛନ୍ତି । ବଡ଼ାମ୍, ବଡାମୁଣି, ଶାଣଦେଈ, ରଂଜେଇଶୁଣି, ଦୁଆରଶୁଣୀ, ଚାମୁଖୀ ଆଦିଦେବଦେବୀଙ୍କର ପ୍ରତୀକ ଶିଳା ମୂର୍ତ୍ତି ମଧ୍ୟ ଗଡ଼ ତାରିଣୀଙ୍କ ମନ୍ଦିରରେ ରହି ପୂଜା ପାଉଛନ୍ତି । ଏଠାରେ ଥିବା ଦେହୁରୀ (ପୂଜକ) ଆଦିବାସୀ ସାଉଁଟି ସଂପ୍ରଦାୟର ହୋଇଥିବାବେଳେ ଘଟଗାଁର ଦେହୁରୀ ହେଉଛନ୍ତି କନ୍ଧ ଆଦିବାସୀ ସଂପ୍ରଦାୟର ।

ସେହିଭଳି କେନ୍ଦୁଝର ରାଜପ୍ରାସାଦରେ ପୁରୋଦେବୀ ଭାବେ 'ଦଣ୍ଡଦେବୀ' ପୂଜା ପାଉଛନ୍ତି । ଏହି ଦଣ୍ଡଦେବୀ କେନ୍ଦୁଝରବାସୀଙ୍କ ପାଇଁ ଖୁବ୍ ରହସ୍ୟମୟୀ ଦେବୀ ଭାବେ ଜଣାଶୁଣା । ଦଣ୍ଡଦେବୀଙ୍କୁ ଆଜି ପର୍ଯ୍ୟନ୍ତ କେହି ସାକ୍ଷାତ ଦର୍ଶନ କରିନାହାନ୍ତି ବୋଲି ସ୍ଥାନୀୟ ଅଞ୍ଚଳରେ ଆଲୋଚନା ହୋଇଥାଏ । ବହୁ ନିଷ୍ଠାର ସହ ଦଣ୍ଡଦେବୀଙ୍କୁ ପୂଜା ଆରାଧନା କରାଯାଇଥାଏ । ଦଣ୍ଡ ଦେବୀ କୋପ କଲେ ପ୍ରଳୟ ହୋଇଯିବ ବୋଲି ଲୋକବିଶ୍ୱାସ ରହିଛି । କେନ୍ଦୁଝରର ରାଷ୍ଟ୍ରଦେବୀ ମାନ୍ୟତ ଲାଭ କରିଥିବା ମା' ତାରିଣୀଙ୍କୁ ରାଜା ଓ ପ୍ରଜାମାନେ ଦର୍ଶନ ଓ ପୂଜା କରୁଥିବାବେଳେ ମା' ଦଣ୍ଡ ଦେବୀଙ୍କୁ ଦର୍ଶନ କରିହୁଏ ନାହିଁ । ମାତ୍ର, ଦଣ୍ଡଦେବୀଙ୍କ ମହିମା କାହାକୁ ଅଜଣା ନାହିଁ । କେନ୍ଦୁଝର ରାଜା ନରସିଂହ ଭଞ୍ଜଙ୍କ ରାଜତ୍ୱ କାଳରେ (ଖ୍ରୀ.ଅ. ୧୭୩୬-୧୭୫୮) ଦଣ୍ଡଦେବୀଙ୍କୁ ରାଜପ୍ରାସାଦ ମଧ୍ୟରେ ଅବସ୍ଥାପନ କରାଯାଇଥିଲା ବୋଲି କୁହାଯାଏ । ରାଜା ଜଣେ ଦଣ୍ଡି ସନ୍ନ୍ୟାସୀଙ୍କଠାରୁ ଏହି ଦେବୀଙ୍କୁ ପ୍ରାପ୍ତ ହୋଇଥିବାରୁ ତାଙ୍କର ନାମ 'ଦଣ୍ଡଦେବୀ' ରଖାଯାଇଥିଲା ।

କେନ୍ଦୁଝର ରାଜବଂଶର ପୁରୋଦେବତା ଭାବେ ଶ୍ରୀ ମଦନମୋହନଜୀଉ ପୂଜା ପାଇ ଆସୁଛନ୍ତି । ସେ ରାଜପରିବାରର କୂଳ ଦେବତା । ରାଜା ଗୋବିନ୍ଦ ଭଞ୍ଜ (୧୬୦୩-୧୬୩୪) ମଦନମୋହନଜୀଉଙ୍କୁ ପୁରୀରୁ ଆଣି ରାଜ ଦୂର୍ଗରେ ସ୍ଥାପନ କରିଥିଲେ । ମଦନମୋହନଜୀଉଙ୍କ ପୂର୍ବରୁ ରାଜଦୂର୍ଗରେ ଗଡ଼ରଘୁନାଥ ପୁରୋଦେବତା ଭାବେ ପୂଜା ପାଉଥିଲେ । ତାଙ୍କର ସେବା ପୂଜା ଏବେ ମଧ୍ୟ କରାଯାଇଥାଏ । ମଦନମୋହନଜୀଉଙ୍କ ମୂର୍ତ୍ତି କଳାମୁଗୁନି ପଥରରେ ନିର୍ମିତ ଏବଂ ତ୍ରିଭଂଗୀ ଛନ୍ଦରେ ଦଣ୍ଡାୟମାନ ଏକ କୃଷ୍ଣ ମୂର୍ତ୍ତି ଅଟେ । ପରେ ମଦନମୋହନଙ୍କ ନିକଟରେ ଏକ ଶ୍ରୀରାଧାଙ୍କ ମୂର୍ତ୍ତି ପ୍ରତିଷ୍ଠା ହୋଇଛି । ରାଜା ଛୋଟରାୟ ଲକ୍ଷ୍ମୀ ନାରାୟଣ ଭଂଜଦେବ ଏହି ଶ୍ରୀରାଧା ମୂର୍ତ୍ତି ପ୍ରତିଷ୍ଠା କରିଛନ୍ତି । ମଦନମୋହନଙ୍କ ବିଜେ ପ୍ରତିମା ଶ୍ରୀ ଜୟଗୋପାଳ ଅଷ୍ଟଧାତୁ ନିର୍ମିତ ଏକ

କମନୀୟ କୃଷ୍ଣ ପ୍ରତିମା ଅଟେ । ଏଠାରେ ଇନ୍ଦ୍ରନାରାୟଣ, ଦୁର୍ଗାମାଧବ, ଶାଳଗ୍ରାମ ଶିଳା ଓ ଅନେକ ଦେବଦେବୀଙ୍କ ମୂର୍ତ୍ତି ପୂଜା ପାଇଥାଏ । ଶ୍ରୀ ମଦନମୋହନଜୀଉଙ୍କ ମନ୍ଦିରରେ ବିଭିନ୍ନ ପର୍ବପର୍ବାଣୀ ପାଳନ କରାଯାଇଥାଏ । ବୈଶାଖ ମାସରେ ମହାବିଷୁବ ସଂକ୍ରାନ୍ତି ଏଠାରେ ଧୂମଧାମରେ ପାଳିତ ହୋଇଥାଏ । ଅକ୍ଷୟ ତୃତୀୟଠାରୁ ୨୧ ଦିନ ପର୍ଯ୍ୟନ୍ତ ମଦନମୋହନଙ୍କ ବିଜେ ପ୍ରତିମା ଜୟଗୋପାଳ ଚାପ ଖେଳିବାକୁ ବିଜେ କରିଥାନ୍ତି । ବଳଦେବଜୀଉଙ୍କ ପାଲିଙ୍କି ମଦନମୋହନଙ୍କ ମନ୍ଦିର ସମ୍ମୁଖରେ ପହଞ୍ଚିଲେ ମଦନମୋହନଙ୍କ ପଟୁଆର ବାହାରି ବଳଦେବଙ୍କ ପଟୁଆର ସହିତ ମିଶେ । ଚନ୍ଦନ ପୋଖରୀକୁ ଉଭୟ ଠାକୁର ଯାଇ ମାଜଣା ଘାଟରେ ଚଉଦୋଳାରୁ ଓହ୍ଲାଇ ଯୋଡି ନାଆ ମଧ୍ୟସ୍ଥ ବିମାନରେ ବିଜେ କରି ଚନ୍ଦନପୋଖରୀ ମାଟିଆବନ୍ଧର ମନ୍ଦିର ମଧ୍ୟରେ ଥିବା ସିଂହାସନରେ ବିଜେ କରନ୍ତି । ସେଠାରେ ଉଭୟ ଠାକୁରଙ୍କ ପୂଜାର୍ଚ୍ଚନା ହୋଇଥାଏ । ଜ୍ୟେଷ୍ଠମାସ ଶୁକ୍ଳ ପଞ୍ଚମୀରେ ପାର୍ବତୀ ବିବାହ ଓ ଶୀତଳ ଷଷ୍ଠୀ ଅବସରରେ ଆୟୋଜିତ ନଗର ଭ୍ରମଣ ଉତ୍ସବରେ ଶ୍ରୀବଳଦେବଜୀଉ ଓ ଶ୍ରୀସିଦ୍ଧ ଜଗନ୍ନାଥଙ୍କ ସହ ମିଶି ଏକାମ୍ର ବନବିହାରୀଙ୍କ ମନ୍ଦିରରେ ଅନୁଷ୍ଠିତ ପାର୍ବତୀ ବିବାହ ଉତ୍ସବରେ ଯୋଗ ଦେଇଥାନ୍ତି । ସେହିମାସ ଶୁକ୍ଳପକ୍ଷ ଏକାଦଶୀରେ ରୁକ୍ମିଣୀ ବିବାହ ଉତ୍ସବ ଶ୍ରୀ ବଳଦେବଜୀଉଙ୍କ ମନ୍ଦିରରେ ଅନୁଷ୍ଠିତ ହୋଇଥାଏ । ଶ୍ରାବଣ ଅମାବାସ୍ୟାରେ ଏଠାରେ ଚିତଉ ପିଠା ଭୋଗଲାଗି କରାଯାଇଥାଏ । ଶ୍ରାବଣ ପୂର୍ଣ୍ଣିମା ବା ଗହ୍ମା ପୂର୍ଣ୍ଣିମା ଦିନ ଠାକୁରଙ୍କ ଅଭିଷେକ କରାଯାଏ । ଏହା ବ୍ୟତୀତ ମଦନମୋହନଜୀଉଙ୍କ ପୀଠରେ ଭାଦ୍ରବ ମାସ କୃଷ୍ଣ ପକ୍ଷ ଅଷ୍ଟମୀ ତିଥିରେ ହରିଜନ୍ମ ଉତ୍ସବ ଆଡମ୍ବର ସହକାରେ ପାଳିତ ହୋଇଥାଏ । ବକୁଳ ଅମାବାସ୍ୟାରେ ବକୁଳ ଲାଗି, କୁମାର ପୂର୍ଣ୍ଣିମା, ଦୀପାବଳୀ, ପ୍ରଥମାଷ୍ଟମୀ, ରାଧାଷ୍ଟମୀ, ମକର ସଂକ୍ରାନ୍ତି, ଧନୁ ସଂକ୍ରାନ୍ତି ଆଦି ନାନା ପ୍ରକାର ପର୍ବପର୍ବାଣୀ ପାଳିତ ହୋଇଥାଏ । ମଦନମୋହନଜୀଉଙ୍କ କୋଠ ଅଧୀନରେ ଶ୍ରୀଗଡ଼ରଘୁନାଥ, ରାଜ ଦୁର୍ଗର ବଡ଼ଦ୍ୱାର ନିକଟରେ ମହାଦେବ ମୁକ୍ତେଶ୍ୱର ମହେଶ ଏବଂ କରଣସାହିରେ ବ୍ରଜମୋହନଜୀଉଙ୍କ ମନ୍ଦିର ରହିଛି । ମୁକ୍ତେଶ୍ୱର ମହାଦେବ ମନ୍ଦିରଟି ଗଡ଼ସାହିର ଶେଷ ଭାଗରେ ଅବସ୍ଥିତ । ଏହି ମନ୍ଦିରଟି ବହୁତ ପ୍ରାଚୀନ ଏବଂ ଏହା ଏକ ରେଖ ମନ୍ଦିର । ସେହିଭଳି ବ୍ରଜମୋହନଙ୍କ ମନ୍ଦିରଟି ମଧ୍ୟ ବେଶ୍ ପ୍ରାଚୀନ ଏବଂ ଏହା ଏକ ପୀଢ ମନ୍ଦିର । ବ୍ରଜମୋହନ ମନ୍ଦିରରେ ଶ୍ରୀକୃଷ୍ଣଙ୍କର ଏକ କଳାମୁଗୁନି ପଥର ନିର୍ମିତ କମନୀୟ ମୂର୍ତ୍ତି ବ୍ରଜମୋହନଜୀଉ ଭାବେ ପୂଜା ପାଇ ଆସୁଛନ୍ତି ।

## ଆନନ୍ଦପୁର ଉପଖଣ୍ଡର ବୌଦ୍ଧ ଓ ଜୈନ ପର୍ଯ୍ୟଟନ

## ଚକ୍ରତୀର୍ଥ, ଗଡଚଣ୍ଡୀ ପୀଠ, ବୈଦ୍ୟାଖିଆ, ପୋଡାସିଙ୍ଗିଡି, ଫକୀରପୁର

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡଟି ଏକ ପ୍ରାଚୀନ ବୌଦ୍ଧ ଓ ଜୈନ କ୍ଷେତ୍ର ଭାବେ ବେଶ୍ ପରିଚିତ । ଚକ୍ରତୀର୍ଥ, ଗଡ଼ଚଣ୍ଡୀ, ପୋଡାସିଙ୍ଗିଡି, ଫକୀରପୁର, ଦେଓଗାଁ, ଓ ଐତିହାସିକ ବୈଦ୍ୟାଖିଆ




ଆଦି ଅଞ୍ଚଳ ସମଗ୍ର ରାଜ୍ୟରେ ପ୍ରାଚୀନ ବୌଦ୍ଧ ଓ ଜୈନ ପୀଠ ଭାବେ ପରିଚିତ । ଏଠାରେ ପ୍ରତି ବର୍ଷ ଶୀତ ଋତୁରେ ବହୁ ସଂଖ୍ୟାରେ ପର୍ଯ୍ୟଟକଙ୍କ ଭିଡ ଦେଖିବାକୁ ମିଳିଥାଏ । ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ହାଟଡିହି ବ୍ଲକ୍‌ର ବଉଳା ପର୍ବତମାଳାର ପାଦଦେଶରେ ରହିଛି ଗଡ଼ଚଣ୍ଡୀ ପୀଠ । ବୌଦ୍ଧ ଓ ଜୈନ ଯୁଗର କିର୍ତ୍ତୀରାଜିସମୃଦ୍ଧ ଏହି ଅଞ୍ଚଳର ସ୍ୱତନ୍ତ୍ର ଖ୍ୟାତି ରହିଛି । ଗଡ଼ଚଣ୍ଡୀଠାରେ ଥିବା ଗୁମ୍ଫାରେ ବୌଦ୍ଧତନ୍ତ୍ରର ଦେବୀ ଚାମୁଣ୍ଡାଙ୍କୁ ପୂଜା କରାଯାଉଥିବା ବିଶ୍ୱାସ କରାଯାଏ । ହିନ୍ଦୁ ପୁରାଣ ମତ ଅନୁସାରେ ଅତୀତରେ ଗଡ଼ଚଣ୍ଡୀ ପାହାଡ ଉପରେ ପୂଜା ପାଇ ଆସୁଥିଲେ । କେନ୍ଦୁଝର ଭଂଜବଂଶର ତତ୍କାଳୀନ ରାଜା ଗଡ଼ଚଣ୍ଡୀଙ୍କ ପୂଜାର୍ଚ୍ଚନା ପାଇଁ ଦେହୁରୀଙ୍କୁ ନିୟୋଜନ କରିଥିଲେ । ଏକଦା ଦେହୁରୀ ପୂଜା ସାରି ଫେରିବା ପରେ ସେଠାରେ ତାଙ୍କ କତାଟିକୁ ଛାଡି ଆସିଥିଲେ । ପରେ ପୂଜକ କତା ପାଇଁ ଆଣିବାକୁ ଯିବାବେଳେ ମା' ଗଡ଼ ଚଣ୍ଡୀ ରକ୍ତ ପିଉଥିବାର ଦେଖିବାକୁ ପାଇଥିଲେ । ମା' ପୂଜକ ଉପରେ କ୍ରୋଧାନ୍ୱିତ ହୋଇ କତାଟିକୁ ପାହାଡ ତଳକୁ ଫିଙ୍ଗି ଦେଇଥିଲେ । ସେଦିନ ମା' ଗଡ଼ଚଣ୍ଡୀ ପୂଜକକୁ ଚେତାବନୀ ଦେଇ ଛାଡି ଦେଇଥିଲେ ଏବଂ



ଗଡଚଣ୍ଡୀ ପୀଠରେ ପୂଜିତ ହେଉଥିବା ବୌଦ୍ଧ ଓ ଜୈନ ଦେବଦେବୀ



ଗଡଚଣ୍ଡୀ ପୀଠରେ ପୂଜିତ ହେଉଥିବା ବୌଦ୍ଧ ଓ ଜୈନ ଦେବଦେବୀ

କତାଟି ପାହାଡର ପାଦଦେଶରେ ଯେଉଁଠି ପଡିଥିବ ସେଠାରେ ତାଙ୍କୁ ପୂଜା କରିବାକୁ କହିଥିଲେ । ସେହିଦିନଠାରୁ ମା' ଗଡ଼ଚଣ୍ଡି ପାହାଡର ପାଦଦେଶରେ ପୂଜା ପାଇ ଆସୁଛନ୍ତି ବୋଲି କିମ୍ବଦନ୍ତୀ ରହିଛି । କିମ୍ବଦନ୍ତୀ କହେ, କେନ୍ଦୁଝରର ଆଠଟି ଗଡ଼ ମଧ୍ୟରୁ ଗଡ଼ ଚଣ୍ଡୀ ଗଡ଼ଟି ଅନ୍ୟତମ ପ୍ରତ୍ୟକ୍ଷ ଠାକୁରାଣୀ ପୀଠ । ପୀଠର ତିନି ପାର୍ଶ୍ୱରେ ପାହାଡ ରହିଥିବାବେଳେ ପୂର୍ବ ପାର୍ଶ୍ୱରେ ଏକ ବିରାଟ ପ୍ରାଚୀର ଓ ଗଡ଼ଖାଇ ଥିଲା । ତେବେ ଏହା ଧ୍ୱଂସ ପାଇଯାଇଛି । ଦକ୍ଷିଣ ଭାଗରେ ଦୁଇ ପାହାଡରେ ସଂକୀର୍ଣ୍ଣ ଗିରିପଥ ରହିଛି । ଏହାକୁ ଏବେ 'କଳିଂଗ ଘାଇ' କୁହାଯାଉଛି । ଏଠାରେ ପ୍ରାଚୀନ ବୌଦ୍ଧ ଓ ଜୈନ କୀର୍ତ୍ତି ରହିଥିବାବେଳେ ନିକଟସ୍ଥ ପୋଡାସିଂଗିଡ଼ି ଗ୍ରାମ ଏହାର ସ୍ୱାକ୍ଷର ବହନ କରିଥାଏ ।



ଗଡଚଣ୍ଡୀ ପୀଠରେ ପୂଜିତ ହେଉଥିବା ବୌଦ୍ଧ ଓ ଜୈନ ଦେବଦେବୀ

୧୯୭୮ ମସିହାରେ ସ୍ଥାନୀୟ ଅଞ୍ଚଳର ଉତ୍ସାହୀ ବ୍ୟକ୍ତିଙ୍କ ସହଯୋଗରେ 'ଗଡ଼ଚଣ୍ଡୀ ଯୁବ ପରିଷଦ' ଗଠନ କରାଯାଇ ଏହି ପୀଠର ଉନ୍ନତି ଓ ରକ୍ଷଣାବେକ୍ଷଣ ପାଇଁ ଉଦ୍ୟମ କରାଯାଇଛି । ୧୯୮୫ ମସିହାରେ ଏହି ଗୁମ୍ଫାର ସମ୍ମୁଖ ଭାଗରେ ଏକ ମନ୍ଦିର ନିର୍ମାଣ କରାଯାଇଛି । ୧୯୯୮ ମସିହାରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଏହି ପୀଠକୁ ରାଜ୍ୟର ଏକ ପର୍ଯ୍ୟଟନ ସ୍ଥଳୀ ଭାବେ ମାନ୍ୟତା ପ୍ରଦାନ କରାଯାଇଛି । ତେବେ ଏହାର ବିକାଶ ନେଇ ସରକାରଙ୍କ ପକ୍ଷରୁ ସେମିତି କିଛି ଆଖିଦୃଶିଆ ପଦକ୍ଷେପ ନିଆଯାଇନାହିଁ । ଗଡ଼ଚଣ୍ଡୀ ମନ୍ଦିର ଚାରିପାଖରେ ଜଙ୍ଗଲ ଓ ରାଶିରାଶି ପାହାଡ, ବହି ଯାଉଥିବା କୁଳୁକୁଳୁ ଝରଣାର ସୌନ୍ଦର୍ଯ୍ୟ ପର୍ଯ୍ୟଟକଙ୍କୁ ଆକର୍ଷଣ କରିଥାଏ । ଏହି ଅଞ୍ଚଳରୁ ବହୁ ସଂଖ୍ୟାରେ ବୁଦ୍ଧ ତନ୍ତ୍ର ଦେବୀ ଓ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଛି । ତେବେ ପ୍ରତ୍ନତତ୍ତ୍ୱ ବିଭାଗ ଏ ଅଞ୍ଚଳରେ ଅଧିକ ଖନନ କରିପାରିଲେ ପ୍ରାଚୀନ ବୌଦ୍ଧ ଓ ଜୈନ ସଂସ୍କୃତି ସଂପର୍କରେ ବହୁତ ତଥ୍ୟ ମିଳିପାରିବ । ଗଡଚଣ୍ଡୀ ନିକଟସ୍ଥ ବଉଳା ପର୍ବତମାଳାର ପାଦଦେଶରେ ରହିଛି ରାମଚଣ୍ଡୀ ଓ ପୋତାସିଙ୍ଗିଡି । ସେହିପରି ଗଡ଼ଚଣ୍ଡୀର ଅନ୍ୟ ଏକ ପାର୍ଶ୍ୱରେ ରହିଛି ପୁରାତନ ଶୈବପୀଠ ଚକ୍ରତୀର୍ଥ । ଚକ୍ରତୀର୍ଥଟି ଏକଦା ଏକ ପ୍ରସିଦ୍ଧ ଜୈନକ୍ଷେତ୍ର ଥିଲା । ଚକ୍ରତୀର୍ଥ ନିକଟରେ ଏକ ଝରଣା ବହି ଯାଇଛି । ଏହାକୁ ମା' ଗଙ୍ଗା ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହା ହସ୍ତୀ ଅଭୟାରଣ୍ୟ ଭାବେ ସରକାରୀ ମାନ୍ୟତାଲାଭ କରିଛି । ଏଠାରେ ବହୁ ପ୍ରକାର ଜଙ୍ଗଲୀ ଜୀବଜନ୍ତୁ ଦେଖିବାକୁ ମିଳନ୍ତି । ମାତ୍ର ଦ୍ରୁତ ଜଙ୍ଗଲ କ୍ଷୟ କାରଣରୁ ଅଧିକାଂଶ ବିରଳ ପଶୁପକ୍ଷୀ ଆଉ ଦେଖିବାକୁ



ଗଡଚଣ୍ଡୀ ପୀଠରେ ପୂଜିତ ହେଉଥିବା ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ

ମିଳୁନାହାନ୍ତି । ଗଡ଼ଚଣ୍ଡୀ ନିକଟରେ ବାଘ ଗୁମ୍ଫା, ଧବଳି କୁଣ୍ଡ, ଦେବସଭା ମଣ୍ଡପ, ସ୍ୱର୍ଗାରୋହଣ ପଥ, ବନଦୁର୍ଗାଙ୍କ ବିଜେସ୍ଥଳୀ, ଆକାଶଗଂଗା ତୀର୍ଥସ୍ଥଳୀ, ଯୋଗାଶ୍ରମ, ପ୍ରାଚୀନ ବୌଦ୍ଧ ଓ ଜୈନପୀଠ ଆଦି ପର୍ଯ୍ୟଟକଙ୍କ ମନ ମୋହିଥାଏ । ଗଡ଼ଚଣ୍ଡୀ ପୀଠରେ ଥିବା ଜୈନମୂର୍ତ୍ତିକୁ ଲୋକେ ବଉଳାଶୁଣୀ ଦେବୀ ଭାବେ ପୂଜା କରିଥାନ୍ତି ।

ଆନନ୍ଦପୁର ବ୍ଲକ୍ କାଠକଟା ପଞ୍ଚାୟତରେ ରହିଛି ଚକ୍ରତୀର୍ଥ ଜୈନକ୍ଷେତ୍ର । ଏହି ଚକ୍ରତୀର୍ଥ ସମଗ୍ର ଓଡ଼ିଶାରେ ଏକ ପ୍ରାଚୀନ ଜୈନ ପୀଠ ଭାବେ ବେଶ୍ ପରିଚିତ । ପରବର୍ତୀ ସମୟରେ ଏଠାରେ ଏକ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଥିବାରୁ ଏହା ଶୈବକ୍ଷେତ୍ର ଭାବେ ପରିଚିତ ହୋଇପାରିଛି । ଆନନ୍ଦପୁର ଉପଖଣ୍ଡ ସଦର ମହକୁମାଠାରୁ ମାତ୍ର ୧୫ କିଲୋମିଟର ଦୂର କାଠକଟା ପଞ୍ଚାୟତ ହଦଗଡ଼ ହସ୍ତୀ ଅଭୟାରଣ୍ୟରେ ରହିଛି ଏହି ଚକ୍ରତୀର୍ଥ । ଆନନ୍ଦପୁରର ତରତରା ଛକରୁ ବାମ ଦିଗକୁ ଗଲେ ପଡିବ କାଠକଟା । କାଠକଟାଠାରୁ ଦୁର୍ଗମ ଜଂଗଲୀ ରାସ୍ତା ଦେଇ ଦୁଇ କିଲୋମିଟର ଗଲେ ପଡ଼ିବ ଏହି ବଣପାହାଡଘେରା ଚକ୍ରତୀର୍ଥ । ଚକ୍ରତୀର୍ଥ ପୀଠକୁ ନେଇ ବହୁ କିମ୍ବଦନ୍ତୀ ରହିଛି । ହିନ୍ଦୁ ପୁରାଣ ଅନୁସାରେ, ଭଗବାନ ବିଷ୍ଣୁଙ୍କ ଚକ୍ରଭେଦ ହୋଇ ଏଠାରେ ଏକ ଝରଣା ସୃଷ୍ଟି ହୋଇଥିବାରୁ ଏହାର ନାମ ଚକ୍ରତୀର୍ଥ ରହିଛି ବୋଲି ବିଶ୍ୱାସ କରାଯାଏ । ଏହାର ପାଦଦେଶରେ ଚକ୍ରେଶ୍ୱର ଅଷ୍ଟଶମ୍ଭୁ ଶିବଙ୍କର ଏକ ମନ୍ଦିର ରହିଛି । ମନ୍ଦିରରୁ ପାହାଡର ଉପରକୁ ଗଲେ ଅସଲ ପ୍ରକୃତିର ଶୋଭାକୁ ଉପଭୋଗ କରିହେବ । ମାତ୍ର ଉପରକୁ ଯିବାକୁ ଥିବା ବାଟଟି ଗତ '୯୯ ମହାବାତ୍ୟା ପରଠାରୁ ବନ୍ଦ ହୋଇଯାଇଛି । ମହାବାତ୍ୟା ବେଳେ ଭୂ-ସ୍ଖଳନ ଯୋଗୁଁ ଏହି ପଥଟି ଭୁଶୁଡି ପଡି ଏକପ୍ରକାର ବନ୍ଦ ହୋଇଯାଇଛି । ଚକ୍ରତୀର୍ଥର ପାହାଡ, ଜଙ୍ଗଲ, ଝରଣା ଓ ପ୍ରାକୃତିକ ଶୋଭା ମନ ମୋହିଥାଏ । ଲୋକେ ଏଠାକାର ମନ୍ଦିରକୁ ଯେତିକି ଦେଖିବାକୁ ଆସିଥାନ୍ତି, ତାହାଠୁ ବେଶି ଏଠାକାର ଶାନ୍ତ, ଶୀତଳ, ମନୋରମ ପ୍ରାକୃତିକ ଶୋଭାରାଜିକୁ ଉପଭୋଗ କରିବାକୁ ଆସିଥାନ୍ତି । ଚକ୍ରତୀର୍ଥ କ୍ଷେତ୍ରର ଚତୁପାର୍ଶ୍ୱରେ ଥିବା ଘଞ୍ଚ ଜଂଗଲରେ ନାନା ପ୍ରକାର ବନ୍ୟଜନ୍ତୁ ଦେଖିବାକୁ ମିଳନ୍ତି । ହରିଣ, ଠେକୁଆ, ଭାଲୁ, ହାତୀ, ବାଘ ଭଳି ଜଂଗଲୀ ପଶୁ ଏହି ଜଂଗଲରେ ଅଛନ୍ତି । ଚକ୍ରେଶ୍ୱର ଅଷ୍ଟଶମ୍ଭୁ ଶିବ ମନ୍ଦିରର ୩ କିଲୋମିଟର ଉପରକୁ ଗଲେ ପଡିବ 'ଗରୁଡକୁଣ୍ଡ', 'ଧୋବିକୁଣ୍ଡ' ଓ 'ଆକାଶଗଂଗା' । ମାତ୍ର, ଏବେ ଗରୁଡକୁଣ୍ଡ, ଆକାଶଗଂଗାକୁ ଯିବାକୁ ବାଟ ନଥିବାରୁ ପର୍ଯ୍ୟଟକମାନେ ଏସବୁ ଦେଖିବାରୁ ବଞ୍ଚିତ ହେଉଛନ୍ତି । ଅପରପକ୍ଷେ, ଚକ୍ରତୀର୍ଥରେ ଥିବା ମାତା ସୀତାଙ୍କ ଶୟନ କକ୍ଷ, ଏନ୍ଟୁଡିଶାଳ, ଅସୁରହାଡ ଗୁମ୍ଫା ଟି ମଧ୍ୟ ପୋତି ହୋଇଯାଇଛି । ଯେଉଁଠାରେ ବିଷ୍ଣୁଙ୍କ ଚକ୍ରଭେଦ ହୋଇ ଝରଣାର ସୃଷ୍ଟି ହୋଇଛି ସେହି ସ୍ଥାନକୁ ସ୍ଥାନୀୟ ଲୋକେ ନାଗେଶ୍ୱର ନାଳିଆ ବୋଲି କହନ୍ତି । '୯୯ ମହାବାତ୍ୟା ପୂର୍ବରୁ ଏଠାକୁ ଆସୁଥିବା ପର୍ଯ୍ୟଟକମାନେ ଗରୁଡ କୁଣ୍ଡ ଓ ଆକାଶଗଂଗାରେ ସ୍ନାନ କରିପାରୁଥିଲେ । ମାତ୍ର ମହାବାତ୍ୟାରେ ପାହାଡରୁ ଅତଡ଼ା ଧସି ଏସବୁ ନଷ୍ଟ ହୋଇଯାଇଛି ।


ରାଜ୍ୟ ସଂଗ୍ରହାଳୟରେ ଥିବା
ବୈଦାଖିଆର ପାର୍ଶ୍ୱନାଥ ମୂର୍ତ୍ତି

ଏଠାରେ ୧୯୭୩ ମସିହାରୁ କିଛି ବର୍ଷ ପାଇଁ ରାମ ବାବା ନାମରେ ଜଣେ ସନ୍ଥ ରହୁଥିଲେ. ମାତ୍ର ସେ ହିମାଳୟ ଚାଲିଯିବା ପରେ ୧୯୭୬ ମସିହାରୁ ତାଙ୍କର ଶିଷ୍ୟ ବାବା ବ୍ରହ୍ମଚୈତନ୍ୟ ଏଠାରେ ଅବସ୍ଥାନ କରୁଛନ୍ତି । ଏଠାରେ ଥିବା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନସଂପଦଭରା ସ୍ଥାନ ହେଉଛି 'ଯୋଗୀ ଛତା' । ଏଠାରେ ପାହାଡପର୍ବତ ଓ ଜଙ୍ଗଲ ଘେରା ପରିବେଶରେ ବହୁ ପ୍ରାଚୀନ ପ୍ରତ୍ନତାତ୍ତ୍ୱିକ ସଂପଦ ଗଛିତ ରହିଛି । ବଉଳା ପାହାଡର ଶିଖର ଦେଶରେ ଏକ ଜୈନାଶ୍ରମ ପ୍ରତିଷ୍ଠା ଲାଭ କରିଥିଲା । ପାହାଡ ଶିଖରକୁ ଆରୋହଣ କରିବା ସକାଶେ ସୋପାନ ମଧ୍ୟ ନିର୍ମାଣ ହୋଇଥିଲା । ଏହାର ନିଦର୍ଶନ ଏବେ ମଧ୍ୟ ଦେଖିବାକୁ ମିଳେ । ଯୋଗୀ ଛତା ସମ୍ମୁଖରେ 'ଚକ୍ର କୁଣ୍ଡ' ନାମରେ ଏକ କ୍ଷୁଦ୍ର ଜଳାଶୟ ରହିଛି । ଏଠାରେ ରଜ ସଂକ୍ରାନ୍ତି ଉତ୍ସବ ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ ।

## ପ୍ରାଚୀନ ଜୈନ ପୀଠ; ବୈଦ୍ୟାଖିଆ, ଠୁଣିଗାଁ, ଫକୀରପୁର ଓ ପୋଡାସିଙ୍ଗିଡ଼ି

ଚକ୍ରତୀର୍ଥକୁ ଛାଡିଦେଲେ ଆନନ୍ଦପୁର ଉପଖଣ୍ଡରେ ଜୈନ ସ୍ମାରକୀ ବହନ କରୁଥିବା ଅନେକ ପୀଠ ରହିଛି । ଛେନାପଦି ଛକଠାରୁ ଅଳ୍ପ ଦୂରରେ ପ୍ରାଚୀନ ଜୈନ କ୍ଷେତ୍ର ଠୁଣିଗାଁ ଅବସ୍ଥିତ । ଏହାକୁ







**ପୋତାସିଙ୍ଗିଡିରୁ ଉଦ୍ଧାର ହୋଇ ରାଜ୍ୟ ସଂଗ୍ରହାଳୟରେ ସ୍ଥାନିତ ହୋଇଥିବା ଋଷଭନାଥଙ୍କ ତିନୋଟି ଭିନ୍ନ ଭିନ୍ନ ମୂର୍ତ୍ତି**

ରାମଚଣ୍ଡୀ କ୍ଷେତ୍ର ମଧ୍ୟ କୁହାଯାଏ । ନିକଟରେ ବଉଳା ପାହାଡ ଉପରେ ଏକ ପ୍ରକାଣ୍ଡ ଗୁମ୍ଫା ମଧ୍ୟ ରହିଛି । ଗୁମ୍ଫା ମଧ୍ୟକୁ ପ୍ରବେଶ କରିବା ପାଇଁ ପାହାଚ ରହିଛି । ଏହି ଗୁମ୍ଫାରେ ବହୁ ପ୍ରାଚୀନ କୀର୍ତ୍ତିରାଜି ଓ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଏଠାରେ ଅମ୍ବିକା ଓ ଜୈନ ମୂର୍ତ୍ତି ରହିଛି । ଜୈନ ଦେବୀ ଅମ୍ବିକାଙ୍କ ମନ୍ଦିରଟି ଏବେ ଜରାଜୀର୍ଣ୍ଣ ହୋଇପଡିଛି । ନିକଟରେ କଳିଙ୍ଗ ଦ୍ୱାର ରହିଥିବାବେଳେ ଐତିହାସିକ ପୋତାସିଙ୍ଗିଡ଼ି ଏବଂ ବୈଦ୍ୟାଖିଆ ରହିଛି ।

ଆନନ୍ଦପୁର ସବ୍ ଡ଼ିଭିଜନ ଅନ୍ତର୍ଗତ ପୋତାସିଙ୍ଗିଡ଼ିଠାରେ ଋଷଭନାଥଙ୍କର ଏକ ଧ୍ୱଂସପ୍ରାପ୍ତ ମନ୍ଦିର ରହିଛି । ପ୍ରାଚୀନ କାଳରେ ଏହା ଜୈନମାନଙ୍କର ଏକ ପ୍ରସିଦ୍ଧ ପୀଠସ୍ଥଳୀ ଥିଲା । ଆନନ୍ଦପୁର ଓ ପୋତାସିଙ୍ଗିଡ଼ିଠାରେ ଜୈନ ସନ୍ନ୍ୟାସୀମାନେ ଏଠାକାର ଗୁମ୍ଫାରେ ତପସ୍ୟା କରୁଥିବାର ଲୋକକଥା

ଶୁଣିବାକୁ ମିଳେ । ପୋଡାସିଙ୍ଗିଡ଼ି ସ୍ଥାନଟି ଜୈନ ସଂସ୍କୃତିକର ଏକ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା । ଏବେ ମଧ୍ୟ ଏଠାରେ ଅନେକ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ପୋଡାସିଙ୍ଗିଡିରୁ ମିଳିଥିବା ଅନେକ ଜୈନମୂର୍ତ୍ତି ଏବେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ରହିଛି । ପୋଡାସିଙ୍ଗିଡିଠାରୁ ମିଳିଥିବା ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ଏକ ଦଣ୍ଡାୟମାନ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ଅବସ୍ଥାରେ ରହିଛି । ରାଜ୍ୟ ସଂଗ୍ରହାଳୟରେ ଥିବା ଋଷଭନାଥଙ୍କର ଏହି ମୂର୍ତ୍ତିଟି ଖ୍ରୀ:ଅ ନବମ ଶତାବ୍ଦୀର ବୋଲି ଜଣାଯାଇଛି । ସେହିଭଳି ପୋଡାସିଙ୍ଗିଡିଠାରୁ ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ପଦ୍ମାସନ ମୁଦ୍ରାରେ ତପସ୍ୟାରତ ଅନ୍ୟ ଏକ ମୂର୍ତ୍ତି ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ରହିଛି । ଏହି ମୂର୍ତ୍ତିଟି ଖ୍ରୀ:ଅ ଅଷ୍ଟମ ଶତାବ୍ଦୀର ବୋଲି ଐତିହାସିକମାନେ ନିରୂପଣ କରିଛନ୍ତି । ପୋଡାସିଙ୍ଗିଡି ଅଞ୍ଚଳରୁ ନବମ ଶତାବ୍ଦୀର ଅନ୍ୟ ଏକ ଜୈନ ମୂର୍ତ୍ତି ମଧ୍ୟ ଉଦ୍ଧାର କରାଯାଇଛି । ଏହା ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ଏବଂ ସେହିଭଳି ଐତିହାସିକ ବୈଦ୍ୟାଖିଆରୁ ମଧ୍ୟ ଅନେକ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଛି । ବୈଦ୍ୟାଖିଆରୁ ଉଦ୍ଧାର କରାଯାଇଥିବା ତ୍ରୟୋବିଂଶ ଜୈନ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଏକ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ଶୋଭା ପାଉଛି । ଏହା ଏକାଦଶ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି ।

## ଐତିହାସିକ ସିଆଡିମାଳିଆ

ଆନନ୍ଦପୁର ସହରର ଉତ୍ତର ଦିଗରେ ଐତିହାସିକ ସିଆଡିମାଳିଆ ଅବସ୍ଥିତ । ଏଠାରେ ଗଡ଼ର ଆରାଧ୍ୟ ଦେବୀ ମା' ଧନେଇ ଠାକୁରାଣୀଙ୍କ ପୀଠ ରହିଛି । ଅତୀତରେ ଏଠାରେ ଏକ ଐତିହାସିକ ଗଡ଼ଖାଇ ଥିବାର ପ୍ରମାଣ ମିଳେ । ଗଙ୍ଗ ବଂଶ ରାଜତ୍ୱ କାଳରେ ଏଠାରେ ଗଡ଼ ପ୍ରତିଷ୍ଠା ହୋଇଥିବାର ବିଶ୍ୱାସ କରାଯାଏ । ଏଠାରେ ପ୍ରସ୍ତର ନିର୍ମିତ ବିଗ୍ରହ ସହିତ ଅନ୍ୟ ଏକ ପୁରାତନ କୂପ ମଧ୍ୟ ରହିଛି । ରକ୍ଷଣାବେକ୍ଷଣ ଅଭାବରୁ ପ୍ରାୟ ୨୦୦ ମିଟର ଓସାର ବିଶିଷ୍ଟ ଗଡ଼ଖାଇ ପୋତି ହୋଇପଡିଛି ।

## ଫକୀରପୁରରୁ ଉଦ୍ଧାର କରାଯାଇଥିବା ଜୈନମୂର୍ତ୍ତି

ଐତିହାସିକ ସ୍ୱାକ୍ଷର ବହନ କରୁଥିବା ଫକୀରପୁର ଗ୍ରାମଟି ଆନନ୍ଦପୁର ଉପଖଣ୍ଡର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଆନନ୍ଦପୁର ବ୍ଲକ୍‌ର ପୂର୍ବ ଦିଗରେ ମାତ୍ର ପାଞ୍ଚ କିଲୋମିଟର ଦୂରରେ ବୈତରଣୀ ନଦୀ କୂଳରେ ଫକୀରପୁର ଗ୍ରାମଟି ଅବସ୍ଥିତ । ଫକୀରପୁର ଗ୍ରାମରେ ଐତିହାସିକ ବାଲୁଙ୍କେଶ୍ୱର ଶିବ ମନ୍ଦିର ରହିଛି । ମାତ୍ର, ଏହା ଏକ ପ୍ରାଚୀନ ଜୈନ କ୍ଷେତ୍ର ଥିବାର ଅନେକ ପ୍ରମାଣ ମିଳିଛି । ଏହି ବାଲୁଙ୍କେଶ୍ୱର ଶିବ ମନ୍ଦିର ପରିସରରେ ଏକ ବିଶାଳ ଜୈନ ମୂର୍ତ୍ତି ରହିଛି ଏବଂ ଏହି ମନ୍ଦିରରେ ଅନେକ ଜୈନ ଦେବୀଙ୍କ ମୂର୍ତ୍ତି ମଧ୍ୟ ପୂଜିତ ହେଉଛନ୍ତି । ଏହି ଜୈନ ମୂର୍ତ୍ତିଟି ଆନୁମାନିକ ଅଷ୍ଟମ


ଫକୀରପୁରରୁ ଉଦ୍ଧାର କରାଯାଇଥିବା ଜୈନମୂର୍ତ୍ତି

କିମ୍ବା ନବମ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି । ଏହା ବ୍ୟତୀତ ଫକୀରପୁର ଗ୍ରାମଟି ଟେରାକୋଟା ଓ ଟସର (ବୟନ) ଶିଳ୍ପ ପାଇଁ ସମଗ୍ର କେନ୍ଦୁଝର ଜିଲ୍ଲାରେ ପ୍ରସିଦ୍ଧିଲାଭ କରିପାରିଛି ।

## କେନ୍ଦୁଝର ଜିଲ୍ଲାର ପ୍ରାଚୀନ ବିଷ୍ଣୁ ପୀଠ: ନନ୍ଦପୁରର ଐତିହାସିକ 'କପିଳ ମୁନି ପୀଠ'

ଚଂପୁଆ ବ୍ଲକ୍ ଅନ୍ତର୍ଗତ ନନ୍ଦପୁର ଗ୍ରାମରେ ରହିଛି ବହୁ ପୁରାତନ ଐତିହାସିକ କପିଳ ମୁନି ପୀଠ । ଏଠାରେ ମହାଦେବ କପିଳେଶ୍ୱରଙ୍କର ଏକ ମନ୍ଦିର ରହିଛି । ମାତ୍ର, ଏହା ଏକ ପ୍ରାଚୀନ ବିଷ୍ଣୁ ପୀଠ ଭାବେ ସମଗ୍ର ଜିଲ୍ଲାରେ ବେଶ୍ ପରିଚିତ । ଏଠାରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁଙ୍କର ଅନେକ ମୂର୍ତ୍ତି ରହିଛି । ଏଠାରେ ମଧ୍ୟ କିଛି ତନ୍ତ୍ର ଦେବୀଙ୍କର ମୂର୍ତ୍ତି ଦେଖିବାକୁ ମିଳିଥାଏ ।

ମନ୍ଦିର ନିର୍ମାଣ ଓ ମୂର୍ତ୍ତି ଗଠନ ଶୈଳୀରୁ ଏହା ବଲାଂଗୀରର ରାଣୀପୁର ଝରିଆଲ୍‌ର ଚଉଷଠୀ


ନନ୍ଦପୁରର କପିଳମୁନି ମନ୍ଦିରସମୂହ



କେନ୍ଦୁଝର ଜିଲ୍ଲାର ଐତିହାସିକ ନନ୍ଦପୁରରୁ
ଉଦ୍ଧାର କରାଯାଇଥିବା ବିଷ୍ଣୁ ମୂର୍ତ୍ତି

ଯୋଗିନୀ ପୀଠ ଓ ଭୁବନେଶ୍ୱର ନିକଟସ୍ଥ ହୀରାପୁରରେ ଥିବା ଯୋଗିନୀ ପୀଠ ସହ ଅନେକ ସାଦୃଶ୍ୟ ରଖିଥାଏ । ତେବେ କେନ୍ଦୁଝରର ଏହି ପୁରାତନ ପୀଠଟି ବିଶେଷ ଭାବେ ଲୋକଲୋଚନକୁ ଆସିପାରିନାହିଁ ।

ମୂଳତଃ ଏହା ଏକ ବିଷ୍ଣୁପୀଠ ହୋଇଥିଲାବେଳେ ସ୍ଥାନୀୟ ଅଞ୍ଚଳରେ ଏହା ଏକ ଶୈବପୀଠ ଭାବେ ଜଣାଶୁଣା । ପ୍ରାୟ ଦଶ ଏକର ବିଶିଷ୍ଟ ସୁଦୀର୍ଘ ବର୍ତ୍ତୁଳାକାର ପଥର ଚଟାଣ ଉପରେ ବିଷ୍ଣୁଙ୍କର ଅନେକ ମୂର୍ତ୍ତି ଓ ମନ୍ଦିରସମୂହ ଏବେ ଧ୍ୱଂସମୁଖୀ ଅବସ୍ଥାରେ ପଡି ରହିଛି । ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ଆଜିଯାଏ ସମ୍ଭବପର ହୋଇପାରିନାହିଁ । ଏଠାରେ ମଧ୍ୟ ବହୁ ଦେବୀ ମୂର୍ତ୍ତି ଦେଖିବାକୁ ମିଳେ । ଏଠାରେ ଥିବା ବିଶାଳ ପଥର ଚଟାଣର ମଧ୍ୟ ସ୍ଥଳରେ ଏକ ପ୍ରାକୃତିକ ପୁଷ୍କରିଣୀ ରହିଛି । କପିଳେଶ୍ୱର ଚଟାଣରେ ଅବସ୍ଥିତ 'ପିହ୍ଲେଇ ପେଟି' ନାମରେ ଏକ ଦେବୀଶାଳ ରହିଛି । 'ପ୍ଲୀହା' ରୋଗାକ୍ରାନ୍ତ ଯେକୌଣସି ରୋଗୀ ଦେବୀଙ୍କ ପାଦୁକା ସେବନ କଲେ ରୋଗ ଉପଶମ ହୋଇଥାଏ ବୋଲି କଥିତ ଅଛି । ଏଣୁ ଏଠାକୁ ବହୁ ପେଟ ରୋଗୀଙ୍କ ଆଗମନ ହୋଇଥାଏ । କପିଳେଶ୍ୱର ଚଟାଣ ଉପରେ 'ଦେବଖିରି' ନାମରେ ଏକ ପର୍ବ ପାଳିତ ହୋଇଥାଏ । ମହା ସପ୍ତମୀ ଦିନ ଏହି 'ଦେବଖିରି' ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ଦିନ ଜ୍ୟୋତିପୁର



କେନ୍ଦୁଝର ଜିଲ୍ଲାର ଐତିହାସିକ ନନ୍ଦପୁରରୁ
ଉଦ୍ଧାର କରାଯାଇଥିବା ବିଷ୍ଣୁ ମୂର୍ତ୍ତି




ଦଣ୍ଡପାଟର ପ୍ରାୟ ପ୍ରତ୍ୟକ ପରିବାରର ପ୍ରତିନିଧିମାନେ ଅରୁଆ ଚାଉଳ, ଗୁଡ, ମୁଗଡାଲି, ଦୁଗ୍‌ଧ, ଦହି, ଘିଅ, ବାଇଶ ମସଲା ଆଦି ମିଶ୍ରଣରେ ଦେବଖିରି ଖେଚୁଡି ପ୍ରସ୍ତୁତ କରାଯାଇ କପିଳେଶ୍ୱରଙ୍କୁ ଭୋଗ ଦିଆଯାଇଥାଏ । ଏହା ପରେ କପିଳେଶ୍ୱର ଚଟାଣ ଉପରେ ସମସ୍ତେ ଏକତ୍ର ବସି ପ୍ରସାଦ ସେବନ କରିଥାନ୍ତି । କପିଳ ମୁନିଙ୍କର କାମଧେନୁ ଗାଈକୁ ବାଘ ଏହି ଚଟାଣ ଉପରେ ମାରି ଦେଇଥିବାର ସଂକେତ ସ୍ୱରୂପ ଏହି ପଥର ଉପରେ ଗୋ-ଖୋଜର ଏକ ଚିହ୍ନ ରହିଛି ।

କପିଳମୁନି ପୀଠ କେନ୍ଦୁଝର ଜିଲ୍ଲାର ଏକ ପ୍ରମୁଖ ତଥା ଐତିହାସିକ ସ୍ଥଳୀ ହୋଇଥିବାବେଳେ ଏହାର ବିକାଶ ପାଇଁ ଆଜି ପର୍ଯ୍ୟନ୍ତ ସରକାରଙ୍କ ଦୃଷ୍ଟି ପଡିପାରିନାହିଁ । ଗ୍ରାମର ପୁରୁଖା ଲୋକ ପୁରୁଷୋତ୍ତମ ପ୍ରଧାନଙ୍କ କହିବା ଅନୁସାରେ, ମୟୂରଭଞ୍ଜର ଖିଚିଂ ନିକଟସ୍ଥ ବିରାଟଗଡ଼ରେ ବିରାଟ ରାଜାଙ୍କ ନିକଟରେ ପଞ୍ଚୁ ପାଣ୍ଡବ ଅଜ୍ଞାତବାସରେ ରହିଥିଲେ । ବନବାସର ଏକବର୍ଷ ତେର ଦିନ ଅଜ୍ଞାତବାସ ପରେ ଯୁଧିଷ୍ଠିର ଭାଇମାନଙ୍କ ସହିତ ବିଷ୍ଣୁ ପୂଜା କରିବା ପାଇଁ ଚନ୍ଦନ ଯାତ୍ରାର ଆୟୋଜନ କରିଥିଲେ । ପାଣ୍ଡବମାନେ ଏହି ସମୟରେ କୀଚକ ବଧ କରି ନନ୍ଦପୁରଠାରେ ବିଷ୍ଣୁ ମୂର୍ତ୍ତି ସ୍ଥାପନ କରିଥିଲେ । ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରୁ ୩୬ତମ ନାମ ହେଉଛି କପିଳ ମୁନି । ତାଙ୍କରି ନାମାନୁସାରେ ଏହି ବିଷ୍ଣୁ ପୀଠର ନାମ 'କପିଳ ମୁନି ପୀଠ' ରଖାଯାଇଛି ।

ଅନ୍ୟ ଏକ ଲୋକ କାହାଣୀ ଅନୁସାରେ ଚତୁର୍ଦ୍ଦଶ ଶତାବ୍ଦୀରେ କୋଣାର୍କରେ ସୂର୍ଯ୍ୟ ମନ୍ଦିର ନିର୍ମାଣ ସମୟରେ ଶିଳ୍ପୀମାନେ କୋଣାର୍କକୁ ଯାଉଥିବା ସମୟରେ ଏହି ନନ୍ଦପୁର ଗାଁରେ ରାତ୍ରୀଯାପନ କରିଥିଲେ । ସେହି ରାତିକ ମଧ୍ୟରେ ଶିଳ୍ପୀମାନେ କପିଳ ମୁନିଙ୍କ ମନ୍ଦିରସମୂହ ନିର୍ମାଣ କରିଥିଲେ ଏବଂ ଏହା ସଂପୂର୍ଣ୍ଣ ହୋଇ ପାରି ନଥିଲା । ଏହି ମନ୍ଦିରସମୂହର ପୁନରୁଦ୍ଧାର କରାଯାଇପାରିଲେ ଚତୁର୍ଦ୍ଦଶ ଶତାବ୍ଦୀର ଏହି ଐତିହାସିକ କୀର୍ତ୍ତିରାଜି ସଂରକ୍ଷିତ ହୋଇପାରନ୍ତା । ଅପରପକ୍ଷେ, ଏହି ବିଷ୍ଣୁ ପୀଠ ସଂପର୍କରେ ଅଧିକ ଗବେଷଣା କରାଯାଇ ପାରିଲେ ତତ୍କାଳୀନ ସାମାଜିକ ଓ ରାଜନୈତିକ ବ୍ୟବସ୍ଥା ସଂପର୍କରେ ଅଧିକ ତଥ୍ୟ ଉନ୍ମୋଚିତ ହୋଇପାରନ୍ତା । ସ୍ଥାନୀୟ ଅଞ୍ଚଳର ଗବେଷକଙ୍କ ଅନୁସାରେ, କୋଣାର୍କର ସୂର୍ଯ୍ୟ ମନ୍ଦିର ଏବଂ ବିରାଟଗଡର ଖିଚିଂ ମନ୍ଦିରର କାରୁକାର୍ଯ୍ୟ ସହିତ ଏହି

ମନ୍ଦିରସମୂହ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଏଣୁ ରାଜ୍ୟ ସରକାର ଏବଂ ଦେବୋତ୍ତର ବିଭାଗ ଏହି ପୀଠର ବିକାଶ ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦେବା ଉଚିତ୍ ।

## କେନ୍ଦୁଝରର ପ୍ରଥମ ରାଜା ଜ୍ୟୋତି ଭଞ୍ଜ ଓ ଜ୍ୟୋତିପୁରଗଡ

ଐତିହାସିକ ଦୃଷ୍ଟିକୋଣରୁ ଜ୍ୟୋତିପୁର ଗଡଟି କେନ୍ଦୁଝର ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଟେ । ଏହି ଜ୍ୟୋତିପୁର ଗଡ କେନ୍ଦୁଝରର ସର୍ବପ୍ରଥମ ରାଜଧାନୀ ଥିଲା । କେନ୍ଦୁଝର ରାଜ୍ୟର ସୃଷ୍ଟି ହେବା ଦିନଠାରୁ ରାଜ୍ୟର ପ୍ରଥମ ରାଜା ଜ୍ୟୋତିଭଞ୍ଜ ଏଠାରେ ରାଜଧାନୀ ନିର୍ମାଣ କରି ଶାସନ


ଧ୍ୱଂସପ୍ରାପ୍ତ ଐତିହାସିକ ଜ୍ୟୋତିପୁରଗଡ

କାର୍ଯ୍ୟ ଆରମ୍ଭ କରିଥିଲେ । ଏହାର ପ୍ରମାଣସ୍ୱରୂପ ଏବେ ବି ବୈତରଣୀ କୂଳରେ ଏହି ରାଜବାଟୀର ଧ୍ୱଂସସ୍ତୂପ ଏବଂ ରାଜପ୍ରାସାଦ ଚତୁର୍ପାର୍ଶ୍ୱରେ ଏକ ଗଡଖାଇ ରହିଛି । ଐତିହାସିକଙ୍କ ମତରେ, ପୂର୍ବେ କେନ୍ଦୁଝର ଓ ମୟୂରଭଞ୍ଜ ଉଭୟ ମିଶି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟର ନାମ ଥିଲା ହରିହରପୁର । ଏହି ରାଜ୍ୟଟି ସେତେବେଳେ ଖିଜିଂ (ଖିଚିଂ) ମଣ୍ଡଳରେ ଅନ୍ତର୍ଭୁକ୍ତ ଥିଲା । ଖିଚିଂ ଏହାର ରାଜଧାନୀ ଥିଲା । ଏହା ପୂର୍ବରୁ ବୌଦ୍ଧ ଧର୍ମାବଲମ୍ବୀ ରାଜାଙ୍କ ଶାସନ କାଳରେ ଏହା ଜାହୋର ରାଜ୍ୟ ଭାବେ ପ୍ରସିଦ୍ଧିଲାଭ କରିଥିଲା । ଜାହୋର ରାଜ୍ୟ ଗଠନ ପୂର୍ବରୁ ଏହି ରାଜ୍ୟ 'ବିନ୍ଧ୍ୟାଟବୀ' ନାମରେ ପରିଚିତ ଥିଲା । ଏହା ପୂର୍ବରୁ ଏହି ଭୂ-ଖଣ୍ଡଟି ସମଗର୍ତ୍ତ ମଣ୍ଡଳ ନାମରେ ଚିହ୍ନିତ ହେଉଥିଲା । ତେବେ ହରିହରପୁର ରାଜ୍ୟ ବିଭାଜିତ ହୋଇ ମୟୂରଭଞ୍ଜ ଓ କେନ୍ଦୁଝର



ଜ୍ୟୋତିପୁରଗଡ ଦୁର୍ଗା ମନ୍ଦିର
ଓ ଦଧିବାମନ ଜୀଉଙ୍କ ମୂର୍ତ୍ତି



ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଭାବେ ମୁଣ୍ଡ ଟେକିଲା । ରାୟସାହେବ କ୍ଷେତ୍ରମୋହନ ମିଶ୍ରଙ୍କ ରଚିତ 'କେନ୍ଦୁଝର' ପୁସ୍ତକରେ ଥିବା ତଥ୍ୟ ଅନୁସାରେ, କେନ୍ଦୁଝର ଓ ମୟୁରଭଞ୍ଜକୁ ମିଳିତ ଭାବେ ହରିହରପୁର ରାଜ୍ୟ କୁହାଯାଉଥିଲା । ଏହି ରାଜ୍ୟର ରାଜା ଜୟସିଂହଙ୍କର ଦୁଇ ପୁତ୍ର ଥିଲେ । ଜଣେ ଜଣେ ଆଦି ସିଂ ଓ ଅନ୍ୟ ଜଣେ ଜ୍ୟୋତି ସିଂ । ପରବର୍ତ୍ତୀ କାଳରେ ହରିହରପୁରଗଡ଼ ବିଭାଜିତ ହୋଇ ମୟୁରଭଞ୍ଜ ଓ କେନ୍ଦୁଝର ଦୁଇଟି ପୃଥକ ରାଜ୍ୟ ହୋଇଗଲେ । ଆଦି ସିଂ (ଆଦି ଭଞ୍ଜ) ହେଲେ ମୟୂରଭଞ୍ଜର ରାଜା ଓ ଜ୍ୟୋତି ସିଂ (ଜ୍ୟୋତି ଭଞ୍ଜ) ହେଲେ କେନ୍ଦୁଝରର ରାଜା । କେନ୍ଦୁଝରର ପ୍ରଥମ ରାଜା ଭାବେ ଜ୍ୟୋତିଭଞ୍ଜ ବୈତରଣୀ ନଦୀ କୂଳରେ ଜ୍ୟୋତିପୁରଠାରେ ନିଜର ଗଡ଼ ସ୍ଥାପନ କରି ଶାସନ କାର୍ଯ୍ୟ ଆରମ୍ଭ କରିଥିଲେ ।

ଜ୍ୟୋତିପୁରଗଡ଼ର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ମୟୂରଭଞ୍ଜର ପ୍ରଥମ ରାଜା ଆଦିଭଞ୍ଜଙ୍କ ଆଦିପୁରଗଡ଼ ମଧ୍ୟ ଅବସ୍ଥିତ । ଏହି ଦୁଇଟି ଗଡ଼କୁ କେବଳ ବୈତରଣୀ ନଦୀ ହିଁ ପୃଥକ କରିପାରିଛି । ଏଣୁ ଐତିହାସିକ ଦୃଷ୍ଟିକୋଣରୁ ଜ୍ୟୋତିପୁରଗଡ଼ ଅତ୍ୟନ୍ତ ଗୁରୁତ୍ୱ ବହନ କରିଥାଏ ।

ଜ୍ୟୋତିପୁରଗଡ଼ରେ ଭଗବାନ ଜଗନ୍ନାଥ ଦଧିବାମନଜୀଉଙ୍କ ନାମରେ ପୂଜା ପାଇ ଆସୁଛନ୍ତି । ଏଠାରେ ରଥଯାତ୍ରା ଧୂମଧାମରେ ପାଳିତ ହୋଇଥାଏ । ଦଧିବାମନଜୀଉଙ୍କ ବ୍ୟତୀତ ଏଠାରେ ମା' ବାସୁଳି, ମା' ଅନ୍ଧାରୀ ଏବଂ ମା' ଦୁର୍ଗା ମନ୍ଦିର ରହିଛି । ଏଠାରେ ମହାଦେବ ଶିବଙ୍କର ଏକ ମନ୍ଦିର ସମେତ ହନୁମାନଙ୍କର ଏକ ମନ୍ଦିର ରହିଛି । ବୈତରଣୀ ନଦୀ କୂଳରେ ଅବସ୍ଥିତ ଜ୍ୟୋତିପୁର ଗଡ଼ର ପରିବେଶ ଓ ଭୌଗୋଳିକ ଅବସ୍ଥିତି ଅତ୍ୟନ୍ତ ମନମୁଗ୍ଧକର ।



ଜ୍ୟୋତିପୁରଗଡର ମା ବାସୁଳୀ ପୀଠ

ବୈତରଣୀ ନଦୀକୂଳରେ ଜ୍ୟୋତି ଭଞ୍ଜ ଓ ଆଦି ଭଞ୍ଜଙ୍କ ସ୍ମୃତି ବହନ କରୁଥିବା 'ନିୟମକରା ପଥର' ଏବେ ବି ଦୃଶ୍ୟମାନ ହୋଇଥାଏ । ଏହି ନିୟମକରା ପଥରକୁ ନେଇ ଏକ କିମ୍ବଦନ୍ତୀ ରହିଛି । ହରିହରପୁର ଗଡ଼ର ରାଜକୁମାର ଜ୍ୟୋତିଭଞ୍ଜ ଓ ଆଦିଭଞ୍ଜ ସାନ ପିଲା ଥିଲାବେଳେ ସେମାନେ ବୈତରଣୀକୁ ସ୍ନାନ କରିବାକୁ ଆସୁଥିଲେ । ନଦୀରେ ଥିବା ନିୟମକରା ପଥର ଉପରେ ବସି ଉଭୟ ସ୍ନାନ କରୁଥିଲେ । ଯେତେବେଳେ ଉଭୟ ଭାଇଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା, ସେତେବେଳେ ଏହି ନିୟମକରା ପଥରଟି ଦୁଇ ଫାଳ ହୋଇଯାଇଥିଲା । ପରେ ଜ୍ୟୋତିପୁର ଓ ଆଦିପୁର ଦୁଇଟି ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି ହୋଇଥିଲା । ସେହିଦିନଠାରୁ ଏହି ନିୟମକରା ପଥରଟି ଦୁଇ ଫାଳ ହୋଇ ବୈତରଣୀ ନଦୀରେ ପଡି ରହିଛି ବୋଲି ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ ।



## ଐତିହାସିକ ରାଜନଗର: ଦଧିବାମନଜୀଉ ମନ୍ଦିର; ଧ୍ୱଂସପ୍ରାପ୍ତ ପୁରୁଣା ରାଜବାଟୀ, ପ୍ରାଚୀନ ରଘୁନାଥଜୀଉ ମଠ, ତନ୍ତ୍ର ଜଗନ୍ନାଥ ପୀଠ ଓ ଶୈବ୍ୟାକାବେରୀ ବୈତରଣୀ ଘାଟ

ଐତିହାସିକ ଦୃଷ୍ଟିକୋଣରୁ ରାଜନଗର କେନ୍ଦୁଝର ଜିଲ୍ଲାର ଅନ୍ୟ ଏକ ପ୍ରମୁଖ ଗ୍ରାମ । ଜିଲ୍ଲାର ସ୍ୱାମ୍‌ପାଟଣା ବ୍ଲକ୍‌ରେ ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ଗାଁଟିରେ ଆପଣ ବହୁ ପ୍ରାଚୀନ କୀର୍ତ୍ତୀରାଜି, ମନ୍ଦିର ଓ ସର୍ବୋପରି ବୈତରଣୀ ନଦୀର ସମ୍ମୋହନପ୍ରଦାୟୀ ରୂପକୁ ଉପଭୋଗ କରିପାରିବେ । କୁହାଯାଏ, କେନ୍ଦୁଝରଗଡ଼ ପୂର୍ବରୁ ତତ୍କାଳୀନ ଭଞ୍ଜ ରାଜାମାନେ ଏଠାରେ ରାଜପ୍ରାସାଦ ନିର୍ମାଣ କରି ଶାସନ କରୁଥିଲେ । ପରେପରେ ରାଜପ୍ରାସାଦ କେନ୍ଦୁଝରଗଡ଼କୁ ସ୍ଥାନାନ୍ତର ହୋଇଥିଲା ।







ରଘୁନାଥ ଜୀଉ ମଠରେ ପୂଜିତ 'ତତ୍ତ୍ୱ ଜଗନ୍ନାଥ'

---

ଏଠାରେ ରହିଛି ପ୍ରାଚୀନ ଐତିହାସିକ ଦଧିବାମନଜୀଉଙ୍କ ମନ୍ଦିର, ମା' ଅନ୍ଧାରୀ ଠାକୁରାଣୀ ପୀଠ, ଧ୍ୱଂସପ୍ରାପ୍ତ ରାଜପ୍ରାସାଦ, ରଘୁନାଥଜୀଉ ମଠ, ପଞ୍ଚମୁଖୀ ହନୁମାନ ମନ୍ଦିର, ଶୈବ୍ୟାକାବେରୀ ଘାଟ ସମେତ ବୈତରଣୀ ନଦୀ ପଠାରେ ଲକ୍ଷ୍ମୀପାଦ, ଭୀମପାଦ, ଜଳେଶ୍ୱର ମହାଦେବଙ୍କ ମୂର୍ତ୍ତି । ବୈତରଣୀ ନଦୀ କୂଳରେ ଭଞ୍ଜବଂଶୀୟ ରାଜାଙ୍କର ଏକ ପୁରୁଣା ଧ୍ୱଂସପ୍ରାପ୍ତ ରାଜ ଉଆସ ମଧ୍ୟ ରହିଛି । ଏଠାରେ ବୈତରଣୀ ନଦୀ ଅତ୍ୟନ୍ତ ଆକର୍ଷଣୀୟ ଏବଂ ଏହାର ପଥୁରିଆ ଶଯ୍ୟାରେ ମାତା ଲକ୍ଷ୍ମୀ ଏବଂ ଭୀମଙ୍କର ଦୁଇଟି ଭିନ୍ନ ଭିନ୍ନ ପାଦ ଚିହ୍ନ ରହିଛି । ବୈତରଣୀ ନଦୀର ପଥୁରିଆ ଶଯ୍ୟାରେ ମଧ୍ୟ ମହାଦେବ ଜଳେଶ୍ୱରଙ୍କ ଏକ ଶିବ ଲିଙ୍ଗ ପୂଜିତ ହୋଇଥାନ୍ତି । ବର୍ଷାଦିନେ ନଦୀ ଜଳପୂର୍ଣ୍ଣ ଥିବା ସମୟରେ ଏହି ଲକ୍ଷ୍ମୀପାଦ, ଭୀମପାଦ ଓ ଜଳେଶ୍ୱର ମହାଦେବ ଦୃଶ୍ୟମାନ ହୋଇ ନଥାନ୍ତି । ତେବେ ବର୍ଷାଦିନ ବ୍ୟତୀତ ଅନ୍ୟ ସମୟରେ ଏସବୁ ଦୃଶ୍ୟ ହୋଇଥାନ୍ତି ।

ଏଠାରେ ବୈତରଣୀ ନଦୀ କୂଳରେ ଅତି ଆକର୍ଷଣୀୟ ବୈତରଣୀ ଘାଟ ରହିଛି । ଏହାକୁ 'ଶୈବ୍ୟାକାବେରୀ ତୀର୍ଥ' କୁହାଯାଏ । ଏହି ଶୈବ୍ୟାକାବେରୀ ଘାଟର ମନୋରମ ଶାନ୍ତ ପରିବେଶ ମଧ୍ୟରେ ରହିଛି ବହୁ ପୁରାତନ ରଘୁନାଥଜୀଉ ମଠ । ଏହା ମହାପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପୀଠ । ଏଠାରେ ପ୍ରଭୁ ଶ୍ରୀରାମ, ଲକ୍ଷ୍ମଣ ଓ ମାତା ସୀତା ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା ଭାବେ



ରାଜନଗରର ବୈତରଣୀ ନଦୀଶଯ୍ୟାରେ ଥିବା ଲକ୍ଷ୍ମୀପାଦ

ପୂଜା ପାଉଛନ୍ତି । ଏହି ମଠ ମଧ୍ୟରେ ଏକ ସ୍ୱତନ୍ତ୍ର ଜଗନ୍ନାଥଙ୍କ ମୂର୍ତ୍ତି ପୂଜା ପାଇଥାଏ । ଏହାକୁ 'ତନ୍ତ୍ର ଜଗନ୍ନାଥ' ବୋଲି କୁହାଯାଏ । ତନ୍ତ୍ର ଜଗନ୍ନାଥ ରଘୁନାଥଜୀଉ ମଠର ଏକ ବିଶେଷ ଆକର୍ଷଣ । ଏଠାରେ ଥିବା ତନ୍ତ୍ର ଜଗନ୍ନାଥଙ୍କୁ ନେଇ ଅତୀତରେ ଅନେକ ଗବେଷଣା ହୋଇଛି । କାହିଁକି ଏଠାକାର ଜଗନ୍ନାଥଙ୍କୁ ତନ୍ତ୍ର ଜଗନ୍ନାଥ କୁହାଯାଉଛି ତାହା ରହସ୍ୟମୟ । ସବୁଠୁ ବଡ଼ କଥା ହେଉଛି, ଏହି ଜଗନ୍ନାଥଙ୍କ ସହିତ ଭ୍ରାତା ବଳଭଦ୍ର କିମ୍ବା ଭଗ୍ନୀ ସୁଭଦ୍ରା ନାହାନ୍ତି । କେବଳ ଜଗନ୍ନାଥ ଏକାକୀ ଭାବେ ଏଠାରେ ପୂଜା ପାଇଥାନ୍ତି । ଏହି ତନ୍ତ୍ର ଜଗନ୍ନାଥଙ୍କର ନବକଳେବର ହୋଇ ନଥାଏ ବୋଲି ଏଠାକାର ପୂଜକ ମୃତ୍ୟୁଞ୍ଜୟ ପାଣି କହନ୍ତି । କେନ୍ଦୁଝରର ଏସବୁ ଅଞ୍ଚଳ ପ୍ରାଚୀନ ବୌଦ୍ଧ ତନ୍ତ୍ର ପୀଠ ହୋଇଥିବାରୁ ଏଠାରେ ବୌଦ୍ଧ ତନ୍ତ୍ରବାଦର ପ୍ରଭାବ ରହିଛି ବୋଲି ସ୍ଥାନୀୟ ଗବେଷକ ମତବ୍ୟକ୍ତ କରନ୍ତି ।

ରଘୁନାଥଜୀଉ ମଠରେ ପ୍ରତିବର୍ଷ ଶ୍ରୀରାମ ନବମୀ, କାର୍ତ୍ତିକ ପୂର୍ଣ୍ଣିମା, ମକର ମେଳା, ହନୁମାନ ଜୟନ୍ତୀ ମହାସମାରୋହରେ ପାଳିତ ହୋଇଥାଏ । ଏହି ମଠ ପରିସରରେ ରହିଛି ପଞ୍ଚମୁଖୀ ହନୁମାନ ମନ୍ଦିର । ଏହି ମଠର ଅଚଳାଚଳ ସଂପତି ଥିଲେ ମଧ୍ୟ ମଠଟି ଏବେ ଶ୍ରୀହିନ ହୋଇପଡିଛି । ତେବେ ସ୍ଥାନୀୟ ଯୁବକଙ୍କ ସହାୟତାରେ ଏଠାରେ ବ୍ୟାପକ ବୃକ୍ଷରୋପଣ କରାଯିବା ସହିତ



**ରାଜନଗରର ଶୈବ୍ୟାଜାଟେରୀ ବୈତରଣୀ ଘାଟରେ ବୋଇତ ବନ୍ଦାଣ ଉତ୍ସବ**

ପରିବେଶର ପୁନରୁଦ୍ଧାର ପାଇଁ ପ୍ରୟାସ ଜାରି ରହିଛି । ଏହି ମଠଟି ଏକ ତନ୍ତ୍ର ପୀଠ ଥିଲା ବୋଲି ଗାଁର ବୟୋଜ୍ୟେଷ୍ଠ ବେଣୁଧର ବେଜ୍ ଓ ଭାଗିରଥୀ ସିଂ ପ୍ରକାଶ କରନ୍ତି । ୧୯୭୫ ମସିହାରେ ଏହି ମଠର ଶେଷ ମହନ୍ତ ପଦ୍ମଲୋଚନ ଦାଶଙ୍କ ଦେହାନ୍ତ ପରେ ଏହା ଶ୍ରୀହିନ ହୋଇପଡିଛି । ଦେବୋତ୍ତର ବିଭାଗ ଏହାର ପରିଚାଳନା ଦାୟିତ୍ୱ ବୁଝୁଥିଲେ ମଧ୍ୟ ବର୍ଷର ବିଭିନ୍ନ ପର୍ବପର୍ବାଣୀ ସୁଚାରୁ ରୂପେ ହେଉନାହିଁ ବୋଲି ଗ୍ରାମବାସୀ ଅଭିଯୋଗ କରନ୍ତି ।

କେନ୍ଦୁଝରଗଡ଼ରେ ଶ୍ରୀବଳଦେବଜୀଉଙ୍କ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବରୁ କେନ୍ଦୁଝରଗଡ଼ ରାଜପ୍ରାସାଦ ଓ ରାଜନଗର ଗ୍ରାମରେ ଶ୍ରୀବଳଦେବ, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ ମୂର୍ତ୍ତିତ୍ରୟଙ୍କୁ ଦଧିବାମନଜୀଉ ଭାବେ ସ୍ଥାପନ କରାଯାଇ ପୂଜାର୍ଚ୍ଚନା କରାଯାଉଥିଲା । ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜଦେବ (୧୬୫୪-୧୬୮୮) କେନ୍ଦୁଝରଗଡ଼ଠାରେ ବଳଦେବଜୀଉଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ସେଠାରେ ସେ ଗୋବିନ୍ଦ ଭଞ୍ଜଙ୍କ ଦ୍ୱାରା ପୁରୀ ଧାମରୁ ଅଣାଯାଇଥିବା ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ସହିତ ବଞ୍ଚୋ ଗ୍ରାମରେ ପୋତି ହୋଇ ରହିଥିବା ବଳଭଦ୍ରଙ୍କ ମୂର୍ତ୍ତିକୁ ଉଦ୍ଧାର କରି ଏକତ୍ର ପ୍ରତିଷ୍ଠା କରିଥିଲେ । ରାଜନଗରରେ ଥିବା ରାଜ ଉଆସର ଅନତିଦୂରରେ ବୈତରଣୀ ନଦୀ କୂଳରେ ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ ଦଧିବାମନଜୀଉଙ୍କ ନିମନ୍ତେ ଏକ ମନୋରମ ମନ୍ଦିର ନିର୍ମାଣ କରାଇଥିଲେ । ମାତ୍ର, ସେହି ମନ୍ଦିରଟି ୧୯୨୭ ମସିହାରେ ବୈତରଣୀର





ରାଜନଗରର ଧ୍ୱଂସପ୍ରାପ୍ତ ରାଜପ୍ରାସାଦ

ପ୍ରଳୟଙ୍କର ବନ୍ୟାରେ ଭାଂଗି ଯାଇଥିଲା । କେବଳ ମନ୍ଦିର ନୁହେଁ, ରାଜନଗରର ପକ୍କା ଉଆସ ମଧ୍ୟ ବନ୍ୟା ସ୍ରୋତରେ ଧ୍ୱଂସ ପାଇଯାଇଥିଲା । ରାଜା ରାଜନଗରଠାରେ ନିଜ ନାମରେ 'ଲକ୍ଷ୍ମୀ ନାରାୟଣପୁର' ବ୍ରାହ୍ମଣ ଶାସନ ବସାଇଥିଲେ । ମାତ୍ର, ବନ୍ୟାରେ ଏହି ବ୍ରାହ୍ମଣ ଶାସନ ସମେତ ମନ୍ଦିର, ରାଜ ଉଆସ ନଷ୍ଟ ହୋଇଯାଇଥିଲା । ତେବେ ବନ୍ୟା ଦାଉରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ନଦୀଠାରୁ ଦୂରରେ ଆଉ ଏକ ମନ୍ଦିର ନିର୍ମାଣ କରାଯାଇଥିଲା । ଦଧିବାମନଜୀଉଙ୍କ ମନ୍ଦିର ରତ୍ନ ସିଂହାସନରେ ଶ୍ରୀଜୀଉଙ୍କ ବିଜେ ପ୍ରତିମା ଭାବେ ଆଣ୍ଠୁଆ ଗୋପାଳ, ଶାଳଗ୍ରାମ ଏବଂ ରତ୍ନ ସିଂହାସନ ତଳେ ବାମ ଭାଗରେ ମହାଲକ୍ଷ୍ମୀ ବିରାଜିତ । ଶ୍ରୀ ଦଧିବାମନଜୀଉଙ୍କ ମନ୍ଦିର ସମ୍ମୁଖରେ ଏକ ଶିବ ମନ୍ଦିର ରହିଛି । ରାଜନଗର ଦଧିବାମନଜୀଉଙ୍କ ପୀଠରେ ଶ୍ରୀଗୁଣ୍ଡିଚା ଯାତ୍ରା ଓ ବାହୁଡା ଯାତ୍ରା ସବୁଠୁ ବଡ଼ ଭାବେ ଗଣାଯାଇଥାଏ । ଏହା ବ୍ୟତୀତ ଏଠାରେ ହରିଶୟନ ଏକାଦଶୀ, ଗହ୍ମାପୂର୍ଣ୍ଣିମା, ଚିତାଲାଗି ଅମାବାସ୍ୟା, ହରିଜନ୍ମ, ସପ୍ତପୁରୀ ଅମାବାସ୍ୟା, କାର୍ତ୍ତୀକ ପଞ୍ଚୁକ, ଆକାଶଦୀପ, ମାର୍ଗଶିର ଗୁରୁବାର, ବକୁଳ ଅମାବାସ୍ୟା, ଓଢଣ ଷଷ୍ଠୀ, ପୌଷ ପୂର୍ଣ୍ଣିମା, ମାଘ ପୂର୍ଣ୍ଣିମା, ମକର ସଂକ୍ରାନ୍ତି, ପଣା ସଂକ୍ରାନ୍ତି, ଅକ୍ଷୟ ତୃତୀୟା ଆଦି ପାଳନ କରାଯାଇଥାଏ ।

# ହୁଣ୍ଡା ଦଣ୍ଡପାଟ, ଦଧିବାମନଜୀଉ ମନ୍ଦିର ଓ ପ୍ରାଚୀନ ଦେବୀପୀଠ 'ମହାପାଟ'




ଐତିହାସିକ ଦୃଷ୍ଟିକୋଣରୁ ହୁଣ୍ଡା ଗ୍ରାମଟି କେନ୍ଦୁଝର ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ଭାବେ ବିଖ୍ୟାତ । ହୁଣ୍ଡା ଗ୍ରାମର ପାଇକମାନେ ଦୁର୍ଦ୍ଧର୍ଷ ଏବଂ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ ବୋଲି ଇତିହାସ କହେ । କେନ୍ଦୁଝରଗଡ଼ର ରାଜାଙ୍କ ପାଇକବାହିନୀରେ ଯୋଗ ଦେଇ ହୁଣ୍ଡା ଦଣ୍ଡପାଟର ଦଣ୍ଡସେନା ଶତ୍ରୁପକ୍ଷଙ୍କୁ ପରାଜିତ କରିବାରେ ପ୍ରମୁଖ ଭୂମିକା ତୁଲେଇ ଆସିଥିଲେ । ଏହି ଗାଁର ପାଇକ ପିଣ୍ଡିକା ମାଝୀ, ଷଷ୍ଠ ଦେହୁରୀ, କଣା ଦଣ୍ଡସେନା ଜଣେ ଜଣେ ଐତିହାସିକ ଯୋଦ୍ଧା ଥିଲେ ବୋଲି ହୁଣ୍ଡା ଗ୍ରାମର ଲୋକମାନେ କହନ୍ତି । ଏବେ ବି ହୁଣ୍ଡା ଗ୍ରାମର ଦଧିବାମନଜୀଉଙ୍କ ମନ୍ଦିର ସାମ୍ନାରେ ପିଣ୍ଡିକା ମାଝୀଙ୍କର ଏକ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ପିଣ୍ଡିକା ମାଝୀ ହେଉଛନ୍ତି ହୁଣ୍ଡା ଗ୍ରାମର ଦୁର୍ଦ୍ଧର୍ଷ ପାଇକ ଜାତିର ଜଣେ ଶ୍ରେଷ୍ଠ ପ୍ରତିନିଧି । ହୁଣ୍ଡା ଗ୍ରାମର ପାଇକମାନେ ପଡୋଶୀ ପଳାସୁଣୀଗଡ ସହିତ ଲଢେଇ କରି କେନ୍ଦୁଝର ରାଜାଙ୍କୁ ବିଜୟ ପ୍ରଦାନ କରିପାରିଥିଲେ । ରାଜାରାଜୁଡା ଅମଳରୁ ପାଇକ ଗ୍ରାମ ଭାବେ ପରିଚିତ ହରିଚନ୍ଦନପୁର ବ୍ଲକ୍ ଅନ୍ତର୍ଗତ ହୁଣ୍ଡା ପଞ୍ଚାୟତର ହୁଣ୍ଡା ଗ୍ରାମରେ ରହିଛି ବହୁ ପ୍ରାଚୀନ ଦଧିବାମନଜୀଉଙ୍କ ମନ୍ଦିର । ଏଠାରେ ଶ୍ରୀଦଧିବାମନଜୀଉଙ୍କ ନାମରେ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥ ପ୍ରତିଷ୍ଠିତ । ସେ ଏହି ଅଞ୍ଚଳରେ ମୁଖ୍ୟ ଆରାଧ୍ୟ ଦେବତା । କେନ୍ଦୁଝରର ରାଜା





ହୁଣ୍ଡା ଗ୍ରାମର ପ୍ରାଚୀନ ଦେବୀପୀଠ 'ମହାପାଟ'

ପ୍ରତାପ ବଳଭଦ୍ର ଭଞ୍ଜ (୧୭୬୨-୧୭୯୭)ଙ୍କ ଶାସନ କାଳରେ ଏଠାରେ ଦଧିବାମନଜୀଉଙ୍କୁ ପ୍ରତିଷ୍ଠା କରାଯାଇଥିଲା । ମାତ୍ର, ଦୁଃଖର କଥା ଆଜି ପର୍ଯ୍ୟନ୍ତ ଏଠାରେ ଦଧିବାମନଜୀଉଙ୍କ ନିମନ୍ତେ ମନ୍ଦିର ନିର୍ମାଣ ସମ୍ଭବ ହୋଇନାହିଁ । ଦଧିବାମନଜୀଉଙ୍କର ବ୍ୟାପକ ପରିମାଣରେ ନିଜସ୍ୱ ସଂପତ୍ତି ରହିଥିଲେ ମଧ୍ୟ ମନ୍ଦିରର ବିକାଶ ନେଇ ପ୍ରଶାସନ, ଦେବୋତ୍ତର ବିଭାଗ ଆଗ୍ରହ ପ୍ରକାଶ କରୁ ନଥିବାରୁ ଏହି ପୀଠର ବିକାଶ ହୋଇପାରୁନାହିଁ । ଅଧିକାଂଶ ଜମି ଜବରଦଖଲକାରୀଙ୍କ କବ୍‌ଜାରେ ରହିଥିଲେ ମଧ୍ୟ ପ୍ରଶାସନ ଏଥିନେଇ ନିରବ ରହୁଛି । ମନ୍ଦିର ଚାରିକତେ ପାଚେରୀ ନଥିବା ସହ ଭକ୍ତମାନଙ୍କ ବିଶ୍ରାମ ନିମନ୍ତେ କୌଣସି ବ୍ୟବସ୍ଥା ନାହିଁ । ଅତୀତରେ ଦଧିବାମନଜୀଉ ଏକ ଛଣ ଛପର ଘରେ ରହି ପୂଜା ପାଉଥିଲେ । ବର୍ତ୍ତମାନ ଏହି ଛଣ ଛପର ଘରକୁ କେବଳ ଟାଇଲ୍ ଛପର କରାଯାଇଛି । ଏଠାରେ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବ୍ୟତୀତ ସେମାନଙ୍କର ବିଜେ ପ୍ରତିମା ଓ ନିରସିଂହଙ୍କ ମୂର୍ତ୍ତି ପୂଜା ପାଇଥାଏ । ନରସିଂହ ଏଠାରେ ପ୍ରତ୍ୟକ୍ଷ ଦେବତା ବୋଲି ସ୍ଥାନୀୟ ଲୋକେ କହନ୍ତି । ସବୁଠୁ ବଡ଼ କଥା ହେଉଛି, ଏହି ଦଧିବାମନଜୀଉଙ୍କ ପୀଠରେ ରଥଯାତ୍ରା ଅନୁଷ୍ଠିତ ହୋଇ ନଥାଏ । ସ୍ନାନ ପୂର୍ଣ୍ଣିମାରେ ଦଧିବାମନଙ୍କୁ ସ୍ନାନ କରାଯାଉଥିଲେ ମଧ୍ୟ ରାଜବେଶ କରାଯାଇ ନଥାଏ । ଅଣସର ସମୟରେ କେନ୍ଦୁଝରଗଡ଼ରୁ ଚିତ୍ରକର ଆସି ତିନି ଠାକୁରଙ୍କୁ ରଙ୍ଗ କରିଥାନ୍ତି ।

ହୁଣ୍ଡା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ 'ମହାପାଟ' ସମଗ୍ର କେନ୍ଦୁଝର ଜିଲ୍ଲାର ଏକ ପ୍ରଭାବଶାଳୀ ଦେବୀ ଭାବେ ପରିଚିତ । ହୁଣ୍ଡା ଗ୍ରାମରେ ପୂଜା ପାଉଥିବା 'ମହାପାଟ'ଙ୍କ ଉଦ୍ଦେଶ୍ୟରେ ଆଦିବାସୀ ପୂଜକ ଦେହୁରୀ ନିଯୁକ୍ତି ହୋଇଥିଲେ ମଧ୍ୟ ଶାରଦୀୟ ଦୁର୍ଗା ଅଷ୍ଟମୀ ସମୟରେ ନିଜେ ରାଜପୁରୋହିତ ଏଠାକୁ ଆସି ଦେବୀଙ୍କର ପୂଜାର୍ଚ୍ଚନା କରିଥାନ୍ତି । ଏହି ଶକ୍ତି ପୀଠରେ ଦଶହରା, ଧାନ ନୂଆଖିଆ, ଆମ୍ବ ନୂଆଖିଆ, ଆଷାଢ଼ୀ, ଜନ୍ତାଳ, ରଜ ଆଦି ପର୍ବପର୍ବାଣୀ ପାଳନ କରାଯାଇଥାଏ । ଅତୀତରେ ଏହି ଶକ୍ତି ପୀଠରେ ମଇଁଷି, ଛେଳି, ମେଣ୍ଢା, କୁକୁଡ଼ା, ପାରା ଆଦି ପଶୁପକ୍ଷୀ ବଳି ପଡୁଥିଲା ବୋଲି ସ୍ଥାନୀୟ ଗ୍ରାମବାସୀଙ୍କଠାରୁ ପ୍ରକାଶ । ଏଠାରେ ମଧ୍ୟ ଦେବୀ 'ମହାପାଟ'ଙ୍କ ପାଇଁ କୌଣସି ମନ୍ଦିର ନିର୍ମାଣ ସମ୍ଭବପର ହୋଇନାହିଁ । ପୂର୍ବେ ଏକ ଛଣ ଛପର ଘରେ ପୂଜା ପାଉଥିବାବେଳେ ଏବେ ଏକ ଟାଇଲ୍ ଛପର ଘର ହୋଇଛି । କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ଭଞ୍ଜ (୧୭୬୨-୧୭୯୭)ଙ୍କ ଶାସନ କାଳରେ ଏଠାରେ 'ମହାପାଟ'ଙ୍କୁ ପ୍ରତିଷ୍ଠା କରାଯାଇଥିଲା ।

ରାଜା ପ୍ରତାପ ବଳଭଦ୍ର ଭଞ୍ଜଙ୍କର ତତ୍କାଳୀନ ଢେଂକାନାଳ ରାଜାଙ୍କ ସହ ଯୁଦ୍ଧ ହୋଇଥିଲା । ଢେଂକାନାଳର ରାଜା ଯୁଦ୍ଧରେ ପରାସ୍ତ ହେବାପରେ ଢେଂକାନାଳରୁ କାଳିଆହତା ଜମିଦାରୀଟି କେନ୍ଦୁଝର ରାଜ୍ୟକୁ ଆସିଥିଲା । ଏବେ ମଧ୍ୟ କାଳିଆହତା କେନ୍ଦୁଝରରେ ରହିଛି । ବିଜୟ ସ୍ମାରକୀ

ଭାବେ ପଳାଶୁଣି ଗଡରୁ ରାଜା ପ୍ରତାପ ବଳଭଦ୍ର ଭଞ୍ଜ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ଓ ଦେବୀ ମହାପାଟଙ୍କ ମୂର୍ତ୍ତିଙ୍କୁ ନିଜ ସାଥୀରେ ଆଣିଥିଲେ । ଏହି ଯୁଦ୍ଧରେ ହୁଣ୍ଡାର ଦଣ୍ଡସେନା ରାଜାଙ୍କୁ ଯୁଦ୍ଧରେ ସହାୟତା କରିଥିଲେ । ହୁଣ୍ଡାର ଦଣ୍ଡସେନା କେନ୍ଦୁଝର-ଢେଂକାନାଳ ଯୁଦ୍ଧରେ ସେନାପତି ଥିବା କଥା ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ । ଦଣ୍ଡସେନାଙ୍କର ଅନୁରୋଧ ରକ୍ଷା କରି ରାଜା ଢେଂକାନାଳ ଯୁଦ୍ଧରେ ବିଜୟ ସ୍ମାରକୀ ଭାବେ ଆଣିଥିବା ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଦଧିବାମନଜୀଉ ଭାବେ ଏବଂ ଦେବୀ ମହାପାଟଙ୍କୁ ଏକ ସ୍ୱତନ୍ତ୍ର ପୀଠରେ ହୁଣ୍ଡା ଗ୍ରାମରେ ପ୍ରତିଷ୍ଠା କରିଥିଲେ ।

ହୁଣ୍ଡା ଗ୍ରାମରେ ପ୍ରତିବର୍ଷ ଦୋଳ ଯାତ୍ରା, ଶାରଦୀୟ ଦୁର୍ଗାପୂଜା ବିଶେଷ ପର୍ବ ଭାବେ ପାଳନ କରାଯାଇଥାଏ । ଦେବୀ ମହାପାଟଙ୍କ ବ୍ୟତୀତ ହୁଣ୍ଡା ଗାଁରେ ଆହୁରି ଅନେକ ଗ୍ରାମ ଦେବୀ ପୂଜା ପାଉଛନ୍ତି । କୁଟେଇଶୁଣି, କେନ୍ଦେଇଶୁଣି, ନୂଆ ଠାକୁରାଣୀ, ସମଲେଇ ଠାକୁରାଣୀ, ଦୁଆରଶୁଣୀ, ବାଉଁଶତଳିଆ, ରଂଗାପାଟ, ଗାଁଶିରି, ବିଷ୍ଣୁପାଟ, ସାରୁପାଟ, ମୁଟୁରି ଠାକୁରାଣୀ, କଟା ମୁଣ୍ଡିଆ ଠାକୁରାଣୀ, ବଢିରିମୂଳିଆ, ବଡାମ୍ ଠାକୁରାଣୀ ଆଦି ଦେବୀ ହୁଣ୍ଡା ଗାଁରେ ପୂଜା ପାଇଥାନ୍ତି ବୋଲି ଗ୍ରାମର ପୂଜକ କନ୍ଦର୍ପ ଦେହୁରୀ କହନ୍ତି । କେନ୍ଦୁଝରର ଭଞ୍ଜବଂଶୀ ରାଜାଙ୍କ ଶାସନର ବହୁ ପୂର୍ବରୁ



ଜୁଲାବିରା ପାହାଡତଳି ଐତିହାସିକ ହୁଣ୍ଡା ଗାଁ



ହୁଣ୍ଡି ଗ୍ରାମର (ମଣିପୁର) ମାଳତୀ ଦୁତି ଓ ତତ୍ ସଂଲଗ୍ନ ଗୁମ୍ଫା

ଘଞ୍ଚ ଜଙ୍ଗଲ, ପାହାଡପୂର୍ଣ୍ଣ ହୁଣ୍ଡି ଅଞ୍ଚଳଟି କନ୍ଧ ରାଜା ବରାହଙ୍କ ଦ୍ୱାରା ଶାସିତ ହେଉଥିଲା ବୋଲି ଦେହୁରୀଙ୍କଠାରୁ ପ୍ରକାଶ । ଏହି କନ୍ଧ ସଂପ୍ରଦାୟର ରାଜା ବରାହଙ୍କ ଦ୍ୱାରା ଶାସିତ ହୁଣ୍ଡି ଅଞ୍ଚଳକୁ ବରାହଗଡ଼ ମଧ୍ୟ କୁହାଯାଇଥାଏ । ପରେ ଏହା କେନ୍ଦୁଝର ଭଞ୍ଜବଂଶୀ ରାଜାମାନଙ୍କ ଅଧୀନକୁ ଆସିଥିଲା ବୋଲି ହୁଣ୍ଡି ଗ୍ରାମର ପୁରୁଖା ଲୋକମାନେ କୁହନ୍ତି ।

ହୁଣ୍ଡି ଗ୍ରାମଟିର ଅବସ୍ଥିତି ଏକ ଚମତ୍କାର ପରିବେଶ ମଧ୍ୟରେ ରହିଛି । ଗାଁଟିର ପଛରେ ସୁଦୀର୍ଘ କୁଲାବିରା ପର୍ବତମାଳା ରହିଛି । ଏହି କୁଲାବିରା ପର୍ବତମାଳାରୁ ସମାକୋଇ (ସମାକୁଦ) ନଦୀ ଉତ୍ପତ୍ତିଲାଭ କରିଛି ବୋଲି ଗ୍ରାମବାସୀ କହନ୍ତି । କୁଲାବିରା ପର୍ବତମାଳାରେ ରହିଛି ପ୍ରସିଦ୍ଧ କୁଟେଇଶୁଣୀ ଦେବୀ ପୀଠ ଏବଂ ଏଠାରୁ କୁଟେଇଶୁଣି ନାଳର ଉତ୍ପତ୍ତିଲାଭ ହୋଇଛି । ଏହି କୁଟେଇଶୁଣୀ ଠାକୁରାଣୀ ଜୁଆଙ୍ଗ ସଂପ୍ରଦାୟର ଲୋକମାନଙ୍କ ଦ୍ୱାରା ପୂଜିତ ହୋଇଥାନ୍ତି । ଏହି କୁଟେଇଶୁଣି ନାଳଟି ପର୍ବତ ଉପରୁ ପ୍ରବଳ ସ୍ରୋତରେ ତଳକୁ ଖସି ପଡୁଥିଲେ ମଧ୍ୟ ଠାକୁରାଣୀଙ୍କ ପୀଠ ନିକଟରେ ରସାତଳଗାମୀ ହୋଇ କେଉଁ ଆଡେ ଅନ୍ତର୍ଧାନ ହୋଇଯାଇଛି ବୋଲି ହୁଣ୍ଡି ଗ୍ରାମବାସୀ କହନ୍ତି । ତେବେ ଏହି ନାଳଟି ପୁନର୍ବାର କେଉଁଠି ଆବିର୍ଭୂତ ହୋଇଛି ତାହା କେହି କହିପାରନ୍ତି ନାହିଁ । ହୁଣ୍ଡି ଗାଁରେ ପୂଜା ପାଆନ୍ତି ପ୍ରତ୍ୟେକ୍ଷ ଦେବୀ କେନ୍ଦେଇଶୁଣୀ ଠାକୁରାଣୀ ।

ଏହି ଦେବୀ ପୀଠଟି ହୁଣ୍ଡା ଗାଁର ଅନ୍ୟତମ ଏକ ଗୁରୁତ୍ୱପୂର୍ଣ୍ଣ ଦେବୀ ଉପାସନା ପୀଠ । ଅଞ୍ଚଳରେ ବର୍ଷା ନ ହେଲେ ହୁଣ୍ଡା ଗ୍ରାମବାସୀଙ୍କ ପକ୍ଷରୁ କେନ୍ଦେଇଗୁଣୀଙ୍କ ପୀଠରେ ମାଜଣା କରାଯାଇଥାଏ । ବିଶେଷକରି ଗାଁର ଝିଅ, ବୋହୂମାନେ ଏହି ଠାକୁରାଣୀଙ୍କ ପୀଠରେ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ନାଚିବା ସହିତ ଠାକୁରାଣୀଙ୍କୁ ଆବାହନ କଲେ ବର୍ଷା ହୋଇଥାଏ । ପୂର୍ବେ ଏଠାରେ ନାରୀମାନେ ଉଲଗ୍ନ ହୋଇ ଏବଂ ଅଶ୍ଳୀଳ ଗୀତ ଗାଇ ଠାକୁରାଣୀଙ୍କୁ ଆବାହନ କରୁଥିଲେ ବୋଲି ଲୋକଙ୍କଠାରୁ ଶୁଣିବାକୁ ମିଳେ । ଏହି ମାଜଣା କାର୍ଯ୍ୟକ୍ରମରେ କେବଳ ନାରୀମାନେ ଅଂଶଗ୍ରହଣ କରିଥାନ୍ତି । ପୁରୁଷମାନେ ସାମିଲ୍ ହୋଇ ନଥାନ୍ତି । ଏହାବ୍ୟତୀତ ହୁଣ୍ଡା ଗ୍ରାମରେ ଥିବା ନୂଆଠାକୁରାଣୀଙ୍କ ମହିମା ସର୍ବଜନବିଦିତ । ନୂଆଠାକୁରାଣୀ ଅତ୍ୟନ୍ତ କ୍ରୋଧୀ ଓ ଚଣ୍ଡୀ ସ୍ୱଭାବର । ତାଙ୍କ କ୍ରୋଧକୁ ପ୍ରଶମିତ କରିବା ପାଇଁ ଠାକୁରାଣୀଙ୍କୁ ସଦାସର୍ବଦା ଏକ ହାଣ୍ଡି ମଧ୍ୟରେ ଘୋଡେଇ ରଖାଯାଇଥାଏ । ନହେଲେ ଉଗ୍ରଚଣ୍ଡୀ ନୂଆଠାକୁରାଣୀ ସର୍ବସ୍ୱ ଧ୍ୱଂସବିଧ୍ୱସ୍ତ କରିଦେବେ ବୋଲି ପୂଜକ କନ୍ଦର୍ପ ଦେହୁରୀ କହନ୍ତି । ହୁଣ୍ଡା ଗ୍ରାମର ଆରମ୍ଭରେ ରହିଛି ଏକ ଛୋଟ ପାହାଡ ଓ ତତ୍ ସଂଲଗ୍ନ ଗୁମ୍ଫା । ଏହାର ନାମ 'ମାଳତୀ ହୁଡି' । ଏବେ ଗାଁର ଲୋକମାନେ ଏହାକୁ ଘଡଘଡି ହୁଡି ବୋଲି କହୁଛନ୍ତି । ଏଠାରେ ପ୍ରତିବର୍ଷ ରଜ ଉତ୍ସବ ମହାସମାରୋହରେ ପାଳିତ ହୋଇଥାଏ । ଏହି ଗୁମ୍ଫାରେ ଅନେକ ବିଷଧର ମଣିନାଗମାନେ ବାସ କରନ୍ତି । ଏଠାରେ ମଣିଚୂଳ ସର୍ପ ଥିବାରୁ ହୁଣ୍ଡା ଗାଁର ଏହି ସାହିର ନାମ 'ମଣିପୁର' ହୋଇଛି ।

## ରହସ୍ୟ ଓ ରୋମାଞ୍ଚକର ଯାତ୍ରା

## କେନ୍ଦୁଝରର ପାଟହରା ଓ ଚନ୍ଦନଗିରି ଗୁମ୍ଫା

କ୍ରମେ ଆଗକୁ ଆଗ ପାଦ ପକାଇଲେ ରହସ୍ୟ ଓ ରୋମାଞ୍ଚରେ ସମଗ୍ର ଶରୀର ପୁଲକିତ ହୋଇ ଉଠିବ । ପାହାଡ ଶଯ୍ୟା, ଝରଣା, ପଥର ଖୋଲ, ଜଙ୍ଗଲ ଅତିକ୍ରମ କରିଗଲାପରେ ପାହାଡର ଶୀର୍ଷ ଦେଶରେ ପଡ଼ିବ ସେଇ ସ୍ୱପ୍ନର ଇଲାକା; ଚନ୍ଦନଗିରି ଓ ପାଟହରା ଗୁମ୍ଫାସମୂହ । ଚନ୍ଦନଗିରିରେ ପାଖାପାଖି ପାଞ୍ଚଶହରୁ ଊର୍ଦ୍ଧ୍ୱ ଗୁମ୍ଫା ରହିଛି ଏବଂ ଏହି ଗୁମ୍ଫାମାନଙ୍କୁ ନେଇ ସ୍ଥାନୀୟ ଅଞ୍ଚଳରେ ଚମତ୍କାର ରୋମାଞ୍ଚକର କାହାଣୀମାନ ଶୁଣିବାକୁ ମିଳିଥାଏ । ଆଈ ମା' କାହାଣୀ ପେଡିର ଅତିଭୌତିକ ରହସ୍ୟ, ରୋମାଞ୍ଚଭରା କାହାଣୀ ଭଳି ଏହି ନିରବ ଉପତ୍ୟକାକୁ ନେଇ ଅନେକ କାହାଣୀ ଶୁଣିବାକୁ ମିଳିଥାଏ ।

କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଦୁର୍ଗମ ହରିଚନ୍ଦନପୁର ବ୍ଲକ୍‌ର ବଡ଼ପଳାସପାଳ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଖରଗଡବାହାଳ ଗାଁ ନିକଟରେ ରହିଛି ଏହି ପ୍ରସିଦ୍ଧ ଚନ୍ଦନଗିରି ଓ ପାଟହରା ଗୁମ୍ଫାସମୂହ । ଏହି ଗୁମ୍ଫାରେ ଦେବତାମାନେ ବସବାସ କରନ୍ତି ଏବଂ ଏଠାରେ ଥିବା କୁଣ୍ଡରେ ଦେବତାମାନେ


ପାଟହରା ଜଳଧାରା

ନିୟମିତ ସ୍ନାନ କରନ୍ତି ଏବଂ ଗୁମ୍ଫାରେ ଦେବତା ଓ ଦେବୀମାନେ ରତିକ୍ରୀଡା କରନ୍ତି ବୋଲି ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ । ଯେଉଁମାନେ ଦେବତାଙ୍କ ସ୍ନାନ ଓ ରତିକ୍ରୀଡା ଦେଖିବାକୁ ଚେଷ୍ଟା କରନ୍ତି ନିଶ୍ଚୟ ସେମାନଙ୍କର କିଛି ନା କିଛି ଦୁର୍ଘଟଣା ଘଟିଥାଏ । ବହୁ ପର୍ଯ୍ୟଟକ ଓ ସ୍ଥାନୀୟ ଲୋକେ ଦେବତାଙ୍କ ଏଭଳି ବିଚରଣ ଓ କାର୍ଯ୍ୟକଳାପକୁ ଦେଖିବାକୁ ଉଦ୍ୟମ କରି ନିଜେ ଗାଏବ୍ ହୋଇ ଯାଇଛନ୍ତି ବୋଲି ସ୍ଥାନୀୟ ଲୋକେ କୁହନ୍ତି । ଅନେକ ପର୍ଯ୍ୟଟକ ଏଠାକୁ ଆସି ନିଖୋଜ ହୋଇଯିବା ଘଟଣା ଏବେ ମଧ୍ୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ । ତେବେ ଏହି ନିଖୋଜ ହେବା ପଛରେ କି ରହସ୍ୟ ଅଛି, ସେଥିନେଇ ନାନା ମୁନିଙ୍କର ନାନା ମତ ରହିଛି ।

ଏଠାରେ ପାଟହରା ପାହାଡ ଉପରୁ ମୁଷଳ ନଦୀ ତଳକୁ ଖସିପଡ଼ି ସୃଷ୍ଟି କରିଛି ମନୋରମ ଓ ହୃଦୟସ୍ପର୍ଶୀ ଜଳପ୍ରପାତ । ମୁଷଳ ନଦୀ ପାହାଡରୁ ଦୁଇ ଦୁଇଥର ନିମ୍ନକୁ ଖସି ଦୁଇଟି କୁଣ୍ଡ ମଧ୍ୟ ସୃଷ୍ଟି କରିଛି । ଗୋଟିଏ ବଡ଼କୁଣ୍ଡ ଓ ଅନ୍ୟଟି ସାନକୁଣ୍ଡ । ଏହି ଦୁଇଟି କୁଣ୍ଡକୁ ସ୍ଥାନୀୟ ଅଞ୍ଚଳରେ 'ଦେବକୁଣ୍ଡ' ବୋଲି କୁହାଯାଉଛି । ଏଠାରେ ଦେବତାମାନେ ସ୍ନାନ କରିଥାନ୍ତି ବୋଲି ଲୋକବିଶ୍ୱାସ ରହିଛି । ଏହି ପଥୁରିଆ ପାହାଡ ଶଯ୍ୟା ଓ ଝରଣା ଅତିକ୍ରମ କରି ଉପରକୁ ଉପରକୁ ଉଠିଲେ ଆପଣମାନେ ଦେଖିପାରିବେ ପ୍ରକୃତିର ଅଫୁରନ୍ତ ସୌନ୍ଦର୍ଯ୍ୟର ଭଣ୍ଡାର: ପାଟହରା ଗୁମ୍ଫା ଓ ରାଶିରାଶି ପର୍ବତମାଳା । ଏହି ସମ୍ମିଳିତ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସ୍ଥାନକୁ ମର୍ତ୍ତ୍ୟମଣ୍ଡଳର ମାୟାପୁରୀ କହିଲେ ଭୁଲ୍ ହେବନି ।

କୁହାଯାଏ, ପାଟହରା ଗୁମ୍ଫାରେ ପହଞ୍ଚିବାରେ ସମସ୍ତଙ୍କର ଭାଗ୍ୟ ନଥାଏ । ପାଟହରା





ପାଟହରାର ସାନ ଓ ବଡ ଦେବକୁଣ୍ଡ

ଗୁମ୍ଫାଯାତ୍ରା ବଡ଼ କ୍ଲାନ୍ତିକର ଓ ଅସମ୍ଭବ ମନେ ହୋଇଥାଏ । ପାଟହରା ଗୁମ୍ଫାକୁ ଯିବା ବାଟରେ ମୂଷଳ ନଦୀ ପାହାଡର ଧାରେଧାରେ ନିମ୍ନକୁ ଗତି କରୁଥିବାର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ଏଠାରେ ମୂଷଳ ନଦୀ ସୃଷ୍ଟି କରିଥିବା ଦୁଇ ଦେବକୁଣ୍ଡର ବୈଶିଷ୍ଟ୍ୟ ମଧ୍ୟ ରହିଛି । ଆପଣ ସାନକୁଣ୍ଡରେ ଏକ ପଣ୍ଡ (ମଇଁଷି) ଆକୃତିର ଏକ ବିଶାଳ ପଥର ଖଣ୍ଡ ଅର୍ଦ୍ଧମଗ୍ନ ଅବସ୍ଥାରେ ବୁଡ଼ି ରହିଥିବାର ଦେଖିବାକୁ ପାଇବେ । ସାନକୁଣ୍ଡରେ ବୁଡି ରହିଥିବା ଏହି ମଇଁଷିକୁ ନେଇ ଏକ ଲୋକକଥା ରହିଛି । କୁଣ୍ଡରେ ଦେବତାମାନଙ୍କ ସ୍ନାନ ସମୟର ଦୃଶ୍ୟ ଦେଖିବା ପାଇଁ ଜଣେ ସନ୍ନ୍ୟାସୀ ପାହାଡ ଉପରକୁ ଚଢିଥିଲେ । ତେବେ ଦେବତାମାନଙ୍କ ସ୍ନାନ ଦୃଶ୍ୟ ଦେଖିବା ପରେ ମାନସିକ ଭାରସାମ୍ୟ ହରାଇ ସଂପୃକ୍ତ ଋଷିଜଣକ ତଳକୁ ଖସି ପଡି କୁଣ୍ଡରେ ପଡିଯାଇଥିଲେ । କୁଣ୍ଡରେ ପଡିଯିବା ପରେ ସେ ମଇଁଷି ଆକୃତିର ପଥର ଖଣ୍ଡେ ପାଲଟିଯାଇଥିଲେ ବୋଲି ଗରଗଡବାହାଳର ବୃଦ୍ଧା ଅଳକା ଦେହୁରୀ, ବନିତା ବଳିୟାରସିଂ, ରମଣୀ ମହାପାତ୍ର ଆମକୁ ବର୍ଣ୍ଣନା କଲାବେଳେ ଲୋମମୂଳ ଟାଙ୍କୁରି ଉଠୁଥିଲା । ବାସ୍ତବରେ ଏହା ଥିଲା ଏକ ଦୁଃସାହସିକ ଯାତ୍ରା । ଦୁଇଟି ଦେବକୁଣ୍ଡ ଅତିକ୍ରମ କରିଗଲାପରେ ପଡିଥାଏ ପାହାଡର ଶୀର୍ଷରେ ଥିବା 'ପାଟହରା ଗୁମ୍ଫା' । ପ୍ରକୃତରେ ଏଠାକାର ଦୃଶ୍ୟ ଓ ଅନୁଭବ ନିଆରା । ତାକୁ ଶବ୍ଦରେ ବର୍ଣ୍ଣନା କରିବା କଷ୍ଟକର । ପାଟହରା ଗୁମ୍ଫା କେଉଁ ଆଡକୁ ଲମ୍ବିଛି ତାହା ସ୍ଥାନୀୟ ଲୋକେ କହିପାରନ୍ତି ନାହିଁ । ଏହି ଗୁମ୍ଫାର ଦ୍ୱାରଦେଶରୁ ବାହାରି କିଛି ବାଟ ଭିତରକୁ ଅତିକ୍ରମ କରିବା ପରେ ଆଉ ଆଗକୁ ଯିବା ଅସମ୍ଭବ





ସୌନ୍ଦର୍ଯ୍ୟଭରା ପାଟହରା ଓ ସର୍ପଗୁମ୍ଫା

ହୋଇପଡେ । ଅନ୍ଧାର କିଟିକିଟି ଗୁମ୍ଫା ମଧ୍ୟରେ ମୁହଁକୁ ମୁହଁ ଦିଶେନା । ଗୁମ୍ଫାର ଆଉ ଏକ ବିଶେଷତ୍ୱ ହେଉଛି, ଆପଣ ଯାହା କିଛି ମାନସିକ କରି ଦୁଇହାତରେ ତାଳିଟାଏ ମାରିଦେବେ, ତତ୍କ୍ଷଣାତ୍ ଦୁଇଚାରିବୁନ୍ଦା ପାଣି ଗୁମ୍ଫାର ଛାତରୁ ତଳକୁ ଖସିପଡିବ ।

ପାଟହରା ଗୁମ୍ଫାର ଅପରପାର୍ଶ୍ୱରେ ରହିଛି ପ୍ରସିଦ୍ଧ ଚନ୍ଦନଗିରି ପାହାଡ ଓ ଗୁମ୍ଫାସମୂହ । ଚନ୍ଦନଗିରି ଗୁମ୍ଫାକୁ ପ୍ରବେଶ କରିବା ସଂପୂର୍ଣ୍ଣ ଭାବେ ଅସମ୍ଭବ ବ୍ୟାପାର । କୁହାଯାଉଛି, ଚନ୍ଦନଗିରି ଗୁମ୍ଫା ମଧ୍ୟରେ ପ୍ରଚୁର ମାତ୍ରାରେ ସୁନା ଗଚ୍ଛିତ ରହିଛି । ଏହି ଗୁମ୍ଫା ମଧ୍ୟରେ ଏକ 'ସ୍ୱର୍ଣ୍ଣମନ୍ଦିର' ଏବଂ ଏକ ମନୋରମ ପୁଷ୍କରିଣୀ ଏବଂ ଏକ ସୁବର୍ଣ୍ଣପୁରୀ ରହିଛି । ଆଜି ପର୍ଯ୍ୟନ୍ତ କୌଣସି ଭକ୍ତ କିମ୍ବା ପର୍ଯ୍ୟଟକ ଏହି 'ସ୍ୱର୍ଣ୍ଣମନ୍ଦିର' ସୁବର୍ଣ୍ଣପୁରୀ ଓ ପୁଷ୍କରିଣୀ ନିକଟରେ ପହଞ୍ଚି ପାରି ନଥିବା ସ୍ଥାନୀୟ ଲୋକେ କହନ୍ତି । ଏଠାରେ ପାଞ୍ଚଶହରୁ ଉର୍ଦ୍ଧ୍ୱ ଛୋଟବଡ଼ ଗୁମ୍ଫା ରହିଛି । ଗୁମ୍ଫାଗୁଡିକ ଛୋଟଛୋଟ ବଖରା ଭଳି । ଏହି ଗୁମ୍ଫାର ମଧ୍ୟଭାଗ ଏତେ ଘନ ଅନ୍ଧାର ଏହା ମଧ୍ୟରେ ମୁହଁକୁ ମୁହଁ ଦିଶି ନଥାଏ । ଟର୍ଚ୍ଚ ଲାଇଟ୍ ନେଇ ଅନେକ ପର୍ଯ୍ୟଟକ ଏହା ମଧ୍ୟକୁ ପ୍ରବେଶ କରିବାକୁ ଉଦ୍ୟମ କରିଛନ୍ତି । ମାତ୍ର, କିଛି ବାଟ ଗୁମ୍ଫା



ଭିତରକୁ ଗଲାପରେ ଟର୍ଚ୍ଚ ଲାଇଟ୍‌ର ବଲ୍‌ବ ଫ୍ୟୁଜ୍ ହୋଇଯାଏ ବୋଲି ସ୍ଥାନୀୟ ଲୋକେ କହନ୍ତି । ଏମିତି କାହିଁକି ହୁଏ ସ୍ଥାନୀୟ ଲୋକେ କିଛି କହିପାରନ୍ତିନାହିଁ । ତେବେ ଏଠାରେ ଥିବା ତୀବ୍ର ଚୁମ୍ବକୀୟ କ୍ଷେତ୍ର ଯୋଗୁଁ ଏଭଳି ଘଟିଥାଏ ବୋଲି କିଛି ବିଶେଷଜ୍ଞ ମତବ୍ୟକ୍ତ କରିଥାନ୍ତି । ଏହି ଚନ୍ଦନଗିରି ଗୁମ୍ଫା ଉପର ଦେଇ ବିମାନ କିମ୍ବା ହେଲିକପ୍‌ଟର ଉଡାଣକୁ ବାରଣ କରାଯାଇଛି । ଅନେକବାର ଏଠାରେ ହେଲିକପ୍‌ଟର ଖସି ଧ୍ୱଂସ ହୋଇଯାଇଥିବା କଥା ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ ।

ଚନ୍ଦନଗିରି ପାହାଡଟି ଦୂରରୁ ଅତି ଚମତ୍କାର ଦିଶିଥାଏ । ଏହି ପାହାଡର ଶୀର୍ଷରେ ଜଣେ ଗଉଡୁଣୀ ଦହି ପସରା (ହାଣ୍ଡି) ଧରି ଠିଆ ହୋଇଥିବାର ଦୃଶ୍ୟ ଦୃଷ୍ଟିଗୋଚର ହୋଇଥାଏ । ଦହି ପସରା ମୁଣ୍ଡରେ ଧରିଥିବା ଗଉଡୁଣୀର ଭ୍ରମ ସୃଷ୍ଟି କରୁଥିବା ଏହି ବିଶାଳ ପ୍ରସ୍ତରଖଣ୍ଡ ବହୁ ଦୂରରୁ ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ । ଆପଣ ଗରଗଡବାହାଳ ଗାଁରେ ପହଞ୍ଚି ଚନ୍ଦନଗିରି ପାହାଡର ପାଦଦେଶରେ ଠିଆ ହୋଇ ଏହି ଦୃଶ୍ୟ ସ୍ପଷ୍ଟ ଭାବେ ଦେଖିପାରିବେ । ମାତ୍ର, ଏହି ଚନ୍ଦନଗିରି ଗୁମ୍ଫାସମୂହ ଆଜି ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଇ ନପାରିବା ଘଟଣା କେନ୍ଦୁଝରବାସୀଙ୍କ ପାଇଁ ଚରମ ପ୍ରତାରଣା । ଅପରପକ୍ଷେ, ଏହି ସ୍ଥାନଟିକୁ କେନ୍ଦୁଝର ଜିଲ୍ଲାର ବହୁ କମ୍ ଲୋକ ଜାଣିବା ଘଟଣା ମଧ୍ୟ ଦୁର୍ଭାଗ୍ୟଜନକ ।

ଚନ୍ଦନଗିରି ପାହାଡ ଶୀର୍ଷରେ ନୋଲ, ରାଣୀପଦା, କହ୍ନେଇଗୋଳା, ବାଉଁରୁ ଆଦି ଅନେକ ଆଦିବାସୀ ଗାଁ ଅବସ୍ଥିତ । ଏହି ଗାଁଗୁଡିକରେ ବିଶେଷକରି ଶବର, ଜୁଆଙ୍ଗ, ଗଉଡ ଓ ଅନ୍ୟ କିଛି ବାଥୁଡି ସଂପ୍ରଦାୟର ଲୋକମାନେ ବାସ କରନ୍ତି । କୁହାଯାଉଛି, ବାଉଁରୁ ଗାଁ ନିକଟରୁ ମୂଷଳ ଓ କୁଶେଇ ନଦୀ ଦୁଇଟି ଉତ୍ପତ୍ତିଲାଭ କରିଛି । ଚନ୍ଦନଗିରି ପାହାଡ ଉପର ଦେଇ କିଛି ବାଟ ମୂଷଳ ନଦୀ ପ୍ରବାହିତ ହେବା ପରେ ପାହାଡରୁ ତଳକୁ ଖସିପଡି ଏକ ମନୋରମ ଜଳପ୍ରପାତ ସୃଷ୍ଟି କରିଛି । ଏଠାରେ ପ୍ରତିବର୍ଷ ରଜ ସଂକ୍ରାନ୍ତିରେ ସ୍ଥାନୀୟ ଅଧିବାସୀମାନେ ଏକତ୍ରିତ ହୋଇ ଉତ୍ସବ ମନେଇଥାନ୍ତି । ଚନ୍ଦନଗିରି ଗୁମ୍ଫାର ଆରାଧ୍ୟ ଦେବତା ହେଉଛନ୍ତି 'ବଳି' । ବଳି ଦେବତା ଏଠାକାର ଆଦିବାସୀଙ୍କ ପାଇଁ ପ୍ରତ୍ୟକ୍ଷ ଦେବତା । ଜଙ୍ଗଲରେ ସମସ୍ତ ପ୍ରକାର ବିପଦଆପଦରୁ ବଳି ଦେବତା ଲୋକମାନଙ୍କୁ ରକ୍ଷା କରିଥାନ୍ତି । ଭଲ ବର୍ଷା କରାଇବା ପାଇଁ ସ୍ଥାନୀୟ ଅଞ୍ଚଳର ଲୋକମାନେ ବଳିଦେବତାଙ୍କୁ ସ୍ମରଣ କରିଥାନ୍ତି । ଚନ୍ଦନଗିରି ଗୁମ୍ଫା କେତେ ଦୀର୍ଘ ଆଜି ପର୍ଯ୍ୟନ୍ତ କୌଣସି ଲୋକ ତା'ର ଟେର୍ ପାଇନାହାନ୍ତି । କିଛି ପର୍ଯ୍ୟଟକ ସାତ ଆଠ କିଲୋମିଟର ପର୍ଯ୍ୟନ୍ତ ଯାଇଥିଲେ ମଧ୍ୟ ଏହାର ଶେଷ ପାଇ ନାହାନ୍ତି ।

# ଜିଲ୍ଲାରେ ଥିବା ଜଳପ୍ରପାତ

## ସାନଘାଗରା ଜଳପ୍ରପାତ





କେନ୍ଦୁଝର ଜିଲ୍ଲାରେ ପର୍ଯ୍ୟଟନସ୍ଥଳ କହିଲେ ଜିଲ୍ଲା ତଥା ଜିଲ୍ଲା ବାହାରେ ଲୋକେ ସାନ ଘଗରା ଓ ବଡ଼ ଘାଗରାକୁ ବୁଝିଥାନ୍ତି । କେନ୍ଦୁଝର ସହରଠାରୁ ୪୯ ନମ୍ବର ମୁମ୍ବାଇ-ଖଡ଼ଗପୁର ଜାତୀୟ ରାଜପଥରେ ସମ୍ବଲପୁର ଆଡକୁ ଗଲାବେଳେ ମାତ୍ର ୬ କିଲୋମିଟର ଦୂରରେ ଅବସ୍ଥିତ ଏହି ମନୋରମ ପର୍ଯ୍ୟଟନ ସ୍ଥଳ । ଗୋବରା ପାହାଡ ଉପରେ ମାଛ କାନ୍ଦଣା ନଦୀର ଜଳ ସ୍ରୋତରୁ ସୃଷ୍ଟି ହୋଇଥିବା ଏହି ପ୍ରପାତଟିର ଉଚ୍ଚତା ପ୍ରାୟ ୩୦ ଫୁଟ । ଏଠାରେ ବଣବୋଝି ପାଇଁ ସମସ୍ତ ପ୍ରକାର ସୁବିଧା ରହିଥିବାବେଳେ ରାଜ୍ୟ ତଥା ରାଜ୍ୟ ବାହାରୁ ପ୍ରତି ଶୀତ ଋତୁରେ ବହୁସଂଖ୍ୟାରେ ପର୍ଯ୍ୟଟକମାନେ ଆସିଥାନ୍ତି । ମାତ୍ର ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଏହା ଅବହେଳିତ ହୋଇପଡିଛି । ମାଛକାନ୍ଦଣା ନଦୀ ଗୋବରା ପାହାଡରୁ ତଳକୁ ଖସି ପଡି ଯେଉଁ ମନୋରମ ଜଳପ୍ରପାତ ସୃଷ୍ଟି କରିଛି ତାହା ହିଁ ହେଉଛି ସାନଘାଗରା ଜଳପ୍ରପାତ । ଏଠାରେ ଏକ ଜଳାଶୟ ନିର୍ମାଣ କରାଯାଇ ବୋଟିଂର ବ୍ୟବସ୍ଥା କରାଯାଇଛି । ତେବେ ଏହି ଜଳାଶୟ ରୁଗ୍ଣ ହୋଇପଡିବା ସହିତ ବୋଟ୍‌ଗୁଡିକ ମଧ୍ୟ ଭାଂଗିରୁଜି ଗଲାଣି । ଗୋବରା ପାହାଡ ଓ ଜୁଡିଆ ଘାଟୀର ମନୋରମ ସବୁଜ ସୁନ୍ଦର ଜଙ୍ଗଲ ଭରା ପ୍ରାକୃତିକ ପରିବେଶ ଓ ମାଛକାନ୍ଦଣା ନଦୀର କୁଳୁକୁଳୁ ନାଦ ପର୍ଯ୍ୟଟକଙ୍କୁ ବିଭୋର କରିଦିଏ । ସାନଘାଗରାକୁ ପ୍ରତିବର୍ଷ ଲକ୍ଷାଧିକ ଭକ୍ତ ରାଜ୍ୟ ତଥା ରାଜ୍ୟ ବାହାରରୁ ଆସିଥାନ୍ତି । ବଣଭୋଜିର ମଜା ସାଂଗକୁ ପ୍ରାକୃତିକ ବଣ ଜଙ୍ଗଲ ପରିପୂର୍ଣ୍ଣ ଏହି ଅଞ୍ଚଳର ସୌନ୍ଦର୍ଯ୍ୟକୁ

ପର୍ଯ୍ୟଟକମାନେ ବେଶ୍ ଉପଭୋଗ କରିଥାନ୍ତି । ମୁମ୍ବାଇ-ଖଡ଼ଗପୁର ୪୯ ନମ୍ବର ଜାତୀୟ ରାଜପଥ ଜୁଡ଼ିଆ ଘାଟିର ଏକ ପାର୍ଶ୍ୱରେ ଏହି ମନୋରମ ଜଳପ୍ରପାତ ଅବସ୍ଥିତ । ସାନଘାଗରା ପର୍ଯ୍ୟଟନ କେନ୍ଦ୍ର ମଧ୍ୟରେ ଏକ ମନୋରମ ପାର୍କ, ଗୋଲାପ ବଗିଚା ମଧ୍ୟ ରହିଛି । ଏଠାରେ ଏକ କୃତ୍ରିମ ହ୍ରଦ ନିର୍ମାଣ କରାଯାଇ ପର୍ଯ୍ୟଟକଙ୍କ ନିମନ୍ତେ ବୋଟିଂ ବ୍ୟବସ୍ଥା ମଧ୍ୟ ରହିଛି । ଅପରପକ୍ଷେ, ସ୍ଥାନୀୟ ଆଦିବାସୀଙ୍କ ଦ୍ୱାରା ସଂଗୃହୀତ ବିଭିନ୍ନ ପ୍ରକାର ବନଜାତ ଦ୍ରବ୍ୟ ଏହି ପର୍ଯ୍ୟଟନସ୍ଥଳରେ ମିଳିଥାଏ । ପର୍ଯ୍ୟଟକମାନେ ଏଠାକାର ସ୍ଥାନୀୟ ଆଦିବାସୀଙ୍କଠାରୁ ଅତି ଶସ୍ତାରେ ଏହି ବନଜାତ ଦ୍ରବ୍ୟ କିଣି ନିଜ ସାଥୀରେ ନେବାକୁ ପସନ୍ଦ କରିଥାନ୍ତି । ପ୍ରତିବର୍ଷ ଡିସେମ୍ବର ଜାନୁୟାରୀ ମାସରେ ସାନଘାଗରାକୁ ସର୍ବାଧିକ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ଏହି ପର୍ଯ୍ୟଟନ କେନ୍ଦ୍ର ମଧ୍ୟକୁ ପ୍ରବେଶ କରିବାକୁ ହେଲେ ପ୍ରବେଶ ଶୁଳ୍କ ଦେବାକୁ ପଡିଥାଏ । ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ ଜଙ୍ଗଲ ଓ ପରିବେଶ ବିଭାଗ ଅଧୀନସ୍ଥ ଆଞ୍ଚଳିକ ପ୍ଲାଣ୍ଟ ରିସୋର୍ସ ସେଣ୍ଟର ଏବଂ ସାନଘାଗରା ଉନ୍ନୟନ ସମିତି ତୁଲାଉଛନ୍ତି ।

## ବଡ଼ଘାଗରା ଜଳପ୍ରପାତ

କେନ୍ଦୁଝର ସହରଠାରୁ ମାତ୍ର ୧୦ କିଲୋମିଟର ଦୂରରେ ବଡ଼ଘାଗରା ଜଳପ୍ରପାତ ଅବସ୍ଥିତ । ୪୯ ନମ୍ବର ଜାତୀୟ ରାଜପଥରେ କେନ୍ଦୁଝରରୁ ଜୁଡ଼ିଆ ଘାଟି ଅତିକ୍ରମ କରି ସାନଘାଗରା ଯିବା ରାସ୍ତାରେ ପଡେ ବଡ଼ଘାଗରା । ସାନଘାଗରାରୁ ଆଉ ମାତ୍ର ଅଧ କିଲୋମିଟର ଆଗକୁ ଗଲେ ପଡିବ



ଅଞ୍ଜର ଛକ । ସେହି ସ୍ଥାନରୁ ବାମ ପଟେ ମାତ୍ର ତିନି କିଲୋମିଟର ଯିବା ପରେ ଦେଖିବାକୁ ମିଳିବ ପ୍ରକୃତିର ଆଉ ଏକ ଅଫୁରନ୍ତ ସୌନ୍ଦର୍ଯ୍ୟଭରା ସ୍ଥାନ 'ବଡ଼ଘାଗରା' । ମାଛକାନ୍ଦଣା ନଦୀରୁ ସୃଷ୍ଟି ହୋଇଥିବା ଏହି ଜଳପ୍ରପାତର ଉଚ୍ଚତା ମାତ୍ର ୬୦ ମିଟର । ପାହାଡ, ଜଙ୍ଗଲ ମଧ୍ୟରେ ଲୁଚି ରହିଥିବା ଏହି ପ୍ରପାତର ଚତୁର୍ପାର୍ଶ୍ୱର ସବୁଜିମା ବେଶ୍ ମନୋମୁଗ୍ଧକର । ଏହାବ୍ୟତୀତ ଏହାର ଉପର ପାର୍ଶ୍ୱରେ ଥିବା ମାଛକାନ୍ଦଣା ଡ୍ୟାମ୍ ମଧ୍ୟ ଦର୍ଶକଙ୍କୁ ଆକର୍ଷିତ କରିଥାଏ । ଜଳସେଚନ ବିଭାଗ ପକ୍ଷରୁ ପାନମାଛକାନ୍ଦଣାର ଜଳକୁ ଅଟକାଇ ରଖିବା ଉଦ୍ଦେଶ୍ୟରେ ଏକ ମାଟି ବନ୍ଧ ନିର୍ମାଣ କରାଯାଇଛି । ଏହା ଫଳରେ ଏଠାରେ ଏକ ବୃହତ୍ ଜଳଭଣ୍ଡାର ସୃଷ୍ଟି ହୋଇଛି । ଏଠାରେ ଏକ କ୍ଷୁଦ୍ର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇ ଜଳବିଦ୍ୟୁତ୍ ଉତ୍ପାଦନ କରାଯାଇପାରୁଛି । ବଡ଼ଘାଗରା



(ମାଛକାନ୍ଦଣା) ଡ୍ୟାମ୍ ନିକଟରେ ସ୍ଥାପିତ ବିଦ୍ୟୁତ ପ୍ରକଳ୍ପରୁ ୨ଟି ଜେନେରେଟରରୁ ୨୦ କିଲୋୱାଟ କରି ମୋଟ ୪୦ କିଲୋୱାଟ୍ ବିଦ୍ୟୁତ ଶକ୍ତି ୧୯୮୬ ମସିହାରୁ ଯୋଗାଣ ହୋଇ ଆସୁଥିଲା । କିନ୍ତୁ ଗତ କିଛି ବର୍ଷ ହେବ ଏହା ବନ୍ଦ ହୋଇ ପଡିଛି । ଚୋରମାନେ ଏଠାକାର ୨ଟି ସ୍ଥାନରୁ ତାର ଚୋରି କରି ନେଇଯିବା ପରଠାରୁ ବିଦ୍ୟୁତ୍ ଯୋଗାଣ ବନ୍ଦ ହୋଇଯାଇଛି । ତେବେ ପ୍ରାଶାସନିକ ଅବହେଳା କାରଣରୁ ଏହି ଜଳ ବିଦ୍ୟୁତ୍ ପ୍ରକଳ୍ପ ବନ୍ଦ ହୋଇ ପଡିଛି । ସୂଚନାଯୋଗ୍ୟ, ୧୯୭୮ ମସିହାରେ କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ ଅନ୍ତର୍ଗତ ମାଛକାନ୍ଦଣା ନଦୀ ଉପରେ ବଡ଼ଘାଗରା ଡ୍ୟାମ ସ୍ଥାପନ କରାଯାଇଥିଲା । ୮୫ ହେକ୍ଟର ଜମି ପରିମିତ ସ୍ଥାନରେ ସମୁଦ୍ର ପତନଠାରୁ ପ୍ରାୟ ୧୯୩୬ଫୁଟ ଉଚ୍ଚରେ ସ୍ଥାପିତ ଏହି ଡ୍ୟାମରୁ କେନ୍ଦୁଝର ସହରକୁ ପାନୀୟ ଜଳ ଯୋଗାଣ ସହିତ ବିଦ୍ୟୁତ୍ ଉତ୍ପାଦନ ଓ ଜଳସେଚନ କରିବାର ଲକ୍ଷ୍ୟ ନେଇ ଯୋଜନା

କାର୍ଯ୍ୟକାରୀ କରାଯାଇଥିଲା । ଦିନକୁ ଦିନ ବଡ଼ଘାଗରା ଜଳଭଣ୍ଡାରଟି ପୋତି ହୋଇ ପଡୁଥିବାରୁ ଏବେ କେନ୍ଦୁଝରବାସୀଙ୍କ ପାଇଁ ପାନୀୟ ଜଳ ସମସ୍ୟା ଉତ୍କଟ ରୂପ ଧାରଣ କରିଛି । ଡ୍ୟାମର ପୁନରୁଦ୍ଧାର କରାଯାଉନଥିବାରୁ ଜଳ ଧାରଣ କ୍ଷମତା କମି କମି ଚାଲିଛି । ଫଳରେ ଜଳଭଣ୍ଡାର ଏବେ ପୋତି ହୋଇଗଲାଣି । ଜଳଭଣ୍ଡାରର ଜଳଧାରଣ କ୍ଷମତା କମିବା ଯୋଗୁ କେନ୍ଦୁଝର ସହରବାସୀଙ୍କୁ ପିଇବା ପାଣି ଯୋଗାଣରେ ଅଭାବ ସହିତ ବିଦ୍ୟୁତ ଉତ୍ପାଦନ ଓ ଜଳସେଚନ ମଧ୍ୟ ପ୍ରଭାବିତ ହୋଇଛି । ପୂର୍ବରୁ ଏହି ବିଦ୍ୟୁତ୍ ପ୍ରକଳ୍ପରୁ ଘଣ୍ଟାକୁ ୪୦ କିଲୋୱାଟ୍ ଶକ୍ତି ଉତ୍ପାଦନ ହେଉଥିବା ବେଳେ ଏବେ ଏହା ବନ୍ଦ ହୋଇ ପଡିଛି । ବିଦ୍ୟୁତ୍ ତାର ଚୋରି ଯୋଗୁଁ ଗତ ୨୦୦୮ ମସିହା ସେପ୍‌ଟେମ୍ବରରୁ ଏହି ପ୍ରକଳ୍ପ ଅଚଳ ହୋଇପଡ଼ି ରହିଛି ।

## ହାଣ୍ଡିଭଂଗା ଜଳପ୍ରପାତ: କେନ୍ଦୁଝର ଜିଲ୍ଲାର ଗୁପ୍ତ ପର୍ଯ୍ୟଟନ

କେନ୍ଦୁଝର ଜିଲ୍ଲାରେ ରହିଛି ପ୍ରକୃତିର ଅନନ୍ୟ ଆକର୍ଷଣୀୟ ପର୍ଯ୍ୟଟନସ୍ଥଳ ଯାହାର ନାମ ହାଣ୍ଡିଭଂଗା । ଦୁର୍ଗମ ପାହାଡ ଓ ଘଞ୍ଚ ଜଙ୍ଗଲ ଘେରା ପରିବେଶ ମଧ୍ୟରେ ଅତ୍ୟନ୍ତ ଗୁପ୍ତ ଭାବରେ ଏହି ଜଳପ୍ରପାତଟି ଘର୍ଘର ଶବ୍ଦ କରି ପାହାଡ ଉପରୁ ନିୟମିତ ଭାବେ ଖସି ଚାଲିଛି । ବାସ୍ତବରେ ହାଣ୍ଡିଭଂଗା ଜଳପ୍ରପାତକୁ କେନ୍ଦୁଝର ଜିଲ୍ଲାର 'ଗୁପ୍ତ ପର୍ଯ୍ୟଟନ' *(hidden tourism)* ନାମରେ ବର୍ଣ୍ଣିତ କରାଯାଇଛି । ଯୋଡା ବ୍ଲକ୍ ଅନ୍ତର୍ଗତ ବହଳଦା ଗ୍ରାମପଞ୍ଚାୟତର ହାଣ୍ଡିଭଂଗା ଗାଁରେ ଅବସ୍ଥିତ ପ୍ରକୃତିର ଏହି ମନୋରମ ପର୍ଯ୍ୟଟନସ୍ଥଳଟି କେନ୍ଦୁଝର ଜିଲ୍ଲାର 'ଗୁପ୍ତ ପର୍ଯ୍ୟଟନସ୍ଥଳ'ର ମାନ୍ୟତା ପାଇଛି । ସମସ୍ତଙ୍କ ନଜର ଆଢୁଆଳରେ ରହିଥିବା ଏହି ଜଳପ୍ରପାତ କେନ୍ଦୁଝର ଜିଲ୍ଲାର ସବୁଠୁ ଆକର୍ଷଣୀୟ ଜଳ ପ୍ରପାତ । ତେବେ ଏହି ପର୍ଯ୍ୟଟନସ୍ଥଳକୁ ଯିବା ପାଇଁ ଗମନାଗମନର ଆଦୌ ସୁବିଧା ନଥିବାରୁ ଏହା ନିକଟରେ ପହଞ୍ଚିବା ଅତ୍ୟନ୍ତ ଦୁରୁହ ହୋଇପଡେ । ହାଣ୍ଡିଭଂଗା ଜଳପ୍ରପାତ ନିକଟରେ କେନ୍ଦୁଝର ଜିଲ୍ଲାର ପ୍ରମୁଖ ମାଇନ୍‌ସଗୁଡିକ କାର୍ଯ୍ୟ କରୁଥିଲେ ମଧ୍ୟ ଖଣି ସଂସ୍ଥାମାନଙ୍କ ପକ୍ଷରୁ ଏହି ପର୍ଯ୍ୟଟନସ୍ଥଳର ବିକାଶ ପାଇଁ ସେମିତି କୌଣସି ପଦକ୍ଷେପ ଗ୍ରହଣ କରାଯାଇନାହିଁ । କେନ୍ଦୁଝରରୁ ପଳାସପଂଗା ରାସ୍ତାରେ ନୟାଗଡ ଦେଇ ଗଲେ ପ୍ରଥମେ କାଳିମାଟିରେ ପହଞ୍ଚିବାକୁ ହେବ । କାଳିମାଟିରୁ ବାମ ଦିଗକୁ ପ୍ରାୟ ଦଶ କିଲୋମିଟର ଗଲେ ପଡିବ ଏହି ଗୁପ୍ତ ଜଳପ୍ରପାତ । କାଳିମାଟି ଛକଠାରୁ ଖଣିଖାଦାନଭରା ଘଞ୍ଚ ଅରଣ୍ୟ ମଧ୍ୟ ଦେଇ ଏକ ଜଙ୍ଗଲିଆ ଦୁର୍ଗମ ପଥ ଅତିକ୍ରମ କରି ଗଲେ ଏହି ପ୍ରପାତଟି ଦୃଷ୍ଟିଗୋଚର ହୋଇଥାଏ । ପ୍ରସିଦ୍ଧ ଗୁରୁତା, ସିରାଜୁଦ୍ଦିନ୍ ଖଣି ଏହି ଜଳପ୍ରପାତ ନିକଟରେ ଅବସ୍ଥିତ । ସୁନ୍ଦରଗଡ ଜିଲ୍ଲାରୁ ବହି ଆସିଥିବା ଏକ ଜଙ୍ଗଲୀ ଝରଣା ବହି ଆସୁଆସୁ ହାଣ୍ଡିଭଙ୍ଗା ଠାରେ ଥିବା କାଳିଆ ପାହାଡରୁ ୩୦୦ ଫୁଟ ତଳକୁ ଖସି ପଡି ଏହି ମନୋରମ ଜଳପ୍ରପାତଟିଏ ସୃଷ୍ଟି କରିଛି । ହାଣ୍ଡିଭଂଗା ଜଳପ୍ରପାତଟି ପ୍ରକୃତରେ



କେନ୍ଦୁଝର ଜିଲ୍ଲାର ଅନ୍ୟାନ୍ୟ ପର୍ଯ୍ୟଟନସ୍ଥଳ ତୁଳନାରେ ସବୁଠୁ ମନୋରମ ଓ ଶାନ୍ତ ଶୀତଳ । ଏହାର ପ୍ରାକୃତିକ ଶୋଭା ଓ ସବୁଜଘଞ୍ଚ ବନାନୀ ଓ ରାଶିରାଶି ପାହାଡ ପ୍ରକୃତରେ ଉପଭୋଗ୍ୟ । ହାଣ୍ଡିଭଂଗା ଜଳପ୍ରପାତଟି ତଳକୁ ଖସିପଡି ଏକ କୁଣ୍ଡ ସୃଷ୍ଟି କରିଛି । ଶୁଣାଯାଏ, ଏହି କୁଣ୍ଡ ଭିତରେ ଏକ ବିରାଟକାୟ କଚ୍ଛପ ରହିଛି ଏବଂ ଏହି କଚ୍ଛପର ପିଠିରେ ହିଁ ହାଣ୍ଡିଭଙ୍ଗା ଜଳପ୍ରପାତ ଘର୍ଘର ନାଦ କରି ଖସିପଡିଥାଏ । ତେବେ ଏହି କଚ୍ଛପ ସବୁବେଳେ ଦେଖାଯାଏନାହିଁ । ଯେବେ ଏହି କଚ୍ଛପ ଦର୍ଶନ ହୋଇଥାଏ, ତାହାକୁ ସ୍ଥାନୀୟ ଅଞ୍ଚଳରେ ଦେବ ଦର୍ଶନର ମାନ୍ୟତା ପ୍ରଦାନ କରାଯାଇଥାଏ । ଏହି ଜଳପ୍ରପାତଟି ହାଣ୍ଡି ଭାଙ୍ଗିବା ଭଳି ଶବ୍ଦ ସୃଷ୍ଟି କରୁଥିବାରୁ ଏହାକୁ ହାଣ୍ଡିଭଂଗା ଜଳପ୍ରପାତ କୁହାଯାଏ । ବିଶେଷକରି ହାଣ୍ଡିଭଂଗା ଜଳପ୍ରପାତ ଓ ଏହାର ଆଖପାଖ ଅଞ୍ଚଳରେ ବସବାସ

କରୁଥିବା ଆଦିବାସୀ ପୁରପଲ୍ଲୀଗୁଡ଼ିକ ଦୁର୍ଗମ ଓ ଅପହଞ୍ଚ । ଏହି ଜଳପ୍ରପାତର ଜଳ ତଳକୁ ଖସିପଡ଼ିବା ସହ ଜଳଧାର ପାନକାଳିମାଟି ଦେଇ ଦୁବୁନା ଖଣି ଭିତରେ ପ୍ରବେଶ କରି ଶେଷରେ ନୟାଗଡ ନିକଟରେ ବୈତରଣୀ ନଦୀରେ ମିଶିଛି । ଏଠାରେ ଦିନବେଳା ସୂର୍ଯ୍ୟକିରଣ ବୃକ୍ଷଲତା ଭେଦ କରି ଭୂମିରେ ପଡି ପାରୁ ନଥିବାରୁ ସ୍ଥାନଟି ସର୍ବଦା ଛାୟାଯୁକ୍ତ ଓ ଅନ୍ଧାରୁଆ ଦେଖାଯାଏ । ଏହାର ମନୋରମ ଶୀତଳ ପରିବେଶ ଗ୍ରୀଷ୍ମଋତୁରେ ଶହଶହ ପର୍ଯ୍ୟଟକଙ୍କୁ ଟାଣି ଆଣିଥାଏ । ଏଠାରେ ଶାଳ, ପିଆଶାଳ, ମାଂକଡାକେନ୍ଦୁ, ଜାମ୍ବୁ, ଡିମିରି, ଚାଆଁର, ଶିଆଳି ଆଦି ଲତାକୁଞ୍ଜ ସାଂଗକୁ ବଣଭୋଜି ପାଇଁ ଉପଯୁକ୍ତ ସ୍ଥାନ ରହିଛି । ଶୀତ ଦିନେ ଓ ଗ୍ରୀଷ୍ମ ଋତୁରେ ଏଠାରେ ପର୍ଯ୍ୟଟକଙ୍କ ଭିଡ ଜମିଥାଏ ।

## ଅସୁରଖୋଲ ଓ ସନ୍ନିକଟ ଦୁଇଟି ଆକର୍ଷଣୀୟ ଜଳପ୍ରପାତ

କେନ୍ଦୁଝର ଜିଲ୍ଲାର ଝୁମ୍ପୁରା ବ୍ଲକ୍‌ରେ ରହିଛି ପ୍ରକୃତିର ଅନନ୍ୟ ଉପହାର ଅସୁରଖୋଲ ପର୍ଯ୍ୟଟନସ୍ଥଳ ।



ଏଠାରେ ଏକ ବିଶାଳ ପର୍ବତ ଗୁମ୍ଫା ରହିଛି ଏବଂ ଏହି ଗୁମ୍ଫାରେ ଅସୁର ରହୁଥିବାରୁ ଏହାର ନାମ 'ଅସୁରଖୋଲ' ହୋଇଛି । ଏଠାରେ ଦୁଇଟି ଚିତ୍ତାକର୍ଷକ ମନୋରମ ଜଳପ୍ରପାତ ରହିଛି । ଗୋଟିଏ ଜଳପ୍ରପାତ ଅସୁରଖୋଲ ଗୁମ୍ଫା ନିକଟରେ ଥିବାବେଳେ ଅନ୍ୟଟି ଘଞ୍ଚ ଜଂଗଲ ମଧ୍ୟରେ ଗୁପ୍ତ ଭାବେ ରହିଛି । ଗୁମ୍ଫା ଓ ଜଳପ୍ରପାତ ବ୍ୟତୀତ ଏହି ସ୍ଥାନଟି ଏକ ଗୁରୁତ୍ୱପୂର୍ଣ୍ଣ ଶୈବପୀଠ ଭାବେ



ଅସୁରଖୋଲ ଗୁମ୍ଫା ଓ ଶୈବପୀଠ

ସମଗ୍ର କେନ୍ଦୁଝର ଜିଲ୍ଲାରେ ପରିଚିତ । ମହାଦେବ ଶିବ ଏକ ଅସୁରକୁ ବଧ କରିବା ପରେ ନିଜକୁ ଏହି ଗୁମ୍ଫାରେ ପ୍ରତିଷ୍ଠିତ କରିଥିଲେ । ଏହା ପରେ ଏହି ଗୁମ୍ଫାଟି ଅସୁରଖୋଲ ଶୈବପୀଠର ମାନ୍ୟତା ଲାଭ କରିପାରିଛି । ତେବେ ଏଭଳି ଏକ ପ୍ରାକୃତିକ ଶୋଭାଭରା ମନୋରମ ପର୍ଯ୍ୟଟନସ୍ଥଳଟି ଲୋକଲୋଚନର ଆଢୁଆଳରେ ରହିଯାଇଛି । ଏମିତିକି କେନ୍ଦୁଝର ଜିଲ୍ଲାର ଅଧିକାଂଶ ଜନସାଧାରଣ ଏଭଳି ଏକ ସୁନ୍ଦରତମ ସ୍ଥାନଟିଏ ଅଛି ବୋଲି ଜାଣନ୍ତିନାହିଁ । ଏଠାରେ ଅସୁରେଶ୍ୱର ମହାଦେବଙ୍କ ମନ୍ଦିର ଅଛି ଏବଂ ପ୍ରତିବର୍ଷ ଏଠାରେ ମକରମେଳା ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ମାନଗଡ ପର୍ବତମାଳାରେ ରହିଛି ଏହି ଅସୁରଖୋଲ ଗୁମ୍ଫା । ପ୍ରାୟ ୪୦ ଫୁଟ ବ୍ୟାସ ଓ ୧୫ ଫୁଟ ଉଚ୍ଚ ବିଶିଷ୍ଟ ଏହି ପ୍ରାକୃତିକ ସବୁଜ ଜଙ୍ଗଲଘେରା ଗୁମ୍ଫା ମଧ୍ୟରେ ଅଛନ୍ତି ଅସୁରେଶ୍ୱର ମହାଦେବ । ଗୁମ୍ଫା ମଧ୍ୟରେ ପାଞ୍ଚ କିଲୋମିଟର ଲମ୍ବର ସୁଡ଼ଙ୍ଗ ରହିଛି । ଏହି ସୁଡ଼ଙ୍ଗଟି ମାଟି ତଳେ ଯାଇ ନିକଟସ୍ଥ କାଞ୍ଜିପାଣି ଗ୍ରାମରେ ବାହାରିଛି ବୋଲି କୁହାଯାଏ । ଏହି ଗୁମ୍ଫାରେ ଇଂରେଜ ସରକାର ଅମଳରେ ସାଗର ମୁଣ୍ଡା ନାମକ ଜଣେ ଯୋଦ୍ଧା ୨୧ ଦିନ କଟେଇଥିଲେ ଏବଂ ଗୁମ୍ଫାରୁ ବାହାରିଲା ପରେ ତାଙ୍କର ମୃତ୍ୟୁ ହୋଇଥିଲା ବୋଲି ଲୋକ କଥା ଶୁଣିବାକୁ ମିଳିଥାଏ । ଏହି ଅସୁରଖୋଲ ଗୁମ୍ଫା ନିକଟସ୍ଥ ଜଂଗଲରେ ଦୁଇଟି ମନୋରମ ଜଳ ପ୍ରପାତ ରହିଛି । ଅସୁରଖୋଲ



ଅସୁରଖୋଲ ଗୁମ୍ଫାର ଅସୁର ପଥର

ଗୁମ୍ଫାକୁ ଲାଗି ଏକ ଜଳପ୍ରପାତ ରହିଥିବାବେଳେ ଘଞ୍ଚ ଜଂଗଲ ଓ ପାହାଡ ଅତିକ୍ରମ କରି ପ୍ରାୟ ୫ କିଲୋମିଟର ଅତିକ୍ରମ କରି ଗଲାପରେ ଆଉ ଏକ ବୃହତ୍ ଜଳ ପ୍ରପାତ ଦୃଶ୍ୟମାନ ହୋଇଥାଏ । ତେବେ ଦୁର୍ଗମ ପାହାଡ ଓ ଜଙ୍ଗଲ ମଧ୍ୟରେ ଥିବା ଏହି ଦ୍ୱିତୀୟ ଜଳପ୍ରପାତଟିକୁ ଦେଖିବାକୁ ହେଲେ ବହୁ କଷ୍ଟ କରିବାକୁ ପଡିଥାଏ । ହିଂସ୍ରଜନ୍ତୁଙ୍କ ଭୟ ଥିବା ସତ୍ତ୍ୱେ ଘଞ୍ଚ ଜଙ୍ଗଲ ଓ ପାହାଡିଆ ପଥ ଅତିକ୍ରମ କଲାପରେ ଏହି ଜଳପ୍ରପାତଟିକୁ ଦେଖିହୁଏ । ଏହି ଜଳପ୍ରପାତଟି ବହୁତ ଦୀର୍ଘ । ଅଧିକାଂଶ ପର୍ଯ୍ୟଟକ କେବଳ ଅସୁରଖୋଲ ଗୁମ୍ଫାକୁ ଲାଗି ରହିଥିବା ପ୍ରଥମ ଜଳପ୍ରପାତକୁ ଦେଖି ଫେରି ଆସିଥାନ୍ତି । ଜଙ୍ଗଲ ମଧ୍ୟରେ ଥିବା ଦ୍ୱିତୀୟ ତଥା



ବୃହତ୍ ଜଳ ପ୍ରପାତଟିକୁ ଦେଖିବାର ସୌଭାଗ୍ୟ ଲାଭ କରି ପାରନ୍ତି ନାହିଁ । ମାନଗଡ ଓ ଦଣ୍ଡା ପର୍ବତର ସଂଯୋଗ ସ୍ଥଳରୁ ବୁଢା ମହାରାଜା ଝରଣା ବହିଆସି ଏହି ଦୁଇଟି ଜଳପ୍ରପାତ ସୃଷ୍ଟି କରିଛି । ଏହି ସ୍ଥାନଟି ଏତେ ନିଘଞ୍ଚ ଓ ଜନଶୂନ୍ୟ ଯେ, ଦିନବେଳା ଏହି ଅଞ୍ଚଳକୁ ଯିବାକୁ ଲୋକେ ଭୟ କରନ୍ତି । ଏଠାରେ ପୂର୍ବେ ଅତି ଭୟଙ୍କର ଶବ୍ଦ ଶୁଣିବାକୁ ମିଳୁଥିଲା ବୋଲି ସ୍ଥାନୀୟ ଲୋକେ ପ୍ରକାଶ କରନ୍ତି । ଏଠାରେ ଭୟଙ୍କର ଅସୁର ଗର୍ଜନ ଶବ୍ଦ ଶୁଭୁଥିବାରୁ ଏହାର ନାମ ଅସୁରଖୋଲ ହୋଇଛି ବୋଲି ଲୋକବିଶ୍ୱାସ ରହିଛି । ଏଠାରେ ଲାଲ୍ ରଂଗର ଏକ ବିରାଟ ପଥରଖଣ୍ଡ ରହିଛି । ଏହାକୁ 'ଅସୁର ପଥର' କହନ୍ତି । ଏହି ଗୁମ୍ଫାରେ ଥିବା ଶିବ ମନ୍ଦିରରେ ଦୈନିକ ପୂଜାପାଠ ହୁଏ ଓ ମାନସିକ ରଖି ଅନେକ ଭକ୍ତ ପୂଜାର୍ଚ୍ଚନା କରନ୍ତି । ୧୯୯୦ ମସିହାରେ ଏଠାରୁ ଏକ ତମ୍ବାପାତ୍ର ଓ କିଛି ହାଡ ମିଳିଥିଲା । ପ୍ରତିବର୍ଷ ମକର ମେଳାରେ ଏହି କ୍ଷେତ୍ରରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏଠାରେ ଥିବା କୁଣ୍ଡରେ ବୁଡ ପକେଇଲେ ମନସ୍କାମନା ପୂର୍ଣ୍ଣ ହୁଏ ବୋଲି ବିଶ୍ୱାସ ରହିଛି । ୨୦୦୨ ମସିହାରେ ଏଠାରେ ଏକ ବନ୍ଧ ନିର୍ମାଣ କରାଯିବା ସହ ପାହାଚ, ପାଚେରୀ ଆଦି ନିର୍ମାଣ କରାଯାଇଛି । ତିନି ଦିନ ବ୍ୟାପୀ ଏଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ଦୁର୍ଭାଗ୍ୟ, ଏହି ଅସୁରଖୋଲ ପର୍ଯଟନ ସ୍ଥଳଟି ରାଜ୍ୟ ସରକାରଙ୍କ ପର୍ଯ୍ୟଟନ ବିଭାଗର ଦୃଷ୍ଟି ଆଢୁଆଳରେ ରହିଯାଇଛି । ଏଠାକାର ଶାନ୍ତ, ଶୀତଳ ଓ ସବୁଜିମାଭରା ପରିବେଶ ପର୍ଯ୍ୟଟକଙ୍କୁ ବିମୋହିତ କରିଥାଏ ।

## ରାଜ୍ୟର ଦୀର୍ଘତମ ଜଳପ୍ରପାତ: ଖଣ୍ଡାଧାର

ରାଜ୍ୟର ଦୀର୍ଘତମ ଜଳପ୍ରପାତ ଓ ମନୋରମ ପର୍ଯ୍ୟଟନସ୍ଥଳୀ ଭାବେ ଓଡ଼ିଶାବାସୀଙ୍କ ହୃଦୟ ଜିତି ପାରିଥିବା ଖଣ୍ଡାଧାର ପ୍ରତି ଏବେ ବିପଦ ଘନେଇବାରେ ଲାଗିଛି । ଖଣ୍ଡାଧାର ପାହାଡରେ ସବୁଠୁ ଉଚ୍ଚ ମାନର ଲୁହାପଥର ଗଚ୍ଛିତ ହୋଇଥିବାରୁ ଏହା ଏବେ ଖଣି ମାଫିଆଙ୍କ ବିଷ ଦୃଷ୍ଟିକୁ ଆସି ଯାଇଛି । କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍ ଓ ସୁନ୍ଦରଗଡ ଜିଲ୍ଲାର ବଣେଇ ମଧ୍ୟରେ ରହିଥିବା ବିଶାଳ ପର୍ବତମାଳାର ନାମ ହେଉଛି ଖଣ୍ଡାଧାର । ରାଶିରାଶି ପର୍ବତ ସାଙ୍ଗକୁ ସବୁଜ ବନାନୀ ଓ ଶୀତଦିନର ମନୋରମ ପ୍ରାକୃତିକ ଶୋଭା ହିଁ ଖଣ୍ଡାଧାରର ବିଶେଷତ୍ୱ । ଦିନ ଥିଲା, ଏଠାରେ ଶୀତଦିନେ ତୁଷାରପାତ ହେଉଥିଲା । ମାତ୍ର ଏହି ପାହାଡମାଳାରେ ପ୍ରଚୁର ମାତ୍ରାରେ ପୁଣି ଭଲ ଗ୍ରେଡ୍‌ର ଲୁହା ପଥର ଗଚ୍ଛିତ ରହିଥିବା କଥା ବୈଜ୍ଞାନିକ ସର୍ଭେ ରିପୋର୍ଟରୁ ଜଣାପଡିଲା ମାତ୍ରେ ଏହା ଏବେ ବିପଦସଂକୁଳ ହୋଇ ପଡିଛି । ଏଠାରୁ ଲୁହାପଥର ନେବା ପାଇଁ ଲୁହା କଂପାନୀ ଓ ଖଣି ମାଫିଆଙ୍କ ଲମ୍ବା ଲାଇନ୍ ଲାଗିଛି । ଯାହା ଫଳରେ ଖଣ୍ଡାଧାର ଭଳି ଏକ ପ୍ରାକୃତିକ ଶୋଭା ନଷ୍ଟ ହେବାକୁ ବସିଛି । ଏହି ପ୍ରସଙ୍ଗ ଏବେ ରାଜ୍ୟବାସୀଙ୍କ ପାଇଁ ପ୍ରମୁଖ ଚିନ୍ତାର କାରଣ ପାଲଟିଛି ।



ଖଣ୍ଡାଧାର ହେଉଛି ରାଜ୍ୟର ସବୁଠୁ ଦୀର୍ଘତମ ଓ ମନୋରମ ଜଳପ୍ରପାତ ଏବଂ ଏହାର ଉଚ୍ଚତା ୧୬୨ ମିଟର । ଏହାର ଦୁଇଟି ପାର୍ଶ୍ୱ ରହିଛି । ଗୋଟିଏ ପାର୍ଶ୍ୱ ସୁନ୍ଦରଗଡ ଜିଲ୍ଲାରେ ଥିବାବେଳେ ଅନ୍ୟ ପାର୍ଶ୍ୱଟି କେନ୍ଦୁଝର ଜିଲ୍ଲାରେ ରହିଛି । ସମ୍ଭବତଃ ଖଣ୍ଡାଧାର ପର୍ବତମାଳା ହିଁ ଏହି ଦୁଇ ଜିଲ୍ଲାର ଭୌଗୋଳିକ ସୀମାରେଖାକୁ ସୂଚେଇଥାଏ । କେନ୍ଦୁଝର ଜିଲ୍ଲାରେ ଥିବା ଖଣ୍ଡାଧାର ପାହାଡର

୩୦୦ ଫୁଟ୍ ଉଚ୍ଚରୁ ଖସିପଡୁଥିବା ଜଳପ୍ରପାତ ଭଳି ପୃଥିବୀରେ ଏତେ ମନୋରମ ଜଳପ୍ରପାତ ଦେଖାଯାଏନା । ଏହି ଜଳପ୍ରପାତର ବିଶେଷତ୍ୱ ହେଉଛି, ଏହା ପାହାଡର ପିଠିକୁ ଲାଗିକରି ନ ଖସି ବରଂ ପାହାଡର ଶୀର୍ଷରୁ ଶୂନ୍ୟରେ ଶୂନ୍ୟରେ ତଳକୁ ଖସିପଡିଲା ଭଳି ମନେ ହୋଇଥାଏ । ଶୂନ୍ୟରୁ ଖସି ପଡୁଥିବା ଜଳବିନ୍ଦୁମାନଙ୍କ ସମାହାରରେ ଇନ୍ଦ୍ରଧନୁର ଯେଉଁ ଏକ ବିଶାଳ ବଳୟ ସୃଷ୍ଟି ହୋଇଥାଏ ତାହା ଅନ୍ୟ ଜଳପ୍ରପାତମାନଙ୍କରେ ଦେଖା ଯାଇ ନଥାଏ ।

ଖଣ୍ଡାଧାର ସହିତ ଏଠାକାର ଆଦିବାସୀ ଜନଜୀବନ ଓ ସଂସ୍କୃତି ବେଶ ଜଡିତ । ଏଠାରେ ବସବାସ କରୁଥିବା ଭୂୟାଁ ଜନଜାତିଙ୍କ ଆଦି ଦେବତାଙ୍କ ନାମ ହେଉଛି 'ଖଣ୍ଡାପାଟ' । ଏହି ଦେବତାଙ୍କ ନାମ ଅନୁସାରେ ଏହାର ନାମ ଖଣ୍ଡାଧାର ହୋଇଛି ବୋଲି ଗବେଷକମାନଙ୍କ ମତ । ପ୍ରତିବର୍ଷ ମକର ସଂକ୍ରାନ୍ତିରେ ଏଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ମକର ସଂକ୍ରାନ୍ତି ଦିନ ଏଠାରେ ବାରୁଣୀ ସ୍ନାନ କଲେ ମଣିଷକୁ ମୋକ୍ଷପ୍ରାପ୍ତ ହୋଇଥାଏ ବୋଲି ଏଠାକାର ଭୂୟାଁ ଆଦିବାସୀଙ୍କର ବିଶ୍ୱାସ ରହିଛି । ଖଣ୍ଡାଧାର ଜଳପ୍ରପାତ ଓ ଏଠାକାର ଆଦିବାସୀ ପରଂପରା, ସଂସ୍କୃତିଭିତ୍ତିକ ପର୍ଯ୍ୟଟନସ୍ଥଳ ବୁଲିବାକୁ ପ୍ରତିବର୍ଷ ଏଠାକୁ ହଜାର ହଜାର ସଂଖ୍ୟାରେ ବିଦେଶୀ ପର୍ଯ୍ୟଟକ ଆସିଥାନ୍ତି । ଖଣ୍ଡାଧାର କେନ୍ଦୁଝର ଜିଲ୍ଲାର ଜନଜୀବନ ସହିତ ଅଂଗାଂଗି ଭାବେ ଜଡିତ ।

ଖଣ୍ଡାଧାର ପାହାଡରେ ଉନ୍ନତ ମାନର ଲୁହା ପଥର ଗଚ୍ଛିତ ଥିବାରୁ ଏହା ଏବେ ଖଣି ମାଫିଆ, ଶିଳ୍ପପତି ଓ ଖଣି ଚୋରଙ୍କ ଲୋଲୁପ ଦୃଷ୍ଟିରେ ରହିଛି । ଏହି ପାହାଡରେ ଥିବା ଲୁହା ପଥର ଉତ୍ତୋଳନ କରିବା ପାଇଁ ଏବେ ବିଶ୍ୱର ବଡ଼ବଡ଼ ନାମୀ କଂପାନୀମାନଙ୍କର ଜିଭରୁ ଲାଳ ଗଡିବା ଆରମ୍ଭ କରିଛି । ଏଠାରୁ ଲୁହାପଥର ଖୋଳିନେବା ପାଇଁ ପୋସ୍କୋ, ଟାଟା, ମିତ୍ତଲ, ମେସ୍କୋ, ଓଡ଼ିଶା ସ୍ପଞ୍ଜ ଆଇରନ୍ ଭଳି ଅନେକ ସଂସ୍ଥା ଓ କଂପାନୀମାନେ ସରକାରଙ୍କୁ ଆବେଦନ କରିଛନ୍ତି । ଏହି ପାହାଡକୁ ଭାଙ୍ଗି ଗୁଣ୍ଡ କରି ଲକ୍ଷ ଲକ୍ଷ କୋଟି ଟନ୍ ଲୁହା ପଥର ବିଦେଶକୁ ଚାଲାଣ କରିବା ନିଶାରେ ଏବେ ସମସ୍ତେ ମସ୍‌ଗୁଲ୍ । ରାଜ୍ୟର ସୁନ୍ଦରତମ ଜଳପ୍ରପାତକୁ ସବୁଦିନ ପାଇଁ ପୃଥିବୀ ପୃଷ୍ଠରୁ ବିଲୋପ କରିଦେବାର ଚକ୍ରାନ୍ତରେ ନେତା, ମନ୍ତ୍ରୀ, ଅଫିସରଙ୍କଠାରୁ ଆରମ୍ଭ କରି ଖଣି ମାଫିଆ , ଶିଳ୍ପପତିଙ୍କ ପର୍ଯ୍ୟନ୍ତ; ସମସ୍ତେ ସାମିଲ୍ ଅଛନ୍ତି । ଏଡ଼େ ବିଶାଳ ପର୍ବତମାଳାକୁ ବିସ୍ଫୋରଣ କରି ମଣିଷ ଗୁଣ୍ଡ କରିଦେବ, ଏଠାରେ ଥିବା ଆଦିବାସୀ ଜନଜୀବନ ଓ ପରଂପରା ଉଚ୍ଛନ୍ନ ହୋଇଯିବ, ଏହା ଭାବିଲା ବେଳକୁ ପଞ୍ଜରା ଥରି ଉଠେ । ଖଣ୍ଡାଧାର ପାହାଡ ତ ମଣିଷ ଭଳି କଥା କୁହେନି । ଯଦି ଖଣ୍ଡାଧାର କଥା କହି ପାରନ୍ତା, ତେବେ ସେ ଯାହା ପ୍ରକାଶ କରନ୍ତା ତା'ର ଅର୍ଥ ଏଭଳି ହୁଅନ୍ତା । "ହେ, ସ୍ୱାର୍ଥପର ମଣିଷ, ତମେମାନେ ସ୍ୱାର୍ଥ ପାଇଁ ସବୁକିଛି କରିପାର । ଏମିତିକି ନିଜ ମାଆ, ଭଉଣୀକୁ ଅର୍ଥ ବିନିମୟରେ ଅନ୍ୟ ହାତରେ ଟେକି ଦେଇପାର । ଧିକ୍, ତମ ମଣିଷ ଜୀବନ ।"

ଏବେ ପ୍ରତି ମୂହୁର୍ତ୍ତରେ ଖଣ୍ଡାଧାର ଲୁଣ୍ଠିତ ହୋଇ ଚାଲିଛି । ଖଣି ମାଲିକମାନେ ଖଣ୍ଡାଧାରରୁ ଖଣି ଖୋଳି ନଥିଲେ ମଧ୍ୟ ସ୍ଥାନୀୟ ଅଞ୍ଚଳର ଖଣି ଡକାୟତମାନେ ନିୟମିତ ଗୁପ୍ତ ଭାବେ କ୍ରସର ବସେଇ ପାହାଡ ଭାଂଗି ଲୁହା ପଥର ବିକ୍ରି କରୁଛନ୍ତି । ପ୍ରତିଦିନ ଖଣ୍ଡାଧାର ଲୁଟ୍ ହେବାରେ ଲାଗିଛି । ବର୍ତ୍ତମାନ ଖଣ୍ଡାଧାରକୁ ବଞ୍ଚେଇବା ପାଇଁ କେନ୍ଦୁଝରବାସୀ ଅଣ୍ଟା ଭିଡି ଆଗେଇ ଆସିବା ଉଚିତ୍ । ଏ ଅଞ୍ଚଳର ଆଦିବାସୀମାନେ ଏହାକୁ ଘୋର ବିରୋଧ କରିବା ଉଚିତ୍ ।

## ଖଣ୍ଡାଧାର ଓ ଏହାର ଜୈବ ବିବିଧତା

ଓଡିଶାର ଦୁଇଟି ବିଖ୍ୟାତ ଜଳପ୍ରପାତ ଏବେ ସଂକଟାପନ୍ନ । ପୋସ୍କୋ ରାକ୍ଷସର ପନ୍‌ଝା ଭିତରେ ପଶି ଅସ୍ୱାଭାବିକ ଭାବେ ମୃତ୍ୟୁର ଦ୍ୱାରଦେଶରେ ପହଞ୍ଚିଛି ଖଣ୍ଡାଧାର ଜଳପ୍ରପାତ । ଖଣ୍ଡାଧାର କହିଲେ ଓଡିଶାର ଦୁଇଟି ବିଖ୍ୟାତ ଜଳପ୍ରପାତ ସ୍ମୃତିପଟରେ ଝଲିସ ଉଠେ । ଗୋଟିଏ ହେଉଛି ସୁନ୍ଦରଗଡ ଜିଲ୍ଲାର ଲହୁଣୀପଡା ବ୍ଲକ ଅଧୀନସ୍ଥ ତାଳବାହାଲୀ ଗ୍ରାମ ପଞ୍ଚାୟତରେ ୭୦୦ ଫୁଟ ତଳକୁ ଖସି ପଡିଥିବା ଖଣ୍ଡାଧାର । ଅନ୍ୟଟି ହେଉଛି କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ ଅଧୀନସ୍ଥ ତଳକାଦକଳା ପଞ୍ଚାୟତରେ ଥିବା ୫୦୦ ଫୁଟ ତଳକୁ ଖସି ପଡିଥିବା ଖଣ୍ଡାଧାର ।

**କେନ୍ଦୁଝରର କାଦକଳା ଖଣ୍ଡାଧାର:** ଉନ୍ନତମାନର ଲୁହାପଥର ଖଣିରେ ଭରପୂର ଖଣ୍ଡାଧାର ପର୍ବତ ଶିଖରରୁ ସିଧା ତଳକୁ ଲଂପ ପ୍ରଦାନ କରିଛି ଖଣ୍ଡାଧାର ଜଳପ୍ରପାତ । ଖରାଦିନେ ପାଣି କମିଯାଉଥିବାରୁ ଏହା ଝରଣାର ଭ୍ରମ ସୃଷ୍ଟି କରେ, କିନ୍ତୁ ବିପୁଳ ପରିମାଣରେ ଜଳରାଶି ପ୍ରାୟ ପାଞ୍ଚ ଶହ ଫୁଟ ଉପରୁ ସିଧା ତଳକୁ ଡେଇଁ ପଡିବା ପରେ ତାହା ବର୍ଷା ଏବଂ କୁହୁଡିରେ ପରିଣତ ହୋଇଯାଏ । ପର୍ବତ ଶିଖରରୁ ଜଳରାଶିକୁ ତଳେ ପଡିବାକୁ ପ୍ରାୟ କୋଡିଏ ସେକେଣ୍ଡରୁ ଅଧିକ ସମୟ ଲାଗେ । ଏହି ସୁ-ଉଚ୍ଚ ଜଳପ୍ରପାତର ଆଖପାଖ ଅଞ୍ଚଳ ଜଳବିନ୍ଦୁ ଯୋଗୁ ସବୁବେଳେ ସନ୍ତସନ୍ତିଆ ହୋଇ ରହେ । ବିଭିନ୍ନ ପ୍ରକାର ଗୁଳ୍ମଲତା ଆଦିରେ କାଛ ଭଳି ଛିଡା ହୋଇଥିବା ପର୍ବତର ବହୁ ଅଂଶ ବର୍ଷ ସାରା ଆଚ୍ଛାଦିତ ହୋଇ ରହିଥାଏ । କେନ୍ଦୁଝର ସଦର ମହକୁମାଠାରୁ ପ୍ରାୟ ୭୦ କିଲୋମିଟର ଦୂରରେ ଅବସ୍ଥିତ ଏହି ଖଣ୍ଡାଧାରକୁ ଆସିବାକୁ ସେପରି କୌଣସି ଅସୁବିଧା ନାହିଁ । ଗୋଟିଏ ଦୁଇଟି ଘରୋଇ ବସ କାଦକଳା ପର୍ଯ୍ୟନ୍ତ ଯା'ଆସ୍ କରେ । ସେଠାରୁ ଜଳପ୍ରପାତ ନିକଟରେ ପହଞ୍ଚିବାକୁ ପ୍ରାୟ ଦେଢ଼ କିଲୋମିଟର ପାହାଡ ଚଢ଼ିବାକୁ ପଡେ । ଖଣ୍ଡାଧାର ଜଳପ୍ରପାତଟି ତଳକୁ ଖସିପଡିବା ପରେ ଏହାର ଜଳ କାଦକଳା ଗ୍ରାମ ଦେଇ ବହିଯାଉଛି । କାଦକଳା ଗାଁ ନିକଟରେ ଏକ କ୍ଷୁଦ୍ର ଜଳସେଚନ ଯୋଜନା ନିର୍ମାଣ କରାଯାଇ ଏଠାକାର ଜମିକୁ ଜଳସେଚନ କରାଯାଇପାରୁଛି । ଖଣ୍ଡାଧାରର ଜଳରେ ଏଠାରେ ଧାନ ଏବଂ ପନିପରିବା ଚାଷ ହୋଇଥାଏ ।

ଅପରପକ୍ଷେ, ଖଣ୍ଡାଧାରର ସମସ୍ତ ପାଣିକୁ ସଠିକ୍ ଭାବେ ବ୍ୟବହାର କରିବାରେ ସରକାର ଓ ପ୍ରଶାସନ ବିଫଳ ହୋଇଛି । ଯଦି ଖଣ୍ଡାଧାରର ପାଣିକୁ ଉଚିତ୍ ଭାବେ ବ୍ୟବହାର କରାଯାଇପାରନ୍ତା ତେବେ ବାଂଶପାଳ ବ୍ଲକ୍‌ର ଶତକଡା ୮୦ ଭାଗ ଚାଷ ଜମିକୁ ପାଣି ମାଡି ପାରନ୍ତା । ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ୨୦୦୨-୦୩ ମସିହାରୁ ପ୍ରତିଷ୍ଠିତ ଏହି ଜଳସେଚନ ବ୍ୟବସ୍ଥାଟି ଏବେ ବିପର୍ଯ୍ୟସ୍ତ ହୋଇପଡିଛି । ତଳକାଦକଳାର ଦଶଟି ଗ୍ରାମ, ନୟାକୋଟର ପାଞ୍ଚୋଟି ଗ୍ରାମ, ସିଂଗିପୁରର ନଅଟି ଗ୍ରାମ ଏବଂ କଲଣ୍ଡାର ଆଠଟି ଗ୍ରାମକୁ ଏବେ ଖଣ୍ଡାଧାରର ପାଣି ମାଡିପାରୁଛି । ଶିକ୍ଷା କ୍ଷେତ୍ରରେ ପଛରେ ପଡିଥିବା ବାଂଶପାଳ ବ୍ଲକ୍‌ର ଏହି ଅଞ୍ଚଳ ପାଇଁ ଖଣ୍ଡାଧାରର ଜଳ ଭଗବାନଙ୍କ ଆଶିର୍ବାଦ ଭଳି, ମାତ୍ର ଆଜି ପର୍ଯ୍ୟନ୍ତ ଏଠାକାର ଲୋକଙ୍କୁ ଖଣ୍ଡାଧାରର ପାଣିକୁ ବନ୍ଧ ମାଧ୍ୟମରେ ଅଟକାଇ ରଖି ଚାଷଜମିକୁ ଯୋଗାଇ ଦିଆଯାଇ ପାରିନାହିଁ । କାଦକଳାଠାରେ ଥିବା ଗୋଟେ ସପ୍ତାହିକ ହାଟ ହିଁ ଏଠାକାର ଅର୍ଥନୀତିର କେନ୍ଦ୍ରବିନ୍ଦୁ । ଏ ଅଞ୍ଚଳରେ ଶାଳମଞ୍ଜି, କରଞ୍ଜ, ସୋରିଷ, ରାଶି ଆଦି ତୈଳବୀଜ, ପଣସ ମଞ୍ଜି, ଆମ୍ବସଢା, କେନ୍ଦୁ, ଚାରମଞ୍ଜି କାକୁଡି, ବୋଇତାଳୁ, କଖାରୁ, ଆଦି ପନିପରିବା ଓ ଫଳମୂଳ ମୁଗ, ବିରି, କୋଳଥ, ବାଜରା ଆଦି ରବି ଶସ୍ୟ ଋତୁ ନେଇ ଉତ୍ପାଦିତ ହୁଏ । କିନ୍ତୁ ହାତୀମାନଙ୍କର ଉପଦ୍ରବ ଯୋଗୁ ଏଠାରେ ଏହି ସବୁ ଫସଲ ବହୁ ପରିମାଣରେ ନଷ୍ଟ ହୁଏ । ଖଣ୍ଡାଧାର ଜଳପ୍ରପାତ ଯୋଗୁ ଏହି ଅଞ୍ଚଳର ଜଳବାୟୁ ଖୁବ୍ ଶୀତଳ । ଏହାର ଆଖପାଖ ଅଞ୍ଚଳରେ ଲେମ୍ବୁ, କମଳାଜାତୀୟ ଫଳଗଛ ସୁନ୍ଦର ଭାବେ ବଢିଥାଏ । ବର୍ତ୍ତମାନ ସ୍ଥାନୀୟ ଅଞ୍ଚଳର କିଛି ଚାଷୀ କଦଳୀ, ସପୁରୀ, ଆମ୍ବ, କାଜୁ ଭଳି ବିଭିନ୍ନ ଫଳଗଛ ଲଗାଉଛନ୍ତି ଏବଂ ସେଥିରୁ ଭଲ ଫଳ ଆସୁଛି । ଯୋଜନାବଦ୍ଧ ଭାବେ ଏଠାରେ ଉନ୍ନତମାନର ଆମ୍ବ, ଲିଚୁ, କମଳା, ଲେମ୍ବୁ ଆଦି ଅର୍ଥକାରୀ ଫଳଚାଷ କରାଯାଇପାରିଲେ ଏ ଅଞ୍ଚଳର ଅର୍ଥନୀତି ଅସମ୍ଭବ ଭାବେ ବୃଦ୍ଧି ପାଆନ୍ତା । ଖଣ୍ଡାଧାରର ପାଣିକୁ ଉଚିତ୍ ବ୍ୟବହାର କରାଯାଇ ପାରୁନାହିଁ । ସବୁତକ ପାଣି ବହି ତଳକୁ ତଳକୁ ଚାଲିଯାଉଛି । ଏହି ଜଂଗଲରେ ବର୍ତ୍ତମାନ ହାତୀ, ଭାଲୁ, ବାରହା, କୁଟୁରା, ମାଙ୍କଡ, ଠେକୁଆ, ଗୁରାଣ୍ଡି, ବଜ୍ରକାପ୍ତା,ଝିଙ୍କ ଆଦି ଅନେକ ପ୍ରକାର ବନ୍ୟଜନ୍ତୁ ଅଛନ୍ତି । ଜଂଗଲ ଧ୍ୱଂସ କାରଣରୁ ଏମାନଙ୍କ ସଂଖ୍ୟା କ୍ରମେ କମିବାରେ ଲାଗିଛି । ସ୍ଥାନୀୟ ଲୋକେ ଗାଈ ଓ ମଇଁଷୀ ରଖି ଚାଷ କାର୍ଯ୍ୟ କରନ୍ତି । ବାଂଶପାଳ ବ୍ଲକ୍‌ର ଏହି ସ୍ଥାନଟି ଯୋଡା, ଝୁଂପୁରା ଏବଂ ସୁନ୍ଦରଗଡର କୋଇଡା ବ୍ଲକର ସୀମାନ୍ତ ଅଞ୍ଚଳ । କାଦକଳାରୁ ସୁଣ୍ଡରା ରେଂଗାଲବେଡା, ବସନ୍ତପୁର, କାଳିମାଟି ରାସ୍ତା ଦେଇ ଯୋଡାରେ ପହଞ୍ଚିବା ପାଇଁ ମଧ୍ୟ ସୁବିଧା ରହିଛି । ଏବେଏବେ ଯୋଡା ଅଞ୍ଚଳରୁ ବାଂଶପାଳ, କାଞ୍ଜିପାଣି, ଗୋନାସିକାଠାରୁ ହରିଚନ୍ଦନପୁର ଦେଇ ପାରାଦ୍ୱୀପ ପର୍ଯ୍ୟନ୍ତ ପାଇପ ଯୋଗେ ଖଣିଜଦ୍ରବ୍ୟ ପରିବହନ କାର୍ଯ୍ୟ ଆରମ୍ଭ ହୋଇଛି । ଏହି ବ୍ୟବସ୍ଥା ଏଠାକାର ଜନଜୀବନକୁ ପ୍ରଭାବିତ

କରିବାର ଯଥେଷ୍ଟ ସମ୍ଭାବନା ରହିଛି । ତଳକାଦକଳା ଅଞ୍ଚଳରେ ଅଧିକାଂଶ ଗ୍ରାମରେ ବିଦ୍ୟୁତ୍ ସଂଯୋଗ ନାହିଁ । ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ମଧ୍ୟ ବିଶେଷ ସୁବିଧା ନାହିଁ । କେବଳ ଖଣ୍ଡାଧାରର ଜଳ ହିଁ ଏ ଅଞ୍ଚଳର ଲୋକମାନଙ୍କ ପାଇଁ ବଞ୍ଚିବାର ରାହା । ଏଭଳି ସ୍ଥଳେ ଖଣ୍ଡାଧାରକୁ ଯଦି ଷ୍ଟୀଲ୍ କଂପାନୀମାନଙ୍କ ହାତରେ ବିକି ଦିଆଯାଏ ତେବେ କଥା ସରିଯିବ ।

**ସୁନ୍ଦରଗଡ ଖଣ୍ଡାଧାର:** କେନ୍ଦୁଝର ଜିଲ୍ଲାର ଖଣ୍ଡାଧାର ଭଳି ସୁନ୍ଦରଗଡ ଜିଲ୍ଲାର ଲହୁଣୀପଡା ବ୍ଲକର ଖଣ୍ଡାଧାର ଆଉ ଗୋଟିଏ ବିଖ୍ୟାତ ଜଳପ୍ରପାତ । ପ୍ରାୟ ୭୦୦ ଫୁଟ ଉଚ୍ଚରୁ ଖଣ୍ଡାଧାର ଜଳପ୍ରପାତଟି ତଳକୁ ଲଂପ ପ୍ରଦାନ କରିଛି । ରାଉରକେଲା ଠାରୁପ୍ରାୟ ୮୦ କିଲୋମିଟର ଦୂରରେ ଏହି ଖଣ୍ଡାଧାର ଜଳପ୍ରପାତଟି ଅବସ୍ଥିତ । ରାଉରକେଲା-ଫୁଲଝରି ବସ୍‌ରେ ବସି କୋଳିପୋଷଠାରେ ଓହ୍ଲାଇ ପାଞ୍ଚ କିଲୋମିଟର ପାଦରେ ଚାଲିଲା ପରେ ଖଣ୍ଡାଧାରରେ ପହଞ୍ଚିବାକୁ ହୁଏ । ପାହାଡ ତଳୁ ଜଳପ୍ରପାତ ନିକଟକୁ ଯିବାକୁ ପ୍ରାୟ ଦେଢ଼ କିଲୋମିଟର ଉପରକୁ ଚଢ଼ିବାକୁ ପଡେ । କେନ୍ଦୁଝର ଖଣ୍ଡାଧାରଠାରୁ ଲହୁଣୀପଡା ଖଣ୍ଡାଧାର ସଡକପଥରେ ପ୍ରାୟ ଶହେ କିଲୋମିଟର ହେଲେ ମଧ୍ୟ ଆକାଶର ଦୂରତା ୪୦/୫୦ କିମି ଦୂରତା ଭିତରେ ଗନ୍ଧମାର୍ଧନ (କେନ୍ଦୁଝର)ର କିଛି ଅଂଶ, କୋଡିଏ କିଲୋମିଟର ଦୀର୍ଘ କାଞ୍ଜିଯାଣି ଘାଟୀ, ମାଲ୍ୟଗିରି ପର୍ବତ, ବନ୍ଧୁକଡେରା ପର୍ବତ, କିରିବୁରୁ ପର୍ବତମାଳାର କିଛି ଅଂଶ ଏବଂ ଖଣ୍ଡାଧାର(ଲହୁଣୀପଡା) ପର୍ବତମାଳା । ଅତି ଉଚ୍ଚମାନର ଲୁହାପଥରରେ ପରିପୂର୍ଣ ଏହି ପର୍ବତ । ଏହାର ନିକଟବର୍ତୀ ପଞ୍ଚାୟତ ଗୁଡିକ ହେଲା କୋଳିପୋଷି, ହଳଦୀକୁଦର, ଫୁଲଝର, ତାଳବାହାଲି, କୁରୁଡା, ଶଶୀକଳା ଏବଂ ଖୁଣ୍ଟ ଗାଁ । ତାଳବାହାଲି ପଞ୍ଚାୟତ ମଧ୍ୟରେ ଥିବା ଏହି ଜଳପ୍ରପାତର ଜଳକୁ କୃଷି କାର୍ଯ୍ୟରେ ବ୍ୟବହାର କରିବା ନିମନ୍ତେ ଖଣ୍ଡାଧାର କାଳିପୋଷି କ୍ଷୁଦ୍ର ଜଳ ସେଚନ ଯୋଜନା ନାମରେ ଏକ ବନ୍ଧ କରାଯାଇ କେନାଲ ସାହାର୍ଯ୍ୟରେ ପ୍ରାୟ ୧୫ କିମିରୁ ଊର୍ଦ୍ଧ୍ୱ ଅଞ୍ଚଳର ଚାଷ ଜମିକୁ ଜଳସେଚିତ କରାଯାଇପାରୁଛି । ପରେ ଏହି ନଦୀ ବ୍ରାହ୍ମଣୀ ନଦୀ ସହ ମିଶିଛି । ଏହି ଜଳସେଚନ ଯୋଜନାର କିଛି ଦୂର ତଳକୁ ‘ଦେ ଘରିଆ’ ଡ୍ୟାମ ନାମରେ ଆଉ ଏକ କ୍ଷୁଦ୍ର ଜଳସେଚନ ବନ୍ଧ ଆଇଟିଡିଏ ଦ୍ୱାରା କରାଯାଇଥିଲେ ମଧ୍ୟ ତାହା ପ୍ରାୟତଃ ସଫଳ ହୋଇପାରିନାହିଁ । ଏଠାରେ ଖୁଣ୍ଟଗାଁ ଓ କୋଳିପୋଷି ପଞ୍ଚାୟତକୁ ମିଶାଇ ଏକ ପାଣି ପଞ୍ଚାୟତ ଗଠନ କରାଯାଇଛି । ଏହାର ନିକଟବର୍ତ୍ତୀ ୭ଟି ପଞ୍ଚାୟତର ଜନସଂଖ୍ୟା ପ୍ରାୟ ୩୦ ହଜାର ପାଖାପାଖି । ଖୁଣ୍ଟଗାଁ, କୋଳିପୋଷ, ଫୁଲଝର ଏବଂ କୁରୁଡାକୁ ଛାଡିଦେଲେ ଅନ୍ୟ ପାଖ ପଞ୍ଚାୟତରେ ବିଦ୍ୟାଳୟ ନାହିଁ । କିନ୍ତୁ ଏହି ଅଞ୍ଚଳରେ ବହୁ ସଂଖ୍ୟକ ଯୁବକ ଯୁବତୀ ବ୍ଲକ୍ ବାହାରେ ପାଠ ପଢ଼ି ଉଚ୍ଚ ଶିକ୍ଷିତ ହୋଇପାରିଛନ୍ତି । କେନାଲ ବ୍ୟବସ୍ଥା ଓ ପାଣି ପଞ୍ଚାୟତ ଯୋଗୁ ଏକ ବିସ୍ତିର୍ଣ ଅଞ୍ଚଳର ଧାନ, ଗହମ, ସୂର୍ଯ୍ୟମୁଖୀ, ଆଳୁ, ପିଆଜ ଏବଂ ବିଭିନ୍ନ ପ୍ରକାରର ପରିବା ଚାଷ ପର୍ଯ୍ୟାପ୍ତ ପରିମାଣରେ

ହୋଇଥାଏ । ନାତିଶୀତୋଷ୍ଣ ଜଳବାୟୁ ହେତୁ ଏଠାରେ ଉଦ୍ୟାନ ବିଭାଗ ପକ୍ଷରୁ ଫଳଚାଷ ଉପରେ ଗୁରୁତ୍ୱ ଦିଆଯାଇଛି । ବିଶେଷ କରି ବିସ୍ତିର୍ଣ୍ଣ ଅଞ୍ଚଳରେ ବହୁ ଲିଚୁ ବଗିଚା କରାଯାଇଛି । ରାଜ୍ୟ ସରକାରଙ୍କ ଉଦ୍ୟାନ ବିଭାଗ ପକ୍ଷରୁ କାଳିପୋଷି ପର୍ଯ୍ୟନ୍ତ ପ୍ରାୟ ୧୦ କିଲୋମିଟର ଅଞ୍ଚଳରେ ଆମ୍ବ, ଲେମ୍ବୁ, କଦଳୀ, ପଣସ ଆଦିର ବହୁଳ ଭାବେ ଉଦ୍ୟାନ ଚାଷ ହେଉଥିଲେ ମଧ୍ୟ ଲିଚୁ ପାଇଁ ଖ୍ୟାତ । ଖଣ୍ଡାଧାର ପର୍ବତ ନିମ୍ନରୁ ଆରମ୍ଭ କରି କାଳିପୋଷି ପର୍ଯ୍ୟନ୍ତ ପ୍ରାୟ ୧୦ କିଲୋମିଟର ଅଞ୍ଚଳରେ ବହୁ ଲିଚୁ ବଗିଚା ରହିଛି । ରାଜ୍ୟ ସରକାରଙ୍କ ଉଦ୍ୟାନ ବିଭାଗ ପକ୍ଷରୁ କାଳିପୋଷି ଠାରେ ଏକ ବଡ ଲିଚୁ ଚାରା ଉତ୍ପାଦନ ନର୍ସରୀ ମଧ୍ୟ ଅଛି । ଏଠାକୁ ବର୍ଷକୁ ପ୍ରାୟ ୪ ହଜାର ପର୍ଯ୍ୟନ୍ତ ଚାରା ଉତ୍ପାଦନ କରାଯାଇ ସ୍ଥାନୀୟ ଚାଷୀମାନଙ୍କୁ ଜୁନ୍ ଜୁଲାଇ ମାସରେ ରିହାତି ଦରରେ ବିକ୍ରୀ କରାଯାଏ । ଖଣ୍ଡାଧାର ପର୍ବତ ତଳେ ୧୧ ଜଣ ଆଦିବାସୀଙ୍କୁ ୨୨ ଏକର ଜମିରେ ଲିଚୁ ଲଗାଇ ଦିଆଯାଇଛି । ସେମାନେ ବର୍ଷକୁ ଏଥିରୁ ଜଣ ପିଛା ୮/୧୦ ହଜାର ଟଙ୍କା ରୋଜଗାର କରିଥାନ୍ତି । ଏଠାରେ ଜନସଂଖ୍ୟାର ସ୍ୱଳ୍ପତା ଏବଂ ଯାନବାହାନର ଅସୁବିଧା ହେତୁ ସପ୍ତାହରେ ସୋମବାର ଦିନ ବସୁଥିବା ସ୍ଥାନୀୟ ହାଟରେ ଉତ୍ପାଦିତ ଦ୍ରବ୍ୟ ଖୁବ୍ କମ ମୂଲ୍ୟରେ ବିକ୍ରୟ ହୁଏ । ବିଭିନ୍ନ ଋତୁ ନେଇ ଆମ୍ବ, ପଣସ, କେନ୍ଦୁ, ଚାରମଞ୍ଜି, ଟୋଲ, ତେନ୍ତୁଳି ଆଦି ଲଘୁ ବନଜାତ ପଦାର୍ଥ ଏହି ହାଟକୁ ଆସେ । ଏହି ଅଞ୍ଚଳଟି ପଥୁରିଆ ହୋଇଥିବାରୁ ଏଠାରେ ଗଭୀର ନଳକୂପ ସଫଳ ହେଉନାହିଁ । ତେଣୁ ଲୋକମାନେ ପାନୀୟ ଜଳ ପାଇବା ପାଇଁ ଅସୁବିଧା ଭୋଗନ୍ତି । ଏଠାକାର ପରିବେଶ, ଜଙ୍ଗଲ, ଖଣ୍ଡାଧାର ନଦୀ, ସ୍ଥାନୀୟ ଉତ୍ପାଦିତ ପଦାର୍ଥ ଆଦିକୁ ନେଇ ଏ ଅଞ୍ଚଳବାସୀ ଗର୍ବ କରନ୍ତି । ଏହିଭଳି ପରିବେଶ ସୁରକ୍ଷିତ ରଖିବାକୁ ସେମାନେ ଏକ ସୁରକ୍ଷା ସମିତି ଗଠନ କରିଛନ୍ତି । ଏହି ସବୁ ଅଞ୍ଚଳ ମ୍ୟାଲେରିଆ ପ୍ରବଣ ହୋଇଥିବାରୁ ମ୍ୟାଲେରିଆ ନିରାକରଣ ଦିଗରେ ସଚେତନତା ସୃଷ୍ଟି କରାଯିବାର ଆବଶ୍ୟକତା ରହିଛି । ଏହି ପଞ୍ଚାୟତ ଗୁଡିକର ଅଧିକାଂଶ ଗ୍ରାମକୁ ବିଦ୍ୟୁତ୍ ସଂଯୋଗ ନାହିଁ । କେବଳ ଖଣ୍ଡାଧାର ପାଇଁ ଏ ଅଞ୍ଚଳର ପରିବେଶ ଓ ଭୌଗୋଳିକ ସ୍ଥିତି ବେଶ ସମୃଦ୍ଧ । ଯଦି ଖଣ୍ଡାଧାର ଖଣିକୁ କଂପାନୀମାନଙ୍କୁ ଲିଜ୍ ଦିଆଯାଏ, ତେବେ ଖଣ୍ଡାଧାର ଜଳପ୍ରପାତଟିର ଅବସ୍ଥା କ'ଣ ହେବ ଏବଂ କ'ଣ ହେବ ଏହା ଉପରେ ନିର୍ଭରଶୀଳ ଲକ୍ଷାଧିକ ଲୋକଙ୍କ ଭବିଷ୍ୟତ, ତାହା ହିଁ ମୁଖ୍ୟ ଚିନ୍ତାର କାରଣ ।

# ଗୁଣ୍ଡିଚାଘାଗି ଜଳପ୍ରପାତ



ଗୁଣ୍ଡିଚାଘାଗି ଜଳ ପ୍ରପାତ କେନ୍ଦୁଝର ଜିଲ୍ଲାର ଅନ୍ୟତମ ସୌନ୍ଦର୍ଯ୍ୟଭରା ଜଳପ୍ରପାତମାନଙ୍କ ମଧ୍ୟରୁ ଅନ୍ୟତମ । ଘଟଗାଁ ଓ ହରିଚନ୍ଦନପୁର ବ୍ଲକ୍‌ର ସୀମାରେ ଏହି ଗୁଣ୍ଡିଚା ଘାଗି ବା ଗୁଣ୍ଡିଚା ଘାଇ ଜଳପ୍ରପାତ ଅବସ୍ଥିତ । ୨୧୫ ନମ୍ବର ଜାତୀୟ ରାଜପଥରୁ ମା' ତାରିଣୀ ପୀଠ ଘଟଗାଁରୁ ଦକ୍ଷିଣ ଦିଗକୁ ହରିଚନ୍ଦନପୁର ରାସ୍ତା ଦେଇ ପାଞ୍ଚ କିଲୋମିଟର ଗଲାପରେ ପଡେ କୋଳିପଶି ଗାଁ । କୋଳିପଶି ଛକରୁ ବାମ ପାର୍ଶ୍ୱକୁ ପ୍ରାୟ ତିନି କିଲୋମିଟର ଗଲାପରେ ଆପଣ ଘଞ୍ଚ ଜଂଗଲ ମଧ୍ୟରେ ଘର୍ଘର ଶବ୍ଦ ଶୁଣିବାକୁ ପାଇବେ । ଏହି ଶବ୍ଦ ଆପଣଙ୍କ ଦେହ ଓ ମନକୁ ରୋମାଞ୍ଚିତ କରିଦେବ । ଏଠାରେ ମୁଷଳ ନଦୀର ସ୍ରୋତ ପାହାଡରୁ ତଳକୁ ଖସିପଡି ଏହି ମନୋରମ ଗୁଣ୍ଡିଚାଘାଗି ଜଳପ୍ରପାତ ସୃଷ୍ଟି ହୋଇଛି । ଏହି ଜଳପ୍ରପାତଟିର ଲମ୍ବ ୨୦ ମିଟର । ଧାରଧାର ହୋଇ ତିନୋଟି ଧାରରେ ଏହି ଜଳପ୍ରପାତଟି ତଳକୁ ଖସି ପଡୁଥିବାରୁ ଏହାକୁ ତ୍ରିଧାରା ଜଳପ୍ରପାତ ମଧ୍ୟ କୁହାଯାଏ । ଏହି ପର୍ଯ୍ୟଟନ ସ୍ଥଳଟିର ସୁରକ୍ଷା ନେଇ 'ଗୁଣ୍ଡିଚା ଘାଗି ଉନ୍ନୟନ ସମାଜ' ଗଠନ କରାଯାଇଛି ଏବଂ ଏହି ସଂସ୍ଥା ସବୁବେଳେ ପର୍ଯ୍ୟଟକମାନଙ୍କୁ ସହାୟତା ଯୋଗେଇ ଦେଇଥାଏ । ବର୍ଷର ଅନ୍ୟ ଋତୁମାନଙ୍କରେ ଜଳପ୍ରପାତଟି ମୁଖ୍ୟତଃ ତିନୋଟି ଧାରରେ ତଳକୁ ଖସିଥାଏ, ମାତ୍ର ବର୍ଷା ଦିନେ ମୁଷଳ ନଦୀରେ ପ୍ରବଳ ଜଳ ପ୍ରବାହିତ ହେବା ଫଳରେ ଏହାର ଧାର ବହୁଗୁଣିତ ହୋଇଥାଏ । ଏଠାରେ କାର୍ତ୍ତୀକ

ମାସରେ ପାଳନ କରାଯାଉଥିବା ପୁଷ୍ପକ ପାଷ୍ଟଦିନ ଓ ମକର ସଂକ୍ରାନ୍ତି ଅବସରରେ ନଦୀରେ ଥିବା ଜଳକୁଣ୍ଡମାନଙ୍କରେ ଲୋକେ ବୁଡ ପକେଇଥାନ୍ତି । ଏହି ଜଳପ୍ରପାତର ନିମ୍ନ ଭାଗରେ ପ୍ରାୟ ସାତ କିଲୋମିଟର ବ୍ୟାପୀ ମୁଷଳ ନଦୀଟି ପାହାଡର ଛାତି ଚିରି ପଥୁରିଆ ଶଯ୍ୟା ଦେଇ ଆଗକୁ ଆଗକୁ ବହି ଚାଲିଛି । ମୁଖ୍ୟ ପ୍ରପାତର ନିମ୍ନ ଭାଗରେ ରହିଛି ଜିଲ୍ଲାର ଅନ୍ୟତମ ପ୍ରାକୃତିକ ପର୍ଯ୍ୟଟନସ୍ଥଳ; ଖଣ୍ଡିଆ ଦେଉଳ । ଏହା ଏକ ବିଶାଳକାୟ ପଥର ଏବଂ ଏକ ଦେଉଳ ଆକାରର ହୋଇଥିବାରୁ ଏହାକୁ 'ଖଣ୍ଡିଆ ଦେଉଳ' କୁହାଯାଇଥାଏ । ଘଞ୍ଚ ଅଟେଇ ଜଙ୍ଗଲପୂର୍ଣ୍ଣ ଏହି ଅଞ୍ଚଳରେ ନାନା ପ୍ରକାର ବନ୍ୟପଶୁ ଦେଖାଯାଆନ୍ତି । ଏଠାରେ ହାତୀ, ଭାଲୁ, ସମ୍ବର, ହରିଣ, କୁଟ୍ରା, ଝିଙ୍କ, ମୟୂର, ଶୁଆଶାରୀ ଆଦି ନାନା ପ୍ରକାର ପଶୁପକ୍ଷୀ ଦେଖିବାକୁ ମିଳନ୍ତି । ଶାଳ ବଣରେ ଆମ୍ବ, ପଣସ, କଦଳୀ, ପିଜୁଳି ଗଛ ମଧ୍ୟ ବହୁ ସଂଖ୍ୟାରେ ଦେଖିବାକୁ ମିଳେ । ନଦୀ ଶଯ୍ୟାର ସ୍ଥାନେସ୍ଥାନେ ଗଭୀର ଜଳ କୁଣ୍ଡମାନ ରହିଛି ଏବଂ ଏହି କୁଣ୍ଡର ଜଳର ରଙ୍ଗ ନାଲି, ନେଳି ଓ ହଳଦି ରଙ୍ଗର । ଏଠାକାର ଜଙ୍ଗଲ ସର୍ବଦା ଚିରହରିତ୍ ଏବଂ ବର୍ଷତମାମ୍ ଏହା ସବୁଜ ସତେଜ ରହିଥାଏ । ପ୍ରତିବର୍ଷ 'ଗୁଣ୍ଡିଚାଘାଗି ଉନ୍ନୟନ ସମାଜ' ପକ୍ଷରୁ ଡିସେମ୍ବର ୨୫ ତାରିଖରୁ ଜାନୁୟାରୀ ୧ ତାରିଖ ପର୍ଯ୍ୟନ୍ତ ସପ୍ତାହେ ବ୍ୟାପୀ 'ଗୁଣ୍ଡିଚାଘାଗି ମହୋତ୍ସବ' ପାଳନ କରାଯାଇଥାଏ । ଗୁଣ୍ଡିଚାଘାଗି ଜଳପ୍ରପାତ ପର୍ଯ୍ୟଟନର ବିକାଶ ପାଇଁ ନିକଟରେ ସରକାରଙ୍କ ପକ୍ଷରୁ ୫୫ ଲକ୍ଷ ଟଙ୍କାର ଆର୍ଥିକ ସହାୟତା ମିଳିଛି । ଏଠାରେ ଏକ ଝୁଲା ପୋଲ ନିର୍ମିତ ହେବାର ଯୋଜନା ରହିଛି ।



# ମୁର୍ଗା ମହାଦେବ ଓ ଦେଓଝର ଜଳ ପ୍ରପାତ

ରାଜ୍ୟ ପର୍ଯ୍ୟଟନ ବିଭାଗ ପକ୍ଷରୁ କେନ୍ଦୁଝର ଜିଲ୍ଲାର ପ୍ରମୁଖ ୧୬ଟି ଦର୍ଶନୀୟ ସ୍ଥାନକୁ 'ଜିଲ୍ଲା ପର୍ଯ୍ୟଟନ କେନ୍ଦ୍ର'ର ମାନ୍ୟତା ପ୍ରଦାନ କରାଯାଇଛି । ସେଥିମଧ୍ୟରୁ ମୁର୍ଗାମହାଦେବ ଅନ୍ୟତମ । ଏହି ପର୍ଯ୍ୟଟନସ୍ଥଳଟି ଯୋଡା ବ୍ଲକ୍ ଅନ୍ତର୍ଗତ ଦେଓଝର ପଞ୍ଚାୟତରେ ଓଡ଼ିଶା-ଝାଡଖଣ୍ଡ ସୀମାରେ ଅବସ୍ଥିତ । କେନ୍ଦୁଝର ଜିଲ୍ଲା ଦେଇ ଯାଇଥିବା ୨୧୫ ନମ୍ବର ଜାତୀୟ ରାଜପଥର ବିଲେଇପଦା ଛକରୁ ମାତ୍ର ୧୩ କିଲୋମିଟର ଦୂରରେ ଏହି ପର୍ଯ୍ୟଟନ ସ୍ଥଳ ଅବସ୍ଥିତ । ଠାକୁରାଣୀ ଜଙ୍ଗଲରୁ ବାହାରିଥିବା ଏକ ଜଳସ୍ରୋତ ମୁର୍ଗା ପାହାଡର ତଳକୁ ଖସି ଏକ ସୁନ୍ଦରତମ ମନୋରମ ଜଳପ୍ରପାତ ସୃଷ୍ଟି କରିଛି । ଏହାକୁ 'ମୁର୍ଗା ଜଳପ୍ରପାତ' କିମ୍ବା 'ଦେଓଝର ଜଳପ୍ରପାତ' କୁହାଯାଏ । ଏହି ଜଳପ୍ରପାତର ଜଳରାଶି ତଳକୁ ବହିଯାଇ ବିରିକଳା ନିକଟରେ ସୁନା ନଦୀରେ ଏବଂ ପରେ ଏହା ବୈତରଣୀ ନଦୀ ସହ ମିଶିଛି । ଏହି ଜଳପ୍ରପାତ ନିକଟରେ ରହିଛି ମହାଦେବ ଧବଳେଶ୍ୱରଙ୍କ ମନ୍ଦିର । ଏଠାକାର ଘଞ୍ଚ ଜଙ୍ଗଲ ପରିବେଶ ସାଙ୍ଗକୁ ପ୍ରାକୃତିକ ଶୋଭାରାଜି ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ । ଏହି ଜଙ୍ଗଲରେ ବହୁ ପରିମାଣରେ ମୁର୍ଗା ବୃକ୍ଷ ଥିବାରୁ ଏହାକୁ ମୁର୍ଗା ଜଙ୍ଗଲ ଓ ପାହାଡକୁ ମୁର୍ଗା ପାହାଡ ବୋଲି କୁହାଯାଇଥାଏ । ମୁର୍ଗା ପାହାଡରେ ବାବା ଧବଳେଶ୍ୱର ପୂଜା ପାଉଥିବାରୁ ତାଙ୍କୁ 'ମୁର୍ଗା ମହାଦେବ' ବୋଲି କୁହାଯାଏ । ପୁରାଣ ମତରେ ଏହି ବନ ମୃଗ ବନ ନାମରେ ଖ୍ୟାତ





ଥିଲା । ଏଠାରେ ମୃଗଧର ମହାଦେବଙ୍କର ଏକ ଲିଂଗ ଥିଲା । ଶିବ ଏହି ବନରେ ବାସ କରୁଥିବା ସମୟରେ ମୃଗ ରୂପି ବ୍ରହ୍ମା ନିଜର ମୃଗ ରୂପି କନ୍ୟା ସନ୍ଧ୍ୟାକୁ ହରଣ କରିବାକୁ ଉଦ୍ୟମ କରିଥିଲେ । ପିତାଙ୍କ ଲୋଲୁପ ଦୃଷ୍ଟିରୁ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ବ୍ରହ୍ମା କନ୍ୟା ସନ୍ଧ୍ୟା ମହାଦେବ



ଶିବଙ୍କ ଶରଣ ପଶିଥିଲେ । ଶିବ ବ୍ରହ୍ମାଙ୍କର ଏହି ସ୍ଖଳନକୁ ସହ୍ୟ କରି ନପାରି ମୃଗ ରୂପୀ ବ୍ରହ୍ମାଙ୍କର ଶିର ଛେଦନ କରିଥିଲେ । ସେହିଦିନଠାରୁ ଶିବଙ୍କର ନାମ 'ମୃଗଧର' ଏବଂ ଏହି ବନର ନାମ 'ମୃଗ ବନ' ହୋଇଛି ବୋଲି ପୌରାଣିକ ମତ ରହିଛି । ପୂର୍ବେ ଏହି ବନରେ ବହୁ ସଂଖ୍ୟାରେ ମୃଗ ବାସ କରୁଥିଲେ । ଏହି ପର୍ଯ୍ୟଟନସ୍ଥଳୀକୁ କେନ୍ଦୁଝର ଜିଲ୍ଲା ସମେତ ରାଜ୍ୟର ବିଭିନ୍ନ କୋଣ ଏବଂ ପଡୋଶୀ ଝାଡଖଣ୍ଡର ଲକ୍ଷାଧିକ ପର୍ଯ୍ୟଟକ ବର୍ଷତମାମ୍ ଆସିଥାନ୍ତି । ଏଠାରେ ମକର ସଂକ୍ରାନ୍ତି ଓ ମହାଶିବରାତ୍ରୀ ବେଶ୍ ଧୁମଧାମରେ ପାଳିତ ହୋଇଥାଏ । ଶ୍ରାବଣ ମାସରେ ଲକ୍ଷାଧିକ ସଂଖ୍ୟାରେ ବୋଲ୍‌ବମ୍ ଭକ୍ତମାନେ ଏଠାରେ ଜଳାଭିଷେକ କରିଥାନ୍ତି । ଦୁଃଖର କଥା ହେଉଛି, ଏହି ପର୍ଯ୍ୟଟନ କେନ୍ଦ୍ରକୁ ପହଞ୍ଚିବା ପାଇଁ ଭଲ ରାସ୍ତାଟିଏ ନାହିଁ । ଏହି ମୁର୍ଗା ପାହାଡଟିରେ ଲୌହପଥର ଗଛିତ ରହିଥିବାରୁ ଏଠାରେ ଖଣି ମାଫିଆଙ୍କ ଚଳପ୍ରଚଳ ବେଶି ହୋଇଥାଏ । ଏଠାରେ ମଧ୍ୟ ଅନେକ ଲୌହ ଖଣି ଖନନ କାର୍ଯ୍ୟ ଚାଲିଛି । ଲୁହା ଖଣିରେ ଭରପୂର ହୋଇଥିବା ଏହି ଦେଓଝର ଜଙ୍ଗଲ ରାସ୍ତା ଦେଇ ପ୍ରତିଦିନ ପଡୋଶୀ ଝାଡଖଣ୍ଡକୁ ଖଣିଜ ପଥର ଚୋରାରେ ଚାଲାଣ ହେଉଥିବାରୁ ଏହା ଖଣି ମାଫିଆଙ୍କ ସ୍ୱର୍ଗ ପାଲଟିଛି ।

## କୁଣ୍ଡପାଣି ଜଳ ପ୍ରପାତ

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ରେ ରହିଛି କୁଣ୍ଡପାଣି ଜଳ ପ୍ରପାତ । କେନ୍ଦୁଝର ସହରଠାରୁ ଏହାର ଦୂରତା ପ୍ରାୟ ପଞ୍ଚାବନ କିଲୋମିଟର । ନୟାକୋଟ ଗ୍ରାମଠାରୁ ପ୍ରାୟ ପାଞ୍ଚ କିଲୋମିଟର ରାସ୍ତା ଅତିକ୍ରମ କରି ଗଲା ପରେ ପଡିବ ଏହି କୁଣ୍ଡପାଣି ଜଳପ୍ରପାତ । ଖଣ୍ଡାଧାର ପରି ଏହା ଦୀର୍ଘ ନୁହେଁ । ପ୍ରାୟ ପଚାଶ ଫୁଟ ଉଚ୍ଚ ପାହାଡ ଉପରୁ ତଳକୁ ଖସି ସୃଷ୍ଟି ହୋଇଛି ଏହି ଜଳପ୍ରପାତ । ତେବେ ଏହି ଜଳପ୍ରପାତଟି ନାତିଦୀର୍ଘ ହେଲେ ମଧ୍ୟ ଏଠାକାର ସବୁଜ ସୁନ୍ଦର ପରିବେଶ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ ।

## ଗଦଗଦି ଜଳପ୍ରପାତ

ହରିଚନ୍ଦନପୁର ବ୍ଲକ୍ ଅନ୍ତର୍ଗତ ବଲାଣିପଶି ଗ୍ରାମ ନିକଟରେ ରହିଛି ଏକ ଛୋଟ ଜଳ ପ୍ରପାତ । ସ୍ଥାନୀୟ ଲୋକେ ଏହାକୁ 'ଗଦଗଦି' ବୋଲି କହନ୍ତି । ଗଦଗଦ ହୋଇ ପାହାଡରୁ ଜଳ ଖସୁଥିବାରୁ ଏହାକୁ 'ଗଦଗଦି' ଜଳପ୍ରପାତ କୁହାଯାଉଛି । ନରଣପୁର-ହରିଚନ୍ଦନପୁର ରାସ୍ତାରେ ଗଲେ ଉକୁଚାବେଡା ଗ୍ରାମଠାରୁ ମାତ୍ର ଚାରି କିଲୋମିଟର ଦୂରରେ ଏହି ଜଳପ୍ରପାତଟି ଅବସ୍ଥିତ । ବର୍ଷା ଦିନରେ ସବୁଜବନାନୀ ପରିବେଷ୍ଟିତ ରାଶିରାଶି ପାହାଡମାଳା ମଧ୍ୟରେ ଅବସ୍ଥିତ ଏହି ଜଳପ୍ରପାପତଟି ବେଶ୍ ମନୋରମ ମନେ ହୋଇଥାଏ । ଏଠାକାର ପ୍ରାକୃତିକ ପରିବେଶ ଓ ଶାନ୍ତଶୀତଳମୟ ଶୋଭା



ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ପ୍ରାୟ ୨୦୦ ଫୁଟ ଉଚ୍ଚ ପାହାଡରୁ ଏକ ପତଳା ପାଣି ଧାର ତଳକୁ ଖସି ପଡୁଥିବାର ଦୃଶ୍ୟ ଖୁବ୍ ମନମୁଗ୍ଧକର । ଏହି ଜଳପ୍ରପାତର ନିକଟରେ ପ୍ରସିଦ୍ଧ ଧାନବେଣୀ ଶୈବପୀଠ ଅବସ୍ଥିତ । ବିଶାଳ ପ୍ରସ୍ତରଶଯ୍ୟା ଉପରେ ଏହି ଶିବ ମନ୍ଦିରଟି ରହିଛି । ପୁଣି ମଧ୍ୟ ଏହାର ନକିଟରେ କାନ୍‌ଝାରୀ ନଦୀ ବହି ଯାଇଛି । ପ୍ରସ୍ତର ଶଯ୍ୟା ଦେଇ କାନ୍‌ଝାରୀ ନଦୀ କୁଳୁକୁଳୁ ହୋଇ ବହି ଯାଉଥିବାର ଦୃଶ୍ୟ ମଧ୍ୟ ପର୍ଯ୍ୟଟକଙ୍କୁ ବେଶ୍ ଆକର୍ଷିତ କରିଥାଏ ।

## ପୁରୁଣାପାଣି ଜଳ ପ୍ରପାତ

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ର ତଳକାଦକଳା ପଞ୍ଚାୟତରେ ରହିଛି ପୁରୁଣାପାଣି ଜଳ ପ୍ରପାତ । କେନ୍ଦୁଝର ସହରଠାରୁ ଏହାର ଦୂରତା ପ୍ରାୟ ଷାଠିଏ କିଲୋମିଟର । ତଳକାଦକଳାରୁ ଖଣ୍ଡଧାର ଦେଇ ଦୁଇ କିଲୋମିଟ ଗଲାପରେ ପାହାଡ ଉପରେ ପ୍ରାୟ ପାଞ୍ଚ କିଲୋମିଟର ଦୂରରେ ଏହି ପୁରୁଣାପାଣି ଜଳ ପ୍ରପାତଟି ଅବସ୍ଥିତ । ପୁରୁଣାପାଣି ଜଳ ପ୍ରପାତଟି ଖଣ୍ଡଧାର ପାହାଡ ଉପରେ ଅବସ୍ଥିତ । ଏହି ଜଳପ୍ରପାତର ପାଣି ବହି ଆସି ଖଣ୍ଡଧାର ଜଳପ୍ରପାତର ଜଳରେ ମିଶିଛି । ଏହି ଜଳାପ୍ରପାତଟି ଖଣ୍ଡଧାର ପରି ଦୀର୍ଘ ନୁହେଁ । ପ୍ରାୟ ପଚାଶ ଫୁଟ ଉଚ୍ଚ ପାହାଡ



ଉପରୁ ତଳକୁ ଖସି ସୃଷ୍ଟି ହୋଇଛି ଏହି ଜଳପ୍ରପାତ । ଏଠାରେ ଏକ ବଡ଼ କୁଣ୍ଡ ରହିଛି । ଏହି ଜଳପ୍ରପାତଟି ନାତିଦୀର୍ଘ ହେଲେ ମଧ୍ୟ ଏଠାକାର ସବୁଜ ସୁନ୍ଦର ପରିବେଶ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ ।

## ରାକାମ୍ ଜଳ ପ୍ରପାତ

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ରେ ଅବସ୍ଥିତ ଏହି ରାଜାମ ଜଳପ୍ରପାତ । କେନ୍ଦୁଝରଠାରୁ ଏହାର ଦୂରତା ପ୍ରାୟ ସତୁରୀ କିଲୋମିଟର ହେବ । କାଦକଳା ଗ୍ରାମରୁ ପ୍ରାୟ ପନ୍ଦର କିଲୋମିଟର ପାଦଚଲା ରାସ୍ତା ଅତିକ୍ରମ କଲାପରେ ପ୍ରକୃତିର ଏହି ମନୋରମ ପର୍ଯ୍ୟଟନସ୍ଥଳଟି ଦୃଷ୍ଟିଗୋଚର ହୋଇଥାଏ । ଏହାର ଉଚ୍ଚତା ପ୍ରାୟ ୩୫ ଫୁଟ । ଏହି ଜଳପ୍ରପାତଟିର ଆଖପାଖରେ ଥିବା ଘଞ୍ଚ ସବୁଜ ବନାନୀ ଓ ପ୍ରାକୃତିକ ଶୋଭା ପର୍ଯ୍ୟଟକଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥାଏ ।

## ଝିଲ୍ଲୀପାଣି

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ରେ ଏହି ଝିଲ୍ଲୀପାଣି ଜଳପ୍ରପାତଟି ଅବସ୍ଥିତ । କେନ୍ଦୁଝର ସହରଠାରୁ ଏହାର ଦୂରତା ପ୍ରାୟ ୪୦ କିଲୋମିଟର । କେନ୍ଦୁଝର ସମ୍ବଲପୁର ଜାତୀୟ ରାଜପଥରେ ପଡେ କାଞ୍ଜିପାଣି ଗ୍ରାମ । ଏହା ଭିତରକୁ ପ୍ରାୟ ୬ କିଲୋମିଟର ଗଲାପରେ ଏହି ଜଳପ୍ରପାତଟି ଦୃଷ୍ଟିଗୋଚର ହୋଇଥାଏ । ଏହାର ଉଚ୍ଚତା ପ୍ରାୟ ୫୦ ଫୁଟ ।

## ମୁକ୍ତାପାଣି

କେନ୍ଦୁଝର ଜିଲ୍ଲାର ବାଂଶପାଳ ବ୍ଲକ୍‌ରେ ରହିଛି ଏହି ମୁକ୍ତାପାଣି ଜଳ ପ୍ରପାତ । କେନ୍ଦୁଝରଗଡ଼ଠାରୁ ପ୍ରାୟ ୩୦ କିଲୋମିଟର ଦୂର ଗୋନାସିକାର ଅନତିଦୂରରେ ବୈତରଣୀ ନଦୀରେ ଏହି ଜଳପ୍ରପାତଟି ଅବସ୍ଥିତ । ଏହା ଏକ କ୍ଷୁଦ୍ର ଜଳପ୍ରପାତ । ଏହାର ଉଚ୍ଚତା ପ୍ରାୟ ୨୦ ଫୁଟ ।

## ଫୁଲବାଳି ଜଳପ୍ରପାତ

ଯୋଡା ବ୍ଲକ୍ ଅନ୍ତର୍ଗତ ଗୁଆଲି ଓ ବଲାଣୀ ଗ୍ରାମ ପଞ୍ଚାୟତର ସୀମାନ୍ତ ଅଞ୍ଚଳରେ ଏହି ଜଳପ୍ରପାତଟି ଅବସ୍ଥିତ । ଏହି ଜଳପ୍ରପାତଟି ନିକଟରେ ରହିଛି ପ୍ରସିଦ୍ଧ 'କିରିବୁରୁ ହିଲ୍ ଟପ୍' ଓ 'ମେଘାତୁବୁରୁ ସନ୍ ସେଟ୍ ଭ୍ୟୁପଏଣ୍ଟ' । ଏଠାରେ ଜଳପ୍ରପାତ ବ୍ୟତୀତ ମହାଦେବ ସ୍ୱପ୍ନେଶ୍ୱରଙ୍କର ଏକ ବହୁ ପୁରାତନ ମନ୍ଦିର ରହିଛି । ଏହି ମହାଦେବଙ୍କ ପୀଠରେ ପ୍ରତିବର୍ଷ ମକର ମେଳା, ମହାଶିବରାତ୍ରୀ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । ଏଠାକାର ଘଞ୍ଚ ଜଙ୍ଗଲଘେରା ପରିବେଶ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଫୁଲବାଳି ଜଳପ୍ରପାତ ଓ ସ୍ୱପ୍ନେଶ୍ୱର ଶୈବପୀଠ ନେଇ ସ୍ଥାନୀୟ ଅଞ୍ଚଳର ଲୋକଙ୍କ ମୁହଁରୁ ବହୁ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏଠାରେ 'ମଇଁଷି ତୁବା' ନାମରେ ଏକ ସ୍ଥାନ ରହିଛି । କୁହାଯାଏ, ଘଞ୍ଚ ଜଂଗଲ ମଧ୍ୟ ଦେଇ ବହି ଯାଉଥିବା କାରୋ ନଦୀର ଏ ସ୍ଥାନରେ ବହୁବର୍ଷ ତଳେ ବହୁସଂଖ୍ୟାରେ ମଇଁଷିମାନେ ବୁଡି ମରି ଯାଇଥିଲେ । ମଇଁଷି ଚରାଉଥିବା ଗୋପାଳ କିଛି ଅନୀତି କାର୍ଯ୍ୟ କରିବାରୁ ମଇଁଷିମାନେ ଏଠାରେ ତୁବି ଯାଇଥିଲେ । ସେହିଭଳି ଏଠାରେ 'ଗରିଆ ତୁବା' ନାମରେ ଗଣ୍ଡ ରହିଛି । ଏହି ସ୍ଥାନରେ ଜଣେ ସ୍ତ୍ରୀ ଲୋକ କାଖରେ ଧରିଥିବା କଳସୀ (ସ୍ଥାନୀୟ ଭାଷାରେ ଗରିଆ) ସହ ନିଜେ ବୁଡି ଜୀବନ ତ୍ୟାଗ କରିଥିବା ଶୁଣିବାକୁ ମିଳେ । ସ୍ତ୍ରୀ ଲୋକଟି ପାପାଚାର କରିଥିବାରୁ ତାର ଏଭଳି ଦଶା ହୋଇଥିବା କଥା ଶୁଣିବାକୁ ମିଳେ । ବଲାଣୀ, ଗୁଆଲିର ଘଞ୍ଚ ଜଙ୍ଗଲ ଦେଇ କାରୋ ନଦୀ ବହି ଯାଉଥିବାର ଦୃଶ୍ୟ ସତରେ ଆକର୍ଷଣୀୟ । ଫୁଲବାଳି ପାହାଡର ବହୁତ ତଳକୁ କାରୋ ନଦୀ ଖସି ପଡି ଯେଉଁ ମନୋରମ ଜଳପ୍ରପାତଟିଏ ସୃଷ୍ଟି ହୋଇଛି, ତାହାକୁ ଦେଖିବାକୁ କେନ୍ଦୁଝର ସମେତ ପଡୋଶୀ ଝାଡଖଣ୍ଡରୁ ବହୁ ସଂଖ୍ୟାରେ ଦର୍ଶକ ଏଠାକୁ ଆସିଥାନ୍ତି । ତେବେ ଏହି ପୀଠର ବିକାଶ ପାଇଁ ସ୍ଥାନୀୟ ଅଞ୍ଚଳର ସ୍ୱେଚ୍ଛାସେବୀ ତଥା ଉଦ୍ୟୋଗପତି ବିଦ୍ୟାଧର ପଲେଇଙ୍କ ଉଦ୍ୟମ ପ୍ରଶଂସନୀୟ ।

## ଭୀମକୁଣ୍ଡ

ଭୀମକୁଣ୍ଡ ପର୍ଯ୍ୟଟନସ୍ଥଳ ପାଇଁ କେନ୍ଦୁଝର ଜିଲ୍ଲା ସମଗ୍ର ରାଜ୍ୟରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଏଠାରେ ବୈତରଣୀ ନଦୀରେ ଥିବା ଏକ କୁଣ୍ଡରେ ଦ୍ୱିତୀୟ ପାଣ୍ଡବ ଭୀମ ସ୍ନାନ କରିଥିବାରୁ ଏହାର ନାମ 'ଭୀମ କୁଣ୍ଡ' ହୋଇଛି ବୋଲି ବିଶ୍ୱାସ କରାଯାଏ । କେନ୍ଦୁଝରଠାରୁ ୪୫



କିଲୋମିଟର ଗଲାପରେ ପଡିବ ସ୍ୱାମ୍‌ପାଟଣା । ସ୍ୱାମ୍‌ପାଟଣାରୁ ୧୫ କିଲୋମିଟର ଅନ୍ୟ ଦିଗରେ ଗଲାପରେ ପଡିବ ଏହି ଭୀମକୁଣ୍ଡ ପର୍ଯ୍ୟଟନସ୍ଥଳ । କେନ୍ଦୁଝର ଓ ମୟୂରଭଞ୍ଜ ସୀମାରେ ବୈତରଣୀ ନଦୀରେ ଅବସ୍ଥିତ ପ୍ରକୃତିର ଏହି ମନୋରମ ସୁନ୍ଦରତମ ସ୍ଥାନଟି ପୌରାଣିକ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ମହାଭାରତର ବର୍ଣ୍ଣନା ଅନୁସାରେ ଦ୍ୱିତୀୟ ପାଣ୍ଡବ ଭୀମ ବନବାସ କରୁଥିବା ସମୟରେ ବୈତରଣୀ ନଦୀ କୂଳରେ ପହଞ୍ଚିଥିଲେ । ସେ ଏଠାରେ ସ୍ନାନ କରିଥିବାରୁ ଏହାର ନାମ 'ଭୀମକୁଣ୍ଡ' ହୋଇଛି । ଭୀମକୁଣ୍ଡର ଉଭୟ ପାର୍ଶ୍ୱରେ ଦୁଇଟି ଶୈବପୀଠ ରହିଛି । ଏହାବ୍ୟତୀତ ଭୀମକୁଣ୍ଡରେ ଦେବୀ ସୁନାମୁହିଁ ମଧ୍ୟ ପୂଜା ପାଆନ୍ତି । ନଦୀର ସୁଅ ମୁହଁରେ ଦେବୀ ସୁନାମୁହିଁଙ୍କର ଆସ୍ଥାନ ଅବସ୍ଥିତ । ସବୁଠୁ ବଡ଼ କଥା ହେଉଛି, ଦେବୀ ସୁନାମୁହିଁଙ୍କର ସେମିତି କିଛି ନିର୍ଦ୍ଦିଷ୍ଟ ମୂର୍ତ୍ତି ନାହିଁ । ପ୍ରସ୍ତରଶଯ୍ୟା ଦେଇ ବୈତରଣୀ ନଦୀର ଜଳ ପ୍ରବାହକୁ ଠାକୁରାଣୀ ମନେକରି ପୂଜାର୍ଚ୍ଚନା କରାଯାଇଥାଏ । ମକର ମେଳା ସମୟରେ ଏଠାକୁ ଲକ୍ଷାଧିକ ଭକ୍ତମାନେ ଆସି ମା'ଙ୍କ ନିକଟରେ ମାନସିକ କରିଥାନ୍ତି । ଏହି ସ୍ଥାନଟି ଅଧିକ ବିପଦପୂର୍ଣ୍ଣ ହୋଇଥିଲେ ହେଁ ପୂଜାପାଠ ସମୟରେ କୌଣସି ଅଘଟଣ ଘଟିଥିବା ନଜରକୁ ଆସିନାହିଁ । ମାନସିକ ପୂରଣ ହେଉଥିବାରୁ ସୁନାମୁହିଁ ଦେବୀଙ୍କ ପ୍ରତି ଭକ୍ତଙ୍କ ଅଗାଧ ବିଶ୍ୱାସ ରହିଛି । ସ୍ଥାନୀୟ ଲୋକେ ବୈତରଣୀ ନଦୀକୁ ଗଙ୍ଗାମାତା ଭାବେ ପୂଜା କରୁଥିବାବେଳେ ସୁନାମୁହିଁ ଠାକୁରାଣୀଙ୍କୁ ନାଗମାତା, ବରୁଣେଇ ମାତା ବା ପାଟମୁଖୀ ଠାକୁରାଣୀ ଭାବେ ପୂଜା କରନ୍ତି । ଏହି ସ୍ଥାନର ଅନ୍ୟ ଏକ ବିଶେଷତ୍ୱ ହେଉଛି ବୈତରଣୀ ନଦୀର ଉଭୟ ପାର୍ଶ୍ୱରେ ଅର୍ଥାତ୍ କେନ୍ଦୁଝର ଓ ମୟୂରଭଞ୍ଜ ସୀମାରେ ଦୁଇଟି ଭିନ୍ନଭିନ୍ନ ମହାଦେବଙ୍କ ମନ୍ଦିର ରହିଛି । କେନ୍ଦୁଝର ସୀମାନ୍ତରେ ଏକ ମହାଦେବଙ୍କ ମନ୍ଦିର ରହିଥିବାବେଳେ ଠିକ୍ ଅପରପାର୍ଶ୍ୱରେ ମୟୂରଭଞ୍ଜ ସୀମାରେ

ଏକ ଶିବ ମନ୍ଦିର ରହିଛି ।

ଭୀମକୁଣ୍ଡ ନିକଟରେ ବୈତରଣୀ ନଦୀର ମଧ୍ୟ ଭାଗରେ କଳାମୁଗୁନି ପଥରର ଏକ ସୁଦୀର୍ଘ ଶଯ୍ୟା ରହିଛି । ଏହା ନଦୀ ଗର୍ଭ ମଧ୍ୟ ଦେଇ ଏକ ରାସ୍ତା ଭଳି ନଦୀକୁ ଦୁଇ ଭାଗରେ ବିଭକ୍ତ କଲାଭଳି ମନେହୋଇଥାଏ । ସବୁଠୁ ଆଶ୍ଚର୍ଯ୍ୟର କଥା ହେଉଛି ନଦୀ ଗର୍ଭରେ ଅନ୍ୟ ପଥର ଶଯ୍ୟା ଧୂସର ଓ ଧଳା ହୋଇଥିବାବେଳେ ଉଭୟ ପାର୍ଶ୍ୱକୁ ସଂଯୋଗ କରୁଥିବା କଳାମୁଗୁନି ପଥରର ଏହି ରାସ୍ତା କଳା ହୋଇଥାଏ । ଏହା ପ୍ରକୃତି ନିର୍ମାଣ କରିଥିବା ଏକ ରାସ୍ତା ଯାହାକି ଉଭୟ ଶୈବପୀଠ ମଧ୍ୟରେ ସଂଯୋଗ ସ୍ଥାପନ କରିଥାଏ ବୋଲି ଲୋକବିଶ୍ୱାସ ରହିଛି ।

ଭୀମକୁଣ୍ଡଠାରେ ବୈତରଣୀ ନଦୀ ଏଭଳି ଉଗ୍ର ସ୍ରୋତସ୍ୱିନୀ ହୋଇଛି ତାହା ଅତି ଭୟଙ୍କର ମନେହୋଇଥାଏ । ପଥରଶଯ୍ୟା ଦେଇ ବୈତରଣୀ ନଦୀ ଗତି କରୁଥିବାବେଳେ ଭୀମକୁଣ୍ଡଠାରେ ହଠାତ୍ ତଳକୁ ଖସି ପଡିଛି ଏବଂ ଏହାର ସ୍ରୋତ ଏତେ ପ୍ରଖର ଓ ତଳକୁ ଖସି ପଡୁଥିବା ଜଳରାଶି ଏତେ ଜୋର୍‌ରେ ଶବ୍ଦ ସୃଷ୍ଟି କରିଥାଏ ସାଧାରଣ ଲୋକେ ଏହାକୁ ଦେଖି ଭୟଭୀତ ହୋଇ ପଡିଥାନ୍ତି । ବୈତରଣୀ ନଦୀର ଜଳ ଏଠାରେ ଏକ କୁଣ୍ଡ ମଧ୍ୟରେ ଘର୍ଘର ନାଦ କରି ପଡୁଥାଏ । କୁଣ୍ଡ ମଧ୍ୟରୁ ଏହି ଜଳରାଶି ପାତାଳଗାମୀ ହୋଇଥିବାର ବିଶ୍ୱାସ କରାଯାଏ । ଏଠାରୁ ବୈତରଣୀ ନଦୀ ଆଉ ଦୃଷ୍ଟିଗୋଚର ନହୋଇ ଅନ୍ତର୍ଧାନ ହୋଇଯାଇଛି । ଏଠାରୁ ପ୍ରାୟ ୧୫ କିଲୋମିଟର ପଥ ପରେ ବୈତରଣୀ ନଦୀ ପୁନଃ ଦୃଷ୍ଟିଗୋଚର ହୋଇଥାଏ ।





ମୟୁରଭଞ୍ଜ ଓ କେନ୍ଦୁଝର ଜିଲ୍ଲା ପ୍ରଶାସନ ପକ୍ଷରୁ ପ୍ରତିବର୍ଷ ଏଠାରେ ମକରମେଳା ମହା ଆଡମ୍ବରସହକାରେ ପାଳନ କରାଯାଇଥାଏ । ଭୀମକୁଣ୍ଡ କେବଳ ଦର୍ଶନୀୟ ସ୍ଥାନ ପାଇଁ ନୁହେଁ ଏକ ଧାର୍ମିକ କ୍ଷେତ୍ର ଭାବରେ ଉଭୟ କେନ୍ଦୁଝର ଓ ମୟୁରଭଞ୍ଜ ଜିଲ୍ଲାର ଜନସାଧାରଣଙ୍କ ବିଶ୍ୱାସକୁ ଦୃଢ କରି ପାରିଛି । ବର୍ଷତମାମ ଏହି ଦର୍ଶନୀୟ ସ୍ଥାନକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସନ୍ତି ଏବଂ ଏଠାରେ ଥିବା ଭୀମକୁଣ୍ଡ, ଜଳପ୍ରପାତ, ବୈତରଣୀର ନୀଳ ଜଳରାଶି ଏବଂ କଳା ଓ ଧଳା ପଥୁରିଆ ଶଯ୍ୟାକୁ ଉପଭୋଗ କରନ୍ତି ।

ବୈତରଣୀ ନଦୀ ଏହି ସ୍ଥାନରେ ଭୀମ ରୂପ ଧାରଣ କରି ପଥର ଶଯ୍ୟା ଉପରୁ ତଳକୁ ଲମ୍ଫ ପ୍ରଦାନ କରିଛି । ଏକ ପ୍ରକାଣ୍ଡ ଓ ସୁନ୍ଦର ଗର୍ତ୍ତ ଭିତରକୁ ବୈତରଣୀର ଜଳ ଶୋଷି ହୋଇ ଯାଉଥିବାର ଦୃଶ୍ୟ ବାସ୍ତବରେ ଭୟଙ୍କର ଓ ଉପଭୋଗ୍ୟ । ନଦୀର ଉପର ଶଯ୍ୟାରୁ ପ୍ରସ୍ତର ଗର୍ତ୍ତ ମଧ୍ୟକୁ ଜଳଧାର ଡେଇଁ ପଡୁଥିବାରୁ ଘୋଘୋ ଶବ୍ଦ ସୃଷ୍ଟି ହୋଇଥାଏ । ଏହି ଭୀମ ଗର୍ଜନ ଶବ୍ଦ ମନରେ ଭୟ ସଞ୍ଚାର କରିଥାଏ । ପବିତ୍ର କାର୍ତ୍ତୀକ ମାସର ପଞ୍ଚୁକ ତିଥିରେ ହଜାର ହଜାର ଶ୍ରଦ୍ଧାଳୁ ବୈତରଣୀର ଏହି କୁଣ୍ଡରେ ବୁଡ ପକେଇଥାନ୍ତି । ମକର ସଂକ୍ରାନ୍ତି ଅବସରରେ ଏଠାରେ 'ଭୀମକୁଣ୍ଡ ମହୋତ୍ସବ' ପାଳିତ ହୋଇଥାଏ । ମକର ସଂକ୍ରାନ୍ତିରେ ଭୀମକୁଣ୍ଡରେ ବୁଡ ପକେଇବା ପାଇଁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ମକର ସଂକ୍ରାନ୍ତି ଦିନ ବୈତରଣୀ ନଦୀର ଭୀମକୁଣ୍ଡରେ ବୁଡ ପକାଇଲେ ରୋଗ ଓ ପାପରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । କିନ୍ତୁ ରାଜ୍ୟର ଏହି ପ୍ରାକୃତିକ

ୀତିହ୍ୟ ପର୍ଯ୍ୟଟନ ବିଭାଗ ଓ ପ୍ରଶାସନର ଆଢୁଆଳରେ ରହିଆସିଛି । ପ୍ରତିବର୍ଷ ମକର ମେଳା ବସରରେ ଦୂରଦୂରାନ୍ତରୁ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକମାନେ ଏହି ସ୍ଥାନକୁ ଆସିଥାନ୍ତି । ୖତରଣୀ ନଦୀର ଗୋଟିଏ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ଯିବା ପାଇଁ ସାମୟିକ ଭାବେ ଏକ ଅସ୍ଥାୟୀ ଲାପୋଲ ନିର୍ମାଣ କରାଯାଇଥାଏ । ଅନ୍ୟ ଦିନରେ ଏହି ପୋଲ ନଥାଏ । ଏଠାରେ 'ଭୀମକୁଣ୍ଡ ଳବିଦ୍ୟୁତ୍ ଯୋଜନା' କାର୍ଯ୍ୟକାରୀ ହେବା ନେଇ ସରକାରଙ୍କ ପକ୍ଷରୁ ପ୍ରସ୍ତାବ ରହିଛି । ମାତ୍ର, ଥିନେଇ ବିଶେଷ ଅଗ୍ରଗତି ଲାଭ କରିପାରିନାହିଁ ।

## କଶରୀକୁଣ୍ଡ

ଣ୍ୟତୋୟା ବୈତରଣୀ ନଦୀରେ ମୟୂରଭଞ୍ଜ ଓ କେନ୍ଦୁଝର ସୀମାନ୍ତରେ ରହିଛି ଏହି ପ୍ରସିଦ୍ଧ ବିତ୍ର କେଶରୀକୁଣ୍ଡ । ଚଂପୁଆ ବ୍ଲକ୍ ଅନ୍ତର୍ଗତ ସରେଇ ଗ୍ରାମ ନିକଟରେ ବୈତରଣୀ ନଦୀରେ ବା ପ୍ରସ୍ତର ଶଯ୍ୟା ଉପରେ ଏକ ବିଶାଳ କୁଣ୍ଡ ରହିଛି । ଏହା ହିଁ କେଶରୀକୁଣ୍ଡ । ସରେଇ ାଁଟିରେ ପ୍ରସ୍ତର ଯୁଗର ବହୁ ଅବଶେଷ ମିଳିଥିବାରୁ ଏହାର ଗୁରୁତ୍ୱ ରହିଛି । ସରେଇ ଗ୍ରାମ ମେତ ନିକଟସ୍ଥ ଅସନପାଟ, ରାମଲା, ଜଗନ୍ନାଥପୁର ଅଞ୍ଚଳରୁ ପ୍ରସ୍ତର ଯୁଗର ମଣିଷ ବ୍ୟବହାର ରୁଥିବା ନାନା ପ୍ରକାର ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ଓ କୃଷି ସରଞ୍ଜାମ ମିଳିଛି । ଏଣୁ ଐତିହାସିକ ରେଇ ଗ୍ରାମର ଏକ ନିଆରା ଗୁରୁତ୍ୱ ରହିଛି । ଏହି ସରେଇ ଗ୍ରାମରେ ଥିବା କେଶରୀକୁଣ୍ଡଟି









ମଧ୍ୟ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ପବିତ୍ର ମକର ସଂକ୍ରାନ୍ତିରେ କେଶରୀକୁଣ୍ଡରେ ବୁଡ ପକାଇଲେ ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏହା ଉଭୟ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ସୀମାରେ ଥିବାରୁ ଉଭୟ ଜିଲ୍ଲାବାସୀ ଏହି ପୀଠଟିକୁ ନିଜର ବୋଲି ଦାବି କରନ୍ତି । ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ପାଳିତ ହୋଇଥାଏ ଏବଂ ଏହି ଅବସରରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏହି ମକର ମେଳା ଅବସରରେ ଯୁବକ, ଯୁବତୀମାନେ ନିଜନିଜର ଜୀବନସାଥୀ ବାଛିବାର



ସୁଯୋଗ ଲାଭ କରିଥାନ୍ତି । ପରିବାର ଗଠଣରେ ମକର ମେଳା ବୁଲିବାକୁ ଆସିଥିବା ବିଭିନ୍ନ ସଂପ୍ରଦାୟର ଯୁବକ, ଯୁବତୀମାନେ ପରସ୍ପରକୁ ଦେଖିବାର ଓ ଭାବ ବିନିମୟ କରିବାର ସୁଯୋଗ ଲାଭ କରିଥାନ୍ତି । ଏହା ପରେ ଯେଉଁ ଯୁବକ ଯେଉଁ ଯୁବତୀଙ୍କୁ ନିଜର ସାଥୀ ଭାବେ ଚୟନ କରନ୍ତି ପରେପରେ ସେମାନଙ୍କ ମଧ୍ୟରେ ବିବାହ ଅନୁଷ୍ଠିତ ହୋଇଥାଏ । କେଶରୀକୁଣ୍ଡକୁ ନେଇ ଅନେକ କିମ୍ବଦନ୍ତୀ ରହିଛି । ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କ ବନବାସ କାଳରେ ମାତା ସୀତା ବୈତରଣୀ ନଦୀର ଏହି କୁଣ୍ଡରେ ସ୍ନାନ କରିଥିବାର ଲୋକମୁଖରୁ ଶୁଣିବାକୁ ମିଳେ । ଏଣୁ ଏହାକୁ ସ୍ଥାନୀୟ ଅଞ୍ଚଳରେ 'ସୀତାକୁଣ୍ଡ' କୁହାଯାଉଥିବାର ଶୁଣିବାକୁ ମିଳେ । ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାକୁ ଦୁଇ ଭାଗ କରିଥିବା ବୈତରଣୀ ନଦୀର ଉଭୟ ବାଲୁକା ଶଯ୍ୟାରେ ପ୍ରତିବର୍ଷ ମକର ମେଳା ଧୁମ୍‌ଧାମରେ ପାଳିତ ହୋଇଥାଏ । ଧାନ ଫସଲ ଅମଳ ପରେପରେ ଉଭୟ ଜିଲ୍ଲାର ଅଧିବାସୀ ମକର ପର୍ବକୁ ବେଶ୍ ଆନନ୍ଦ ଉଲ୍ଲାସର ସହ ପାଳନ କରିଥାନ୍ତି । ମକର ମେଳା ଅବସରରେ ଉଭୟ ପାର୍ଶ୍ୱରେ ଶହଶହ ସଂଖ୍ୟାରେ ଉଠା ଦୋକାନ ବସିଥାଏ । ମୟୂରଭଞ୍ଜ ଓ କେନ୍ଦୁଝରକୁ ଯୋଗାଯୋଗ କରିବା ଉଦ୍ଦେଶ୍ୟରେ ବୈତରଣୀ ନଦୀ ଉପରେ ଅସ୍ଥାୟୀ ଭାବେ ଏକ ପୋଲ ନିର୍ମାଣ କରାଯାଇଥାଏ । ବୈତରଣୀ ନଦୀର ଏହି ସ୍ଥାନରେ ତିନୋଟି କୁଣ୍ଡ ରହିଛି । ଜଳ ପୂର୍ଣ୍ଣ ଏହି କୁଣ୍ଡଗୁଡିକ ଉପରକୁ ଅଲଗା ଅଲଗା ଜଣାଯାଉଥିଲେ ମଧ୍ୟ ଭିତରେ ପରସ୍ପର ସହ ସୁଡ଼ଙ୍ଗ ମାଧ୍ୟମରେ ସଂଯୁକ୍ତ

ହୋଇଛନ୍ତି । ମକର ମେଳା ଅବସରରେ ଏଠାକୁ ଆସିଥିବା ଅନେକ ଭକ୍ତ ଗୋଟିଏ କୁଣ୍ଡରେ ବୁଡ ପକେଇ ସୁଡ଼ଙ୍ଗ ମାଧ୍ୟମରେ ଅନ୍ୟ କୁଣ୍ଡରେ ବାହାରନ୍ତି । ଏହି ତିନି କୁଣ୍ଡରେ ସ୍ନାନ କଲେ ପୁଣ୍ୟପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି । ସ୍ନାନ ସାରି ଭକ୍ତମାନେ ନିକଟସ୍ଥ ଶିବ ମନ୍ଦିରରେ ପୂଜାର୍ଚ୍ଚନା କରିଥାନ୍ତି । ଏଠାରେ ବସବାସ କରୁଥିବା ସାନ୍ତାଳ ଆଦିବାସୀମାନେ ପୁଣ୍ୟତୋୟା ବୈତରଣୀକୁ ସେମାନଙ୍କର ମାଆ ବୋଲି ମାନିଥାନ୍ତି । ଏମାନେ ଶୁଦ୍ଧିକ୍ରିୟା ନିମନ୍ତେ କେଶରୀକୁଣ୍ଡକୁ ଆସିଥାନ୍ତି । ଏହା ବ୍ୟତୀତ କେଶରୀକୁଣ୍ଡ ନିକଟସ୍ଥ ବୈତରଣୀ ବାଲୁକା ଶଯ୍ୟା ବଣଭୋଜି ପାଇଁ ଏକ ପ୍ରକୃଷ୍ଟ ସ୍ଥାନ । ଏଠାକୁ ଶୀତଦିନେ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ବୈତରଣୀ ନଦୀ କୂଳରେ ଥିବା ଏହି ସରେଇ ଗ୍ରାମଟି ଐତିହାସିକ ଦୃଷ୍ଟିକୋଣରୁ ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ । ଏହି ଗ୍ରାମଟି ବୈତରଣୀ ନଦୀକୂଳ ସଭ୍ୟତାର ଏକ ପ୍ରମୁଖ ଅଂଶ । ଏଠାରେ ପ୍ରସ୍ତର ଯୁଗର ଅନେକ ଅଂଶବିଶେଷ ଓ ତମ୍ବା ମୁଦ୍ରା ମିଳିଛି ।

## ଭୈରବ କୁଣ୍ଡ

ଆନନ୍ଦପୁର ଉପଖଣ୍ଡ ଓ ମୟୂରଭଂଜ ଜିଲ୍ଲାର ସୀମାବର୍ତ୍ତୀ ଘଞ୍ଚ ଜଙ୍ଗଲ ମଧ୍ୟରେ ଶାଳନ୍ଦୀ ନଦୀ ମଧ୍ୟରେ ରହିଛି ଏହି ଭୈରବ କୁଣ୍ଡ ପର୍ଯ୍ୟଟନ ସ୍ଥଳ । ଆନନ୍ଦପୁର ବସ୍ ଷ୍ଟାଣ୍ଡଠାରୁ ଠାକୁରମୁଣ୍ଡା ରାସ୍ତାରେ ୨୩ କିଲୋମିଟର ଗଲାପରେ ରାସ୍ତାର ଏକ ପାର୍ଶ୍ୱରେ ଭୈରବ କୁଣ୍ଡ ସଂପର୍କରେ ଏକ ସୂଚନା ଫଳକ ଲଗାଯାଇଥିବାର ଆପଣ ଦେଖିବାକୁ ପାଇବେ । ସେଠାରୁ କରଂଜିଆ ଫରେଷ୍ଟ ରେଂଜ୍ ଅନ୍ତର୍ଗତ ସାତକୋଶିଆ ଅଭୟାରଣ୍ୟର ଜଂଗଲିଆ ରାସ୍ତାରେ ଏକ କିଲୋମିଟର ଗଲେ ସାଳନ୍ଦୀ ନଦୀ ପଡିବ । ପାହାଡିଆ ଅଞ୍ଚଳରେ ପଥୁରିଆ ଶଯ୍ୟା ଦେଇ ଶାଳନ୍ଦୀ ନଦୀଟି ବହି ଯାଇଥିବାରୁ ନଦୀର ଘୋ ଘୋ ଗର୍ଜନ ପର୍ଯ୍ୟଟକଙ୍କୁ ଚମତ୍କୃତ କରିଥାଏ । ନଦୀର କୂଳରେ ଶଂକର୍ଷଣ ବାବାଙ୍କର ଏକ ମନୋରମ ଆଶ୍ରମ ରହିଛି । ଭୈରବ କୁଣ୍ଡକୁ ଯିବାକୁ ହେଲେ ଶାଳନ୍ଦୀ ନଦୀ ପାର ହୋଇ ଯିବାକୁ ପଡେ । ଏଠାରେ ସ୍ଥାନୀୟ ଗ୍ରାମବାସୀ ପାଳିକରି ମାଗଣାରେ ପର୍ଯ୍ୟଟକମାନଙ୍କୁ ନଦୀ ପାର କରାଇଥାନ୍ତି । ନଦୀ ପାର ହେବା ପରେ ଏକ କିଲୋମିଟର ଦୂର ଚାଲିଚାଲି ଗଲାପରେ ଭୈରବ କୁଣ୍ଡର ପାଦଦେଶରେ ଥିବା ଏକ ମନ୍ଦିର ଓ ଭୈରବ ବାବାଙ୍କ ଆଶ୍ରମ ପଡେ । ଏଠାରେ ଦୀର୍ଘ ବର୍ଷ ଧରି ଭୈରବ ବାବା ସାଧନାରେ ମଗ୍ନ ରହିଛନ୍ତି ବୋଲି କୁହାଯାଉଛି । ଘଞ୍ଚ ଜଂଗଲପୂର୍ଣ୍ଣ ଏହି ପୀଠରେ ପୂର୍ବରୁ ବାଘ, ସିଂହ, ଭାଲୁ, ଅଜଗର, ଅହିରାଜ ଭଳି ହିଂସ୍ରଜନ୍ତୁ ବାସ କରୁଥିଲେ । ଏଠାରେ ମା' ଭୈରବୀଙ୍କ ସମେତ ମହାଦେବ ଶିବ, ପାର୍ବତୀ, ଜଗନ୍ନାଥ, ବଳଭଦ୍ର, ଦେବୀ ସୁଭଦ୍ରା ମଧ୍ୟ ପୂଜା ପାଉଛନ୍ତି । ପାହାଡ ପାଦଦେଶରୁ ପାଂଚଶହ ମିଟର ଉପରକୁ ଚଢିଲା ପରେ ଶାଳନ୍ଦୀ ନଦୀ ଶଯ୍ୟାରେ ଏହି ଭୈରବୀ କୁଣ୍ଡଟି ଅବସ୍ଥିତ । ଏଠାରେ ପଥର ଉପରେ ବଜରଂଗବାଲି

ହନୁମାନଙ୍କ ଏକ ବିରାଟ ପଦଚିହ୍ନ ରହିଛି । ରାମାୟଣ ଯୁଦ୍ଧରେ ଲକ୍ଷ୍ମଣଙ୍କ ଶକ୍ତିଭେଦ ବେଳେ ହନୁମାନ ଗନ୍ଧମାର୍ଦ୍ଦନକୁ ସଂଜୀବନି ବୃକ୍ଷ ଆଣିବାକୁ ଯାଇଥିବାବେଳେ ଏଠାରେ ସ୍ୱଳ୍ପ ସମୟ ପାଇଁ ଅଟକିଥିଲେ ବୋଲି ଲୋକଙ୍କଠାରୁ ଶୁଣିବାକୁ ମିଳେ । ହନୁମାନ ଏହି କୁଣ୍ଡରେ ସ୍ନାନ କରିଥିବାରୁ ଏହାକୁ ଭୈରବ କୁଣ୍ଡ କୁହାଯାଉଛି । ଏଠାରେ ସ୍ନାନ କଲେ ୨୭ ଜନ୍ମର ପାପ ନାଶନ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏଠାରେ ପିତୃପୁରୁଷଙ୍କୁ ପିଣ୍ଡଦାନ କଲେ ଅଶେଷ ପୁଣ୍ୟ ଅର୍ଜନ ହୋଇଥାଏ । ଭୈରବ କୁଣ୍ଡରେ ସ୍ନାନ କଲେ ଅନେକ ଦୁରାରୋଗ୍ୟରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । ତେବେ ଏହି ପର୍ଯ୍ୟଟନସ୍ଥଳକୁ ଯିବାକୁ ଭଲ ରାସ୍ତାଟିଏ ନଥିବାରୁ ଏଠାକୁ ବେଶି ସଂଖ୍ୟାରେ ପର୍ଯ୍ୟଟକମାନେ ଆସିପାରୁନାହାନ୍ତି ।

# କେନ୍ଦୁଝର ଜିଲ୍ଲାର ଶୈବ, ବିଷ୍ଣୁ ଓ ଶକ୍ତି ପୀଠ

## ଦେଓଗାଁର ଐତିହାସିକ କୁଶଳେଶ୍ୱର ମନ୍ଦିର ଓ ଏଠାରେ ପାଳିତ ପ୍ରସିଦ୍ଧ ଜାଗର ଯାତ୍ରା

ଓଡ଼ିଶାର ପ୍ରାଚୀନତମ ଶୈବ କ୍ଷେତ୍ରମାନଙ୍କ ମଧ୍ୟରେ ଦେଓଗାଁର କୁଶଳେଶ୍ୱର ପୀଠ ଅନ୍ୟତମ । କେନ୍ଦୁଝର ଜିଲ୍ଲାର ଘସିପୁରା ବ୍ଲକ୍ ଅନ୍ତର୍ଗତ ଦେଓଗାଁର କୁଶଭଦ୍ରା (କୁଶେଇ) ନଦୀ କୂଳରେ ରହିଛି







କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି

ବହୁ ପୁରାତନ ଐତିହାସିକ କୁଶଳେଶ୍ୱର ଶୈବପୀଠ । 'ଦେବଗ୍ରାମ'ର ଅପଭ୍ରଂଶ ହୋଇ ଦେଓଗାଁ ହୋଇଛି । ଏହା ଓଡ଼ିଶାର ପ୍ରାଚୀନତମ ଶୈବପୀଠ ମାନଙ୍କ ମଧ୍ୟରୁ ଅନ୍ୟତମ । ଏଠାରେ ମହାଦେବ କୁଶଳେଶ୍ୱରଙ୍କ ଏକ ମନ୍ଦିର ରହିଛି । କୁଶଳେଶ୍ୱର ଏକ ଶୈବ ପୀଠ ଭାବେ ଲୋକଲୋଚନରେ ପରିଚିତ ହୋଇଥିଲେ ମଧ୍ୟ ଏହା ଏକ ପ୍ରାଚୀନ ବୌଦ୍ଧ ତନ୍ତ୍ର ଉପାସନା କ୍ଷେତ୍ର ଥିଲା ବୋଲି କୁହାଯାଉଛି । କୁଶଳେଶ୍ୱର ପୀଠରେ ମହାଦେବ ଶିବଙ୍କ ସମେତ ବହୁ ବୌଦ୍ଧ ତନ୍ତ୍ର ଦେବୀଙ୍କ





କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



ପ୍ରାଚୀନ ମୂର୍ତ୍ତି ରହିଛି । ଏସବୁ ଏବେ ବିଭିନ୍ନ ହିନ୍ଦୁ ଦେବଦେବୀ ନାମରେ ପୂଜିତ ହେଉଛନ୍ତି ।

ଦେଓଗାଁରେ ମହାଦେବ କୁଶଳେଶ୍ୱରଙ୍କ ଏକ ମନୋରମ ଓ ସର୍ବ ପୁରାତନ ମନ୍ଦିର ରହିଛି । ରାଜା ଯଯାତି କେଶରୀ ଏହି ମନ୍ଦିର ନିର୍ମାଣ କରିଛନ୍ତି । ଏହା ଭୁବନେଶ୍ୱରର ଲିଂଗରାଜ ମନ୍ଦିରଠାରୁ ମଧ୍ୟ ପୁରୁଣା ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । କୁଶଭଦ୍ରା (କୁଶେଇ ନଈ) ନଦୀଟି କେନ୍ଦୁଝର ଜିଲ୍ଲାର କାଳିଆହତା ଗ୍ରାମ ପଞ୍ଚାୟତର ମେଘାସନ ପର୍ବତରୁ ବାହାରି ୮୦ କିଲୋମିଟର



କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି





ଭୁବନେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



ପାର୍ବତ୍ୟ ଭୂମି ଅତିକ୍ରମ କରି ବାତୋ ଗ୍ରାମ ନିକଟରେ ବୈତରଣୀ ନଦୀରେ ମିଶିଛି । କୁଶଭଦ୍ର (କୁଶେଇ) ନଦୀର ପ୍ରାକୃତିକ ଶୋଭାରାଜି ଅତ୍ୟନ୍ତ ମନମୁଗ୍‌ଧକର । ଏହାକୁ କଟକର କାଠଯୋଡି ନଦୀ ସହ ତୁଳନା କରାଯାଇଥାଏ । ଏହି ନଦୀରେ ପ୍ରତିବର୍ଷ ବନ୍ୟା ଆସୁଥିବାରୁ ରାଜା ଯଯାତିକେଶରୀ ଏହି ନଦୀରେ କାଠଯୋଡି ରିଙ୍ଗ୍ ରୋଡ୍ ଭଳି କୁଶେଇ ନଦୀର ପାର୍ଶ୍ୱରେ ବନ୍ଧ ନିର୍ମାଣ କରିଛନ୍ତି ।



ଭୁବନେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି





କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



ରାଜା ଯଯାତି କେଶରୀଙ୍କ ଦ୍ୱାରା ମହାଦେବଙ୍କ ମନ୍ଦିର ସମ୍ମୁଖରେ କୁଶଭଦ୍ରା ନଦୀରେ ଏକ ମନୋରମ ଘାଟ ନିର୍ମାଣ କରାଯାଇଛି । କୁଶେଇ ଘାଟର ନିର୍ମାଣ ଶୈଳୀ ଆମର ପୂର୍ବ ପୁରୁଷମାନଙ୍କର କାରୁକୀର୍ତ୍ତି ସଂପର୍କରେ ଅନେକ ସୂଚନା ଦେଇଥାଏ । କୁଶଭଦ୍ରା ନଦୀର ଉଭୟ ତୀର ଘଞ୍ଚ କୁଶ ଶଯ୍ୟାପୂର୍ଣ୍ଣ ହୋଇଥିବାରୁ ଏହି ନଦୀର ନାମ 'କୁଶଭଦ୍ରା' ଓ ଦିଅଁଙ୍କ ନାମ କୁଶଳେଶ୍ୱର ହୋଇଛି ।

ଓଡ଼ିଶାର ଶୈବ ପରଂପରାରେ କୁଶଳେଶ୍ୱର ପୀଠର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ୯୦୦ ଖ୍ରୀଷ୍ଟାବ୍ଦରେ



କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି







କୁଶକେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ

ରାଜା ଯଯାତି କେଶରୀଙ୍କ ଦ୍ୱାରା ଏହି ମନ୍ଦିର ନିର୍ମାଣ କରାଯାଇଥିବା ଇତିହାସ କୁହେ । ଦେଓଗାଁ ଓ ଏହାର ଆଖପାଖ ଅଞ୍ଚଳ ପୂର୍ବରୁ ଘଞ୍ଚ ଜଙ୍ଗଲପୂର୍ଣ୍ଣ ଥିଲା । ଜଙ୍ଗଲ ମଧ୍ୟରେ ଏକ ବିରାଟ ବେଣାଘାସ ବୁଦା ରହିଥିଲା । କୁଶେଇ (କୁଶଭଦ୍ରା) ନଦୀର ଅପରପାର୍ଶ୍ୱରେ 'ଦୀପପାଳ' ଗାଁ ରହିଛି । ସେଠାକାର ଅଧିବାସୀମାନେ ମୁଖ୍ୟତଃ ଗୋପାଳ ସଂପ୍ରଦାୟର । ସେମାନଙ୍କ ମଧ୍ୟରୁ ଜଣଙ୍କର ଅଧିକ ଗାଈଗୋରୁ ଥିଲା । ପ୍ରତିଦିନ ସେ ନଦୀ ପାର କରି ଗୋରୁମାନଙ୍କୁ ଚରେଇବାକୁ





କୁଶକେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



କୁଶଳେଶ୍ୱର ମନ୍ଦିରରେ ପୂଜା ପାଉଥିବା ପ୍ରାଚୀନ ମୂର୍ତ୍ତି



ଆଣିଥାଏ । ଗୋପାଳର ସମସ୍ତ ଗାଈମାନଙ୍କ ମଧ୍ୟରେ ଏକ କାଳିଗାଈ ସବୁଦିନ ସେହି ବେଣାଘାସ ବୁଦା ନିକଟକୁ ଆସେ । ଯେତେବେଳେ ଗାଈଟି ବେଣାବୁଦା ଉପରକୁ ଉଠିଯାଏ, ତା' ପହ୍ନାରୁ ଆପେଆପେ ଖୀର ଝରିଥାଏ । ଥରେ ନଦୀ ପ୍ରବଳ ବଢିଥିବାବେଳେ କାଳୀଗାଈଟି ପ୍ରବଳ ସ୍ରୋତକୁ ଅତିକ୍ରମ କରି ଆସି ସେ ବେଣାଘାସ ବୁଦା ନିକଟରେ ପହଞ୍ଚିଥିଲା । କାହିଁକି ଗାଈଟି ସବୁବେଳେ ସେ ବେଣାବୁଦା ନିକଟକୁ ଯାଉଛି ତାହାର ରହସ୍ୟ ଜାଣିବା ପାଇଁ ଦିନେ ଗୋପାଳ ସେଇ ଗାଈଟିର ପଛେପଛେ ଆସିଥିଲା । ଘଟଣା ସ୍ଥଳରେ ପହଞ୍ଚି ଗୋପାଳ ସମସ୍ତ ରହସ୍ୟ ଜାଣିପାରିଥିଲା । ଗୋପାଳ ଏହା ଜାଣିବା ପରେ ଗ୍ରାମବାସୀଙ୍କୁ ଖବର ଦେଲା । ଗୋପାଳଠାରୁ ଜାଣିବା ପରେ ଗ୍ରାମବାସୀ ସେହି ବେଣାବୁଦାଟିକୁ ଖୋଳିଲେ । ଏହି ବେଣାବୁଦାରୁ ବିରାଟ ଶିବଲିଙ୍ଗର ଆବିଷ୍କାର କରାଯାଇଥିଲା । ଏହି ଘଟଣା ରାଜା ଯଯାତି କେଶରୀଙ୍କ କାନରେ ପଡିବା ପରେ ସେ ଏହି ସ୍ଥାନକୁ ପରିଦର୍ଶନରେ ଆସିଥିଲେ । ରାଜା ଯଯାତି କେଶରୀଙ୍କ ନିର୍ଦ୍ଦେଶକ୍ରମେ ଏଠାରେ ତୁରନ୍ତ ଏକ ଶିବ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏହି ମନ୍ଦିରର ଗଠନ ଶୈଳୀ ଅତ୍ୟନ୍ତ ଉଚ୍ଚକୋଟୀର । ମୁଖ୍ୟ ମନ୍ଦିରର ଉଚ୍ଚତା ୪୦ ଫୁଟ ଓ ଏହା ପୂର୍ବମୁଖୀ । ମନ୍ଦିରର ଜଗମୋହନ ଓ ଦକ୍ଷିଣ ପାର୍ଶ୍ୱରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ରହିଛି । ଏହି ଅବଲୋକିତେଶ୍ୱରଙ୍କ ଉପସ୍ଥିତି ଏଠାରେ ବୌଦ୍ଧ ପରଂପରାର ସୂଚନା ଦେଇଥାଏ । କୁଶଳେଶ୍ୱରଙ୍କ ଏକ ପାର୍ଶ୍ୱରେ ବୁଢା ମହେଶ ବା ବୁଢା ମହାଦେବଙ୍କ



କୁଶଳେଶ୍ୱର ପୀଠରେ ଥିବା ଐତିହାସିକ ବାମ୍ଫି

ମୂର୍ତ୍ତି ରହିଛି । ଏହି ବୁଢା ମହେଶ ହେଉଛନ୍ତି ମହାଦେବ କପିଳେଶ୍ୱର । ସେ ପାତାଳରୁ ବାହାରିଛନ୍ତି ବୋଲି କିମ୍ବଦନ୍ତୀ ରହିଛି । ମନ୍ଦିରର ଉତ୍ତର ପାର୍ଶ୍ୱରେ ମା' ଦୁର୍ଗା, ପଶ୍ଚିମ ପାର୍ଶ୍ୱରେ ଭୈରବ ମୂର୍ତ୍ତି ଓ ଦକ୍ଷିଣ ପାର୍ଶ୍ୱରେ ପ୍ରଭୁ କାର୍ତ୍ତିକେଶ୍ୱର ବିରାଜମାନ । ମନ୍ଦିରର ଉତ୍ତର ପୂର୍ବକୁ ଗୋଟିଏ ଘର ଅଛି । ତାହା ଦୁଇ ଭାଗରେ ବିଭକ୍ତ । ପୂର୍ବ ଭାଗରେ ମହାଦେବଙ୍କ ଜିନିଷ ରହିଥିବାବେଳେ ଅନ୍ୟ ଭାଗଟିରେ ପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । କୁଶଳେଶ୍ୱର ମନ୍ଦିରସ୍ଥିତ ଜଗନ୍ନାଥଙ୍କ ମୂର୍ତ୍ତି ନିକଟରେ ଚନ୍ଦ୍ରଶେଖରଙ୍କର ଏକ ରୌପ୍ୟ ବିଗ୍ରହ ରହିଛି । ଏହାକୁ କୁଶଳେଶ୍ୱରଙ୍କ ପ୍ରତିନିଧି ବା ବିଜେ ପ୍ରତିମା କୁହାଯାଏ । ଏହି ପ୍ରତିମା ପ୍ରତି ସୋମବାର ଓ ଚର୍ତୁଦଶୀ ଦିନ ବେଢା ପରିକ୍ରମା କରନ୍ତି ଏବଂ ଦୋଳ ପୂର୍ଣ୍ଣିମା ଦିନ ଦୋଳ ମଣ୍ଡପକୁ ଗମନ କରନ୍ତି । ଏଠାରେ ଦେବୀ ପାର୍ବତୀଙ୍କ ଏକ କ୍ଷୁଦ୍ର ମନ୍ଦିର, କାର୍ତ୍ତିକେୟ, ଅଷ୍ଟଭୁଜା ଗଣେଷ, ଏକପାଦୀ ଭୈରବ, କପିଳେଶ୍ୱର, ଜଗନ୍ନାଥ ମନ୍ଦିର, ଗୋକର୍ଣ୍ଣିକା ବଟ, ମୁକ୍ତି ମଣ୍ଡପ, ଦୋଳମଣ୍ଡପ ଆଦି ରହିଛି । ଯାଜପୁର ଜିଲ୍ଲାର ଉଦୟଗିରି ଢାଞ୍ଚାର ଏକ ବାମ୍ଫି ଏଠାରେ ରହିଛି । ଏହି ବାମ୍ଫି ମଧ୍ୟ ବୌଦ୍ଧ ପରଂପରାର ସୂଚନା ପ୍ରଦାନ କରିଥାଏ । କୁଶେଇ ନଦୀରେ ଆସୁଥିବା ପ୍ରଳୟଙ୍କରୀ ବନ୍ୟା ଦାଉରୁ କୁଶଳେଶ୍ୱର ତଥା ଦେଓଗାଁର ସୁରକ୍ଷା ପାଇଁ ଏଠାରେ ରହିଛି ଓଡ଼ିଶାର ଦ୍ୱିତୀୟ ପଥର ବନ୍ଧ । କୁଶେଇ ନଦୀ କୂଳରେ ଥିବା ଏହି ମନ୍ଦିରରେ ଭୈରବ, ଶିବ, ଦୁର୍ଗା, ବିଷ୍ଣୁ ଗଣେଶ, ଲକ୍ଷ୍ମୀ, ଶନି, ଜଗନ୍ନାଥ, ବରାହ, ନୃସିଂହ, କାର୍ତ୍ତିକେଶ୍ୱର ଆଦି ଦେବଦେବୀମାନେ ପାର୍ଶ୍ୱ ଦେବଦେବୀ ଭାବେ ପୂଜା ପାଉଛନ୍ତି । ରାଜା ଯଯାତି କେଶରୀ ଓ କେନ୍ଦୁଝର ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ଅମଳରୁ ଏଠାରେ ମନ୍ଦିର ସ୍ଥାପନ ହୋଇଥିବା ସହ ଏକ ପଥର ବନ୍ଧ ମଧ୍ୟ



ରାଜା ଯଯାତିକେଶରୀଙ୍କ ଦ୍ୱାରା ନିର୍ମିତ କୁଶଭଦ୍ରା ନଦୀ ଘାଟ ଓ ରିଂ ବନ୍ଧ

ନିର୍ମାଣ ହୋଇଥିବା କଥା ଗବେଷକମାନେ ମତବ୍ୟକ୍ତ କରନ୍ତି । ମନ୍ଦିର ପରିସରରେ ଦୋଳମଣ୍ଡପ, ମୁକ୍ତିମଣ୍ଡପ, ବଟବୃକ୍ଷ ଓ ଏକପାଦୀ ଭୈରବୀ ମନ୍ଦିରମାନ ପୁରୀ ମନ୍ଦିର ଢାଞ୍ଚାରେ ନିର୍ମିତ ହୋଇଛି । ଏଠାରେ ଥିବା ଏକପାଦୀ ଭୈରବ ମୂର୍ତ୍ତିଙ୍କର ନାମ 'ଘଣ୍ଟ କର୍ଣ୍ଣ' । ଏହି ଭୈରବ ମୂର୍ତ୍ତି ଜୈନ ସିଦ୍ଧଙ୍କର ମୂର୍ତ୍ତି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । କୁଶଳେଶ୍ୱର ମନ୍ଦିରରେ ଥିବା କାର୍ତ୍ତିକେୟଙ୍କ ମୂର୍ତ୍ତିର ଗଠନ ଶୈଳୀ ମଧ୍ୟ ବିଚିତ୍ର । ଏଭଳି ମୂର୍ତ୍ତି ଅନ୍ୟ କୌଣସି ସ୍ଥାନରେ ଦେଖିବାକୁ ମିଳେନାହିଁ । ଏଠାରେ ଥିବା କାର୍ତ୍ତିକେୟଙ୍କର ଛଅ ଗୋଟି ମୁହଁ ଥିବାରୁ ତାଙ୍କୁ ଷଡାନନ କୁହାଯାଉଛି । କାର୍ତ୍ତିକେୟ ଗୋଟିଏ ହାତରେ ଏକ 'କୁକ୍‌କଟ' (କୁକୁଡା ବା ମୟୂରୀ) ଧରିଛନ୍ତି । ଏଠାରେ ଏକ ମୁକ୍ତି ମଣ୍ଡପ ରହିଛି । ଷୋଳଟି ଖମ୍ବ ଓ ନଅଟି କୋଠରୀରେ ବିଭକ୍ତ ହୋଇଥିବା ଏହି ମୁକ୍ତି ମଣ୍ଡପଟି ମନ୍ଦିରର ପୂର୍ବ ଭାଗରେ ଅବସ୍ଥିତ । ୨୩ ଫୁଟ ଆୟତନ ବିଶିଷ୍ଟ ଏହି ଉଚ୍ଚ ମଣ୍ଡପଟି ବାହାରକୁ ଏକ ମନ୍ଦିରର ଭ୍ରମ ସୃଷ୍ଟି କରିଥାଏ । ଏହା ମଧ୍ୟସ୍ଥ ଖମ୍ବଗୁଡିକ ଏଭଳି ଢାଞ୍ଚାରେ ନିର୍ମିତ ହୋଇଛି, ଯେଉଁ ଦର୍ଶକ ମଣ୍ଡପ ଉପରକୁ ଯିବ ସେ ଏକ କାଳୀନ ୯ଟି ମନ୍ଦିର ମଧ୍ୟରେ ପ୍ରବେଶ କଲା ଭଳି ଅନୁଭବ କରିବ । ବିବିଧ କାରୁକାର୍ଯ୍ୟ ବିମଣ୍ଡିତ ଏହି ମଣ୍ଡପ ଓଡ଼ିଶାର ଅଦ୍ୱିତୀୟ ମୁକ୍ତି ମଣ୍ଡପ କହିଲେ ଅତି

ଉକ୍ତି ହେବନାହିଁ । ସବୁଠୁ ଆଶ୍ଚର୍ଯ୍ୟର ବିଷୟ ହେଉଛି ମୁଖ୍ୟ ମନ୍ଦିର ସମ୍ମୁଖରେ ଜଗମୋହନ, ବକୁଳ ବେଦୀ ଏବଂ ମୁକ୍ତି ମଣ୍ଡପ ଥିବା ସତ୍ତ୍ୱେ ସକାଳର ପ୍ରଥମ ସୂର୍ଯ୍ୟ କିରଣ ଏସବୁକୁ ଭେଦ କରି କୁଶଳେଶ୍ୱର ଲିଙ୍ଗ ଉପରେ ପତିତ ହୋଇଥାଏ । ଏହା ହିଁ କୁଶଳେଶ୍ୱରଙ୍କ ମହିମା ବୋଲି ଭକ୍ତମାନେ କହନ୍ତି । ଏହି ମନ୍ଦିର ବେଢା ପରିସରରେ 'ଶିବଶକ୍ତି' (ନାଗଚଂପା) ଫୁଲ ଗଛ ରହିଛି । ଏହି ଫୁଲ ଗଛଟି ଠିକ୍ ଶିବ ଲିଙ୍ଗକୁ ସପ୍ତଫେଣୀ ନାଗ ଆବୃତ କଲା ଭଳି ଦେଖାଯାଏ । ଫୁଲ ଗଛଟି ମନ୍ଦିର ବେଢାର ଶୋଭାକୁ ବହୁଗୁଣିତ କରିଥାଏ । ଓଡ଼ିଶାର ଅନ୍ୟ କୌଣସି ମନ୍ଦିର ବେଢାରେ ଏଭଳି ଫୁଲ ଗଛ ଦେଖିବା ବିରଳ । ମନ୍ଦିର ବେଢାର ନିଭୃତ କୋଣରେ ରହିଛି ଗୋକର୍ଣ୍ଣିକା ବଟବୃକ୍ଷ । ଏହି ବଟବୃକ୍ଷର ପତ୍ରସବୁ ଗାଈର କାନ ଭଳି ଦେଖାଯାଏ । ଏହି ବଟବୃକ୍ଷର ଉପସ୍ଥିତି ଜୈନ ପରଂପରା ସଂପର୍କରେ ସୂଚନା ପ୍ରଦାନ କରିଥାଏ । ଏଠାରେ ଏକ ଯଜ୍ଞ ମଣ୍ଡପ ରହିଛି । ବ୍ରାହ୍ମଣ ସମାଜ ପକ୍ଷରୁ ଏଠାରେ ପ୍ରତିବର୍ଷ ଯଜ୍ଞ ଅନୁଷ୍ଠିତ ହୋଇଥାଏ । ଏଠାରେ ପ୍ରତିବର୍ଷ ଅନୁଷ୍ଠିତ ହେଉଥିବା ଜାଗର ମେଳା ପାଇଁ ଏହା ସମଗ୍ର କେନ୍ଦୁଝର ଜିଲ୍ଲା ସମେତ ରାଜ୍ୟରେ ପ୍ରସିଦ୍ଧିଲାଭ କରିପାରିଛି । ପନ୍ଦର ଦିନ ଧରି ଏହି ମେଳା ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଏଠାରେ ଅପେରା ସାଙ୍ଗକୁ ହାଟବଜାର, ମେଳା, ମୀନାବଜାରର ଆୟୋଜନ କରାଯାଇଥାଏ । ଦେଓଗାଁର ଜାଗର ମେଳା ଦେଖିବାକୁ ଓ ଦୋ'ପାଗି ଉଖୁଡା ଚାଖିବାକୁ ଜିଲ୍ଲାର ବିଭିନ୍ନ କୋଣରୁ ଭକ୍ତମାନେ ଏଠାକୁ ଆସିଥାନ୍ତି । ଜାଗର ମେଳା ବ୍ୟତୀତ ଏଠାରେ ରାହାସ ପୂର୍ଣ୍ଣିମା, ମକର ମେଳା, ଦୋଳ ପୂର୍ଣ୍ଣିମା, ଶୀତଳ ଷଷ୍ଠୀ (ଶିବ-ପାର୍ବତୀ ବିବାହ), ମହାଷ୍ଟମୀ (ଦୁର୍ଗା ପୂଜା) ଆଦି ପର୍ବପର୍ବାଣୀ ପାଳିତ ହୋଇଥାଏ । ପୂର୍ବେ କୁଶଭଦ୍ରା ନଦୀରେ ପ୍ରବଳ ବନ୍ୟା ଆସୁଥିଲା ଏବଂ ମନ୍ଦିରକୁ ବନ୍ୟା କବଳରୁ ରକ୍ଷା କରିବାକୁ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେଓ କୁଶଭଦ୍ରା ନଦୀର କୂଳେକୂଳେ ବନ୍ଧ ନିର୍ମାଣ କରିବା ସହିତ ସୁଦୃଢ଼ ବୁରୁଜମାନ ନିର୍ମାଣ କରିଥିଲେ । ଏହି ନିର୍ମାଣ କାର୍ଯ୍ୟକୁ ତତ୍କାଳୀନ ରାଜାଙ୍କ ମ୍ୟାନେଜର ଫକୀର ମୋହନ ସେନାପତି ନିର୍ବାହ କରିଥିଲେ ।

## କେନ୍ଦୁଝର ସହରର ବାଲୁଙ୍କେଶ୍ୱର ମନ୍ଦିର ଓ ପ୍ରସିଦ୍ଧ ଜାଗର ଯାତ୍ରା

କେନ୍ଦୁଝର ସହରର ଅନ୍ୟତମ ପୁରାତନ ଶୈବପୀଠ ଭାବେ ପରିଚିତ ବାଲୁଙ୍କେଶ୍ୱର ମନ୍ଦିର । ଶ୍ରୀଶ୍ରୀ ବାଲୁଙ୍କେଶ୍ୱର ମହାଦେବଙ୍କ ମନ୍ଦିର ୧୩୧୮ ମସିହାରେ ସ୍ଥାପିତ ବୋଲି କୁହାଯାଏ । ଏହି ମନ୍ଦିରର ନିର୍ମାଣ ଚକରା ମହଲା ନାମକ ଜଣେ କାରିଗର କରିଥିବାବେଳେ ଚିନ୍ତାମଣି ପାଣିଗ୍ରାହୀ ନାମକ ଚିତ୍ରକର ମନ୍ଦିରର ପାର୍ଶ୍ୱଦେବତା ନିର୍ମାଣ କରିଥିବା କଥା କିଛି ଐତିହାସିକ ମତବ୍ୟକ୍ତ କରନ୍ତି । ତତ୍କାଳୀନ ରାଜା ଓ ବ୍ରାହ୍ମଣମାନଙ୍କ ଦାନରେ ଏହି ମନ୍ଦିର ନିର୍ମାଣ କରାଯାଇଥିବା କୁହାଯାଏ । ବାଲୁଙ୍କେଶ୍ୱର ମହାଦେବଙ୍କୁ ନେଇ ବହୁ ଲୋକକଥା ରହିଛି । କୁହାଯାଏ, ବହୁବର୍ଷ

ତଳେ ଉକ୍ତ ସ୍ଥାନଟି ଶାଳ ଜଙ୍ଗଲରେ ଭରପୂର ଥିଲା । ବାଲୁଙ୍କି ନାମକ ଜଣେ ବ୍ୟକ୍ତି ଉକ୍ତ ସ୍ଥାନରୁ ଶାଳ ଗଛ କାଟିବା ବେଳକୁ ଗୋଟିଏ ସ୍ଥାନରେ ଟାଙ୍ଗିଆ ର ଚୋଟ ବାଜି ରକ୍ତସ୍ରାବ ହୋଇଥିଲା । ଏହି ସ୍ଥାନରେ ଏକ ଶିବଲିଙ୍ଗ ଥିବା କଥା ଜଣାପଡିଥିଲା । ତେବେ ଏହି ମନ୍ଦିରରେ ଥିବା ଶିବଲିଙ୍ଗରେ ଏବେ ମଧ୍ୟ ଟାଙ୍ଗିଆ କ୍ଷତଚିହ୍ନ ଦେଖିବାକୁ ମିଳିଥାଏ । ପରବର୍ତ୍ତୀ ସମୟରେ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଏହି ସ୍ଥାନରେ ଏକ ବ୍ରାହ୍ମଣଶାସନ ପ୍ରତିଷ୍ଠା କରାଇଲେ ଯାହାକି ବୀରଶ୍ରୀ ଲକ୍ଷ୍ମୀନାରାୟଣଗତ ଶାସନ ନାମରେ ନାମିତ ହେଲା । ମହାଦେବଙ୍କ ନାମରେ ଠାକୁର ନୀତି ପୂଜା ଓ ପରିଚାଳନା ପାଇଁ ହାତୀଆଟାଙ୍କର (ଯାହାକି ଏବେ କେନ୍ଦୁଝର ସହରର କେନ୍ଦ୍ରସ୍ଥଳ) ଅଞ୍ଚଳର ୧୦୫ ଏକର ଜମି ରାଜା ଦାନ କରିଥିଲେ । ତେବେ ଏହି ଜମି ଦୀର୍ଘବର୍ଷ ଧରି ଜବରଦଖଲରେ ରହିଥିବାରୁ ବାଲୁଙ୍କେଶ୍ୱର ମନ୍ଦିର ପରିଚାଳନା ଓ ନୀତିରେ ବାଧା ଉପୁଜିଆସୁଛି । ୧୯୭୦ ମସିହାରେ ଏହି ମନ୍ଦିର ସମେତ ରାଜାରାଜୁଡା ଅମଳର ଅନେକ ମନ୍ଦିର ଦେବତ୍ତୋର ବିଭାଗକୁ ଚାଲିଯାଇଛି । ଏହାର ପରିଚାଳନା ପାଇଁ ଏକ ସ୍ୱତନ୍ତ୍ର ଟ୍ରଷ୍ଟ ବୋର୍ଡ ରହିଛି । ଏଠାରେ ବର୍ଷତମାମ୍ ମହୋତ୍ସବ ଅନୁଷ୍ଠିତ ହୋଇଥାଏ । ବିଶେଷକରି ଏଠାରେ ପାଳିତ ହେଉଥିବା ଜାଗର ଯାତ୍ରା ସମଗ୍ର କେନ୍ଦୁଝର ଜିଲ୍ଲାରେ ବିଶେଷ ଭାବେ ପରିଚିତ । ଏହାବ୍ୟତୀତ ଶୀତଳଷଷ୍ଠୀ, ଗହ୍ମାପୂର୍ଣ୍ଣିମା, ସପ୍ତପୁରୀ ଅମାବାସ୍ୟା, ମକର ସଂକ୍ରାନ୍ତି ଆଦି ଉତ୍ସବ ପାଳିତ ହୋଇଥାଏ । ଜାଗର ସମୟରେ ମନ୍ଦିରରେ ପୂଜାନୀତି ପାଙ୍କକୁ ମନ୍ଦିର



ପରିସରରେ ଏକ ବିରାଟ ମେଳା ବସିଥାଏ । ଏହି ଅବସରରେ ଅପେରା, ମୀନାବଜାର ଆଦି ଆୟୋଜିତ ହୋଇଥାଏ । ମହାଶିବରାତ୍ରୀଠାରୁ ଆରମ୍ଭ ହୋଇ ଜାଗର ମେଳା ସପ୍ତାହେ ବ୍ୟାପି ଚାଲେ ।

## ଧାନବେଣୀର ଧନେଶ୍ୱର ମନ୍ଦିର (ହରିଚନ୍ଦନପୁର)

ହରିଚନ୍ଦନପୁର ବ୍ଲକ୍ ଅନ୍ତର୍ଗତ ଧାନବେଣୀଠାରେ ରହିଛି ବାବା ଧନେଶ୍ୱର ମହାଦେବଙ୍କ ମନ୍ଦିର । କେନ୍ଦୁଝରଠାରୁ କୋଡିଏ କିଲୋମିଟର ଦୂର ଧାନବେଣୀଠାରେ ପ୍ରାୟ ପାଞ୍ଚ ହଜାର ବର୍ଗ ମିଟର ଆୟତନର ଏକ ବିଶାଳ ଅର୍ଦ୍ଧଗୋଲାକାର ପଥର ଉପରେ ବାବା ଧନେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ଏଠାରେ ଏକ ବିରାଟ ମେଳା ବସିଥାଏ । ଏହି ମେଳା ସପ୍ତାହେ ଧରି ଚାଲିଥାଏ । ଜିଲ୍ଲା ତଥା ଜିଲ୍ଲା ବାହାରୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଓ ଭକ୍ତମାନେ ଏହି ମେଳାରେ ଅଂଶଗ୍ରହଣ କରି ଖୁସି ମନେଇଥାନ୍ତି । ମକର ମେଳା ସମୟରେ ବାବା ଧନେଶ୍ୱରଙ୍କ ଦର୍ଶନ ନିମନ୍ତେ ଏଠାକୁ ହଜାର ହଜାର ସଂଖ୍ୟାରେ ଭକ୍ତ ଆସିଥାନ୍ତି । ଏହି ମନ୍ଦିରକୁ ନେଇ ଏକ ରୋଚକ ଲୋକକଥା ରହିଛି । ଜଣେ ଗାଈ ଜଗୁଆଳି ପଥର ଉପରେ ବସିଥିବାବେଳେ ପକ୍ଷୀ ବସାଟିଏ ଦେଖିଲା । ସେଠାରେ ପଡିଥିବା ପଥର ଖଣ୍ଡକୁ ପକ୍ଷୀ ଅଣ୍ଡା ଭାବି ତାକୁ ଧରିବା ପରେ ଜାଣିବାକୁ ପାଇଲା ଯେ ତାହା ଏକ ଶିବ ଲିଙ୍ଗ । ଠାକୁର ବାହାରିବା କଥା ପ୍ରଚାର ହୋଇଯିବା ପରେପରେ ସେଠାରେ ପୂଜାର୍ଚ୍ଚନା ଆରମ୍ଭ ହୋଇଥିଲା । ପରେ ଭକ୍ତମାନେ ଦର୍ଶନ କରିବାକୁ ଯାଉଥିବା ସମୟରେ ଇଟା ଖଣ୍ଡ ନେଇ ଯାଉଥିଲେ । ଆଉ ଭକ୍ତମାନଙ୍କର ସେଇ



ଇଟାର ସମାହାରରେ ଶହେ ବର୍ଷ ପରେ ଏଠାରେ ମନ୍ଦିର ନିର୍ମାଣ ହୋଇଛି ବୋଲି ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ । ରାଜା ଗୋବିନ୍ଦ ଭଞ୍ଜଙ୍କ ସମୟରେ ଏହି ମନ୍ଦିର ପ୍ରତିଷ୍ଠା ହୋଇଥିବାର ବିଶ୍ୱାସ କରାଯାଏ । ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକାଠାରେ ପୂଜା ପାଉଥିବା ବ୍ରହ୍ମେଶ୍ୱର ମହାଦେବଙ୍କ ସାନଭାଇ ଭାବେ ଧନେଶ୍ୱର ମହାଦେବ ଏ ଅଞ୍ଚଳରେ ବେଶ୍ ପରିଚିତ । ତେବେ ନିଛାଟିଆ ଅଞ୍ଚଳରେ ଏହି ପର୍ଯ୍ୟଟନ ସ୍ଥଳଟି ରହିଥିବାରୁ ବର୍ଷର ଅନ୍ୟ ସମୟରେ ଏଠାକୁ କମ୍ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ଠାକୁରଙ୍କ ମହିମାରୁ ଏହି ପାହାଡ ଉପରେ ଥିବା ଗାତରେ ସବୁବେଳେ ପାଣି ଜମି ରହିଥାଏ ଏବଂ ଏହା କେବେ ଶୁଖି ନଥାଏ । ଏହି ପାହାଡଟି ଏତେ ତୀଖ ହୋଇଥିଲେ ମଧ୍ୟ ଶୀର୍ଷ ଦେଶରେ ଥିବା ମନ୍ଦିର ନିକଟରେ ପହଞ୍ଚିବାବେଳେ ଆଜି ପର୍ଯ୍ୟନ୍ତ କୌଣସି ଦୁର୍ଘଟଣା ଘଟି ନଥିବା କଥା ସ୍ଥାନୀୟ ଲୋକମାନେ ପ୍ରକାଶ କରନ୍ତି । ରାଜ୍ୟ ପର୍ଯ୍ୟଟନ ବିଭାଗ ଏହି ସ୍ଥାନଟିର ପ୍ରଚାର ପ୍ରସାର କରାଇପାରିଲେ ଏଠାକୁ ରାଜ୍ୟ ବାହାରର ପର୍ଯ୍ୟଟକଙ୍କୁ ଆକୃଷ୍ଟ କରାଯାଇପାରନ୍ତା ବୋଲି ସ୍ଥାନୀୟ ଲୋକେ ପ୍ରକାଶ କରିଛନ୍ତି ।

## ପ୍ରାଚୀନ ନୟାଗଡ ମୁକ୍ତେଶ୍ୱର ଶିବମନ୍ଦିର

ଝୁଂପୁରା ବ୍ଲକ ଅନ୍ତର୍ଗତ ନୟାଗଡ଼ ପଞ୍ଚାୟତର ନୟାଗଡ ରେଲ୍‌ଓ୍ୱେସାଇଡ଼ିଂ ନିକଟରେ ଜିଲ୍ଲାର ଅନ୍ୟତମ ପ୍ରାଚୀନ ଶୈବପୀଠ ରହିଛି । ନୟାଗଡରେ ଥିବା ଜିଲ୍ଲାର ଏହି ପୁରାତନ ମୁକ୍ତେଶ୍ୱର





ଝୁଂପୁରା ଶିବ ମନ୍ଦିରରେ ପଡ଼ିଥିବା ପ୍ରାଚୀନ ମୂର୍ତ୍ତି



**ପ୍ରାଚୀନ ନୟାଗଡ ମୁକ୍ତେଶ୍ୱର ଶିବମନ୍ଦିର**

ଶିବ ମନ୍ଦିରଟି ଏବେ ପ୍ରାୟ ଧ୍ୱଂସମୁଖୀ । କେଉଁ ମୁହୂର୍ତ୍ତରେ ଏହି ମନ୍ଦିରଟି ଭୁଶୁଡି ପଡିବ ତାହା କହିବା ମୁସ୍କିଲ୍ । କେବଳ ମହାଦେବଙ୍କ ଭରସାରେ ମନ୍ଦିରଟି ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି ବୋଲି ଏଠାରେ ପୂଜା କରୁଥିବା ପୂଜକ ପ୍ରକାଶ କରନ୍ତି । ମନ୍ଦିରଟି ଧ୍ୱଂସ ପାଇବା ପଛରେ ସ୍ଥାନୀୟ ଅଞ୍ଚଳବାସୀଙ୍କ ମଧ୍ୟ ନାନା କଥା ପ୍ରକାଶ ପାଏ । ମନ୍ଦିରଟି ବହୁ ପୁରୁଣା ହୋଇଯିବା ସହ ଉପଯୁକ୍ତ

ରକ୍ଷଣାବେକ୍ଷଣ ଅଭାବରୁ ଏହା ଧ୍ୱଂସ ପାଇଯାଇଥାଇପାରେ ବୋଲି କିଛି ଗବେଷକ କହୁଥିବାବେଳେ ଆଉ କିଛିଙ୍କ ମତରେ ଏହା କଳାପାହାଡ ଦ୍ୱାରା ଧ୍ୱଂସ ପାଇଯାଇଛି ବୋଲି ଜଣାଯାଏ । ଯେତେବେଳେ ହିନ୍ଦୁ ମନ୍ଦିରଗୁଡ଼ିକୁ ଯବନମାନେ ଧ୍ୱଂସ କରୁଥିଲେ ସେତେବେଳେ ସେମାନଙ୍କ ଦ୍ୱାରା ହୁଏତ ଏହି ମନ୍ଦିରଟି ଧ୍ୱଂସ ପାଇଯାଇଥାଇପାରେ ବୋଲି ଆଉ କିଛି ଗବେଷକ ମତ ରଖନ୍ତି । ତେବେ ଯାହା ବି ହେଉ, ଏହି ମନ୍ଦିରଟି ଏବେ ଧ୍ୱଂସ ପାଇଯିବାକୁ ବସିଛି । ମନ୍ଦିରଟି ଦ୍ୱାଦଶ ଶତାବ୍ଦୀ ବେଳର ବୋଲି ସ୍ଥାନୀୟ ଅଞ୍ଚଳର ପୁରୁଖା ଲୋକମାନେ ମତବ୍ୟକ୍ତ କରନ୍ତି । ଏହି ଭଗ୍ନ ମନ୍ଦିର ମଧ୍ୟରେ ମହାଦେବ ମୁକ୍ତେଶ୍ୱର ପୂଜା ପାଉଥିବାବେଳେ ମନ୍ଦିର ପ୍ରାଙ୍ଗଣରେ ଅନେକ ଶିବ ଲିଙ୍ଗ ରହିଛି । ଏହି ପୀଠଟି ପଞ୍ଚ ସଖା ମହାଦେବଙ୍କ ପୀଠ ଏବଂ ଏଠାରେ ବାବା ମୁକ୍ତେଶ୍ୱରଙ୍କ ସମେତ ମନ୍ଦିର ବାହାରେ ଆଉ ଚାରୋଟି ଶିବ ଲିଙ୍ଗ ପୂଜା ପାଉଛନ୍ତି । ମହାଦେବଙ୍କ ସମେତ ମନ୍ଦିର ପରିସରରେ ଅନେକ ପାର୍ଶ୍ୱଦେବଦେବୀ ପୂଜା ପାଉଛନ୍ତି । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ସାଙ୍ଗକୁ ବିଶାଳ ଯଜ୍ଞ ଅନୁଷ୍ଠିତ ହୋଇଥାଏ । ସାଧାରଣତଃ ମନ୍ଦିରଗୁଡିକ ପୂର୍ବମୁଖୀ ହୋଇଥିବାବେଳେ ନୟାଗଡର ମୁକ୍ତେଶ୍ୱର ମନ୍ଦିର ଦକ୍ଷିଣମୁଖୀ । ଏଠାରେ ପାର୍ଶ୍ୱଦେବତା ଭାବେ କାର୍ତ୍ତୀକେୟଙ୍କର ଏକ ପ୍ରାଚୀନ ମୂର୍ତ୍ତି ରହିଛି ଯାହାଙ୍କର ବାହନ ପୁରୁଷ କୁକୁଡା । ସାଧାରଣତଃ କାର୍ତ୍ତୀକେୟଙ୍କର ମୟୂର ବାହନ ହୋଇଥିବାବେଳେ ଏଠାରେ ଥିବା କାର୍ତ୍ତୀକେୟଙ୍କ ବାହନ ଗଞ୍ଜା (ପୁରୁଷ କୁକୁଡା) । ଏହା ସହିତ ମୁକ୍ତେଶ୍ୱରଙ୍କ ପୀଠରେ ଏକ ସବୁଜ ରଙ୍ଗର ବିଶେଷ ପ୍ରକାରର ପ୍ରସ୍ତର ନିର୍ମିତ ବହୁ ପୁରାତନ



ନୟାଗଡ଼ ଶିବ ମନ୍ଦିରରେ ପୂଜିତ ହେଉଥିବା ପ୍ରାଚୀନ ମୂର୍ତ୍ତି



ଗଡଚଣ୍ଡୀଙ୍କ ମୂର୍ତ୍ତି ମଧ୍ୟ ପୂଜା ପାଉଛନ୍ତି । ଗଡ଼ଚଣ୍ଡୀଙ୍କର ବାହନ ବରାହ ହୋଇଥିବାବେଳେ ସେ ଚତୁର୍ଭୁଜା । ପ୍ରତିବର୍ଷ ରଜ ବେଳକୁ ଗଡଚଣ୍ଡୀଙ୍କଠାରେ ବଳିପୂଜା ହୋଇଥାଏ ଏବଂ ରଜ ସଂକ୍ରାନ୍ତି ଧୂମଧାମ୍‌ରେ ପାଳିତ ହୋଇଥାଏ । ଏଠାରେ ଥିବା ଚତୁର୍ଭୁଜା ଗଡଚଣ୍ଡୀଙ୍କର ମୂର୍ତ୍ତିଟି ବହୁତ ପ୍ରାଚୀନ ବୋଲି ସ୍ଥାନୀୟ ପୁରୁଖା ଲୋକେ ପ୍ରକାଶ କରନ୍ତି । ସବୁଜ ରଙ୍ଗର ଏକ ବିରଳ ପ୍ରସ୍ତରରେ ନିର୍ମିତ ଏହି ଗଡ଼ଚଣ୍ଡୀଙ୍କର ମୂର୍ତ୍ତି କେତେ ପ୍ରାଚୀନ ଏବଂ ଏହା କେଉଁଠାରୁ ଅଣାଯାଇଛି ସେ ସଂପର୍କରେ ଇତିହାସ ନିରବ । ଏହି ସ୍ୱତନ୍ତ୍ର ସବୁଜ ରଙ୍ଗର ପଥର ଏ ଅଞ୍ଚଳରେ ଦେଖିବାକୁ ମିଳୁ ନଥିବାବେଳେ ଏହି ମୂର୍ତ୍ତି କେଉଁଠୁ ଆସିଛି ତାହା ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଗଡ଼ଚଣ୍ଡୀଙ୍କ ମୁହଁ ସାମାନ୍ୟ ବଂକା ହୋଇଥିବାରୁ ମା' ବଗଳାମୁଖୀ ବୋଲି ଭକ୍ତମାନେ କୁହନ୍ତି । ଏହା ବ୍ୟତୀତ ଏଠାରେ ଅଷ୍ଟଭୂଜା ଦେବୀ ଦୂର୍ଗାଙ୍କର ଏକ ପ୍ରାଚୀନ ପ୍ରସ୍ତର ମୂର୍ତ୍ତି ମଧ୍ୟ ରହିଛି । ପ୍ରତିବର୍ଷ ପଣା ସଂକ୍ରାନ୍ତିରେ ଏହି ଅଷ୍ଟଭୂଜା ଦୂର୍ଗାଙ୍କ ନିକଟରେ ପୂଜା ହୋଇଥାଏ । ନୟାଗଡ କେନ୍ଦୁଝର ରାଜାଙ୍କର ଏକ ଗଡ ଥିଲା । ରାଜା ପାରିଧି ସମୟରେ ନୟାଗଡଠାରେ ଅବସ୍ଥାନ କରନ୍ତି । ଚତୁର୍ଭୁଜା ମା' ଗଡ଼ଚଣ୍ଡୀ ରାଜାଙ୍କ ଗଡ଼ରେ ରହି ପୂଜା ପାଉଥିଲେ । ମାତ୍ର ସେଠାରେ ତାଙ୍କ ପୂଜାରେ ନାନା ପ୍ରକାର ବିଭ୍ରାଟ ଉପୁଜିବାରୁ ରାଜା ଶେଷରେ ମା'ଙ୍କୁ ଆଣି ଏହି ଶିବ ମନ୍ଦିରରେ ସ୍ଥାପନା କରି ପୂଜା କରିବା ଆରମ୍ଭ କଲେ ବୋଲି ଏହି ମନ୍ଦିରର ବର୍ତ୍ତମାନର ପୂଜକ ଆନନ୍ଦ ଚନ୍ଦ୍ର ଷଡଙ୍ଗୀ ପ୍ରକାଶ କରନ୍ତି । ଗଡ଼ଚଣ୍ଡୀଙ୍କ ନିକଟରେ ପୂର୍ବରୁ ନରବଳି ପଡୁଥିବା କଥା ସ୍ଥାନୀୟ ଲୋକେ କୁହନ୍ତି । ମୁକ୍ତେଶ୍ୱର ମନ୍ଦିରରେ ଥିବା ସତୀ ଓ ଲିଙ୍ଗ ମଧ୍ୟରେ ଏକ ଫାଟ କାହିଁ କେଉଁ ଯୁଗରୁ ରହିଆସିଛି । ତାକୁ ଯେତେ ଚେଷ୍ଟା କଲେ ମଧ୍ୟ ତାହା ପୂରଣ ହୋଇପାରୁନି । ନୟାଗଡ ଶିବ ମନ୍ଦିର ଓ ଏଠାରେ ଥିବା ଚତୁର୍ଭୁଜା ବଗଳାମୁଖୀ ଗଡ଼ଚଣ୍ଡୀ, ଅଷ୍ଟଭୂଜା ଦେବୀ ଦୁର୍ଗାଙ୍କ ନିକଟରେ ବର୍ଷରେ ବିଭିନ୍ନ ପର୍ବପର୍ବାଣୀ ଅନୁଷ୍ଠିତ ହୋଇଥାଏ । ମକର ଉତ୍ସବ, ସପ୍ତପୁରୀ ଅମାବାସ୍ୟା, ରଜ ସଂକ୍ରାନ୍ତି ଆଦି ଏଠାରେ ପାଳିତ ହେଉଥିବା ପ୍ରମୁଖ ଉତ୍ସବ । ଏହା ବ୍ୟତୀତ ବର୍ଷର ବିଭିନ୍ନ ସମୟରେ ଏଠାରେ ବିଭିନ୍ନ ପର୍ବପର୍ବାଣୀ ପାଳିତ ହୋଇଥାଏ । ବାବା ମୁକ୍ତେଶ୍ୱରଙ୍କ ନିକଟରେ ପ୍ରତି ଦିନ ଖେଚୁଡ଼ି ଭୋଗ ଲାଗି ହୋଇଥାଏ । ଏହି ମନ୍ଦିରର ୩୩ଏକର ଜମିର ସୁରକ୍ଷା ଓ ଠାକୁରଙ୍କ ସେବା ପାଇଁ ବାବା ମୁକ୍ତେଶ୍ୱର ଲୋଡ଼ିଂ ଆଣ୍ଡ ଅନଲୋଡ଼ିଂ ସଂସ୍ଥା ପକ୍ଷରୁ ପାଚେରୀ , ଭୋଗ ଘର ଓ ଅନ୍ୟାନ୍ୟ ବ୍ୟବସ୍ଥା କରାଯାଇଛି ।

## ବୈତରଣୀ ଘାଟରେ ନବ ନିର୍ମିତ ପାଟଣାର ପରମେଶ୍ୱର ମନ୍ଦିର

କେନ୍ଦୁଝର ଜିଲ୍ଲାକୁ ଆସୁଥିବା ପର୍ଯ୍ୟଟକମାନଙ୍କ ପାଇଁ ପାଟଣାର ପରମେଶ୍ୱର ମନ୍ଦିର ଅନ୍ୟତମ ଆକର୍ଷଣ । ପୂଣ୍ୟତୋୟା ବୈତରଣୀ ନଦୀକୂଳରେ ଏକ ବିରାଟ ମନ୍ଦିର ପ୍ରତିଷ୍ଠା କରାଯାଇଛି ।

ଘରୋଇ ଉଦ୍ୟମରେ ପ୍ରତିଷ୍ଠା କରାଯାଇଥିବା ଏହି ମନ୍ଦିର ପରିସରରେ ଶ୍ରୀଶ୍ରୀ ପରମେଶ୍ୱରଙ୍କ ମୁଖ୍ୟ ବିଗ୍ରହ ସମେତ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, ତାରିଣୀ ମନ୍ଦିର, ମଙ୍ଗଳା ମନ୍ଦିର, ବିଷ୍ଣୁ ମନ୍ଦିର ଓ ନଦୀ ମଧ୍ୟକୁ ଅନସୂୟା ଘାଟ ଆଦି ପ୍ରତିଷ୍ଠା କରାଯାଇଛି । ଏହି ମନ୍ଦିରଟି ଖୁବ୍ ନିକଟରେ ନିର୍ମିତ ହୋଇଥିଲେ ମଧ୍ୟ କାରୁକାର୍ଯ୍ୟ ଦୃଷ୍ଟିରୁ ବେଶ୍ ଚମତ୍କାର । ବୈତରଣୀରେ ବୁଡ ପକେଇ ଦେବଦର୍ଶନ କରିବା ସହ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଦର୍ଶନ ଏଠାକାର ମୁଖ୍ୟ ଆକର୍ଷଣ । ଏଠାରେ ଥିବା ପାଞ୍ଚ ଟନ୍ ଓଜନର ଅଖଣ୍ଡ ମୁଗୁନି ପଥରରେ ନିର୍ମିତ ବୃଷଭ ମଧ୍ୟ ଅନ୍ୟତମ ଆକର୍ଷଣ । ପରମେଶ୍ୱରଙ୍କ ମୁଖ୍ୟ ମନ୍ଦିର ବ୍ୟତୀତ ଏଠାରେ ଅନେକ ମନ୍ଦିର ନିର୍ମିତ ହୋଇଛି । ଏହି ମନ୍ଦିରସମୂହ ଓ ବୈତରଣୀ ଘାଟ ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ । ସେହିଭଳି ପାଟଣା ବ୍ଲକ୍ ଅନ୍ତର୍ଗତ ରାଜନଗରସ୍ଥିତ ବୈତରଣୀ ନଦୀ ତୀରକୁ 'ଶୈବ୍ୟାକାବେରୀ' ବୋଲି କୁହାଯାଉଛି । ଏହି ଶୈବ୍ୟାକାବେରୀ ତୀର୍ଥରେ ପ୍ରତିବର୍ଷ ରାସପୂର୍ଣ୍ଣିମା ତିଥିରେ କାର୍ତ୍ତିକ ସ୍ନାନ ଓ ବୋଇତ ବନ୍ଦାଣ ଉତ୍ସବ ମହା ସମାରୋହରେ ପାଳିତ ହୋଇଥାଏ । ବିଶାଳ ଆକାରର ବୋଇତ ନିର୍ମାଣ କରାଯାଇ ଭରପୂର ରଂଗୀନ୍ ଆଲୋକ ମାଳାରେ ସଜେଇ ବୋଇତ ବନ୍ଦାଣ ଉତ୍ସବକୁ ଧୁମଧାମରେ ପାଳନ କରାଯାଇଥାଏ । ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ସହସ୍ରାଧିକ ଶ୍ରଦ୍ଧାଳୁ ଏହି ଶୈବ୍ୟାକାବେରୀ ତୀର୍ଥରେ ଏକତ୍ରିତ ହୋଇ ବୈତରଣୀ ନଦୀରେ ପବିତ୍ର ବୁଡ ପକେଇବା ସହ ଡଂଗା ଭସେଇଥାନ୍ତି ।

**ବୈତରଣୀ ଘାଟରେ ନବ ନିର୍ମିତ ପାଟଣାର ପରମେଶ୍ୱର ମନ୍ଦିର**



# ଆନନ୍ଦପୁରର ଐତିହାସିକ ବିଶେଷତ୍ୱ ଓ ଝାଡେଶ୍ୱର ମନ୍ଦିର

ଆନନ୍ଦପୁର ସହରର ଦକ୍ଷିଣ ପାର୍ଶ୍ୱରେ ଘସିପୁରା ଗ୍ରାମର ଶ୍ମଶାନ ମଧ୍ୟରେ ଝାଡେଶ୍ୱର ଶୈବ ପୀଠ ଅବସ୍ଥିତ । ଏହି ଶିବ ମନ୍ଦିରଟି ବୈତରଣୀର ବକ୍ଷ ଦେଶରେ ଅବସ୍ଥିତ । ଏହାକୁ ମଧ୍ୟ ଲିଂଗ କୁହାଯାଏ । ନିଘଞ୍ଚ ଝାଡ ବଣ ମଧ୍ୟରେ ପ୍ରାକୃତିକ ଶୋଭାଭରା ପରିବେଶ ମଧ୍ୟରେ ଏହି ପୀଠଟି ଅବସ୍ଥିତ । ସର୍ବୋପରି ବୈତରଣୀ କୂଳରେ ଅବସ୍ଥିତ ହୋଇଥିବାରୁ ପ୍ରତି ମୁହୂର୍ତ୍ତରେ ବୈତରଣୀର ଜଳ ମନ୍ଦିରର ପାଦଦେଶକୁ ପ୍ରକ୍ଷାଳିତ କରିଥାଏ । ଏହି ପୀଠର ଦକ୍ଷିଣ-ପଶ୍ଚିମରେ ପ୍ରସିଦ୍ଧ 'ଶୈଳଙ୍କ ହୁଡି' ଅବସ୍ଥିତ । ଏହି ପୀଠକୁ ନେଇ ଏକ କିମ୍ବଦନ୍ତୀ ରହିଛି । ପଞ୍ଚଦଶ ଶତାବ୍ଦୀରେ ଆନନ୍ଦପୁରରେ ପାଟ ବସ୍ତ୍ର ବୟନ କରୁଥିବା ଏକ ପାଟରା ପରିବାରରେ ଆନନ୍ଦ ଓ ପୁନି ନାମକ ଦୁଇ ଜଣ ବାଳକ ବାଳିକା ଦୈନିକ ବୈତରଣୀ ନଦୀ ପାର ହୋଇ ଆସି ଝାଡବଣରେ ଥିବା ଏହି ଝାଡେଶ୍ୱରଙ୍କ ସେବା ପୂଜା କରୁଥିଲେ । ଏକଦା ଆନନ୍ଦପୁରର ଗୋଟିଏ ଶଂଖରା ଜାତିର ବୁଢ଼ା ଶଂକର୍ଷଣ ଦାଶର ଦୁଅଁଳିଆ ଗାଈ ହଜିଗଲା । ବୁଢାଟି ଗାଈ ଖୋଜିଖୋଜି ଆସି ଝାଡବଣରେ ଗୋଟିଏ ବେଲ ଗଛମୂଳରେ ଅର୍ଦ୍ଧ ଉନ୍ମୋଚିତ ଏକ ଶିବ ଲିଂଗ ରହିଥିବାର ଦେଖିବାକୁ ପାଇଥିଲା । ଗାଈଟିର



ଆନନ୍ଦପୁରର ପ୍ରାଚୀନ ଝାଡେଶ୍ୱର ଶିବ ମନ୍ଦିର



ପଦ୍ମାରୁ କ୍ଷୀର ଝରି ସେଠାରେ ଥିବା ସେହି ଲିଙ୍ଗ ଉପରେ ପଡୁଥିବାର ଦେଖି ବୁଢାଟି ଆଶ୍ଚର୍ଯ୍ୟ ହୋଇଯାଇଥିଲା । ସେହିଦିନଠାରୁ ଆନନ୍ଦ ଓ ପୁନିର ପରାମର୍ଶରେ ବୃଦ୍ଧଜଣକ ଝାଡେଶ୍ୱରଙ୍କ ପୂଜା ଆରାଧନା କରିବା ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ଆନନ୍ଦ ଓ ପୁନିର ମିଳିତ ନାମରେ 'ଆନନ୍ଦପୁର' ନାମର ସୃଷ୍ଟି ହୋଇଛି ବୋଲି କୁହାଯାଉଛି । କେନ୍ଦୁଝରର ତତ୍କାଳୀନ ରାଜା ତ୍ରିଲୋଚନ ଭଞ୍ଜ ଝାଡେଶ୍ୱରଙ୍କ ପୂଜା ଆରାଧନା ନିମନ୍ତେ ଏଠାରେ ଗୋଟିଏ ମଣ୍ଡପ ନିର୍ମାଣ କରି ପୂଜକ ନିଯୁକ୍ତି କରିଥିଲେ । ତେବେ ବୈତରଣୀ ନଦୀ ବନ୍ୟାରେ ଏହି ମଣ୍ଡପଟି ଭାଂଗିଯିବା ପରେ ପୁନର୍ବାର ୧୮୫୦ ମସିହାରେ ରାଜା ଗଦାଧର ଭଞ୍ଜ ଆଉ ଗୋଟିଏ ମଣ୍ଡପ ନିର୍ମାଣ କରିଥିଲେ । ୧୮୮୦ ମସିହାରେ ରାଜା ଧର୍ନୁଜୟ ନାରାୟଣ ଭଞ୍ଜ ଏଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରାଇଥିଲେ । ମାତ୍ର ୧୯୨୭ ବନ୍ୟାରେ ଏହି ମନ୍ଦିରଟି ଭାଂଗିଯିବାରୁ ପୁନର୍ବାର ଛୋଟରାୟ ଲକ୍ଷ୍ମୀ ନାରାୟଣ ଭଞ୍ଜ ଏକ ମନ୍ଦିର ପ୍ରତିଷ୍ଠା କରିଥିଲେ ।

ଆନନ୍ଦପୁର ଅଞ୍ଚଳଟି ପୁରାତନ ଯୁଗରୁ ଧର୍ମ, ଦର୍ଶନ ଓ ବାଣିଜ୍ୟ କାରବାରର ପେଣ୍ଠ ସ୍ଥଳୀ ଥିଲା । ପ୍ରାଚୀନ କାଳରେ ଉତ୍ତର ଓ ଦକ୍ଷିଣ ଭାରତ ମଧ୍ୟରେ ପୂର୍ବ ଭାରତରେ ଅବସ୍ଥିତ ଆନନ୍ଦପୁର ଦେଇ ସ୍ଥଳ ପଥରେ ବାଣିଜ୍ୟ କାରବାର ହେଉଥିଲା । କେନ୍ଦୁଝରଗଡ଼ ରାଜ୍ୟର



ପଣ୍ୟଦ୍ରବ୍ୟଗୁଡିକ ଆନନ୍ଦପୁରଠାରୁ ନଦୀପଥ ଦେଇ ଧାମରା ମୁହାଣରେ ପହଞ୍ଚୁଥିଲା ଏବଂ ସେଠାରୁ ବିଦେଶକୁ ରପ୍ତାନୀ ହେଉଥିଲା । ଆନନ୍ଦପୁରଠାରୁ ଧାମରା ପର୍ଯ୍ୟନ୍ତ ବୈତରଣୀ ନଦୀଟି ସମତଳ ଭୂମି ଦେଇ ଗତି କରିଥିବାରୁ ନଦୀ ଶଯ୍ୟା ଅତି ପ୍ରଶସ୍ତ ଓ ଜଳପୂର୍ଣ୍ଣ ଥିଲା । ଏଣୁ ଆନନ୍ଦପୁରରୁ ଧାମରାକୁ କେନ୍ଦୁଝରଗଡ଼ ରାଜ୍ୟର ସମସ୍ତ ପ୍ରକାର ପଣ୍ୟଦ୍ରବ ରପ୍ତାନୀ ଓ ଆମଦାନି ହୋଇପାରୁଥିଲା । ଆନନ୍ଦପୁର ତତ୍କାଳୀନ କେନ୍ଦୁଝରଗଡ଼ ରାଜ୍ୟର ବାଣିଜ୍ୟିକ ପେଣ୍ଠସ୍ଥଳୀ ପାଲଟିଥିଲା । ଏପରିକି ପ୍ରସ୍ତର ଓ ଧାତବ ଯୁଗରୁ ଶାଳନ୍ଦୀ, ବୈତରଣୀ ଅବବାହିକାରେ ଲୌହ, ତମ୍ବା, କ୍ରୋମାଇଟ୍ ପ୍ରଭୃତି ଧାତୁର ବ୍ୟବହାର ଏହି ଅଞ୍ଚଳରେ ପ୍ରଚଳିତ ଥିଲା ଜଣାପଡିଛି । ଆନନ୍ଦପୁରର ପୂର୍ବରେ ଶାଳନ୍ଦୀ ନଦୀ ଅବବାହିକାରେ ଅବସ୍ଥିତ ଭାରତର ଅନ୍ୟତମ ଜୈନ କ୍ଷେତ୍ର 'ଚକ୍ରତୀର୍ଥ' ଓ ପ୍ରସିଦ୍ଧ ଶିଳାଭିଲେଖ 'ବୈଦାଖ୍ୟା' (ବୌଦ୍ଧ ଆଖ୍ୟା) ଅବସ୍ଥିତ । ବର୍ତ୍ତମାନ ଏଠାରେ ଶାଳନ୍ଦୀ ନଦୀ ବନ୍ଧ ଯୋଜନା, ବିଦ୍ୟାଧରପୁର ଜଳଭଣ୍ଡାର ଓ ବଉଲା କ୍ରୋମାଇଟ୍ ଖଣି ଅବସ୍ଥିତ । କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜ ଆନନ୍ଦପୁର ରାଜବାଟୀରେ ଅବସ୍ଥାନ କରି ପ୍ରସିଦ୍ଧ 'ଅମ୍ବିକା ବିଳାସ' କାବ୍ୟ ରଚନା କରିଥିଲେ ବୋଲି କେନ୍ଦୁଝରର ବୁଦ୍ଧିଜୀବି ମହଲରେ ଆଲୋଚନା ହୋଇଥାଏ । ଉନ୍ନବିଂଶ ଶତାବ୍ଦୀର ଶେଷ ଭାଗରେ ବ୍ୟାସ କବି ଫକୀର ମୋହନ ଆନନ୍ଦପୁର ଷ୍ଟେଟ୍‌ର ମ୍ୟାନେଜର ଭାବେ ନିଯୁକ୍ତ ପାଇଥିଲେ ଏବଂ ଏଠାରେ ଥାଇ ସେ 'ଉତ୍କଳ ଭ୍ରମଣଂ' କାବ୍ୟ ରଚନା କରିଥିଲେ । ଆନନ୍ଦପୁର ସହରର ମଧ୍ୟ ଭାଗରେ ଅବସ୍ଥିତ 'ଆନନ୍ଦେଶ୍ବର ମନ୍ଦିର' ଆନନ୍ଦପୁର ନାମର କୀର୍ତ୍ତିସ୍ତମ୍ଭ ପରି ମନେହୁଏ ।

# ଟୁକୁଣାର ଲକ୍ଷ୍ମୀ ନାରାୟଣ ମନ୍ଦିର, କୁଣ୍ଡେଶ୍ୱର ଶୈବ ପୀଠ



ଟୁକୁଣାର କୁଣ୍ଡେଶ୍ୱର ଶିବ ମନ୍ଦିର

ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ ଟୁକୁଣାଠାରେ ରହିଛି ଐତିହାସିକ କୁଣ୍ଡେଶ୍ୱର ଶୈବପୀଠ । ପ୍ରତିବର୍ଷ ମହାଶିବରାତ୍ରୀ, ମକର ମେଳା ଓ ଶୀତଳ ଷଷ୍ଠୀ ଯାତ୍ରା ଅବସରରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏଠାରେ ମକର ମେଳା ଅବସରରେ ସପ୍ତାହେ ବ୍ୟାପୀ ଅପେରା, ମୀନାବଜାର ଓ ହାଟବଜାର ବସିଥାଏ । ବିଭିନ୍ନ ଅଞ୍ଚଳରୁ ସହସ୍ରାଧିକ ଭକ୍ତଙ୍କ ସମାଗମ ହୋଇଥାଏ । କୁଣ୍ଡେଶ୍ୱର ମନ୍ଦିର ନିକଟରେ ଏକ ବିଶାଳକାୟ ହନୁମାନ ମୂର୍ତ୍ତି ରହିଛି । କୁଣ୍ଡେଶ୍ୱର ମନ୍ଦିର ବ୍ୟତୀତ ଟୁକୁଣାରେ ରହିଛି ଏକ ଆକର୍ଷଣୀୟ ଲକ୍ଷ୍ମୀ ନାରାୟଣ ମନ୍ଦିର । ଏହା ଏକ ବିଷ୍ଣୁପୀଠ ଭାବେ ସମଗ୍ର ଜିଲ୍ଲାରେ ପରିଚିତ ହୋଇପାରିଛି । ଏହି ମନ୍ଦିର ନିକଟରେ ମଧ୍ୟ ହନୁମାନଙ୍କର ଏକ ବିଶାଳ ମୂର୍ତ୍ତି ରହିଛି ।


ଟୁକୁଣାର ଲକ୍ଷ୍ମୀ ନାରାୟଣ ମନ୍ଦିର

ଲକ୍ଷ୍ମୀ ନାରାୟଣ ମନ୍ଦିରର ଅନତି ଦୂରରେ ମା' ମଙ୍ଗଳାଙ୍କ ଏକ ମନ୍ଦିର ରହିଛି ।

## ଗୋପାଳଜୀଉ ମନ୍ଦିର

ଆନନ୍ଦପୁରର ଏହି ଗୋପାଳଜୀଉ ମନ୍ଦିରଟି ବହୁତ ପ୍ରାଚୀନ । ଐତିହାସିକ ଦୃଷ୍ଟିକୋଣରୁ ଏହି ମନ୍ଦିରଟି ବେଶ୍ ଗୁରୁତ୍ୱ ବହନ କରିଥାଏ । ବୈତରଣୀ ନଦୀର ବାମ ପାର୍ଶ୍ୱରେ ଅବସ୍ଥିତ ଆନନ୍ଦପୁରର ବୈଷ୍ଣବକ୍ଷେତ୍ର କୋଡପଡାଠାରେ ରହିଛି ଏହି ଗୋପାଳଜୀଉଙ୍କ ପ୍ରାଚୀନ ମନ୍ଦିର । ସର୍ଭେ ଅଫ୍ ଇଣ୍ଡିଆ ଅନୁସାରେ ଏହି ମନ୍ଦିରଟି ୧୨୧୧ ସାଲରେ ନିର୍ମାଣ କରାଯାଇଥିଲା । ଠାକୁରଙ୍କର ପ୍ରଚୁର ସଂପତ୍ତି ରହିଛି, ମାତ୍ର ଅନେକ ସମୟରେ ଅବହେଳା କାରଣରୁ ଠାକୁରଙ୍କ ନୀତିରେ ବିଭ୍ରାଟ ଘଟୁଛି । ଏହି ମନ୍ଦିରଟିର ଶାନ୍ତଶୀତଳ ପରିବେଶ ପର୍ଯ୍ୟଟକଙ୍କୁ ବାନ୍ଧି ରଖିବାରେ ସହାୟକ ହୋଇଥାଏ । ଦେବୋତ୍ତର ବିଭାଗ ହାତରେ ମନ୍ଦିର ପରିଚାଳନା ଦାୟିତ୍ୱ ଥିଲେ ମଧ୍ୟ ଅଧିକାଂଶ ସମୟରେ ଏଥିରେ ଅନିୟମିତତା ଘଟୁଥିବାରୁ ସ୍ଥାନୀୟ ଅଞ୍ଚଳରେ ଅସନ୍ତୋଷ ପ୍ରକାଶ ପାଇଛି ।

## ବୀରଗୋବିନ୍ଦପୁରର ରଘୁନାଥଜୀଉ ମନ୍ଦିର ଓ ବ୍ରହ୍ମେଶ୍ୱର ଶୈବପୀଠ

କେନ୍ଦୁଝର ଜିଲ୍ଲାର ଘସିପୁରା ବ୍ଲକ୍‌ର ଗୋହିରା ପଞ୍ଚାୟତର ବୀରଗୋବିନ୍ଦପୁର ଗ୍ରାମରେ କିମ୍ବଦନ୍ତୀ ବହନ କରୁଥିବା ପ୍ରାଚୀନ ଶ୍ରୀରାମ କ୍ଷେତ୍ର ରଘୁନାଥ ଜୀଉ ମନ୍ଦିର ଅବସ୍ଥିତ । ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ପୁରାଣ ପ୍ରସିଦ୍ଧ ଶ୍ରୀରଘୁନାଥଜୀଉଙ୍କ ଏହି ମନ୍ଦିରଟି ରାଜାରାଜୁଡା ଅମଳରୁ ପ୍ରତିଷ୍ଠିତ ହୋଇଛି । ପାଣିକୋଇଲି-ରାଜାମୁଣ୍ଡା ୨୧୫ ନମ୍ବର ଜାତୀୟ ରାଜପଥରେ ଘସିପୁରାଠାରୁ ମାତ୍ର ୭ କିଲୋମିଟର ଦୂରରେ ଏହି ଐତିହାସିକ ବୀରଗୋବିନ୍ଦପୁର ଗାଁଟି ଅବସ୍ଥିତ । ଗ୍ରାମର ମୁଖ୍ୟ ରାସ୍ତାରୁ ୫୦ ମିଟର ଦୂରରେ ମନ୍ଦିରଟି ଅବସ୍ଥିତ । ପ୍ରଭୁ ଶ୍ରୀରାମ, ମାତା ସୀତା ଓ



ବୀରଗୋବିନ୍ଦପୁରର ରଘୁନାଥଜୀଉ ମନ୍ଦିର

ଭ୍ରାତା ଲକ୍ଷ୍ମଣଙ୍କ ମୂର୍ତ୍ତି ଏହି ମନ୍ଦିରରେ ପୂଜା ପାଇ ଆସୁଛନ୍ତି । କିମ୍ବଦନ୍ତୀ ଅନୁସାରେ ପ୍ରାୟ ୧୪୫୨ ମସିହାରେ କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜ କାଞ୍ଚି ଯୁଦ୍ଧରେ ବିଜୟଲାଭ କରିବା ପରେ ସୁଦୂର କାଂଚି ରାଜ୍ୟରୁ ମା' ତାରିଣୀଙ୍କୁ କେନ୍ଦୁଝର ଆଣିବା ବେଳେ ସାଂଗରେ ଶ୍ରୀ ମଦନମୋହନ ଓ ଶ୍ରୀ ରଘୁନାଥ ଜୀଉଙ୍କୁ ମଧ୍ୟ ଆଣିଥିଲେ । ପୁରୀରୁ କେନ୍ଦୁଝର ଆସିବା ସମୟରେ ରଘୁନାଥଜୀଉ ଯେଉଁ ହାତୀ ଉପରେ ବସିଥିଲେ ସେ ହାତୀଟି ବୀରଗୋବିନ୍ଦପୁରଠାରୁ ଆଉ ଆଗକୁ ନ ଯାଇ ଆଣ୍ଠୁ ମାଡି ବସି ରହିଥିଲା । ଗୋବିନ୍ଦ ଭଞ୍ଜ ରଘୁନାଥଜୀଉଙ୍କୁ ସ୍ମରଣ କରିବାରୁ ପ୍ରଭୁ ତାଙ୍କୁ ସେଠାରେ ଅବସ୍ଥାପିତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ପରେ ଏଠାରେ ରାଜାଙ୍କ ଦ୍ୱାରା ରଘୁନାଥଜୀଉଙ୍କ ଏକ ମନ୍ଦିର ନିର୍ମାଣ କରାଯାଇଥିଲା । ମନ୍ଦିର ନିର୍ମାଣ ସଂପର୍କରେ ଏଠାରେ ଥିବା ଏକ ଫଳକରେ ପାର୍ସି ଭାଷାରେ ଉଲ୍ଲେଖ ରହିଛି । ମା' ତାରିଣୀଙ୍କ ସହିତ ରଘୁନାଥ ଜୀଉ ମଧ୍ୟ କାଞ୍ଚିରୁ ଆସିଥିଲେ । ତାରିଣୀ ଆଜି ବିଶ୍ୱ ପ୍ରସିଦ୍ଧ ଦେବୀ ହୋଇ ପାରିଥିବାବେଳେ ରଘୁନାଥଜୀଉ ଲୋକଲୋଚନରେ ଅଜ୍ଞାତ ହୋଇ ରହିଛନ୍ତି । ନୟାଗଡର ଓଡ଼ଗାଁ ପରେ ରାଜ୍ୟରେ ଦ୍ୱିତୀୟ ରାମ ମନ୍ଦିରର ଅବସ୍ଥା ଏବେ ଶୋଚନୀୟ ହୋଇ ପଡିଛି । ରାଜା ଗୋବିନ୍ଦ ଭଞ୍ଜଙ୍କ ନାମାନୁସାରେ ଏହି ସ୍ଥାନର ନାମ

ମଧ୍ୟ ବୀରଗୋବିନ୍ଦପୁର ରଖାଯାଇଥିଲା । ଶ୍ରୀରଘୁନାଥଙ୍କୁ ପୂଜା କରିବା ପାଇଁ କେନ୍ଦୁଝର ରାଜା ଏଠାରେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ଶ୍ରୀରଘୁନାଥ ଜୀଉଙ୍କ ମୁଖ୍ୟ ମନ୍ଦିରରେ ପ୍ରଭୁ ଶ୍ରୀରାମ, ମାତା ସୀତା ଓ ଲକ୍ଷ୍ମଣ ପୂଜା ପାଉଥିବାବେଳେ ଏହାର ଦକ୍ଷିଣ ପାର୍ଶ୍ୱରେ ରାମେଶ୍ୱର ମହାଦେବଙ୍କର ଏକ ମନ୍ଦିର ରହିଛି । ଏହି ରାମେଶ୍ୱର ଶିବ ମନ୍ଦିରଟି ପୁଣ୍ୟତୋୟା ବୈତରଣୀ ନଦୀର ଉପତ୍ୟକାସ୍ଥଳ ଗୋନାସିକା ବ୍ରହ୍ମେଶ୍ୱର ମନ୍ଦିରର ସମସାମୟିକ ବୋଲି କୁହାଯାଏ । ରଘୁନାଥଜୀଉଙ୍କ ମନ୍ଦିରର ଡାହାଣ ପାର୍ଶ୍ୱରେ ଜଗନ୍ନାଥଙ୍କ ମନ୍ଦିର ରହିଛି । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ ଏକକ ଭାବେ ପୂଜା ପାଆନ୍ତି । ଭାଇ ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ଏଠାରେ ନାହିଁ । ୧୯୩୪ ମସିହା ପ୍ରଳୟଙ୍କର ବନ୍ୟାରେ ସୁଦୂର ରାଜନଗର ଅଞ୍ଚଳରୁ ଶ୍ରୀଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଭାସିଆସି ଶ୍ରୀରଘୁନାଥ ଜୀଉଙ୍କ ମନ୍ଦିର ନିକଟସ୍ଥ ବୈତରଣୀ କୂଳରେ ଲାଗିଥିଲା । ତତ୍କାଳୀନ ପୂଜକଙ୍କୁ ସ୍ୱପ୍ନାଦେଶ ହେବା ପରେ ନଦୀରୁ ଜଗନ୍ନାଥଙ୍କ ମୂର୍ତ୍ତି ଅଣାଯାଇ ଏଠାରେ ସ୍ଥାପନା କରାଯାଇଥିଲା । ସ୍ଥାନୀୟ ଲୋକେ ଏଠାରେ ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିବାକୁ ଉଦ୍ୟମ କରିଥିଲେ ମଧ୍ୟ ବିଫଳ ହୋଇଛନ୍ତି ବୋଲି ଶୁଣାଯାଏ । ସବୁଠୁ ଆଶ୍ଚର୍ଯ୍ୟର କଥା, ଏଠାରେ ଜଗନ୍ନାଥଙ୍କ ରଥଯାତ୍ରା କିମ୍ବା ପ୍ରଭୁଙ୍କର କୌଣସି ବେଶ ଅନୁଷ୍ଠିତ ହୋଇ ନଥାଏ । ବୀରଗୋବିନ୍ଦପୁରର



ରଘୁନାଥ ମନ୍ଦିର ପାର୍ଶ୍ୱସ୍ଥ ଶ୍ରୀଜଗନ୍ନାଥ ମନ୍ଦିର ଓ ଏକକ ଜଗନ୍ନାଥ ମୂର୍ତ୍ତି







ରଘୁନାଥଜୀଉଙ୍କ ମନ୍ଦିରରେ ଶ୍ରୀରାମ ନବମୀ ବେଶ ଧୁମଧାମରେ ପାଳନ କରାଯାଇଥାଏ । ରାମଚନ୍ଦ୍ରଙ୍କ ଜନ୍ମଦିବସଠାରୁ ଅଭିଷେକ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମ ପାରଂପରିକ ଭାବେ ଏଠାରେ ପାଳନ ହୋଇଥାଏ । ତେବେ ଏଭଳି ଏକ ପ୍ରାଚୀନ ମନ୍ଦିର ପର୍ଯ୍ୟଟନ ବିଭାଗର ଦୃଷ୍ଟି ଆଢୁଆଳରେ ରହିଯାଇଛି । ମନ୍ଦିରର ଚଟାଣ, ଚାନ୍ଦିନୀ, ରୋଷେଇ ଘର, ବିବାହ ମଣ୍ଡପ ଏବଂ ହନୁମାନ ମନ୍ଦିର ମୁଖଶାଳା ଏବେ ଭାଂଗିରୁଜି ଗଲାଣି । ଏହାର ମରାମତି ଏବେ ଜରୁରୀ ହୋଇପଡିଛି ।

ଏହାବ୍ୟତୀତ ବୀରଗୋବିନ୍ଦପୁରରେ ରହିଛି ବହୁ ପୁରାତନ ବ୍ରହ୍ମେଶ୍ୱର ମହାଦେବଙ୍କ ପୀଠ । ଶ୍ୟାମା ଦାଶ ନାମରେ ଜଣେ ସାଧୁ ଏଠାରେ ମହାଦେବଙ୍କୁ ପ୍ରତିଷ୍ଠା କରିବା ସହିତ ମନ୍ଦିର ନିର୍ମାଣ କରିଥିବା କଥା ଲୋକମୁଖରୁ ଶୁଣିବାକୁ ମିଳେ । ଘସିପୁରା ବ୍ଲକର ମନ୍ଦିର ଗ୍ରାମ ଭାବେ ପରିଚିତ ବୀରଗୋବିନ୍ଦପୁରଠାରେ ରହିଛି ବ୍ରହ୍ମେଶ୍ୱର ମହାଦେବଙ୍କ ପୀଠ । ଘସିପୁରା ବସ୍ ଷ୍ଟାଣ୍ଡରୁ ୨୧୫ ନମ୍ବର ଜାତୀୟ ରାଜପଥରେ ୮ କିଲୋମିଟର ଗଲେ ପଡିବ ବୀରଗୋବିନ୍ଦପୁର ଗ୍ରାମ । ମୁହାଁଣନାଳ ପୋଲଠାରୁ ବାମ ପାର୍ଶ୍ୱରେ ଗୋଟିଏ କିଲୋମିଟର ଦୂରରେ ଏକ ମୁଣ୍ଡିଆ ପାହାଡ ଉପରେ ରହିଛି ଏହି ବ୍ରହ୍ମେଶ୍ୱର ମହାଦେବଙ୍କ ମନ୍ଦିର । କିମ୍ବଦନ୍ତୀ କହେ, ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ ଶ୍ୟାମ ଦାସ ନାମକ ଜଣେ ସାଧୁ ଏଠାରେ ମହାଦେବଙ୍କୁ ପ୍ରତିଷ୍ଠା କରାଇବା ସହ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିରରେ ପୂଜାର୍ଚ୍ଚନା ପାଇଁ ସାଧୁ ଦୈନିକ ପାଣି ଆଣିବାକୁ ତିନିକିଲୋମିଟର ଦୂର ବୈତରଣୀ ନଦୀକୁ ଯାଇଥାନ୍ତି । କିନ୍ତୁ ସାଧୁ ବୃଦ୍ଧ ହୋଇଯିବାରୁ ଏତେବାଟ ଯାଇ ପାଣି ଆଣିବା ଅସମ୍ଭବ ହୋଇପଡିଲା । ପାଣି ପାଇଁ ସେ ଲୋକଙ୍କ ଉଦ୍ୟମରେ ମନ୍ଦିର ସମ୍ମୁଖରେ

ଏକ ପୁଷ୍କରିଣୀ ଖନନ କଲେ । ତେବେ ପାହାଡ ଉପରେ ପାଣି ଆସିବ କେଉଁଠୁ? ପାଣି ପାଇଁ ସେ ପାହାଡ ଉପର ଗୁମ୍ଫାରେ ଧ୍ୟାନ କରିବାକୁ ଆରମ୍ଭ କଲେ । ଦୀର୍ଘ ଦିନର ତପସ୍ୟା ପରେ କୌଣସି ଫଳ ନ ମିଳିବାରୁ ସାଧୁ ରାଗିଯାଇ ଗଛମୂଳେ ରହିଥିବା ମା' ଦୁର୍ଗାଙ୍କ ମୂର୍ତ୍ତିକୁ ଖଣ୍ଡାରେ ହାଣି ମୁଣ୍ଡକୁ



ବୀରଗୋବିନ୍ଦପୁରର ବ୍ରହ୍ମେଶ୍ୱର ମନ୍ଦିର

ଶରୀରରୁ ଅଲଗା କରି ଦେଇଥିଲେ । ଏହାପରେ ମା'ଙ୍କ ଆବିର୍ଭାବ ହୋଇଥିଲା । ବାବା ଶ୍ୟାମଦାସ ପାଣି ପାଇଁ ମା'ଙ୍କୁ ଗୁହାରୀ କରିଥିଲେ ଏବଂ ଏହାପରେ ଶୁଷ୍କ ପୁଷ୍କରିଣୀଟି ସଙ୍ଗେସଙ୍ଗେ ଜଳପୂର୍ଣ୍ଣ ହୋଇଯାଇଥିଲା । ପାହାଡ ଉପରେ ଥାଇ ମଧ୍ୟ ସେହିଦିନଠୁ ଆଜି ପର୍ଯ୍ୟନ୍ତ ଏହି ପୁଷ୍କରିଣୀଟି ଶୁଖିବା ତ ଦୂରର କଥା ବରଂ ଗ୍ରୀଷ୍ମଋତୁରେ ଏହାର ଜଳପତ୍ତନ ଆଶ୍ଚର୍ଯ୍ୟଜନକ ଭାବେ ବୃଦ୍ଧିପାଇଥାଏ । ଏହି ଜଳାଶୟରେ ସାଧାରଣ ଲୋକେ ସ୍ନାନ କରନ୍ତିନାହିଁ । କେବଳ ମହାଦେବଙ୍କ ପୂଜାର୍ଚ୍ଚନା କରାଯାଇଥାଏ । ପାହାଡ ଉପରେ ଅନ୍ୟ କୌଣସି ସ୍ଥାନରେ ଜଳ ଉତ୍ସ ନଥିବା ବେଳେ ଏହି ପୋଖରୀକୁ କେଉଁଠୁ ପାଣି ଆସୁଛି ତାହା ଆଜି ପର୍ଯ୍ୟନ୍ତ ରହସ୍ୟମୟ ହୋଇ ରହିଛି । ଏହି ପୁଷ୍କରିଣୀର ଜଳ ଚଂପା ରଙ୍ଗର ହୋଇଥିବାବେଳେ ଏହାର ସ୍ଥିର ଜଳରାଶି ଅତ୍ୟନ୍ତ ମନମୁଗ୍ଧକର ହୋଇଥାଏ । ଏହି ପାହାଡର ଶୀର୍ଷ ଦେଶରେ ଏକ ଗୁମ୍ଫା ରହିଛି । ଏହି ଗୁମ୍ଫା ଟି ପର୍ଯ୍ୟଟକଙ୍କୁ ବେଶ୍ ଆକର୍ଷିତ କରିଥାଏ । ଏଠାରେ ମକର ସଂକ୍ରାନ୍ତି ଓ ଶିବରାତ୍ରି ମହା ସମାରୋହରେ ପାଳିତ ହୋଇଥାଏ । ଅପରପକ୍ଷେ. ଶୀତଦିନେ ଏଠାରେ ବଣଭୋଜି ପାଇଁ ସ୍ଥାନୀୟ ଅଞ୍ଚଳର ପର୍ଯ୍ୟଟକଙ୍କ ଭିଡ ଜମିଥାଏ ।

# କେନ୍ଦୁଝର ପୁରୁଣା ବଜାରର ଏକାମ୍ର ବନବିହାରୀ ମନ୍ଦିର

ପୁରୁଣା ବଜାରର ଶ୍ରୀଗୁଣ୍ଡିଚା ମନ୍ଦିର ଓ ସିଦ୍ଧମଠ ନିକଟସ୍ଥ ବନବିହାରିପଦାରେ ରହିଛି ଏକ ପୁରାତନ ଶିବ ମନ୍ଦିର । ଏଠାରେ ଶିବ ଓ ପାର୍ବତୀ ପୂଜା ପାଉଛନ୍ତି । ଓଡ଼ିଶାରେ ଏହା ସମ୍ଭବତଃ ଏକ ବିଶେଷ ମନ୍ଦିର ଯେଉଁଠାରେ ଲିଂଗ-ଯୋନି ପରିବର୍ତ୍ତେ ଶିବ, ପାବର୍ତୀଙ୍କ ମୂର୍ତ୍ତି ପୂଜା ପାଇଥାଏ ।



କେନ୍ଦୁଝର ପୁରୁଣା ବଜାରର ଏକାମ୍ର ବନବିହାରୀ ମନ୍ଦିର



ଏଠାରେ ପୂଜା ପାଉଥିବା ଶିବ ଏକାମ୍ର ବନବିହାରୀ ଭାବେ ପରିଚିତ । ଭୁବନେଶ୍ୱର ଏକାମ୍ର କ୍ଷେତ୍ର ଭାବେ ବିଖ୍ୟାତ ହୋଇଥିବାବେଳେ କେନ୍ଦୁଝରର ଏହି ସ୍ଥାନଟି ମଧ୍ୟ ଏକ୍ରାମ କ୍ଷେତ୍ର ଭାବେ ପରିଚିତ । ଭୁବନେଶ୍ୱର ଏକ୍ରାମ କ୍ଷେତ୍ରର କ୍ଷେତ୍ରାଧିପତି ମହାପ୍ରଭୁ ଲିଙ୍ଗରାଜ ହୋଇଥିବାବେଳେ କେନ୍ଦୁଝରର ଏହି ପୁରାତନ ଶୈବକ୍ଷେତ୍ରରେ କ୍ଷେତ୍ରାଧିପତି ହେଉଛନ୍ତି ଏକାମ୍ର ବନବିହାରୀ । ପୂର୍ବକାଳରେ ଏଠାରେ ଘଞ୍ଚ ଜଙ୍ଗଲ ଥିବାରୁ ହୁଏତ ଶିବଙ୍କ ନାମ ବନବିହାରୀ

ରଖାଯାଇଛି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଏଠାରେ ପ୍ରତିଷ୍ଠିତ ଶିବ ଓ ପାର୍ବତୀଙ୍କ ମୂର୍ତ୍ତି କଳା ମୁଗୁନି ପଥରରେ ନିର୍ମିତ । ଏହି ପୀଠ ସଂପର୍କରେ ଠୋସ୍ ଐତିହାସିକ ପ୍ରମାଣ ମିଳି ନଥିଲେ ମଧ୍ୟ କିଛି ଐତିହାସିକ ଏହା ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀର ବୋଲି ମତବ୍ୟକ୍ତ କରନ୍ତି । ଏକାମ୍ର ବନବିହାରୀଙ୍କ ମନ୍ଦିର ଚତୁର୍ପାର୍ଶ୍ୱରେ ଥିବା ଜାଗାରେ ମନୋଜ ମଂଜରୀ ଶିଶୁଭବନ ପକ୍ଷରୁ ଏଠାରେ ଭିନ୍ନକ୍ଷମ ଓ ଅନାଥମାନଙ୍କ ପାଇଁ ଏକ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଏକାମ୍ର ବନବିହାରୀ ପୀଠରେ ପ୍ରତିବର୍ଷ ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ ଶିବ-ପାର୍ବତୀ ବିବାହ ଓ ଶୀତଳ ଷଷ୍ଠୀ ଦିନ ନଗର ପରିକ୍ରମା ଅନୁଷ୍ଠିତ ହୋଇଥାଏ । ଏହି ଉତ୍ସବରେ ଯୋଗ ଦେବା ପାଇଁ ଶ୍ରୀବଳଦେବଜୀଉ ରାଜପ୍ରାସାଦରୁ ଶ୍ରୀଜୟଗୋପାଳ ଓ ସିଦ୍ଧମଠରୁ ଶ୍ରୀ ସିଦ୍ଧ ଜଗନ୍ନାଥ ଶୋଭାଯାତ୍ରାରେ ଆସି ଯୋଗ ଦେଇଥାନ୍ତି । ଏଠାରେ ପାଳନ କରାଯାଉଥିବା ଶିବ-ପାର୍ବତୀ ବିବାହରେ ବିଭିନ୍ନ ଅଞ୍ଚଳରୁ ଠାକୁରମାନେ ନିମନ୍ତ୍ରିତ ହୋଇଥାନ୍ତି । ପ୍ରତିବର୍ଷ ଏହି ଅବସରରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

## ଆନନ୍ଦପୁରର ଉତ୍ତରେଶ୍ୱର ମନ୍ଦିର

ଆନନ୍ଦପୁର ଉପକଣ୍ଠରେ ମହାଦେବ ଉତ୍ତରେଶ୍ୱରଙ୍କ ବହୁ ପୁରାତନ ମନ୍ଦିର ରହିଛି । ଏଠାରେ ମକର ଉତ୍ସବ, ମହାଶିବରାତ୍ରୀ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । ଏହି ଉତ୍ତରେଶ୍ୱର



ମନ୍ଦିରଟି ଏକ ମନୋରମ ପରିବେଶ ମଧ୍ୟରେ ଅବସ୍ଥିତ । ଏହି ମନ୍ଦିର ପରିସରରେ ବହୁ ପ୍ରାଚୀନ ମୂର୍ତ୍ତିମାନ ମଧ୍ୟ ଦେଖିବାକୁ ମିଳିଥାଏ ।

## ଶୈଲଙ୍ଗର ଶୈଳେଶ୍ୱର ମନ୍ଦିର ଓ ଶୈଲଙ୍ଗ ହୁଡି


ଶୈଲଙ୍ଗର ଶୈଳେଶ୍ୱର ମନ୍ଦିର

ଘସିପୁରା ବ୍ଲକ୍ ଅନ୍ତର୍ଗତ ଶୈଲଙ୍ଗ ଗାଁରେ ମହାଦେବ ଶୈଳେଶ୍ୱରଙ୍କ ଆକର୍ଷଣୀୟ ମନ୍ଦିର ରହିଛି । ଏହାର ସମ୍ମୁଖରେ ଏକ ବିଶାଳ ପୁଷ୍କରିଣୀ ରହିଛି । ଏହି ମହାଦେବଙ୍କ ପୁଷ୍କରିଣୀରେ ବୁଡ ପକାଇଲେ ମୋକ୍ଷ ମିଳିଥାଏ ବୋଲି ଭକ୍ତମାନଙ୍କ ମଧ୍ୟରେ ବିଶ୍ୱାସ ରହିଛି । ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ ଧୁମଧାମରେ ପାଳିତ ହୋଇଥାଏ । ସେହଭଳି ଘସିପୁରା ବ୍ଲକ୍‌ର ୨୧୫ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଶୈଲଙ୍ଗ ହୁଡି ଅବସ୍ଥିତ । ଏକ ଛୋଟ ମୁଣ୍ଡିଆ ପାହାଡ ଉପରେ ଅନେକ ଦେବଦେବୀ ଏକତ୍ର ପୂଜା ପାଇଥାନ୍ତି । ଏହାକୁ ସ୍ଥାନୀୟ ଅଞ୍ଚଳରେ 'ଶୈଲଙ୍ଗ ହୁଡି' କହନ୍ତି । ଏଠାରେ ନୃସିଂହ ମଠ ଓ ବାୟାବାବାଙ୍କ ମଠ ରହିଛି । ଏହା ସହିତ ଏଠାରେ ବନ ଦୁର୍ଗାଙ୍କ ଏକ ମନ୍ଦିର ମଧ୍ୟ ରହିଛି । ଏହି ପୀଠରେ ମହାଦେବ ଓମ୍‌କାରେଶ୍ୱର ଶିବ ମନ୍ଦିର ଅବସ୍ଥିତ । ଏଠାରେ ଦେବୀ ବନ ଦୁର୍ଗାଙ୍କ ନିକଟରେ ପ୍ରତିବର୍ଷ ଦଶହରା ପୂଜା ମହାସମାରୋହରେ ପାଳିତ ହୋଇଥାଏ । ଏହା ସହିତ ଏଠାରେ ମହାଶିବରାତ୍ରି ଓ ମକର ମେଳା ମଧ୍ୟ ଅନୁଷ୍ଠିତ ହୋଇଥାଏ ।

## ଫକୀରପୁରର ବାଲୁଙ୍କେଶ୍ୱର ମନ୍ଦିର



ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଫକୀରପୁରରେ ରହିଛି ବହୁ ପୁରାତନ ବାଲୁଙ୍କେଶ୍ୱର ଶିବ ମନ୍ଦିର । ଏହା ଏକ ବହୁ ପ୍ରସିଦ୍ଧ ଶୈବକ୍ଷେତ୍ର । ଏଠାରେ ମହାଶିବରାତ୍ରୀ, ମକର ଉତ୍ସବ ମହାସମାରୋହରେ ପାଳିତ ହୋଇଥାଏ । ପୂଜକ ଦିଲିପ କୁମାର ଦାଶ ପ୍ରକାଶ କରନ୍ତି । ଏଠାରେ ଜଣେ ସନ୍ନ୍ୟାସୀ ବାବା ଚିନ୍ତାମଣି ସାହାଣୀ ଏହି ପୀଠର ଦାୟିତ୍ୱ ବୁଝନ୍ତି । ଏଠାରେ ମା' ମହ୍ନୀ ବରାହୀ ଠାକୁରାଣୀଙ୍କ ଏକ ଛୋଟ ମନ୍ଦିର ରହିଛି । ଏହା ବ୍ୟତୀତ ବାଲୁଙ୍କେଶ୍ୱର ଶିବ ମନ୍ଦିରରେ ପାର୍ଶ୍ୱ ଦେବଦେବୀ ଭାବେ ନାରାୟଣ, ନରସିଂହ, ବରାହ, ଗଣେଶ ଆଦି ମୂର୍ତ୍ତି ଶୋଭା ପାଉଛି । ଏହା ଏକ ଶୈବକ୍ଷେତ୍ର ଭାବେ ପରିଚିତ ହୋଇଥିଲେ ମଧ୍ୟ ଅତୀତରେ ଏହା ଏକ ପ୍ରାଚୀନ ଜୈନକ୍ଷେତ୍ର ଥିଲା । ବାଲୁଙ୍କେଶ୍ୱର ଶିବ ମନ୍ଦିରର ଏକ କୋଣରେ ଏକ ବିଶାଳକାୟ ଜୈନ ମୂର୍ତ୍ତି ରହିଛି । ଏହାକୁ ମଧ୍ୟ ଭକ୍ତ ଧୂପ, ଚନ୍ଦନ ଦେଇ ହିନ୍ଦୁ ଦେବତା ଭାବେ ପୂଜା କରୁଛନ୍ତି । ମାତ୍ର, ଏହା ଏକ ଜୈନ ମୂର୍ତ୍ତି । ଏଠାରେ ବହୁ ଜୈନ ତନ୍ତ୍ର ଦେବୀଙ୍କର ମୂର୍ତ୍ତି ରହିଛି, ଯାହାକୁ ଭକ୍ତମାନେ ହିନ୍ଦୁ ଦେବୀ ଭାବେ ପୂଜା କରିଆସୁଛନ୍ତି । ଏଠାରେ ପୂଜା ପାଉଥିବା ମା' ମହ୍ନୀବରାହୀ ଠାକୁରାଣୀ ହେଉଛନ୍ତି ଜଣେ ଜୈନ ତନ୍ତ୍ର ଦେବୀ ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି ।

## କେଶଦୂରାପାଳର ଜଗନ୍ନାଥ ମନ୍ଦିର ଓ ବାଲିପାଳର ବାବା ବାଲୁକେଶ୍ୱର

ଆନନ୍ଦପୁର ଉପଖଣ୍ଡର କେଶଦୂରାପାଳ ଐତିହାସିକ ଦୃଷ୍ଟିରୁ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ଭାବେ ଜଣାଶୁଣା । କେଶଦୂରାପାଳର ଆରାଧ୍ୟ ଦେବତା ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା । ଏହା ଏକ ବିଷ୍ଣୁପୀଠ ଭାବେ ପରିଚିତ । କେନ୍ଦୁଝର ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ସମୟରୁ କେଶଦୂରାପାଳରେ ପ୍ରଭୁ ଶ୍ରୀଜଗନ୍ନାଥ ପୂଜା ପାଇ ଆସୁଛନ୍ତି ବୋଲି ସ୍ଥାନୀୟ ଲୋକେ କହନ୍ତି । କିନ୍ତୁ ଦୁଃଖର ବିଷୟ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମୂଳ ମନ୍ଦିରଟି ସଂପୂର୍ଣ୍ଣ ଭାଙ୍ଗିରୁଜି ଯାଇଛି । ୧୯୪୩ ମସିହାରେ ମନ୍ଦିର ପରିଚାଳନା କମିଟି ପକ୍ଷରୁ ନୂତନ ମନ୍ଦିରଟିଏ ସ୍ଥାପନ କରାଯାଇଛି । ଏଠାରେ ପାଳିତ ହେଉଥିବା ଶ୍ରୀଗୁଣ୍ଡିଚା ଯାତ୍ରାରେ ବହୁ ସଂଖ୍ୟାରେ ଭକ୍ତଙ୍କ ଗହଳି ହୋଇଥାଏ । ସେହିପରି କେଶଦୂରାପାଳ ଅଞ୍ଚଳର ବାଲିପାଳର ବାବା ବାଲୁକେଶ୍ୱର ମଧ୍ୟ ଏ ଅଞ୍ଚଳର ଅନ୍ୟତମ ପ୍ରମୁଖ ଆରାଧ୍ୟ ଦେବତା ଭାବେ ପରିଚିତ । ବାଲିପାଳ ଗ୍ରାମ ହାଟତୋଟା ପ୍ରାଥମିକ ବିଦ୍ୟାଳୟ ନିକଟରେ ଥିବା ଏହି ମନ୍ଦିରଟି ଅବସ୍ଥିତ । ପବିତ୍ର ରେମାଳ ନଦୀ କୂଳରେ ଅବସ୍ଥିତ ଏହି ପୁରାତନ ମନ୍ଦିରଟି ୧୯୯୯ ମସିହା ମହାବାତ୍ୟାରେ ଭାଙ୍ଗିରୁଜି ଯାଇଛି । ମାତ୍ର, ଏହାର ପୁର୍ନନିର୍ମାଣ ଆଜି ପର୍ଯ୍ୟନ୍ତ ସମ୍ଭବପର ହୋଇପାରିନାହିଁ । ନାରଙ୍ଗପୁର ଗ୍ରାମର ବଦାନ୍ୟ ବ୍ୟକ୍ତି ସ୍ୱର୍ଗତଃ ବଂଶୀଧର ଆଚାର୍ଯ୍ୟ ଏହି ମନ୍ଦିର ପ୍ରତିଷ୍ଠା କରିଥିବା କଥା ସ୍ଥାନୀୟ ଅଞ୍ଚଳବାସୀଙ୍କଠାରୁ ଜଣାପଡେ ।

## ଧୂପଦାର ହାତୀ ଗୁମ୍ଫା ଓ ଆଖଣ୍ଡଳମଣି ଶୈବପୀଠ



କେନ୍ଦୁଝର ସହର ଉପକଣ୍ଠ ଧୂପଦାଠାରେ ଥିବା ଏକ ମୁଣ୍ଡିଆ ପାହାଡ ଉପରେ ରହିଛି ପ୍ରସିଦ୍ଧ ହାତୀ ଗୁମ୍ଫା ସମେତ ଅନ୍ୟାନ୍ୟ ବହୁ ଗୁମ୍ଫା ଏବଂ ଏକ ଶିବ ମନ୍ଦିର । ଏହି ମହାଦେବଙ୍କ ନାମ ବାବା ଆଖଣ୍ଡଳମଣି । ପ୍ରତିବର୍ଷ ମକର ଯାତ୍ରା ଅବସରରେ ଏଠାରେ ସହସ୍ରାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏହା ସହିତ ପ୍ରତିବର୍ଷ ମହାଶିବରାତ୍ରୀ, ଶୀତଳ ଷଷ୍ଠୀ ଯାତ୍ରା ଅବସରରେ ଏଠାରେ ସହସ୍ରାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ପାହାଡ ଉପରେ ଥିବା ମହାଦେବଙ୍କ

ମନ୍ଦିରକୁ ହଜାର ହଜାର ଶ୍ରଦ୍ଧାଳୁ ଦର୍ଶନ ପାଇଁ ଆସିଥାନ୍ତି । ଏହା ସାଙ୍ଗକୁ ପାହାଡ ଉପରେ ଥିବା ହାତୀଗୁମ୍ଫା ଓ ଅନ୍ୟ ଗୁମ୍ଫା ଦେଖିବାକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଓ ଭକ୍ତ ଆସନ୍ତି । ପାହାଡର ପ୍ରାକୃତିକ ରୂପ ଓ ଶିଖରରେ ଥିବା ଆକର୍ଷଣୀୟ ମନ୍ଦିର ପର୍ଯ୍ୟଟକଙ୍କୁ ବିମୋହିତ କରିଥାଏ । ପ୍ରତିବର୍ଷ ମକର ଉତ୍ସବ ଓ ଶିବରାତ୍ରୀ ଅବସରରେ ମନ୍ଦିର ବେଢାରେ ଓ ପାହାଡର ପାଦଦେଶରେ ଦୋକାନବଜାର ବସିଥାଏ । ଏଠାରେ ମକର ଯାତ୍ରା ତିନି ଦିନ ଧରି ଚାଲେ । ପାହାଡ ଉପରେ ଥିବା ଏହି ମନ୍ଦିରକୁ ଯିବା ପାଇଁ ପାହାଚମାନ ନିର୍ମାଣ କରାଯାଇଛି ।

## ବଣୁଆ ଯୋଗେଶ୍ୱର ମନ୍ଦିର



କେନ୍ଦୁଝର ସଦର ବ୍ଲକ୍‌ର ବଣୁଆ ଗ୍ରାମରେ ରହିଛି ପ୍ରସିଦ୍ଧ ଯୋଗେଶ୍ୱର ଶୈବ ପୀଠ । ଏହି ମନ୍ଦିରଟି ବଣୁଆ ଗାଁରେ ଅବସ୍ଥିତ ଥିବାରୁ ସ୍ଥାନୀୟ ଅଞ୍ଚଳରେ ଏହା 'ବଣୁଆ ଶିବ ମନ୍ଦିର' ଭାବେ ପରିଚିତ । ମନ୍ଦିରଟି ଅରଡେଇ ଓ ମାଛକାନ୍ଦଣା ନଦୀର ସଂଗମ ସ୍ଥଳରେ ଅବସ୍ଥିତ । ଏଠାରେ ମହାଦେବ ଯୋଗେଶ୍ୱରଙ୍କ ବ୍ୟତୀତ ମହାଦେବ ମହେଶ୍ୱର ମଧ୍ୟ ପୂଜା ପାଇଥାନ୍ତି । ଏହି ମନ୍ଦିରଟି କେନ୍ଦୁଝର ଜିଲ୍ଲାର ଅନ୍ୟତମ ପ୍ରାଚୀନ ଶୈବପୀଠମାନଙ୍କ ମଧ୍ୟରୁ ଅନ୍ୟତମ । ମହାଦେବ ଯୋଗେଶ୍ୱର ମହାଦେବଙ୍କ ଲିଙ୍ଗ ନିକଟସ୍ଥ ଚାଷ କ୍ଷେତରୁ ମିଳିଥିଲା ବୋଲି ସ୍ଥାନୀୟ ଅଞ୍ଚଳରେ ଲୋକଙ୍କଠାରୁ ଶୁଣିବାକୁ ମିଳେ । ଜଣେ କୃଷକ କ୍ଷେତରେ ହଳ କରୁଥିବାବେଳେ ମହାଦେବଙ୍କ ଲିଙ୍ଗ ପ୍ରାପ୍ତ

ହୋଇଥିଲେ । ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ ଓ ମକର ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ ।

## ଶୁଆକାଟୀର ପାଟେଶ୍ୱର ମନ୍ଦିର

କେନ୍ଦୁଝରଗଡ଼ଠାରୁ ୪୯ ନମ୍ବର ଜାତୀୟ ରାଜପଥ ଦେଇ ସମ୍ବଲପୁର ଅଭିମୁଖେ ୧୪ କିଲୋମିଟର ଗଲାପରେ ବଡ଼ିବ ଶୁଆକାଟୀ । ଗନ୍ଧମାର୍ଦ୍ଦନ ପର୍ବତମାଳାର ପାଦଦେଶରେ ଏହି ଶୁଆକାଟୀ ଅବସ୍ଥିତ । ଗନ୍ଧମାର୍ଦ୍ଦନ ପର୍ବତରୁ ଏକ ଛୋଟ ଝରଣା ଶୁଆକାଟୀ ଗ୍ରାମର ଏକ ବିରାଟ ଚଟାଣ ଦେଇ ବହିଯାଇଛି । ଏହି ପଥର ଚଟାଣ ଉପରେ ବାବା ପାଟେଶ୍ୱର ମହେଶଙ୍କ ମନ୍ଦିର ରହିଛି । ମନ୍ଦିର ସମ୍ମୁଖରେ ଏକ ବିଶାଳ ବଟ ବୃକ୍ଷ ରହିଛି । କେନ୍ଦୁଝର ଜିଲ୍ଲାର ଆଦିବାସୀ ସଂସ୍କୃତିକୁ ବିଶ୍ଳେଷଣ କଲେ 'ପାଟ' ଶବ୍ଦର ଏକ ନିଆରା ଗୁରୁତ୍ୱ ଅନୁଭବ କରିହୁଏ । ଏ ଅଞ୍ଚଳରେ ଅଧିକାଂଶ ଗ୍ରାମ ଦେବୀଙ୍କ ନାମ ସହିତ 'ପାଟ' ଶବ୍ଦ ଯୋଡି ହୋଇଥାଏ । ଶୁଆକାଟୀ, କୁଆଁର ଏବଂ ହୁଣ୍ଡି ଗ୍ରାମର ପ୍ରମୁଖ ଦେବୀ ହେଉଛନ୍ତି 'ମହାପାଟ' । ସେହିପରି ବିଶେଇ ପାଟ, ବିଷ୍ଣୁପାଟ, ବୈତରଣୀ ପାଟ, ତାରିଣୀ ପାଟ, ମହାତାରିଣୀ ପାଟ, କାଳୀ ପାଟ, ମଙ୍ଗଳା ପାଟ, ମହିଷା ପାଟ ଆଦି ଦେବୀମାନେ କେନ୍ଦୁଝରର ବିଭିନ୍ନ ଗ୍ରାମରେ ପୂଜା ପାଉଛନ୍ତି । ଅନ୍ୟ ଦୃଷ୍ଟିରୁ ବିଚାର କଲେ 'ପାଟ' ଏକ ରାଜକୀୟ ଶବ୍ଦ । ଶ୍ରେଷ୍ଠ ଅର୍ଥରେ ଏହା ବ୍ୟବହୃତ ହୋଇଥାଏ । ଯଥା-ପାଟ ରାଣୀ, ପାଟ ଜେମା, ପାଟ ଛତ୍ର, ପାଟ ହାତୀ, ପାଟ ଖଣ୍ଡା



ଇତ୍ୟାଦି । ଏହି ଦୃଷ୍ଟିରୁ ଶୁଆକାଟୀର ଏହି ମହାଦେବଙ୍କୁ ଶ୍ରେଷ୍ଠ ମହାଦେବ ଭାବେ ବର୍ଣ୍ଣନା କରାଯାଇ ତାଙ୍କୁ ପାଟେଶ୍ୱର ବୋଲି କୁହାଯାଉଛି । ଏହି ପାଟେଶ୍ୱର ମନ୍ଦିର କେନ୍ଦୁଝରର ତତ୍କାଳୀନ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ରାଜତ୍ କାଳରେ ନିର୍ମାଣ ହୋଇଥିବା ସ୍ଥାନୀୟ ଲୋକେ ପ୍ରକାଶ କରନ୍ତି । ମାତ୍ର, ଏହି ମନ୍ଦିରର ନିର୍ମାଣ କାଳ ସଂପର୍କରେ କୌଣସି ସଠିକ୍ ସୂଚନା ମିଳେନାହିଁ । ଏହି ମନ୍ଦିରର ପଶ୍ଚିମ ଦିଗରେ ମା' ପାର୍ବତୀଙ୍କର ଏକ କ୍ଷୁଦ୍ର ମନ୍ଦିର ରହିଛି । ଏଠାରେ ପାର୍ବତୀ ମା' ପାଟେଶ୍ୱରୀ ଭାବେ ପୂଜିତ । ପାଟେଶ୍ୱର ଶୈବ ପୀଠରେ ପ୍ରତିବର୍ଷ ମହାଶିବରାତ୍ରୀ ଓ ଶୀତଳଷଷ୍ଠୀ ଯାତ୍ରା ମହା ସମାରୋହରେ ପାଳିତ ହୋଇଥାଏ ।

## ବ୍ରାହ୍ମଣୀପାଳର 'ବଣ ମନ୍ଦିର'

କେନ୍ଦୁଝର ଜିଲ୍ଲାର ଉପାନ୍ତ ଅଞ୍ଚଳ ଭାବେ ପରିଚିତ ବ୍ରାହ୍ମଣୀପାଳଟି ବିଶେଷକରି ଆଦିବାସୀବହୁଳ ଅଞ୍ଚଳ ଭାବେ ଜଣାଶୁଣା । ଦୈତାରୀ-ପାରାଦୀପ ଜାତୀୟ ରାଜପଥର ପାର୍ଶ୍ୱରେ ଓ ବ୍ରାହ୍ମଣୀପାଳ ଥାନାଠାରୁ ମାତ୍ର ୫୦ ମିଟର ଦୂରରେ ରହିଛି ଏହି ବଣ ମନ୍ଦିର । ଏହି ମନ୍ଦିରଟି ବାବା ଆଖଣ୍ଡଳେଶ୍ୱର ମନ୍ଦିର ଭାବେ ମଧ୍ୟ ପରିଚିତ । ଆଜିକୁ ପଚାଶ ବର୍ଷ ତଳେ ଏଠାରେ ଜନବସତି ନଥିଲା । ଜଣେ ଧୂଳିଆ ବାବାଙ୍କ ଆବିର୍ଭାବରେ ଏଠାରେ ଶିବ ଲିଂଗର ସ୍ଥାପନା କରାଯାଇଥିଲା । ପରେ ଟାଟା କଂପାନୀ ସହଯୋଗରେ ଏଠାରେ ଏକ ମନ୍ଦିର ନିର୍ମାଣ କରାଯାଇଛି । ଜଂଗଲ ଭିତରେ ଗୋଟିଏ ପାର୍ଶ୍ୱରେ କୁଶେଇ ନଦୀ ଥିବାବେଳେ ଅନ୍ୟ ଏକ ପାର୍ଶ୍ୱରେ କୁଳୁକୁଳୁ ବହି ଯାଉଥିବା ଝରଣାଟି ମନ୍ଦିରର ଶୋଭାକୁ ବହୁଗୁଣିତ କରିଥାଏ । କୋଡିଏ ବର୍ଷ ଧରି ବିଂଝାରପୁର ଅଞ୍ଚଳରୁ ଆସିଥିବା ଭକ୍ତ ତ୍ରିଲୋଚନ ଦାସ ଏଠାରେ ରହି ମହାଦେବଙ୍କୁ ପୂଜାର୍ଚ୍ଚନା କରୁଛନ୍ତି । ପ୍ରତିଦିନ ଏଠାକୁ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକ ଆସିଥାନ୍ତି । ଶିବରାତ୍ରି, ମକର ସଂକ୍ରାନ୍ତି, ପଣା ସଂକ୍ରାନ୍ତିକୁ ଛାଡିଦେଲେ ପ୍ରତି ସୋମବାର ଏଠାରେ ଶତାଧିକ ଭକ୍ତଙ୍କ ଭିଡ଼ ଜମିଥାଏ । ତେବେ ବ୍ରାହ୍ମଣୀପାଳ ଫାଣ୍ଡି ଅଧିକାରୀ ମୁରଲୀଧର ବସ୍ତିଆ ଓ ଗୃହରକ୍ଷୀ ହାଡିବନ୍ଧୁ ମହାନ୍ତଙ୍କୁ ମାଓବାଦୀମାନେ ହତ୍ୟା କରିବା ଘଟଣା ପରେ ଏଠାକୁ ପର୍ଯ୍ୟଟକମାନେ ଆସିବାକୁ ଭୟ କରୁଛନ୍ତି । ସୁରକ୍ଷା ବ୍ୟବସ୍ଥା ମଧ୍ୟରେ ଏଠାରେ ପୂଜକ ମନ୍ଦିରରେ ପୂଜା କରୁଛନ୍ତି । ଏହି 'ବଣ ମନ୍ଦିର'ର ନିକଟରେ ବ୍ରାହ୍ମଣୀପାଳ ବଜାରରେ ମଧ୍ୟ ବାବା ଧନେଶ୍ୱରଙ୍କ ଏକ ମନ୍ଦିର ରହିଛି । ଏହି ଧନେଶ୍ୱର ମନ୍ଦିରକୁ ମଧ୍ୟ ବହୁ ସଂଖ୍ୟାରେ ଭକ୍ତମାନେ ଆସିଥାନ୍ତି ।

# ବୋଦାପଳସାର ଚନ୍ଦ୍ରଶେଖର ଶିବ ମନ୍ଦିର

କେନ୍ଦୁଝର ଜିଲ୍ଲାର ରାଜାରାଜୁଡା ଅମଳର ପ୍ରାଚୀନ ଶିବ ମନ୍ଦିରମାନଙ୍କ ମଧ୍ୟରୁ ବୋଦାପଳସାର ଚନ୍ଦ୍ରଶେଖର ମହେଶ ଶିବ ମନ୍ଦିରଟି ଅନ୍ୟତମ ଧାର୍ମିକ ପୀଠ । କେନ୍ଦୁଝରଗଡ଼ଠାରୁ ମାତ୍ର ସାତ କିଲୋମିଟର ଦୂରରେ ଅରଡେଇ ନଦୀ କୂଳରେ ଏହି ପ୍ରାଚୀନ ଶୈବପୀଠଟି ଅବସ୍ଥିତ । ଏହି ପୀଠରେ ସ୍ୱୟମ୍ଭୁ ଶିବ ଲିଙ୍ଗ ଶ୍ରୀ ଚନ୍ଦ୍ରଶେଖର ମହାଦେବ ପୂଜା ପାଆନ୍ତି । ୧୮୭୮ ମସିହାରେ ମହାଦେବ ଏଠାରେ ଆବିର୍ଭୁତ ହୋଇଥିଲେ । ସେତେବେଳେ ମହାରାଜା ଧନୁର୍ଜୟ ନାରାୟଣ



ଭଞ୍ଜ କେନ୍ଦୁଝରର ରାଜା ଥିଲେ । ବୋଦାପଳାସା ଗ୍ରାମରେ ଏକ ନୂତନ ପୋଖରୀ ଖନନ କରାଯାଉଥିଲା । ପୋଖରୀ ଖନନ ହେଉଥିବାବେଳେ ସେଠାରୁ ସ୍ୱୟମ୍ଭୁ ଶିବ ଲିଙ୍ଗଙ୍କ ଆବିର୍ଭାବ ଘଟିଥିଲା । ମହାଦେବଙ୍କ ପାଇଁ ଏକ ଅସ୍ଥାୟୀ ଚାଳଘର ପ୍ରତିଷ୍ଠା ହେବା ପରେ ରାଜାଙ୍କ ଉଦ୍ୟମରେ ୧୮୭୯ ମସିହାରେ କୋଠଘର ପ୍ରତିଷ୍ଠା କରାଯାଇଥିଲା । ତେବେ ସ୍ଥାନୀୟ ଗ୍ରାମବାସୀଙ୍କ ଉଦ୍ୟମରେ ତତ୍କାଳୀନ ଉପ ଜିଲ୍ଲାପାଳ ମୋହନ ଦାସଙ୍କ ସମୟରେ ୨୦୦୩ ମସିହାରେ ଏଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରାଯାଇଛି । ପୂର୍ବେ ଏଠାରେ ମହାଶିବରାତ୍ରି ବେଶ୍ ଧୂମ୍‌ଧାମ୍‌ରେ ପାଳିତ ହେଉଥିଲା । ସମ୍ଭବତଃ, କୁଶଳେଶ୍ୱର ମହାଦେବଙ୍କ ପରେପରେ କେନ୍ଦୁଝର ଜିଲ୍ଲାର ଦ୍ୱିତୀୟ ବୃହତ୍ତମ ଜାଗର ମେଳା ଏଠାରେ ଅନୁଷ୍ଠିତ ହୋଇଥାଏ । କେନ୍ଦୁଝର ସଦର ବ୍ଲକ୍‌ରେ ଅବସ୍ଥିତ ଏହି ପ୍ରାଚୀନ

ଶୈବପୀଠଟି ଏବେ ବିଭିନ୍ନ କାରଣରୁ ଅବହେଳିତ ହୋଇ ପଡିରହିଛି । ଏହି ମନ୍ଦିରରେ ପୂଜା ପାଉଥିବା ବୃଷଭଙ୍କ ମୂର୍ତ୍ତି ଦିନକୁଦିନ ବଢୁଥିବା କଥା ସ୍ଥାନୀୟ ଗ୍ରାମବାସୀ କହନ୍ତି ।ଏହି ବୃଷଭଙ୍କ ମୂର୍ତ୍ତି ଶାୟିତ ଅବସ୍ଥାରେ ମନ୍ଦିର ମଧ୍ୟରେ ପୂଜା ପାଉଛନ୍ତି । ଯେଉଁଦିନ ବୃଷଭ ଜାଗ୍ରତ ହେବେ ସେତେବେଳେ ପୃଥିବୀ ପ୍ରଳୟ ହେବ ବୋଲି ସ୍ଥାନୀୟ ଗ୍ରାମବାସୀଙ୍କଠାରୁ ପ୍ରକାଶ । ଏହି ପୀଠରେ ପଣା ସଂକ୍ରାନ୍ତି ଦିନଠାରୁ ବୈଶାଖ ମାସର ଶେଷ ପର୍ଯ୍ୟନ୍ତ ପଣା ଭୋଗ ହୋଇଥାଏ । ଶ୍ରାବଣ ମାସର ପ୍ରତି ସୋମବାର ଦିନ ଏଠାରେ ବୋଲ୍‌ବମ୍ ଭକ୍ତମାନଙ୍କ ଦ୍ୱାରା ଜଳାଭିଷେକ କରାଯାଇଥାଏ । ଭାଦ୍ରବ ମାସ ଶୁକ୍ଳ ପକ୍ଷ ପଞ୍ଚମୀରେ ଧାନ ନୂଆଖିଆ ଓ ଭାଦ୍ରବ ଅମାବାସ୍ୟାରେ କାକରା ଓ ଛେନାପୁର ଲାଗି କରାଯାଏ । ମକର ସଂକ୍ରାନ୍ତିରେ ଏଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏହି ମନ୍ଦିରର ପାର୍ଶ୍ୱରେ ବନଦୁର୍ଗାଙ୍କ ଏକ ଛୋଟ ମନ୍ଦିର ରହିଛି ।

## ଘୁଟୁରୁ ଗାଁର ବିଷ୍ଣୁପାଟ ଓ ମୁକ୍ତେଶ୍ୱର ଶିବମନ୍ଦିର

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ଘୁଟୁରୁ ଗାଁଟି ଐତିହାସିକ ଦୃଷ୍ଟିକୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏଠାରେ କେନ୍ଦୁଝର ରାଣୀଙ୍କର କୋଠିଥିଲା ଏବଂ ରାଣୀ ଏଠାରେ ଅବସର ବିନୋଦନ କରିବା ଉଦ୍ଦେଶ୍ୟ ବହୁ ସମୟ କଟାଇଥାନ୍ତି । ଘୁଟୁରୁ ଗାଁର ଶେଷମୁଣ୍ଡରେ ଥିବା ଶାଳ ନିକଟରେ ଏକ ପ୍ରାଚୀନ ମୂର୍ତ୍ତି ରହିଛି ଯାହାକୁ ସ୍ଥାନୀୟ ଗ୍ରାମବାସୀ ବିଷ୍ଣୁପାଟ ଭାବେ ପୂଜା କରନ୍ତି । ଏହା ଏକ



ଘୁଟୁରୁ ବିଷ୍ଣୁପାଟ ମୂର୍ତ୍ତି

ଦେବୀ ମୂର୍ତ୍ତି । ତେବେ ଏହି ମୂର୍ତ୍ତିଟି ବିଷ୍ଣୁପାଟ ଭାବେ ପୂଜା ପାଉଥିଲେ ମଧ୍ୟ ଏହା ବୌଦ୍ଧ ତନ୍ତ୍ରଯୁଗର ଦେବୀ ତାରାଙ୍କ ମୂର୍ତ୍ତି ବୋଲି ଗବେଷକ ଡ· ବିମ୍ବାଧର ବେହେରା ଦାବି କରନ୍ତି । ମାତ୍ର ଏହି ବୌଦ୍ଧ ତନ୍ତ୍ର ଦେବୀଙ୍କ ପ୍ରାଚୀନ ମୂର୍ତ୍ତିଟି ଏହି ଗାଁକୁ କିଭଳି ଆସିଛି ଏବଂ କେଉଁଠୁ ଆସିଛି ତାହା ଅଧିକ ଗବେଷଣାସାପେକ୍ଷ ବୋଲି ଡ· ବେହରା ପ୍ରକାଶ କରନ୍ତି । ତେବେ ଘୁଟୁରୁ କେନ୍ଦୁଝର ରାଜାଙ୍କର ଏକ ଚାଷ ଗାଁ ଭାବେ ବିବେଚିତ ହେଉଥିବାରୁ ହୁଏତ ରାଜା ଏହି ମୂର୍ତ୍ତିଟିକୁ ଆଣି ଏଠାରେ ସ୍ଥାପନ କରିଥାଇପାରନ୍ତି ବୋଲି ଡ· ବେହେରା କହନ୍ତି । ଘୁଟୁରୁରେ କେନ୍ଦୁଝରର ରାଣୀ ବର୍ଷର ବିଭିନ୍ନ ଋତୁରେ ସାମୟିକ ଭାବେ ଅବସ୍ଥାନ କରିଥାନ୍ତି ଏବଂ ଏଠାରେ ରାଣୀଙ୍କର ଏକ ପୁଷ୍କରିଣୀ ଅଛି । ଏହାକୁ 'ରାଣୀ ପୋଖରୀ' ବୋଲି କୁହାଯାଏ । ଏହା ରାଣୀଙ୍କର ଚାଷ ଗାଁ ଭାବେ ବିବେଚିତ ହେଉଥିଲା । ବର୍ତ୍ତମାନ ବି ରାଣୀଙ୍କର ଅନେକ ସଂପତ୍ତିକୁ ସ୍ଥାନୀୟ ଅଞ୍ଚଳର ଲୋକେ ଭୋଗ କରୁଛନ୍ତି । ପ୍ରଥମେ ରାଜପରିବାର ପକ୍ଷରୁ ଏଠାରେ ଏହି ବିଷ୍ଣୁପାଟ ମୂର୍ତ୍ତିକୁ ପୂଜା କରାଯାଉଥିଲା, ମାତ୍ର ଏବେ ରାଜପରିବାର ପକ୍ଷରୁ ଏହାର ପୂଜା କାର୍ଯ୍ୟ କେହି ଦେଖୁ ନଥିବାରୁ ଘୁଟୁରୁ ଗ୍ରାମବାସୀ ପୂଜା କରୁଛନ୍ତି । ଏଠାରେ ପ୍ରତିବର୍ଷ ପ୍ରସିଦ୍ଧ ଜନ୍ତାଳ ପର୍ବ ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଏଠାରେ ବୋଦା ବଳି ଦିଆଯାଇଥାଏ । ତେବେ ଏହି ମୂର୍ତ୍ତିଟି ଅତି ପୁରୁଣା ହୋଇଥିବାରୁ କୌଣସି



ଘୁଟୁରୁ ମୁକ୍ତେଶ୍ୱର ଶିବ ମନ୍ଦିର

କାରଣରୁ ଏହାର ଅଣ୍ଟା ପାଖରେ ଫାଟ ସୃଷ୍ଟି ହୋଇଛି । ମୂର୍ତ୍ତିଟି ଭାଙ୍ଗିଯାଇଥିବା ନେଇ ସ୍ଥାନୀୟ ଅଞ୍ଚଳରେ ଏକ ଲୋକକଥା ରହିଛି । ଥରେ ଗୋଟିଏ ହାତୀ ଆସି ଏଠାରେ ଥିବା ଧାନ ଫସଲକୁ ଖାଇଦେବା ସାଙ୍ଗକୁ ପାଦରେ ଦଳି ନଷ୍ଟ କରି ଦେଉଥିଲା । ଏହି ସମୟରେ ଏଠାରେ ଥିବା ଠାକୁରାଣୀ ଧାନ କ୍ଷେତର ମାଲିକ (ଚାଷୀ)ଙ୍କୁ ଡାକିଦେଲା । ଠାକୁରାଣୀ ଚାଷୀଙ୍କୁ ଡାକିଦେବାରୁ ହାତୀଟି ରାଗିଯାଇ ଠାକୁରାଣୀଙ୍କ ମୂର୍ତ୍ତିକୁ ନିଜ ଶୁଣ୍ଢରେ ମୋଡି ଦେଇ ଦୁଇଗଡ କରିଦେଲା । ସେହିଦିନଠାରୁ ଠାକୁରାଣୀଙ୍କ ଅଣ୍ଟା ଭାଙ୍ଗି ଯାଇଛି ବୋଲି ସ୍ଥାନୀୟ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ । ଅପରପକ୍ଷେ, ହାତୀଟି ଠାକୁରାଣୀଙ୍କ ମୂର୍ତ୍ତିଟିକୁ ଭାଙ୍ଗିଦେବାରୁ ସେ ମଧ୍ୟ ସେଠାରେ ପଡି ମରିଗଲା । ଏହି ସମୟରେ ସେଠାରେ ଗାଁଲୋକେ ପହଞ୍ଚି ହାତୀଟିକୁ ସେଠାରେ ମରି ପଡିଥିବାର ଦେଖିବାକୁ ପାଇଲେ । ଲୋକେ ମୃତ ହାତୀଟିକୁ ଠାକୁରାଣୀଙ୍କ ନିକଟରେ ପୋତିଦେଲେ । ମୃତ ହାତୀଟି ପୋତାହୋଇଥିବା ସ୍ଥାନରୁ ଦୁଇଟି ଅଶ୍ୱତ୍ଥ ବୃକ୍ଷ ସୃଷ୍ଟି ହୋଇଛି । ତେବେ ପ୍ରତିବର୍ଷ ଏଠାରେ ପାଳନ ହେଉଥିବା ଜନ୍ତାଳ ପର୍ବରେ ଗ୍ରାମବାସୀ ସାମିଲ୍ ହୋଇଥାନ୍ତି । ଅପରପକ୍ଷେ, ଗାଁରେ ମରୁଡି ପଡିଲେ ବର୍ଷା ହେବା ପାଇଁ ଏଠାରେ ମଧ୍ୟ ଜନ୍ତାଳପର୍ବ ପାଳିତ ହୋଇଥାଏ । ଏହାବ୍ୟତୀତ ଘୁଟୁରୁ ଗାଁରେ ଥିବା ହୁଡି ଉପରେ ଠିକ୍ ଛଅ ନମ୍ବର ଜାତୀୟ ରାଜପଥର ଏକ ପାର୍ଶ୍ୱରେ ବାବା ମୁକ୍ତେଶ୍ୱରଙ୍କ ଏକ ମହାଦେବ ମନ୍ଦିର ରହିଛି । ଏଠାରେ ମହାଶିବରାତ୍ରି ଓ ମକର ମେଳା ମହା ସମାରୋହରେ ପାଳିତ ହୋଇଥାଏ ।

## ବାର୍ହାଟିପୁରାର ନୀଳକଣ୍ଠେଶ୍ୱର ମନ୍ଦିର ଓ ପ୍ରସିଦ୍ଧ ମକର ମେଳା



କେନ୍ଦୁଝର ଜିଲ୍ଲାର ଘଟଗାଁ ବ୍ଲକ୍ ଅନ୍ତର୍ଗତ ବାର୍ହାଟିପୁରାଟି ଐତିହାସିକ ଦୃଷ୍ଟିକୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଏଠାରେ ରହିଛି ମହାଦେବ ନୀଳକଣ୍ଠେଶ୍ୱରଙ୍କ ମନ୍ଦିର । ଗୋଟିଏ ଛୋଟ ପାହାଡ (ହୁଡି)ର ଶୀର୍ଷ ଦେଶରେ ରହିଛି ମହାଦେବ ନୀଳକଣ୍ଠେଶ୍ୱରଙ୍କର ମନ୍ଦିର । ପୂର୍ବେ ଭକ୍ତମାନେ ଏହି ହୁଡି ଉପରକୁ ବହୁ କଷ୍ଟରେ ଚଢି ମହାଦେବଙ୍କୁ ଦର୍ଶନ କରୁଥିଲେ ମାତ୍ର ଏବେ ଏହି ମନ୍ଦିର ପର୍ଯ୍ୟନ୍ତ ପାହାଚ ନିର୍ମାଣ କରାଯାଇଥିବାରୁ ମନ୍ଦିରକୁ ଯିବାକୁ ସହଜ ହେଉଛି । ବାର୍ହାଟିପୁରାର ମକର ମେଳା ସମଗ୍ର



କେନ୍ଦୁଝର ଜିଲ୍ଲାରେ ପ୍ରସିଦ୍ଧିଲାଭ କରିପାରିଛି । ଜିଲ୍ଲାର ସର୍ବ ବୃହତ୍ ମକରମେଳା ଏଠାରେ ପାଳନ କରାଯାଇଥାଏ । ପ୍ରତିବର୍ଷ ମକର ମେଳାରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ବାର୍‌ହାଟିପୁରା ମକରମେଳା ପନ୍ଦର ଦିନ ଧରି ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଏଠାରେ ଅପେରା, ମୀନାବଜାର ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ଗୋଟିଏ ପକ୍ଷ ଧରି ଚାଲେ । ଏଠାକାର ମକର ମେଳା ଓ ପର୍ବତ ଶିଖରରେ ଥିବା ନୀଳକଣ୍ଠେଶ୍ୱର ପୀଠ ଦେଖିବାକୁ ଜିଲ୍ଲା ଓ ଜିଲ୍ଲା ବାହାରୁ ଲକ୍ଷାଧିକ ଭକ୍ତ ଆସିଥାନ୍ତି । ପୂର୍ବେ ନୀଳକଣ୍ଠେଶ୍ୱରଙ୍କ ପୀଠକୁ ଯିବା ପାଇଁ ୧୫୨ ପାହାଚ ଥିବାରୁ ଚଢିବା କଷ୍ଟକର ହେଉଥିଲା । ମାତ୍ର ବୃଦ୍ଧ,ବୃଦ୍ଧା ଓ ଶିଶୁମାନଙ୍କ ପାଇଁ ୧୦୭ ପାହାଚର ସୁବିଧା କରାଯାଇଛି । ଏହାର ପାଦଦେଶରେ ଏକ ଗୁମ୍ଫା ରହିଛି । ପାହାଡ ଉପରକୁ ଚଢି ମହାଦେବଙ୍କ ମନ୍ଦିର ଚତୁର୍ପାର୍ଶ୍ୱରେ ବୁଲିଲେ ମୋକ୍ଷପ୍ରାପ୍ତି ହୁଏ ବୋଲି ଭକ୍ତଙ୍କ ବିଶ୍ୱାସ ରହିଛି । କିମ୍ବଦନ୍ତୀ ଅନୁସାରେ ଶବରମାନେ ଆଳୁ ଖୋଳୁଖୋଳୁ ସେମାନଙ୍କ ଅସ୍ତ୍ରରେ ଶିବଲିଙ୍ଗ କ୍ଷତାକ୍ତ ହୋଇ ପ୍ରବଳ ରକ୍ତସ୍ରାବ ହୋଇଥିଲା । ଏହାକୁ ଦେଖିବାପରେ ଶବରମାନେ ଭୟଭୀତ ହୋଇଯାଇଥିଲେ ଏବଂ ନିଜ ଗାଁକୁ ଫେରି ଯାଇଥିଲେ । ସେଠାରେ ମହାଦେବ ଥିବା କଥା ସେହି ରାତିରେ ଗ୍ରାମବାସୀଙ୍କୁ ସ୍ୱପ୍ନାଦେଶ ହେଲା । ଏହାପରେ ଗ୍ରାମବାସୀ ନୀଳକଣ୍ଠେଶ୍ୱରଙ୍କୁ ସେଠାରେ ପ୍ରତିଷ୍ଠା କରି ପୂଜା କଲେ । ବାର୍ହାଟିପୁରାରେ ପାଳନ ହେଉଥିବା ମକରମେଳା ଜିଲ୍ଲାର ସବୁଠୁ ପ୍ରାଚୀନ ଏବଂ ପ୍ରାୟ ଦେଢଶହ

ବର୍ଷ ଧରି ଏହା ପାଳନ କରାଯାଇ ଆସୁଛି । ଏହି ପୀଠରେ ମକର ବ୍ୟତୀତ ଧାନ ନୂଆଖିଆ, ଆମ୍ବ ନୂଆଖିଆ, ଗହ୍ମା ପୂନେଇଁ, ସାତପୁରୀ ଅମାବାସ୍ୟା, ମହାଶିବରାତ୍ରୀ ଆଦି ପର୍ବ ପାଳିତ ହୋଇଥାଏ । ଶ୍ରାବଣ ମାସରେ 'ବୋଲ୍ ବମ୍' ଭକ୍ତଙ୍କ ଜଳସ୍ନାନ, ସୋମବାର, ସଂକ୍ରାନ୍ତି ଓ ପୂର୍ଣ୍ଣିମାଦିନମାନଙ୍କରେ ଏଠାରେ ଭକ୍ତଙ୍କ ସମାବେଶ ଘଟିଥାଏ । ଏହି ମନ୍ଦିର ନିର୍ମାଣ ନେଇ କୌଣସି ଠୋସ୍ ପ୍ରମାଣ ନଥିଲେ ମଧ୍ୟ ଭଞ୍ଜ ରାଜବଂଶୀୟ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିବା ସ୍ଥାନୀୟ ଲୋକଙ୍କଠାରୁ ଶୁଣିବାକୁ ମିଳେ । ବିରାଟ ପାହାଡ ଉପରେ ଅବସ୍ଥିତ ଏହି ଶୈବ କ୍ଷେତ୍ରଟି ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ପାହାଡ ଉପରକୁ ଚଢି ତଳକୁ ଚାହିଁଲେ ସମଗ୍ର ବାର୍ହାଟିପୁରା ଅଞ୍ଚଳ ଅତୀବ ମନମୁଗ୍ଧକର ଲାଗିଥାଏ । ପାହାଡ ଉପରୁ ମନ୍ଦିର ବେଢାରୁ ଦୂରନ୍ତ ଦିଗ୍ବଳୟ ଓ ଗାଁ, ନଈ, ଧାନବିଲ ଦେଖିବାକୁ ଏଠାକୁ ବେଶି ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି ।

## ଝୁଂପୁରା ବ୍ଲକ୍‌ର ଅବହେଳିତ ସରାସିଂଗା ସିଦ୍ଧେଶ୍ୱର ମଠ

କେନ୍ଦୁଝର ସହରଠାରୁ ୨୫ କିଲୋମିଟର ତୁରୁମୁଙ୍ଗା ଦେଇ ୭ କିଲୋମିଟର ଗଲେ ଏହି ପୀଠଟି ପଡେ । ଏହାବ୍ୟତୀତ ଉଖୁଣ୍ଡାଠାରୁ ଏହି ପୀଠର ଦୂରତା ମାତ୍ର ୫ କିଲୋମିଟର ଅଟେ । ଝୁଂପୁରା ବ୍ଲକ୍‌ର ସରାସିଂଗାସ୍ଥିତ ଏହି ସିଦ୍ଧେଶ୍ୱର ମଠଟି ଅବହେଳିତ ଅବସ୍ଥାରେ ପଡି ରହିଛି । ପ୍ରାକୃତିକ ସୌନ୍ଦର୍ଯ୍ୟଭରା ପରିବେଶ ମଧ୍ୟରେ ରହିଛି ଏହି ଶାନ୍ତଶୀତଳ ସବୁଜିମାଭରା ଧାର୍ମିକ ପୀଠ । ଜିଲ୍ଲାର ଏକ ସୁନ୍ଦରତମ ପର୍ଯ୍ୟଟନ ସ୍ଥଳ ଓ ଧାର୍ମିକ ପୀଠ ଭାବେ ଝୁଂପୁରା ବ୍ଲକ୍‌ର ସରାସିଂଗାର ସିଦ୍ଧେଶ୍ୱର ମଠଟି ନିଜର ଏକ ନିଆରା ପରିଚୟ ସୃଷ୍ଟି କରିପାରିଛି । ପ୍ରତିବର୍ଷ ଏଠାକୁ ଜିଲ୍ଲା ତଥା ଜିଲ୍ଲା ବାହରୁ ହଜାର ହଜାର ସଂଖ୍ୟାରେ ପର୍ଯ୍ୟଟକ ଓ ଶ୍ରଦ୍ଧାଳୁମାନେ ଆସିଥାନ୍ତି । ସିଦ୍ଧେଶ୍ୱର ମଠର ମନୋରମ ପରିବେଶ ସହିତ ନିକଟରେ ଥିବା ପାହାଡରେ ପ୍ରାକୃତିକ ଗୁମ୍ଫା ତଥା ଏଠାକାର ସବୁଜ-ସୁନ୍ଦର ଶୋଭା ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ । କିନ୍ତୁ ଏହି ପ୍ରାକୃତିକ ଓ ଧାର୍ମିକ ପୀଠଟି ପ୍ରଶାସନିକ ଅବହେଳା ହେତୁ ପର୍ଯ୍ୟଟକଙ୍କ ଦୃଷ୍ଟି ଆଢୁଆଳରେ ରହିଯାଇଛି । ପ୍ରତିବର୍ଷ ପର୍ଯ୍ୟଟନ ଋତୁରେ ଦର୍ଶକ ଓ ପର୍ଯ୍ୟଟକମାନେ ଆସି ପାହାଡ ଗୁମ୍ଫା ବୁଲିବା ସହିତ ବଣ ଝରଣା, ସବୁଜ ଜଂଗଲକୁ ଉପଭୋଗ କରିବାର ମଜା ନେଇଥାନ୍ତି । ଏହି ସ୍ଥାନକୁ କେନ୍ଦୁଝର ଜିଲ୍ଲା ସମେତ ମୟୁରଭଞ୍ଜ, ସୁନ୍ଦରଗଡ, ଯାଜପୁର ଜିଲ୍ଲାର ହଜାର ହଜାର ଦର୍ଶକ ଓ ପର୍ଯ୍ୟଟକ ଆସିଥାନ୍ତି ।ସରାସିଂଗାରେ ଥିବା ପଥର ଗୁମ୍ଫା ତଥା ମଠ ବହୁ ପୁରାତନ ବୋଲି ବିଶ୍ୱାସ କରାଯାଏ । ଏହି ମଠର ପ୍ରବେଶ ଦ୍ୱାରରେ ଏକ ବିଶାଳ ପଥର ଗୁମ୍ଫା ରହିଛି । ଏହିପରି ଗୋଟିଏ ପରେ ଗୋଟିଏ, ଅନେକ ପଥର ଗୁମ୍ଫା ଅତିକ୍ରମ କରି ଗଲାପରେ ସିଦ୍ଧେଶ୍ୱରଙ୍କ ମଠ ପଡିଥାଏ । ସେହି ପଥର ଗୁମ୍ଫା ଓ ମଠରେ ଆଦି ଋଷିଶ୍ରଙ୍କ ରହୁଥିଲେ ଓ ସନ୍ନ୍ୟାସୀମାନେ ସେଠାରେ ସିଦ୍ଧି ଲାଭ

କରିଥିଲେ । ଏହି ସିଦ୍ଧ ଗୁମ୍ଫାକୁ ବୁଲି ଆସିଲେ ମାନସିକ ପୂରଣ ହୁଏ ବୋଲି ସ୍ଥାନୀୟ ଲୋକମାନେ ବିଶ୍ୱାସ କରନ୍ତି । ଏହି ମଠରେ ରହୁଥିବା ବୟୋଜ୍ୟେଷ୍ଠ ତତ୍ତ୍ୱାବଧାରକ ମଂଗୁଲୁ ମହାନ୍ତଙ୍କ କହିବା ଅନୁଯାୟୀ ବହୁ ବର୍ଷ ତଳେ ଭୀମସେନ ଗିରି ନାମକ ଜଣେ ବାବା ଏଠାରେ ରହୁଥିଲେ । ତାଙ୍କ ପରେପରେ ଏଠାରେ ଅନ୍ୟ ଜଣେ ବାବା କାଳନ୍ଦୀ ମହାନ୍ତ ରହୁଥିଲେ । ଏମାନଙ୍କ ଅନ୍ତେ ଏହି ମଠରେ ବର୍ତ୍ତମାନ ଆଉ କେହି ବାବା ନାହାନ୍ତି । ଫଳରେ ଏହି ଗୁମ୍ଫା ତଥା ମଠର ଦେଖାଶୁଣା କରିବାକୁ ଏବେ କେହି ନାହାନ୍ତି । ଫଳରେ ଏହି ସିଦ୍ଧ ମଠରେ ଥିବା ମନୋହର ଗୁମ୍ଫାଗୁଡିକ ଅବହେଳିତ ହୋଇ ପଡିଛି । ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଗୁମ୍ଫାଗୁଡିକ ଉପରେ ଗଛଲତା, ଚେର ମାଡିଯିବାରୁ ଏଗୁଡିକ ବିପନ୍ନ ହୋଇପଡିଛି । ବର୍ଷ ବର୍ଷ ଧରି ଅବହେଳିତ ହୋଇ ପଡିଥିବା ଏହି ମଠଟି ପୂର୍ବପରି ଶ୍ରଦ୍ଧାଳୁ ଓ ଦର୍ଶକମାନଙ୍କୁ ଆଉ ଆକୃଷ୍ଟ କରିପାରୁନାହିଁ ବୋଲି ମଙ୍ଗୁଲୁ କହନ୍ତି । ସିଦ୍ଧ ପଥର ଗୁମ୍ଫା ସହିତ ପଥରର ଯଜ୍ଞ ମଣ୍ଡପ, ଗୋଷେଇଶାଳ, ବଡ ବଡ ପଥର ଗୁମ୍ଫାରେ ଗଢା ହୋଇଥିବା ମୂର୍ତ୍ତି ଏବେ ମଧ୍ୟ ଆକର୍ଷଣୀୟ ହୋଇରହିଛି । ଏହି ପ୍ରାକୃତିକ ପର୍ଯ୍ୟଟନସ୍ଥଳ ପ୍ରତି ପ୍ରଶାସନ ଓ ସଂପୃକ୍ତ ବିଭାଗ ଦୃଷ୍ଟିଦେଲେ ପର୍ଯ୍ୟଟନର ବିକାଶ ହୋଇପାରିବ ଓ ସରାସିଂଗା ସିଦ୍ଧେଶ୍ୱର ମଠ ପୁଣି ବିଭିନ୍ନ ଅଞ୍ଚଳର ଲୋକମାନଙ୍କୁ ଆକର୍ଷିତ କରିପାରିବ ।

## ଢେଙ୍କିକୋଟର ବିଶ୍ୱନାଥ ଶିବ ମନ୍ଦିର



ଘଟଗାଁ ବ୍ଲକ୍ ଅନ୍ତର୍ଗତ ଢେଙ୍କିକୋଟ ବଜାରରେ ରହିଛି ମହାଦେବ ବିଶ୍ୱନାଥ ମନ୍ଦିର । ଏଠାରେ ମହାଶିବରାତ୍ରୀ, ଶୀତଳଷଷ୍ଠୀ ଯାତ୍ରା ଓ ମକର ସଂକ୍ରାନ୍ତି ଧୂମଧାମରେ ପାଳିତ ହୋଇଥାଏ । ପ୍ରତି ସୋମବାର ଓ ସଂକ୍ରାନ୍ତିରେ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ ।

## ପଳାସପଙ୍ଗାର ବାବା ଆଖଣ୍ଡଳମଣି

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ପଳାସପଙ୍ଗା ବଜାରରେ ରହିଛି ବାବା ଆଖଣ୍ଡଳମଣିଙ୍କର ଏକ ମନ୍ଦିର । ଏଠାରେ ମହାଶିବରାତ୍ରୀ, ଶୀତଳଷଷ୍ଠୀ ଯାତ୍ରା ଓ ମକର ସଂକ୍ରାନ୍ତି ଧୂମଧାମରେ ପାଳିତ



ହୋଇଥାଏ । ପ୍ରତି ସୋମବାର ଓ ସଂକ୍ରାନ୍ତିରେ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ ।

## ରାଇସୁଆଁର କାଳା ମହାଦେବ



କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ରାଇସୁଆଁରେ ରହିଛି ବାବା କାଳା ମହାଦେବଙ୍କର ଏକ ପ୍ରାଚୀନ ମନ୍ଦିର । ଏଠାରେ ମହାଶିବରାତ୍ରୀ, ଶୀତଳଷଷ୍ଠୀ ଯାତ୍ରା ଓ ମକର ସଂକ୍ରାନ୍ତି ଧୁମଧାମରେ ପାଳିତ ହୋଇଥାଏ । ପ୍ରତି ସୋମବାର ଓ ସଂକ୍ରାନ୍ତିରେ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ ।

## ଆନନ୍ଦପୁରର 'ଭାଲୁ ହୁଡି' ଓ ସ୍ୱପ୍ନେଶ୍ୱର ମହାଦେବ ପୀଠ

ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ କୋଳିମାଟି ପଞ୍ଚାୟତର କୁମଡ଼ ଗାଁରେ ରହିଛି ଏକ ମୁଣ୍ଡିଆ ପାହାଡ, ଯାହାକୁ ସ୍ଥାନୀୟ ଅଞ୍ଚଳରେ 'ଭାଲୁ ହୁଡି' ବୋଲି କହନ୍ତି । ଏହି ପାହାଡରେ ଅନେକ ଛୋଟଛୋଟ ପଥର ଖୋଲ ଓ ଗୁମ୍ଫା ରହିଛି । ସମ୍ଭବତଃ, ଏହି ପଥର ଖୋଲ ଓ ଗୁମ୍ଫାରେ ବହୁ ସଂଖ୍ୟାରେ ଭାଲୁ ରହୁଥିବାରୁ ଏହି ପାହାଡର ନାମ 'ଭାଲୁ ହୁଡି' ହୋଇଛି । ଏଠାରେ ବହୁ ସଂଖ୍ୟାରେ ଭାଲୁ ଦେଖା ଯାଆନ୍ତି । ଦିନ ବେଳା ମଧ୍ୟ ଏହି ପାହାଡ ଖୋଲରେ ଭାଲୁ ଦେଖା ଯାଆନ୍ତି ବୋଲି ସ୍ଥାନୀୟ ଲୋକେ କହନ୍ତି । ଭାଲୁ ହୁଡିରେ ମହାଦେବ ସ୍ୱପ୍ନେଶ୍ୱରଙ୍କ ପୀଠ ଅବସ୍ଥିତ । ଏଠାରେ





ମହାଦେବଙ୍କ ମନ୍ଦିର ନିର୍ମାଣ କରାଯାଇ ନଥିଲେ ମଧ୍ୟ ଏକ ପ୍ରାଚୀର ଘେରା ପରିବେଶ ମଧ୍ୟରେ ମହାଦେବ ପୂଜା ପାଆନ୍ତି । ଏଠାରେ ପ୍ରତିବର୍ଷ ମକର ମେଳା ଝାକଜମକରେ ପାଳିତ ହୋଇଥାଏ । ମକର ମେଳା ଅବସରରେ ପ୍ରତିବର୍ଷ ଆକର୍ଷଣୀୟ ଅପେରା ପାଙ୍କୁ ମୀନାବଜାର ଭକ୍ତମାନଙ୍କୁ ଆକୃଷ୍ଟ କରିଥାଏ । ପାଖାପାଖି ଗୋଟିଏ ସପ୍ତାହ ବ୍ୟାପୀ ମକର ମେଳା ଓ ଅପେରା ଚାଲେ । ଏଠାରେ ମଧ୍ୟ ମହାଶିବରାତ୍ରୀ ଧୁମ୍‌ଧାମରେ ପାଳିତ ହୋଇଥାଏ । ଏହାବ୍ୟତୀତ ପ୍ରତି ସୋମବାର ଓ ସଂକ୍ରାନ୍ତିରେ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ । ଏହି ଭାଲୁ ହୁଡି ପାହାଡର ପ୍ରାକୃତିକ ଶୋଭା ସବୁଠୁ ଆକର୍ଷଣୀୟ ଓ ମନମୁଗ୍‌ଧକର । ଏହି ପାହାଡ ଉପରକୁ ଚଢିବାକୁ ପାହାଚମାନ ତିଆରି କରାଯାଇଛି ।

## ଚଂପୁଆର ରାମ ମନ୍ଦିର


ଚଂପୁଆର ରାମ ମନ୍ଦିର

କେନ୍ଦୁଝର ଜିଲ୍ଲାର ଚଂପୁଆ ବଜାରରେ ପ୍ରସିଦ୍ଧ ରାମ ମନ୍ଦିର ରହିଛି । ପ୍ରତିବର୍ଷ ଶ୍ରୀରାମ ନବମୀ ଏଠାରେ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । କେନ୍ଦୁଝର ସମେତ ପଡୋଶୀ ଝାଡଖଣ୍ଡରୁ ବହୁ ସଂଖ୍ୟାରେ ଭକ୍ତମାନେ ଏଠାକୁ ଆସିଥାନ୍ତି । ଏହି ମନ୍ଦିରଟି ଚଂପୁଆ ମୁଖ୍ୟ ବଜାର ମଧ୍ୟରେ ରହିଥିବାରୁ ଏଠାକାର ପରିମଳ ବ୍ୟବସ୍ଥା ଅତ୍ୟନ୍ତ ବିପର୍ଯ୍ୟସ୍ତ । ଦୁର୍ଭାଗ୍ୟ, ଏହି ମନ୍ଦିର ସମ୍ମୁଖରେ ଏକ ବିଦେଶୀ ମଦ ଦୋକାନ ଥିବାରୁ ଏଠାରେ ସବୁ ସମୟରେ ମଦ୍ୟପଙ୍କ ଦୌରାତ୍ମ୍ୟ ବୃଦ୍ଧି ପାଇଥାଏ ।

## ବଡ଼ବିଲ ହନୁମାନ ମନ୍ଦିର ଓ ରାଇକା ଜଟେଶ୍ୱର ପୀଠ

କେନ୍ଦୁଝର ଜିଲ୍ଲାର ବଡ଼ବିଲ ସହରରେ ଏକ ପ୍ରାଚୀନ ହନୁମାନ ମନ୍ଦିର ରହିଛି । ୨୦୧୧ ମସିହାରେ ଏହି ମନ୍ଦିର ନିଜର ସୁବର୍ଣ୍ଣ ଜୟନ୍ତୀ ପାଳନ କରିଛି । ଏଠାରେ ବର୍ଷର ବିଭିନ୍ନ ସମୟରେ ଉତ୍ସବ ପାଳନ କରାଯାଇଥାଏ । ସେହିଭଳି ବଡ଼ବିଲଠାରୁ ମାତ୍ର ଆଠ କିଲୋମିଟର ଦୂର ରାଇକା ଗ୍ରାମର ଘଂଚ ଜଂଗଲରେ ବାବା ଜଟେଶ୍ୱରଙ୍କ ପୀଠ ଅବସ୍ଥିତ । ପାହାଡପର୍ବତ ଘେରା ଏହି ମନୋରମ ପୀଠରେ ଝରଣାଟିଏ ମଧ୍ୟ ବହି ଯାଇଛି । ପାହାଡର ଶହେ ଫୁଟ ତଳକୁ ଏକ ଜଳପ୍ରପାତ ତଳକୁ ଖସି ପଡୁଥିବାର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ପ୍ରତିବର୍ଷ ଶୀତ ଋତୁରେ ପର୍ଯ୍ୟଟକମାନେ ଏଠାକୁ ଆସି ଜଳପ୍ରପାତରେ ଗାଧୋଇବା ସହ ବଣଭୋଜିର ମଜା ଉଠାଇଥାନ୍ତି । ବଡ଼ବିଲ, ଠାକୁରାଣୀ, ଯୋଯାବାଲି, ବଳିତା, ଯୋଡା, ନାଲ୍‌ଦା ଅଞ୍ଚଳରୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଏଠାକୁ ନୂଆବର୍ଷରେ ପିକ୍‌ନିକ୍ କରିବାକୁ ଆସିଥାନ୍ତି ।

## ଝୁଂପୁରାର ଖଡ଼ିକୁଣ୍ଡ ଶୈବପୀଠ

ଝୁଂପୁରା ବ୍ଲକ୍‌ରେ ରହିଛି ପ୍ରକୃତିର ଅନ୍ୟତମ ମନୋରମ ପର୍ଯ୍ୟଟନସ୍ଥଳୀ 'ଖଡ଼ିକୁଣ୍ଡ' । ଝୁଂପୁରା ବ୍ଲକ୍ ଅନ୍ତର୍ଗତ କଟିଲୋପଣି ଗାଁରେ ପୁଣ୍ୟତୋୟା ଅରଡ଼େଇ ନଦୀରେ ରହିଛି ଏହି ପବିତ୍ର କୁଣ୍ଡ । ଅରଡେଇ ନଦୀ କୂଳରେ ମହାଦେବ ସ୍ୱପ୍ନେଶ୍ୱରଙ୍କ ଏକ ମନ୍ଦିର ରହିଛି । ଏଠାରେ ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ମକର ମେଳା ମହାସମାରୋହରେ ପାଳିତ ହୋଇଥାଏ ।


ଖଡ଼ିକୁଣ୍ଡ ଶୈବପୀଠ

ଏହି ମକର ମେଳାରେ ଶତାଧିକ ଶ୍ରଦ୍ଧାଳୁ ଅରତେଇ ନଦୀର ଏହି କୁଣ୍ଡରେ ପବିତ୍ର ବୁଡ଼ ପକାଇଥାନ୍ତି । ଏହାବ୍ୟତୀତ ଏଠାରେ ମହାଦେବ ପୀଠରେ ମହାଶିବରାତ୍ରୀ, ଶୀତଳଷଷ୍ଠୀ ଯାତ୍ରା, ସୋମବାର ଓ ସଂକ୍ରାନ୍ତିରେ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ ।

## ଚଂପୁଆ ବ୍ଲକ୍‌ର ଟାଙ୍ଗରବନ୍ତଳା ଶୈବ ପୀଠ

କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ଜାଲି ପଞ୍ଚାୟତରେ ରହିଛି ପ୍ରସିଦ୍ଧ ଟାଙ୍ଗରବନ୍ତଳା ପର୍ଯ୍ୟଟନସ୍ଥଳ । ଏକ ବିରାଟ ପ୍ରସ୍ତର ଶଯ୍ୟା ଏବଂ ଏଠାରେ ଥିବା ଏକ ଶିବ ମନ୍ଦିର, ଐଶ୍ୱରୀୟ



ପୁଷ୍କରିଣୀ: ଏ ସମସ୍ତଙ୍କ ସମାହାରକୁ ଟାଙ୍ଗରବନ୍ତଳା କୁହାଯାଏ । ଏକ ବିଶାଳକାୟ ପଥର ଚଟାଣ ଉପରେ ମହାଦେବ ଝାଡେଶ୍ୱରଙ୍କ ଏକ ମନ୍ଦିର ରହିଛି । ଏଠାରେ ଏକ ରହସ୍ୟମୟ ଐଶ୍ୱରୀୟ ପୁଷ୍କରିଣୀ ରହିଛି ଯାହା କି ବର୍ଷତମାମ୍ କେବେ ବି ଶୁଖି ନଥାଏ । ପଥର ଉପରେ ଟାଙ୍ଗରା ଭୂଇଁରେ ଥାଇ ମଧ୍ୟ ପୁଷ୍କରିଣୀଟି କେବେ ନ ଶୁଖିବା ଏ ଅଞ୍ଚଳବାସୀଙ୍କ ପାଇଁ ରହସ୍ୟ ହୋଇରହିଛି । ଏହାକୁ 'ଦେବକୁଣ୍ଡ' ବୋଲି କୁହାଯାଏ । ଏହି କୁଣ୍ଡର ପାଣିରେ ମହାଦେବଙ୍କ ଭୋଗ ଲାଗି ହୋଇଥାଏ । ଏହି ପୁଷ୍କରିଣୀକୁ ନେଇ ସ୍ଥାନୀୟ ଅଞ୍ଚଳରେ ନାନା ପ୍ରକାର ଲୋକବିଶ୍ୱାସ ରହିଛି । ତେବେ ଏଠାରେ ପ୍ରତିବର୍ଷ ମକର ମେଳା ମହା ଆଡମ୍ବର ସହକାରେ ପାଳନ କରାଯାଇଥାଏ । ମକର ମେଳା ଅବସରରେ



ଟାଙ୍ଗରବନ୍ଧଳାର ଦେବକୁଣ୍ଡ

ସ୍ଥାନୀୟ ଅଞ୍ଚଳର ଆଦିବାସୀ, କୁଡୁମୀ ସଂପ୍ରଦାୟରେ କନ୍ୟା ଦେଖା ପର୍ବ ମଧ୍ୟ ସଂପନ୍ନ ହୋଇଥାଏ । ମକର ମେଳାକୁ ଆସିଥିବା ଯୁବକ, ଯୁବତୀମାନେ ପରସ୍ପରକୁ ଚୟନ କରିଥାନ୍ତି । ଟାଙ୍ଗରବନ୍ଧଳାର ଝାଡେଶ୍ୱର ମହାଦେବଙ୍କୁ ନେଇ ଏକ କିମ୍ବଦନ୍ତୀ ରହିଛି । ଏହି ବିଶାଳ ପ୍ରସ୍ତର ଚଟାଣ ଉପରେ ପଡିଥିବା ଏକ ଗୋଲାକୃତି ପ୍ରସ୍ତର ଖଣ୍ଡ ଉପରେ କାଉମାନେ ବସି ତାକୁ ଖୁଂପିଖୁଂପି ଖଣ୍ଡିଆ କରିଦେଲେ । ଆଶ୍ଚର୍ଯ୍ୟର କଥା, କାଉମାନେ ଖୁଂପିବା ପରେ ଏହି ପଥରଖଣ୍ଡରୁ କ୍ଷୀର ବାହାରି ସମଗ୍ର ପ୍ରସ୍ତର ଚଟାଣରେ ଖେଳି ଯାଇଥିଲା । ଏହା ଦେଖି ଗାଈ ଜଗୁଆଳ ଆଶ୍ଚର୍ଯ୍ୟ ହୋଇଯାଇଥିଲା । ତେବେ ଗାଈ ଜଗୁଆଳଟି ଏହି ଘଟଣା ସଂପର୍କରେ ଗାଁରେ ପ୍ରଚାର କରିବା ପରେ ଏହା ଏକ ଶିବ ଲିଙ୍ଗ ବୋଲି ଜଣାପଡିଥିଲା । ଏହାପରେ ଗ୍ରାମବାସୀଙ୍କ ଉଦ୍ୟମରେ ଏହି ପ୍ରସ୍ତର ଚଟାଣ ଉପରେ ମହାପ୍ରଭୁ ଝାଡେଶ୍ୱରଙ୍କ ଲିଙ୍ଗ ସ୍ଥାପନ ହୋଇଥିଲା । ତେବେ କାଉ ଖୁଂପି ଖଣ୍ଡିଆ କରି ଦେଇଥିବାରୁ ମହାଦେବ ଝାଡେଶ୍ୱରଙ୍କ ଲିଙ୍ଗ ସାମାନ୍ୟ ଖଣ୍ଡିଆ ହୋଇଛି ବୋଲି ଏଠାକର ପୂଜକ ସରୋଜ ଚନ୍ଦ୍ର ତ୍ରିପାଠୀ ପ୍ରକାଶ କରନ୍ତି । ମହାଦେବଙ୍କ ଆବିର୍ଭାବ ହେବାର ବହୁ ଦିନ ପରେ ଏଠାକାର ଜଣେ ବଦାନ୍ୟ ବ୍ୟକ୍ତି ପ୍ରଫୁଲ ଘାଟୁଆରୀ ପ୍ରସ୍ତର ଚଟାଣ ଉପରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରିବା ସହ ମହାଦେବଙ୍କ ପୀଠର ବିକାଶ କରାଇଥିଲେ । ପ୍ରତିବର୍ଷ ଏଠାରେ ମକର ମେଳା ବ୍ୟତୀତ ପଣା ସଂକ୍ରାନ୍ତି, ମହାଶିବରାତ୍ରୀ, ଶୀତଳଷଷ୍ଠୀ ଯାତ୍ରା ଧୂମ୍‌ଧାମରେ ପାଳିତ ହୋଇଥାଏ । ଏହା ବ୍ୟତୀତ

ପ୍ରତି ସଂକ୍ରାନ୍ତି ଓ ସୋମବାର ଦିନ ଏଠାରେ ଭଣ୍ଡାରଣ୍ୟ ହୋଇଥାଏ ।

## ଚଂପୁଆ ବ୍ଲକ୍‌ର ରୂପା କୁଣ୍ଡ ଶୈବ ପୀଠ ଓ ମକର ମେଳା

ଚଂପୁଆ ବ୍ଲକ୍ ଅନ୍ତର୍ଗତ ଉଚବାଲି ପଞ୍ଚାୟତର କେମୁଣ୍ଡିଆରେ ବୈତରଣୀ ନଦୀ କୂଳରେ ରହିଛି ପବିତ୍ର ରୂପା କୁଣ୍ଡ ପର୍ଯ୍ୟଟନସ୍ଥଳ । ଏଠାରେ ବୈତରଣୀ ନଦୀର ଗଭୀରତା ସର୍ବାଧିକ ଏବଂ



ଜଳସ୍ରୋତ ଅଧିକ ପ୍ରଖର ବୋଲି ସ୍ଥାନୀୟ ଲୋକେ କହନ୍ତି । ବୈତରଣୀ ନଦୀ ମଧ୍ୟରେ ଏଠାରେ ଏକ ବିରାଟ ଗଣ୍ଡ *(gorge)* ରହିଛି । ଏହା ହିଁ ରୂପାକୁଣ୍ଡ । ଏହି ଗଣ୍ଡ ମଧ୍ୟରେ ପାଣି ଭିତରେ ରୂପା ନିର୍ମିତ ଏକ ମନ୍ଦିର ରହିଛି ବୋଲି ସ୍ଥାନୀୟ ଲୋକେ କହନ୍ତି । ଖରାଦିନେ ବୈତରଣୀ ନଦୀରେ ପାଣି କମି ଯାଇଥିବାବେଳେ ଗଣ୍ଡରେ ଧୀବରମାନେ ମାଛ ଧରିବାବେଳେ ପାଣି ଭିତରେ ଚକ୍‌ଚକ୍ କରୁଥିବା ଏହି ଧାତବ ମନ୍ଦିର ଦେଖାଯାଇଥାଏ ବୋଲି ଏଠାକାର ପୂଜକ ବିରଞ୍ଚି ନାରାୟଣ ମିଶ୍ର ଓ ଗଣେଶ୍ୱର ନାଏକ ପ୍ରକାଶ କରନ୍ତି । ଅପରପକ୍ଷେ, ଖରାଦିନେ ବୈତରଣୀର ଜଳ ସ୍ୱଚ୍ଛ ଓ ନିର୍ମଳ ହୋଇଯିବାରୁ ଗଣ୍ଡର ଗଭୀରତମ ପ୍ରଦେଶରେ ଥିବା ରୂପାର ମନ୍ଦିରଟିକୁ ସାଧାରଣ ଲୋକେ ମଧ୍ୟ ଦେଖିପାରନ୍ତି । ଏହା ସହିତ ସମୟ ସମୟରେ ଗଣ୍ଡ ମଧ୍ୟରେ ଏକ ବିଶାଳକାୟ ମାଛ ପହଁରୁଥିବାର ସ୍ଥାନୀୟ ଲୋକେ ଦେଖିଥିବା କଥା ଏଠାକାର ପୂଜକ କହନ୍ତି । ଏହି ମାଛଟି ଏକ



ବୈତରଣୀ ନଦୀର ରୂପାକୁଣ୍ଡରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି



ଦେବ ମାଛ ବୋଲି ପୂଜକଙ୍କ ମତ । ଗଣ୍ଡ ମଧ୍ୟରେ ଥିବା ଏହି ରୂପା ମନ୍ଦିର ବ୍ୟତୀତ ବୈତରଣୀ କୂଳରେ ମହାଦେବଙ୍କ ଏକ ମନ୍ଦିର ରହିଛି । ଏଠାରେ ପୂଜା ପାଉଛନ୍ତି ରୂପେଶ୍ୱର ମହାଦେବ । ଗତ ୧୯୮୬ ମସିହାରେ ଏଠାରେ ଏକ ମନ୍ଦିର ନିର୍ମାଣ କରାଯାଇଛି । ରୂପେଶ୍ୱର ମହାଦେବ ବୈତରଣୀ ନଦୀ ବାଲିରୁ ଆବିର୍ଭାବ ହୋଇଛନ୍ତି । ଜଣେ ଚାଷୀ ନଦୀ କୂଳରେ ଚାଷ କରୁଥିବାବେଳେ ମହାଦେବଙ୍କ ଲିଙ୍ଗରେ କୋଦାଳ ବାଜିଥିଲା । ଏହାପରେ ଚାଷୀଟି ମହାଦେବ ଜାଣିଲାପରେ ଗ୍ରାମବାସୀଙ୍କ ସହଯୋଗରେ ଏଠାରେ ଶିବ ଲିଂଗ ସ୍ଥାପନ କରାଯାଇ ପରେପରେ ମନ୍ଦିର ପ୍ରତିଷ୍ଠା କରାଯାଇଛି । ନିକଟରେ ପୁନାପୋଇ ଠାକୁରାଣୀଙ୍କ ଶାଳ ରହିଛି । ରୂପାକୁଣ୍ଡ ନିକଟରେ ବୈତରଣୀ ନଦୀ କୂଳରେ





ବୈତରଣୀ ନଦୀର ରୂପାକୁଣ୍ଡରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି

ଏକ ଘଞ୍ଚ ଶାଳ ବନାନୀ ରହିଛି । ଏଠାରେ ହାତୀ ଦେଖାଯାଆନ୍ତି । ଏହି ରୂପାକୁଣ୍ଡ ଅଞ୍ଚଳରୁ ବହୁ ପ୍ରଚୀନ ମୂର୍ତ୍ତି ସମେତ ପୁରାତନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର, କୃଷି ଉପକରଣ ଆଦି ଉଦ୍ଧାର କରାଯାଇଛି । ପାର୍ବତୀ, ବନଦୁର୍ଗା, ଗଣେଷ ଓ ଲକ୍ଷ୍ମୀଙ୍କର ବହୁ ପ୍ରାଚୀନ ମୂର୍ତ୍ତି ଏଠାରୁ ମିଳିଛି । ଏହି ମୂର୍ତ୍ତିଗୁଡିକ ବୌଦ୍ଧ କିମ୍ବା ଜୈନ ଧର୍ମର ତନ୍ତ୍ର ଦେବୀଙ୍କ ମୂର୍ତ୍ତି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ରୂପାକୁଣ୍ଡ ନିକଟରେ ଐତିହାସିକ ନନ୍ଦପୁର, ଅସନପାଟ, ରାମଲା ଆଦି ସ୍ଥାନ ଅବସ୍ଥିତ ଥିବାରୁ ଏ ଅଞ୍ଚଳ ବହୁ ପ୍ରାଚୀନ ବୋଲି ବିଶ୍ୱାସ କରାଯାଏ । ଏ ଅଞ୍ଚଳରୁ ଆଜିର ଦିନରେ ମଧ୍ୟ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଅବଶେଷ *(remains)* ମିଳିବାରେ ଲାଗିଛି ।

ରୂପାକୁଣ୍ଡଠାରେ ପ୍ରତିବର୍ଷ ମକର ମେଳା ମହାସମାରୋହରେ ପାଳିତ ହୋଇଥାଏ । ଏଠାରେ ମକର ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଏଠାରେ ମକର ମେଳାରେ ବୁଡ଼ ପକେଇଲେ ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ଶ୍ରଦ୍ଧାଳୁଙ୍କର ବିଶ୍ୱାସ ରହିଛି । ମକର ମେଳା ଅବସରରେ ଏଠାରେ ଦୋକାନବଜାର, ମେଳା, ମୀନାବଜାର ଓ ଆଦିବାସୀ ଯୁବକ, ଯୁବତୀଙ୍କ ମଧ୍ୟରେ ସାଥୀଚୟନ, ଅପେରା, ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ମକର ମେଳା ବ୍ୟତୀତ ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ ଓ ଶୀତଳ ଷଷ୍ଠୀ ଯାତ୍ରା ଧୁମ୍‌ଧାମରେ ପାଳିତ ହୋଇଥାଏ । ଏହି ମହାଦେବଙ୍କ ପୀଠରେ ପ୍ରତି ସଂକ୍ରାନ୍ତି ଓ ସୋମବାରରେ ମଧ୍ୟ ଶ୍ରଦ୍ଧାଳୁଙ୍କ ଭିଡ଼ ଜମିଥାଏ ।

## ଚଂପୁଆ ଉପଖଣ୍ଡର ପବିତ୍ର ରାମତୀର୍ଥ ଶୈବ ପୀଠ



**ରାମତୀର୍ଥ: ଝାଡଖଣ୍ଡ ସୀମାରେ ଥିବା ମହାଦେବ ମନ୍ଦିର**



ରାମତୀର୍ଥ ମକରମେଳାର ଦୃଶ୍ୟ

ଓଡ଼ିଶା ଓ ଝାଡଖଣ୍ଡ ସୀମାରେ ଚଂପୁଆ ଉପଖଣ୍ଡର ବୈତରଣୀ ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ରାମତୀର୍ଥ ପର୍ଯ୍ୟଟନସ୍ଥଳ । ଏଠାରେ ପ୍ରତିବର୍ଷ ମକରମେଳାରେ ଉଭୟ ଓଡ଼ିଶା ଓ ଝାଡଖଣ୍ଡରୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଚଂପୁଆ ବ୍ଲକ୍‌ର ଗୋଧୂଳି ଗାଁ ନିକଟରେ ବହିଯାଇଥିବା ବୈତରଣୀ ନଦୀ କୂଳରେ ଏହି ରାମତୀର୍ଥ ଅବସ୍ଥିତ । ଏଠାରେ ବୈତରଣୀ ନଦୀଟି ଓଡ଼ିଶା ଓ ଝାଡଖଣ୍ଡର ସୀମାକୁ ଚିହ୍ନିତ କରିଥାଏ । ବୈତରଣୀ ନଦୀ କୂଳରେ ଝାଡଖଣ୍ଡର ଦେଓଗାଁରେ ରାମତୀର୍ଥ ପର୍ଯ୍ୟଟନସ୍ଥଳୀକୁ ଲକ୍ଷାଧିକ ଭକ୍ତ ଆସୁଥିବାବେଳେ ଓଡ଼ିଶାର ଚଂପୁଆ ବ୍ଲକ୍‌ର ଗୋଧୂଳିର ରାମତୀର୍ଥ ପର୍ଯ୍ୟଟନ କ୍ଷେତ୍ରକୁ ମକର ସଂକ୍ରାନ୍ତିରେ ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ଝାଡଖଣ୍ଡ ରାଜ୍ୟ ପକ୍ଷରୁ ବୈତରଣୀ ନଦୀ କୂଳରେ ମହାଦେବ ରାମେଶ୍ୱରଙ୍କ ଏକ



ରାମତୀର୍ଥ: ଓଡ଼ିଶା ସୀମାରେ ଥିବା ଏକ ନିର୍ମିତ ମହାଦେବ ମନ୍ଦିର

ଆକର୍ଷଣୀୟ ମନ୍ଦିର ନିର୍ମାଣ କରାଯିବା ସହିତ ବୈତରଣୀ କୂଳରେ 'ରାମତୀର୍ଥ ଘାଟ' ନିର୍ମାଣ କରାଯାଇଛି । ଏଠାରେ ମଧ୍ୟ ଏକ ରାମ ମନ୍ଦିର, ଜଗନ୍ନାଥଙ୍କ ମନ୍ଦିର, ଦେବୀ ପାର୍ବତୀଙ୍କ ଏକ ଆକର୍ଷଣୀୟ ମନ୍ଦିର ପ୍ରତିଷ୍ଠା କରାଯାଇଛି । ଏଠାରେ ପ୍ରତିବର୍ଷ ଶ୍ରୀଗୁଣ୍ଡିଚା ଦିନ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ମାତ୍ର, ଝାଡଖଣ୍ଡ ଭଳି ଓଡ଼ିଶା ପାର୍ଶ୍ୱରେ ଏହି ପୀଠର ବିକାଶ ସମ୍ଭବପର ହୋଇପାରିନି । ଗୋଧୂଳି ଗ୍ରାମବାସୀଙ୍କ ସହଯୋଗରେ ବୈତରଣୀର ଚଂପୁଆ ପାର୍ଶ୍ୱରେ ଏକ ନୂତନ ଶିବ ମନ୍ଦିର ପ୍ରତିଷ୍ଠା କରାଯାଇଛି । ତେବେ ଅନ୍ୟାନ୍ୟ ଆନୁଷଙ୍ଗିକ ବିକାଶ ସମ୍ଭବପର ହୋଇନାହିଁ । ମାତ୍ର, ମକର ସଂକ୍ରାନ୍ତି ଦିନ ଏଠାକୁ ବୈତରଣୀରେ ବୁଡ଼ ପକେଇବାକୁ ଲକ୍ଷାଧିକ ଭକ୍ତ ଆସିଥାନ୍ତି । ମକର ସଂକ୍ରାନ୍ତି ଦିନ ଏଠାରେ ବୁଡ଼ ପକେଇଲେ ମୋକ୍ଷପ୍ରାପ୍ତ ହୋଇଥାଏ ବୋଲି ସ୍ଥାନୀୟ ଲୋକଙ୍କର ବିଶ୍ୱାସ ରହିଛି । ବୈତରଣୀ ନଦୀର ଏହି ରାମତୀର୍ଥ ଘାଟରେ ଝାଡଖଣ୍ଡ ସରକାରଙ୍କ ପକ୍ଷରୁ ଏବେ ଏକ ପୋଲ ନିର୍ମାଣ କାମ ଆରମ୍ଭ ହୋଇଛି । ଏହି ପୋଲ ନିର୍ମାଣ କାର୍ଯ୍ୟ ଶେଷ ହୋଇଗଲେ ଓଡ଼ିଶାର କେନ୍ଦୁଝର ଓ ଝାଡଖଣ୍ଡର ପଶ୍ଚିମ ସିଂହଭୂମ୍ ଜିଲ୍ଲାବାସୀଙ୍କ ମଧ୍ୟରେ ଯୋଗାଯୋଗ ସୁଗମ ହୋଇଯିବ । ତେବେ ଏଠାରେ ବୈତରଣୀ ନଦୀ ପଥୁରିଆ ଶଯ୍ୟାରୁ ପ୍ରବଳ ବେଗରେ ତଳକୁ ଖସି ପଡୁଥିବାରୁ ଏକ ଜଳପ୍ରପାତର ଭ୍ରମ ସୃଷ୍ଟି କରିଥାଏ । ଏଠାରେ ଏକ ହାଇଡ୍ରୋ ଇଲେକ୍ଟ୍ରିକ୍ ପ୍ରକଳ୍ପ ଆରମ୍ଭ କରାଯାଇଥିଲା । ମାତ୍ର, ସରକାରଙ୍କ ଆନ୍ତରିକତା ଅଭାବରୁ ଏହା ବନ୍ଦ ହୋଇପଡିଛି ।

## ମିରିଗସିଂଗା ଶୈବପୀଠ



ରିମୁଳିରୁ ଯୋଡା ମଧ୍ୟରେ ୨୧୫ ନମ୍ବର ଜାତୀୟ ରାଜପଥରେ ଏକ ଛକ ପଡିବ ଯାହାର ନାମ କଣ୍ଡରା । କଣ୍ଡରା ଛକରୁ ବାମ ପାର୍ଶ୍ୱକୁ ପାଞ୍ଚ କିଲୋମିଟର ଦୂର ଗଲେ ପଡିବ ଏହି ପର୍ଯ୍ୟଟନସ୍ଥଳ ମିରିଗସିଙ୍ଗା । ବୈତରଣୀ ନଦୀ କୂଳରେ ଅବସ୍ଥିତ ବହୁ ପୁରାତନ ଏହି ଶୈବପୀଠରେ ପ୍ରତିବର୍ଷ ମକର ମେଳା ମହା ସମାରୋହରେ ପାଳିତ ହୋଇଥାଏ । ଏହି ଶୈବପୀଠର ପାର୍ଶ୍ୱରେ ରହିଛି ବିଶାଳ ପ୍ରସ୍ତରଖଣ୍ଡ ଏବଂ ଏହି ପ୍ରସ୍ତର ଉପରେ ପ୍ରଭୁ ରାମଚନ୍ଦ୍ରଙ୍କ ପାଦ ଓ ଆଣ୍ଠୁ ଚିହ୍ନ ରହିଛି । ମକର ଦିନ ପୁଣ୍ୟତୋୟା ବୈତରଣୀରେ ବୁଡ ପକେଇ ଶ୍ରୀରାମଙ୍କ ପାଦ ଦର୍ଶନ ସହ ଶିବ ପୂଜା କଲେ ପୁଣ୍ୟ ମିଳେ ବୋଲି ବିଶ୍ୱାସ ରହିଛି । ଏଥିଯୋଗୁଁ ପ୍ରତିବର୍ଷ ମକର ମେଳାରେ ଏଠାରେ ଲୋକାରଣ୍ୟ ହୋଇଥାଏ । ଅନ୍ୟପକ୍ଷରେ ଏଠାକାର ବୈତରଣୀ ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଏହା ଗର୍ଭରେ ଥିବା ରାଶିରାଶି ପଥର ଶଯ୍ୟା ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଶୀତଦିନେ ଏଠାରେ ପିକ୍‌ନିକ୍ କରିବାକୁ ବହୁ ସଂଖ୍ୟାରେ ଲୋକେ ଏକତ୍ରିତ ହୋଇଥାନ୍ତି ଏବଂ ବଣଭୋଜିର ମଜା ନେଇଥାନ୍ତି ।

## ଆନନ୍ଦପୁରର ଦଧିବାମନଜୀଉ ମନ୍ଦିର



ଆନନ୍ଦପୁରର ଦଧିବାମନଜୀଉ ମନ୍ଦିରଟି ବହୁତ ପ୍ରାଚୀନ । ୧୩୧୬ ମସିହାରେ ତତ୍କାଳୀନ କେନ୍ଦୁଝର ରାଜା ଗୋପୀନାଥ ନାରାୟଣ ଭଞ୍ଜଙ୍କ ଦ୍ୱାରା ଏହି ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । ଏହି ମନ୍ଦିର ପାର୍ଶ୍ୱରେ ନବ ନିର୍ମିତ ଲକ୍ଷ୍ମୀ ମନ୍ଦିର ରହିଛି । ଏହା ବ୍ୟତୀତ ମହାଦେବ ପାତକେଶ୍ୱରଙ୍କ ଏକ ମନ୍ଦିର ରହିଛି । ମନ୍ଦିର ବେଢାରେ ଏକ ରାମ ମନ୍ଦିର, ରାଧାକୃଷ୍ଣ ମନ୍ଦିର ଏବଂ ଢେଂକା ଠାକୁରଙ୍କ ମନ୍ଦିର ରହିଛି । ଢେଂକା ମନ୍ଦିରଟି ଏକ ଜଗନ୍ନାଥ ମନ୍ଦିର । ଏହି ମୂର୍ତ୍ତି ଢେଂକାରୁ ଅଣାଯାଇ ଏଠାରେ ପ୍ରତିଷ୍ଠା କରାଯାଇଥିବାରୁ ଏହାକୁ ଢେଙ୍କା ମନ୍ଦିର କୁହାଯାଉଛି । ଦଧିବାମନଜୀଉଙ୍କ ମନ୍ଦିର ପରିସରରେ ପ୍ରତିବର୍ଷ ରଥଯାତ୍ରା ମହାସମାରୋହରେ ପାଳିତ ହୋଇଥାଏ । ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ରୀତିନୀତି ଅନୁସାରେ ଆନନ୍ଦପୁରର ଦଧିବାମନଜୀଉଙ୍କ ମନ୍ଦିରରେ ସମସ୍ତ ପୂଜାବିଧି ଅନୁଷ୍ଠିତ ହୋଇଥାଏ ।

କେନ୍ଦୁଝରର ବଳଦେବଜୀଙ୍କ ରଥଯାତ୍ରା ପରେପରେ ଆନନ୍ଦପୁରର ଦଧିବାମନଙ୍କ ରଥ ଯାତ୍ରା କେନ୍ଦୁଝର ଜିଲ୍ଲାର ଦ୍ୱିତୀୟ ବୃହତ୍ତମ ରଥଯାତ୍ରାର ମାନ୍ୟତା ହାସଲ କରିପାରିଛି ।

## ବଂଚୋର ଦଧିବାମନଜୀଉ ମନ୍ଦିର

ଆନନ୍ଦପୁର ଉପଖଣ୍ଡ ହାଟଡିହି ବ୍ଲକ୍‌ର ବଂଚୋଠାରେ ରହିଛି ଐତିହାସିକ ଦଧିବାମନଜୀଉ ମନ୍ଦିର ।



ମହାରାଜା ଗୋବିନ୍ଦ ଭଞ୍ଜ ଓଡ଼ିଶାର ଗଜପତି ମହାରାଜାଙ୍କଠାରୁ ବଞ୍ଚୋ ରାଜ୍ୟଟି ଉପହାର ସୂତ୍ରରେ ପାଇଥିଲେ । ଏହି ରାଜ୍ୟରେ ଆଠଗୋଟି ଗଡ଼ ରହିଥିଲା । ଏଣୁ ଏହାକୁ ଆଠଗଡ଼ ମଧ୍ୟ କୁହାଯାଇଥାଏ । ବଞ୍ଚୋ ରାଜ୍ୟର ଆନନ୍ଦପୁର ଥିଲା ଏକ ପ୍ରମୁଖ ଗ୍ରାମ ।  ରାଜା ଏଠାରେ ଏକ ରାଜ ନଅର ନିର୍ମାଣ କରାଇଥିଲେ । ରାଜା ଯେତେବେଳେ ଗସ୍ତ କରୁଥିଲେ ସେତେବେଳେ ଏହି ବଞ୍ଚୋ ରାଜପ୍ରାସାଦରେ ଅବସ୍ଥାନ କରୁଥିଲେ । ଏଠାରେ କିନ୍ତୁ କୌଣସି ଦେବ ମନ୍ଦିର ପ୍ରତିଷ୍ଠା ହୋଇ ନଥିଲା । କେନ୍ଦୁଝରଗଡ଼ ବ୍ୟତୀତ ରାଜା ଆନନ୍ଦପୁରକୁ ନିଜ ରାଜ୍ୟର ଦ୍ୱିତୀୟ ରାଜଧାନୀର ମାନ୍ୟତା ପ୍ରଦାନ କରିଥିଲେ । ସପ୍ତଦଶ ଶତାବ୍ଦୀରେ ଏହି ଗାଁରେ ତତ୍କାଳୀନ ରାଜାଙ୍କ ଦ୍ୱାରା ଦଧିବାମନଜୀଉଙ୍କ ବିଗ୍ରହ ପ୍ରତିଷ୍ଠା ସମ୍ଭବ ହୋଇଥିଲା. ମାତ୍ର ମନ୍ଦିର ନିର୍ମାଣ ହୋଇ ପାରି ନଥିଲା । ତେବେ ନିକଟରେ ସ୍ଥାନୀୟ ଗ୍ରାମବାସୀଙ୍କ ଉଦ୍ୟମରେ ଦଧିବାମନଜୀଉଙ୍କ ଏକ କାରୁକାର୍ଯ୍ୟପୂର୍ଣ୍ଣ କମନୀୟ ମନ୍ଦିର ନିର୍ମାଣ କରାଯାଇପାରିଛି । କେନ୍ଦୁଝରର ମହାରାଜା ଶ୍ରୀ ଶ୍ରୀ

ଲକ୍ଷ୍ମୀ ନାରାୟଣ ଭଞ୍ଜ (୧୬୫୪ରୁ ୧୬୮୮)ଙ୍କ ଦ୍ୱାରା କେନ୍ଦୁଝରରେ ବଳଦେବଜୀଉଙ୍କ ମନ୍ଦିର ନିର୍ମାଣ ହୋଇଥିଲା । ସେତେବେଳେ ରାଜା ବଂଚୋ ପାଟରୁ ପ୍ରଭୁ ବଳଦେବଙ୍କୁ ଆଣି କେନ୍ଦୁଝରରେ ସ୍ଥାପନ କରିଥିବା କଥା ଇତିହାସ କହେ । ସେହି ସମୟରେ ବଂଚୋବାସୀଙ୍କ ଅନୁରୋଧ ରକ୍ଷା କରି ତତ୍କାଳୀନ ରାଜା ବଳଦେବଜୀଉଙ୍କୁ ଆଣିବା ସହିତ ଦଧିବାମନଜୀଉଙ୍କୁ ସେଠାରେ ଛାଡିଦେଇ ଆସିଥିଲେ । ପରବର୍ତ୍ତୀ ସମୟରେ ରାଜା ଗଦାଧର ନାରାୟଣ ଭଂଜ (୧୮୩୯-୧୮୬୧) ଦଧିବାମନଜୀଉଙ୍କ ପୀଠର ବିକାଶ ପାଇଁ ବହୁ ଉଦ୍ୟମ କରିଥିଲେ । ମାତ୍ର ମନ୍ଦିର ନିର୍ମାଣ ସମ୍ଭବ ହୋଇ ପାରି ନଥିଲା । କେବଳ ବିଗ୍ରହ ପୂଜା ପାଇ ଆସୁଥିଲେ । ଗତ ୨୦୦୮ ମସିହାରେ ଗ୍ରାମବାସୀଙ୍କ ଦ୍ୱାରା ଏଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ ପାଇଁ ନିଷ୍ପତ୍ତି ନିଆଯାଇ ପରବର୍ତ୍ତୀ ସମୟରେ ଏଠାରେ ଏକ ନୂତନ ମନ୍ଦିର ନିର୍ମାଣ କରାଯାଇପାରିଛି । ୨୦୧୨ ମସିହା ଜାନୁୟାରୀ ୧୩ରୁ ୧୭ ତାରିଖ ମଧ୍ୟରେ ଏହି ଭବ୍ୟ ମନ୍ଦିରର ପ୍ରତିଷ୍ଠା ଉତ୍ସବ ପାଳନ କରାଯାଇଥିଲା । ଏହାବ୍ୟତୀତ ବଂଚୋ ଗ୍ରାମରେ ପୁରୁଣା ମୂକସାକ୍ଷୀ ଭାବେ ବଂଚୋ ଗ୍ରାମଦେବତୀ ମା' ବରାହୀଙ୍କ ବହୁ ପ୍ରାଚୀନ ମୂର୍ତ୍ତି ରହିଛି । ପୁଣି ମଧ୍ୟ ଏଠାରେ ବହୁ ପ୍ରାଚୀନ ଜୈନକୀର୍ତ୍ତି ଦେଖିବାକୁ ମିଳେ । ରାଜାରାଜୁଡା ଅମଳର ଐତିହାସିକ 'ମାତୁଆ ତୋଟା' ଏଠାକାର ଅନ୍ୟ ଏକ ପ୍ରମୁଖ ଆକର୍ଷଣ । ବଂଚୋ ଗ୍ରାମଟି ଇତିହାସ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ବଂଚୋ ଗ୍ରାମକୁ ନେଇ ତତ୍କାଳୀନ କେନ୍ଦୁଝର ରାଜା ଗଦାଧର ନାରାୟଣ ଭଞ୍ଜ (୧୮୩୯-୧୮୬୧) ନିଜର କାବ୍ୟରେ ଉଲ୍ଲେଖ କରିଥିବା ଏକ ପଙ୍‌କ୍ତି ନିମ୍ନରେ ପ୍ରଦାନ କରାଗଲା-

"ଏ କେନ୍ଦୁଝରୀ ରାଜ୍ୟେ ନିୟତ ବୃତ  
ବଞ୍ଚୋ ରାଜ୍ୟ ମିଳିଛି ଏହା ସଂଗତ  
ଏ ବେନି ରାଜ୍ୟ କେନ୍ଦୁଝରୀ ବୋଲାଇ  
ଉତ୍ର ଦେଶରେ ସାର ଅଟଇ ମହୀ ଯେ.."

ଏଣୁ ତତ୍କାଳୀନ କେନ୍ଦୁଝର ରାଜ୍ୟର ବଂଚୋ ଗ୍ରାମଟି ଐତିହାସିକ ଦୃଷ୍ଟିକୋଣରୁ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ଏବଂ ଏଠାରେ ବହୁ ପ୍ରାଚୀନ ପାରଂପରିକ, ଐତିହାସିକ ପ୍ରମାଣ ଦେଖିବାକୁ ମିଳିଥାଏ ।

## ମା' ନାଗପାଟ: ଚୋରି ଜିନିଷ ଫେରିପାଇବାର ଦେବୀ

ତେଲକୋଇ ବ୍ଲକ୍ ସଦରମହକୁମାଠାରେ ଥିବା ହାଲପୋଡି ଗ୍ରାମର ମା' ନାଗପାଟ ଠାକୁରାଣୀ ଏ ଅଞ୍ଚଳରେ ପ୍ରତ୍ୟକ୍ଷ ଦେବୀ ଭାବେ ପରିଚିତ । ବିଶ୍ୱାସ ଅଛି ମା'ଙ୍କ ନିକଟରେ ମାନସିକ କଲେ ହଜି ଯାଇଥିବା କିମ୍ବା ଚୋରି ହୋଇଯାଇଥିବା ଜିନିଷ ମିଳିଥାଏ । ଫଳରେ ଏଠାରେ ପ୍ରତିଦିନ ବହୁ

ସଂଖ୍ୟାରେ ଭକ୍ତଙ୍କ ସମାବେଶ ଘଟିଥାଏ । ମନ୍ଦିରକୁ ବିଶେଷକରି ପଡୋଶୀ ଜିଲ୍ଲା ଢେଙ୍କାନାଳ, ଅନୁଗୁଳ, ସମ୍ବଲପୁର, ଦେବଗଡ ଓ କେନ୍ଦୁଝର ଜିଲ୍ଲାର ଭକ୍ତମାନେ ଆସିଥାନ୍ତି । ମା' ନାଗପାଟ ଠାକୁରାଣୀ ମନ୍ଦିର ତେଲକୋଇ ସହରଠାରୁ ମାତ୍ର ଦୁଇ କିଲୋମିଟର ହାଲପୋଡି ଗାଁରେ ଅବସ୍ଥିତ । ଚୋରି ଜିନିଷ ମିଳିବା ନେଇ ଭକ୍ତମାନେ ମା'ଙ୍କ ନିକଟରେ ମାନସିକ ରଖନ୍ତି ଏବଂ ମା'ଙ୍କ କୃପାରୁ


ମା' ନାଗପାଟ ଠାକୁରାଣୀ ମନ୍ଦିର

ଚୋରି ଜିନିଷ ମିଳିଯାଏ ବୋଲି ଭକ୍ତମାନଙ୍କ ମନରେ ଦୃଢ଼ ବିଶ୍ୱାସ ରହିଛି । ୧୯୬୫ ମସିହାରେ ହାଲପୋଡି ଗ୍ରାମରେ ସଂଖ୍ୟାଧିକ ଲୋକଙ୍କର ସର୍ପାଘାତଜନିତ ମୃତ୍ୟୁ ଘଟିଥିଲା । ଗ୍ରାମବାସୀ ଭୟଭୀତ ହୋଇ ନାଗଦେବତାଙ୍କୁ ପୂଜାର୍ଚ୍ଚନା କରିବା ପରେ ଏହି ସମୟରେ ଗ୍ରାମର ଗଦାଧର ପ୍ରଧାନଙ୍କୁ ସ୍ୱପ୍ନାଦେଶ ହୋଇଥିଲା । ସ୍ୱପ୍ନାଦେଶ ଅନୁଯାୟୀ ଶ୍ରୀ ପ୍ରଧାନ ମା' ନାଗପାଟ ଠାକୁରାଣୀଙ୍କ ମନ୍ଦିର ଗ୍ରାମ ନିକଟସ୍ଥ ଜଙ୍ଗଲରେ ପ୍ରତିଷ୍ଠା କରି ଆଜି ପର୍ଯ୍ୟନ୍ତ ପୂଜକ ଭାବେ କାର୍ଯ୍ୟ କରୁଛନ୍ତି । ମା' ନାଗପାଟ ଠାକୁରାଣୀଙ୍କଠାରେ ଗୁରୁବାର ଦିନ ପୂଜାର୍ଚ୍ଚନା କରାଯାଇଥାଏ । ସେହିଦିନ କୁକୁଡା, ଛେଳି, ମେଣ୍ଢା ବଳି ଚଢାଯାଇ ଏହି ଭୋଗକୁ ଠାକୁରାଣୀଙ୍କ ନିକଟରେ ରୋଷେଇ କରି ଭକ୍ତମାନଙ୍କ ମଧ୍ୟରେ ବଣ୍ଟା ଯାଇଥାଏ । ଏହି ଭୋଗକୁ ମହିଳାମାନେ ଖାଇ ନ ଥାନ୍ତି ଏବଂ ଘରକୁ ନିଆଯାଇ ନଥାଏ ।

## ଗୋହିରାର ପତର ସଉରୁଣୀ ପୀଠ



ଘସିପୁରା ବ୍ଲକ୍ ଅନ୍ତର୍ଗତ ଗୋହିରା ନିକଟରେ ୨୧୫ ନମ୍ବର ଜାତୀୟ ରାଜପଥର ପାର୍ଶ୍ୱରେ ଏବଂ ବୈତରଣୀ ନଦୀ କୂଳରେ ରହିଛି ଏହି ପ୍ରସିଦ୍ଧ ପତର ସଉରୁଣୀ ପୀଠ । ଏଠାରେ ଦେବୀ ବନ ଦୁର୍ଗା

ପୂଜା ପାଇଥାନ୍ତି । ଏହି ପତର ସଉରୁଣୀ ବିଶେଷକରି ସ୍ଥାନୀୟ ବାଥୁଡି ସଂପ୍ରଦାୟ ଆଦିବାସୀଙ୍କ ଦେବୀ । ଏ ଅଞ୍ଚଳରେ ସଂଖ୍ୟାଗରିଷ୍ଠ ବାଥୁଡି ସଂପ୍ରଦାୟର ଆଦିବାସୀମାନେ ରହୁଥିବାରୁ ସେମାନେ ନିଜର ଗ୍ରାମ ଦେବୀ ବନ ଦୁର୍ଗାଙ୍କୁ ଏଠାରେ ଶାଳ ଗଛ ମୂଳେ ପ୍ରତିଷ୍ଠା କରି ପୂଜା କରୁଛନ୍ତି । ଏହା ନିକଟରେ ବଜରୀ ନାଳ ବହି ଯାଇଛି । ଏଠାରେ ପ୍ରତି ମଙ୍ଗଳବାର ଦିନ ପତର ସଉରୁଣୀଙ୍କୁ ପୂଜା କରାଯାଇଥାଏ । ପ୍ରତି ବର୍ଷ ଦୁର୍ଗାଷ୍ଟମୀ, ମକର ମେଳା ଧୁମ୍‌ଧାମରେ ପାଳିତ ହୋଇଥାଏ । ଅପରପକ୍ଷେ, ବୈତରଣୀ ନଦୀ କୂଳରେ ଏହି ପୀଠଟି ଏକ ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସ୍ଥାନରେ ଅବସ୍ଥିତ ହୋଇଥିବାରୁ ଜିଲ୍ଲା ତଥା ଜିଲ୍ଲା ବାହାରୁ ବହୁ ସଂଖ୍ୟାରେ ଭକ୍ତ ଓ ପର୍ଯ୍ୟଟକମାନେ ଆସିଥାନ୍ତି । ପିକ୍‌ନିକ୍ ପାଇଁ ଏହି ସ୍ଥାନଟି ଅତ୍ୟନ୍ତ ଅନୁକୂଳ । ପତର ସଉରୁଣୀ ଏ ଅଞ୍ଚଳର ପ୍ରତ୍ୟକ୍ଷ ଦେବୀ ବୋଲି ବାଥୁଡି ପୂଜକ ଭାବଗ୍ରାହୀ ନାଏକ ଓ ବାଥୁଡି ବୃଦ୍ଧ ମଧୁ ନାଏକ କହନ୍ତି । କେବଳ ବାଥୁଡିମାନେ ନୁହଁନ୍ତି ବରଂ ଅନ୍ୟ ସଂପ୍ରଦାୟର ଭକ୍ତମାନଙ୍କର ପ୍ରତ୍ୟକ୍ଷ ଦେବୀ ହେଉଛନ୍ତି ମା' ପତର ସଉରୁଣୀ ।

## ଆନନ୍ଦପୁରର ବରକୋଟି ପୀଠ



**ବରକୋଟୀ ଗୁମ୍ଫା ସନ୍ନିକଟ ଚନ୍ଦନେଶ୍ୱର ମହାଦେବ ମନ୍ଦିର**

ଆନନ୍ଦପୁର ସହରର ଉତ୍ତର ଦିଗକୁ ୯ କିଲୋମିଟର ଗଲେ ପଡିବ ପ୍ରକୃତିର ଏହି ଅଫୁରନ୍ତ ସୌନ୍ଦର୍ଯ୍ୟର ଗନ୍ତାଘର ବରକୋଟି ପାହାଡ । ଆନନ୍ଦପୁର ବ୍ଲକ୍ ଅନ୍ତର୍ଗତ ବାଉଁଶଗଡ ଗାଁର ପୀଠ



ଆମ୍ବଚୁଆର ବରକୋଟି ଗୁମ୍ଫା



ଦେବୀ ବରକୋଟିଙ୍କ ନାମାନୁସାରେ ଏହି ପାହାଡର ନାମକରଣ ସମ୍ଭବ ହୋଇଛି । ପାହାଡର ପାଦ ଦେଶରେ ମହାଦେବ ଚନ୍ଦନେଶ୍ୱରଙ୍କ ଏକ ଅତ୍ୟନ୍ତ ମନୋରମ ମନ୍ଦିର ରହିଛି । ପାହାଡର ଶୀର୍ଷ ଦେଶକୁ ବହୁ କଷ୍ଟ ସ୍ୱୀକାର କରି ଆରୋହଣ କରି ଗଲାପରେ ବରକୋଟିଙ୍କ ପୀଠ ପଡେ । ସେଠାରେ ଏକ ଗୁମ୍ଫା ମଧ୍ୟରେ ଦେବୀ ବରକୋଟି ପୂଜା ପାଉଛନ୍ତି । ଏଠାରେ ବହୁସଂଖ୍ୟାରେ ମହୁମାଛି ବସା ବାନ୍ଧି ରହିଥାନ୍ତି । କୁହାଯାଏ, ଯେଉଁ ଭକ୍ତ ନିର୍ମଳ ମନ ନେଇ ଠାକୁରାଣୀଙ୍କ ନିକଟକୁ ଯାଆନ୍ତି, ମହୁମାଛି ସେମାନଙ୍କର କିଛି ବି କ୍ଷତି କରି ନଥାନ୍ତି । ମାତ୍ର, ଅନେକ ସମୟରେ ମହୁମାଛି ଆକ୍ରମଣରେ ବହୁ ଭକ୍ତ ଆହତ ହୋଇଛନ୍ତି । ବରକୋଟି ପାହାଡର ପାଦଦେଶରେ ଆମ୍ବଚୁଆ ନାମରେ ଏକ ଝରଣା ବର୍ଷତମାମ୍ ପ୍ରବାହିତ ହୋଇଥାଏ । ଦୂରରୁ ଏହି ବରକୋଟି ପାହାଡଟି ଏକ ମନ୍ଦିରର ଭ୍ରମ ସୃଷ୍ଟି କରିଥାଏ । ଏହି ପାହାଡରେ ନାନା ପ୍ରକାର ଜଙ୍ଗଲୀ ଔଷଧୀୟ ବୃକ୍ଷ ରହିଥିବାରୁ ଏହାର ପବନ ମଣିଷ ଶରୀର ପାଇଁ ବହୁ ଉପଯୋଗୀ ହୋଇଥାଏ । ଏଣୁ ବର୍ଷର ବିଭିନ୍ନ ସମୟରେ ଔଷଧୀୟ ପବନ ସେବନ କରିବା ପାଇଁ ବହୁ ସଂଖ୍ୟାରେ ସ୍ଥାନୀୟ ଲୋକ ଏଠାକୁ ଆସିଥାନ୍ତି । ଏଠାରେ ପ୍ରତିବର୍ଷ ମକର ସଂକ୍ରାନ୍ତି ମହା ସମାରୋହରେ ପାଳିତ ହୋଇଥାଏ । ମକରମେଳାରେ ବହୁ ସଂଖ୍ୟାରେ ଭକ୍ତମାନଙ୍କ ସମାବେଶ ଘଟିଥାଏ । ବରକୋଟି ପାହାଡର ପାଦଦେଶରେ ଏକ ବିରାଟ ବିସ୍ମୟ ବୃକ୍ଷ ରହିଛି । ଏହା ଅର୍ଜୁନ ଓ କାଳିକେନ୍ଦୁର ସମାହାରରେ ସୃଷ୍ଟି ହୋଇଛି । ଏହି ବୃକ୍ଷ ତଳେ ଆମ୍ବଚୁଆ ଝରଣାଟି ପ୍ରବାହିତ ହୋଇଥାଏ । ବରକୋଟି ପାହାଡ ପାଦଦେଶରେ ବାଉଁଶଗଡ ଗ୍ରାମ ନିକଟରେ ଏକ ବିରାଟ ପୁଷ୍କରିଣୀ ରହିଛି । ରାଜାରାଜୁଡା ଅମଳର ଏହି ପୋଖରୀକୁ

'ରଜାବନ୍ଧ' କୁହାଯାଏ । ଏଠାରେ ଫୁଟିଥିବା କଇଁ ଓ ପଦ୍ମଫୁଲ ପର୍ଯ୍ୟଟକଙ୍କ ମନ ମୋହିଥାଏ । ବାଉଁଶଗଡ କେନ୍ଦୁଝର ରାଜାଙ୍କର ଅନ୍ୟତମ ଗଡ଼ । ରାଜା ଏଠାକୁ ଗ୍ରୀଷ୍ମ ଶିବିର ଉଦ୍ଦେଶ୍ୟରେ କିଛି ଦିନ ଅବସ୍ଥାନ କରିଥାନ୍ତି ବୋଲି ସ୍ଥାନୀୟ ଗ୍ରାମବାସୀ କହନ୍ତି ।

## ମଥୁରାମଣ୍ଡଳୀର ମା' ଟାଙ୍ଗରାଣିପାଟ ହୁଡ଼ି ଓ ପ୍ରସିଦ୍ଧ ମକର ମେଳା



କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ମଥୁରାମଣ୍ଡଳୀ ଗ୍ରାମରେ ଐତିହାସିକ ମା' ଟାଙ୍ଗରାଣୀ ପାଟ ପୀଠ ରହିଛି । ଏଠାରେ ପ୍ରତିବର୍ଷ ମକର ମେଳାରେ ହଜାର ହଜାର ସଂଖ୍ୟାରେ ଭକ୍ତଙ୍କ ସମାବେଶ ଘଟିଥାଏ । ଏକ ଅର୍ଦ୍ଧଗୋଲାକାର ବିଶାଳ ପଥର ଓ ଶିଆଳି ଲଟା ବେଷ୍ଟନୀ ମଧ୍ୟରେ ମା' ଟାଙ୍ଗରାଣିପାଟ ଦେବୀଙ୍କ ଆସ୍ଥାନ ରହିଛି । ଏହି ଅର୍ଦ୍ଧଗୋଲାକାର ପଥରରେ ମା'ଙ୍କ ନିକଟରେ ଦୁଇଟି ପଥର ଫାଟକ ରହିଛି । ଏହି ଫାଟକ ଦେଇ ମା'ଙ୍କୁ ଦର୍ଶନ କରିବା ପାଇଁ କେବଳ ନିଷ୍ପାପ ଲୋକମାନେ ଯାଇପାରନ୍ତି ବୋଲି ଲୋକବିଶ୍ୱାସ ରହିଛି । ଯେଉଁମାନେ ପଥର ମଧ୍ୟରେ ଅଟକି ରହିଯା'ନ୍ତି. ପରେ ଦେହୁରୀ ମା'ଙ୍କୁ ପୂଜା କରିବା ପରେ ସେ ପଥର ଫାଟକରୁ ମୁକ୍ତି ପାଇ ପାରନ୍ତି ବୋଲି ଲୋକବିଶ୍ୱାସ ରହିଛି । ପୂଜାସ୍ଥଳରେ ବହୁ ପ୍ରାଚୀନ କାଳରୁ ଏକ ଲୌହଦଣ୍ଡ ସ୍ଥାପନ କରାଯାଇଛି । ଏହାକୁ 'ଗ୍ରାମ ଥାନପତି ବେତ' କୁହାଯାଏ । ଗ୍ରାମ ଦେବୀଙ୍କୁ ଆଦିବାସୀ



ସଂସ୍କୃତିରେ 'ପାଟ' ବୋଲି ଉଲ୍ଲେଖ କରାଯାଇଥାଏ । ଟାଙ୍ଗରାଣୀ ପାଟ ହେଉଛନ୍ତି ଟାଙ୍ଗରାଣୀ ଠାକୁରାଣୀ । ଟାଙ୍ଗର ଶବ୍ଦର ଅର୍ଥ ପଥର । ଟାଙ୍ଗର ଶବ୍ଦରୁ ଟାଙ୍ଗରାଣୀ ହୋଇଛି । ଅର୍ଥାତ୍ ପଥରର ଦେବୀ ବା ଦେବତା । ମଥୁରାମଣ୍ଡଳୀର ଏହି ଟାଙ୍ଗରାଣୀ ପୀଠଟି ଅତ୍ୟନ୍ତ ମନୋରମ ପରିବେଶ ମଧ୍ୟରେ ଅବସ୍ଥିତ । ମା' ଟାଙ୍ଗରାଣୀ ପ୍ରତ୍ୟକ୍ଷ ଦେବୀ ଏବଂ ମା'ଙ୍କୁ ନିକଟରେ ଯିଏ ଯାହା ମନାସେ ତାହା ଲାଭ କରେ ବୋଲି ସ୍ଥାନୀୟ ଅଞ୍ଚଳରେ ଲୋକବିଶ୍ୱାସ ରହିଛି । ମା'ଙ୍କ ନିକଟରେ ଆତ୍ମଗୋପନ କରି ସ୍ୱାଧୀନତା ସଂଗ୍ରାମୀ ହରେକୃଷ୍ଣ ମହାନ୍ତ ସ୍ୱାଧୀନତା ଆନ୍ଦୋଳନରେ ବିଜୟଲାଭ କରିବାରୁ ଦେବୀଙ୍କ ନିକଟରେ ମହୁଲଡିହା, ମଥୁରାମଣ୍ଡଳୀ, କେନ୍ଦୁଆ, ଟାଙ୍ଗରାଣି, ଝାଡବେଲ୍ଦା, ବେଲପଣି ଆଦି ଗ୍ରାମ ପକ୍ଷରୁ ମିଳିତ ଭାବେ ପ୍ରତିବର୍ଷ ମକର ମହୋତ୍ସବ ପାଳନ କରାଯାଇଥାଏ । ଆଞ୍ଚଳିକ କୁଡୁମୀ ସଂପ୍ରଦାୟର ମହିଳାମାନେ ପ୍ରତିବର୍ଷ ଏହି ସ୍ଥାନରେ ଟୁସୁ ପ୍ରଦର୍ଶନ କରିଥାନ୍ତି । ମହୋତ୍ସବ ଅବସରରେ ଏଠାରେ ଅପେରା, ମୀନାବଜାର ଓ ଟୁସୁ ପ୍ରଦର୍ଶିତ ହୋଇଥାଏ ।

## ପ୍ରକୃତିର ବିସ୍ମୟ: 'ଖଣ୍ଡିଆଦେଉଳ'

କେନ୍ଦୁଝର ଜିଲ୍ଲାର ଘଟଗାଁ ଅଟେଇ ଜଙ୍ଗଲ ଭିତରେ ରହିଛି ଏହି ମନଲୋଭା ପ୍ରାକୃତିକ ପର୍ଯ୍ୟଟନସ୍ଥଳ 'ଖଣ୍ଡିଆଦେଉଳ' । 'ଗୁଣ୍ଡିଚାଘାଗି' ଜଳପ୍ରପାତର ଅଳ୍ପ ଆଗକୁ ମୂଷଳ ନଦୀର ପଥୁରିଆ ଶଯ୍ୟା ମଧ୍ୟରେ ରହିଛି ଏହି ଖଣ୍ଡିଆଦେଉଳ ପର୍ଯ୍ୟଟନସ୍ଥଳ । ଚିର ସବୁଜ ଜଙ୍ଗଲ ଓ ଛୋଟବଡ ସୁନ୍ଦର ପାହାଡ ମଧ୍ୟଦେଇ ଗଭୀର ଖରସ୍ରୋତା ମୂଷଳ ନଦୀ ବହିଯାଇଛି । ପାହାଡିଆ



ଇଲାକା ଦେଇ ନଦୀଟି ଗତି କରୁଥିବାବେଳେ ସଂକୀର୍ଣ୍ଣ ନଦୀ ଶଯ୍ୟାରେ ସୃଷ୍ଟି ହୋଇଛି ଅନେକ ଜଳପ୍ରପାତ । 'ଗୁଣ୍ଡିଚାଘାଗି'ଠାରୁ ଛଅ କିଲୋମିଟର ଦୂରରେ ରହିଛି ଖଣ୍ଡିଆଦେଉଳ । ଗୁଣ୍ଡିଚାଘାଗିଠାରୁ ଏହି ଛଅ କିଲୋମିଟର ପରିମିତ ମୁଷଳ ନଦୀ ଶଯ୍ୟା ଓ ଏହାର ସବୁଜ ଇଲାକାରେ ରହିଛି ସ୍ୱର୍ଗୀୟ ସୌନ୍ଦର୍ଯ୍ୟ । ମୁଷଳ ନଦୀ ବେଷ୍ଟିତ ପାହାଡରେ ରହିଛି ଆମ୍ବ, ପଣସ, କଦଳୀ ପରି ଫଳଗଛ ଏବଂ ବଣ ଅଂଳା, ହରିଡା, ବହାଡା ଆଦି ଅନେକ ଔଷଧୀୟ ବୃକ୍ଷ । ଏହା ସାଂଗକୁ ମୟୂର, ବଣକୁକୁଡାଠାରୁ ଆରମ୍ଭ କରି ରଂଗବେରଂଗର ଚଢେଇ, ଜାତି ଜାତିର ପ୍ରଜାପତି, ସରୀସୃପ ଏଠାରେ ଦେଖାଯାଆନ୍ତି ।


ଖଣ୍ଡିଆଦେଉଳ

ମା'ତାରିଣୀ ପୀଠ ଘଟଗାଁଠାରୁ ହରିଚନ୍ଦନପୁର ରାସ୍ତାରେ ଯାଇ ଗୁଣ୍ଡିଚାଘାଗୀ ଛକଠାରୁ ବାମକୁ ବଣଭିତର ରାସ୍ତା ଦେଇ ଗଲେ ପଡିବ ବଣଚକୁଳିଆ ଗ୍ରାମ । ସେଠାରୁ ପାଦଚଲା ରାସ୍ତାରେ ପାଞ୍ଚ କିଲୋମିଟର ଗଲେ ପଡିବ

ଖଣ୍ଡିଆ ଦେଉଳ । ତେବେ ଘଟଗାଁଠାରୁ ମାତ୍ର ୧୨ କିଲୋମିଟ ଦୂରରେ ଏହି ସ୍ଥାନଟି ଅବସ୍ଥିତ, ମାତ୍ର ରାସ୍ତା ନଥିବାରୁ ଏଠାରେ ପହଞ୍ଚିବା ପର୍ଯ୍ୟଟକଙ୍କ ପାଇଁ କଷ୍ଟକର ହୋଇଥାଏ ।

ଖଣ୍ଡିଆଦେଉଳ ପ୍ରାକୃତିକ ପର୍ଯ୍ୟଟନସ୍ଥଳଟି ବର୍ଷର ସବୁ ସମୟରେ ସୁଖଦ ଅନୁଭୂତି ପ୍ରଦାନ କରିଥାଏ । ଖରାଦିନେ ଏହା ଏକ ଶୈଳନିବାସ ଭଳି ମନେ ହୋଇଥାଏ । ନଦୀର ସ୍ରୋତ ପାହାଡ ପଥରକୁ କାଟି ୩୦୦ ଫୁଟ ତଳେ ପ୍ରବାହିତ । ନଦୀଧାରରେ ପାହଡ ତୀଖ । ଗଭୀର ନଦୀ ଧାରରେ ରହିଛି ବିଭିନ୍ନ ରଂଗର ପାଣିଥିବା କୁଣ୍ଡ(ଦହ) । ଏହି କୁଣ୍ଡଗୁଡିକ ଏଠାକାର ବିଶେଷତ୍ୱ । ଏଠାକାର ପଥୁରିଆ ନଦୀଶଯ୍ୟା ଓ ଭୂମିରୂପକୁ ଦେଖିଲେ ଦେହ ଶୀତେଇ ଉଠେ । ପଥୁରିଆ ଶଯ୍ୟା ନେଇ ମୂଷଳ ନଦୀ କୁଳୁକୁଳୁ ନାଦ କରି ବହି ଯାଉଥାଏ । ନଦୀର ଉଭୟ ପାର୍ଶ୍ୱରେ ଥିବା ଚିରହରିତ୍ ଘଞ୍ଚ ଜଙ୍ଗଲ ଓ ରାଶିରାଶି ପାହାଡ ଦର୍ଶକଙ୍କୁ ଆନମନା କରିଦିଏ । ବର୍ଷାଦିନେ ଏହି ସ୍ଥାନକୁ ଯିବା କଷ୍ଟକର ହୋଇପଡେ । କିନ୍ତୁ ଏହି ଦୁଃସାହସିକ ଯାତ୍ରାରେ ଆପଣ ପାଇପାରିବେ ଅଫୁରନ୍ତ ଶିହରଣ ଓ ଅଭିନବ ପୁଲକ । ପ୍ରକୃତିର ଏହି ଛାୟା ଜାଲରେ ଛନ୍ଦି ହୋଇ ଆପଣ ଶୁଣିପାରିବେ ଚଢେଇମାନଙ୍କ କିଚିରିମିଚିରି ଗୀତ ଓ ଧୀର ପବନର ସଂଗୀତ । ଏହା ସହିତ ଆପଣ ଏଠାରେ ଅନୁଭବ କରିପାରିବେ ଆକାଶରେ ଭାସୁଥିବା ମେଘମାଳା ଓ ଜଙ୍ଗଲରେ ମୟୁରର ନୃତ୍ୟ । ଆଉ ମଧ୍ୟ ଅଟେଇ ଜଙ୍ଗଲର ଏଇ ଖଣ୍ଡିଆ ଦେଉଳ ସଂରକ୍ଷିତ ଜଙ୍ଗଲ ହେଉଛି ହାତୀମାନଙ୍କ ବାସସ୍ଥାନ । ଏଠାରେ ହାତୀମାନଙ୍କ ଉପସ୍ଥିତି ଥିବାରୁ ପର୍ଯ୍ୟଟକଙ୍କୁ ଏଥିନେଇ ସତର୍କ ରହିବାକୁ ପଡିବ ।

ଲୋକକଥା ଓ କିମ୍ବଦନ୍ତୀ ଅନୁସାରେ ଗଭୀର ମୂଷଳ ନଦୀର ୨୦୦ ଫୁଟର ପଥର କାଛକୁ ଲାଗି ଏକ ବିଷ୍ଣୁମନ୍ଦିର ନିର୍ମାଣ ଚାଲିଥିଲା । ତ୍ରେତୟା ଯୁଗର ଅଯୋଧ୍ୟାର ରାଜା ରାମଚନ୍ଦ୍ର ଏହି ବନସ୍ତରେ କିଛି ଦିନ ଅବସ୍ଥାନ କରିଥିଲେ । ରାମଚନ୍ଦ୍ର ହନୁମାନ ସହିତ ଚୂନାସୁର ଓ ଶଙ୍ଖାସୁରକୁ ବଧ କରି ଏହି ବନାଞ୍ଚଳର ବାନର, ଭାଲୁମାନଙ୍କ ପ୍ରିୟ ହୋଇପାରିଥିଲେ । ତେବେ ଏହି ମନ୍ଦିର ନିର୍ମାଣ ଶୈଳୀରେ କିଛି ତ୍ରୁଟି ରହିଯିବା କାରଣରୁ ରାତି ପାହିବା ପୂର୍ବରୁ ଏହି ମନ୍ଦିର ନିର୍ମାଣ କାମ ଶେଷ ହୋଇ ପାରି ନଥିଲା । ରାତି ପାହିଯିବାରୁ ମନ୍ଦିରର ନିର୍ମାଣ କାର୍ଯ୍ୟ ବନ୍ଦ ରହିଥିଲା । ଏଣୁ ଏହା ଦରଖଣ୍ଡିଆ ଅବସ୍ଥାରେ ରହିଗଲା ବୋଲି ସ୍ଥାନୀୟ ଅଞ୍ଚଳର ଲୋକମାନଙ୍କଠାରୁ ଶୁଣିବାକୁ ମିଳେ । ଏବେ ମୂଷଳ ବି ନଦୀର ଏକ ପଥର କାଛରେ ଅସଂପୂର୍ଣ୍ଣ ମନ୍ଦିର ଆକୃତିର ଏକ ବିଶାଳ ପଥର ଖଣ୍ଡ ଝୁଲି ରହିଛି । ତେଣୁ ଏହାକୁ ସ୍ଥାନୀୟ ଅଞ୍ଚଳରେ 'ଖଣ୍ଡିଆ ଦେଉଳ' ବୋଲି କହିଥାନ୍ତି ।

ଏହି ପ୍ରାକୃତିକ ପର୍ଯ୍ୟଟନ ସ୍ଥଳର ସୁରକ୍ଷା ଓ ବିକାଶ ପାଇଁ 'ଗୁଣ୍ଡିଚାଘାଗୀ ଉନ୍ନୟନ ସମାଜ' ସହି 'ଖଣ୍ଡିଆ ଦେଉଳ ସୁରକ୍ଷା ମଞ୍ଚ' କାର୍ଯ୍ୟ କରୁଅଛି ।

## ଭାଲୁଘର ଗୁମ୍ଫା



କେନ୍ଦୁଝର ଜିଲ୍ଲାର ଅନ୍ୟତମ ସୁନ୍ଦରତମ ପ୍ରାକୃତିକ ପର୍ଯ୍ୟଟନ ସ୍ଥଳ ହେଉଛି ଭାଲୁଘର ଗୁମ୍ଫା । କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ତିମ୍ବୋ ପଞ୍ଚାୟତର ଚକ ଗ୍ରାମ ନିକଟରେ ଥିବା ପାହାଡ ଭିତରେ ରହିଛି ପ୍ରସିଦ୍ଧ ଏହି ଭାଲୁଘର ଗୁମ୍ଫା । ପ୍ରତିବର୍ଷ ମକର ସଂକ୍ରାନ୍ତିରେ ଏଠାରେ ବଡ଼ ଧରଣର ମେଳା ଅନୁଷ୍ଠିତ ହୋଇଥାଏ ଏବଂ ଏହା ପାଞ୍ଚ ଦିନ ଧରି ଚାଲିଥାଏ । ଏହି ଗୁମ୍ଫାକୁ ସ୍ଥାନୀୟ ଅଞ୍ଚଳରେ 'ଅନନ୍ତ ଗୁମ୍ଫା' ବୋଲି କହିଥାନ୍ତି । ଆଉ କିଛି ଏହାକୁ 'ଯୋଗୀ ଗୁମ୍ଫା' ମଧ୍ୟ କହିଥାନ୍ତି । ଅପରପକ୍ଷେ, ବହୁବର୍ଷ ତଳେ ଏହି ଗୁମ୍ଫାରେ ଭାଲୁମାନେ ରହୁଥିବାରୁ ଏହାକୁ ବୋଧହୁଏ 'ଭାଲୁଘର ଗୁମ୍ଫା' ବୋଲି କୁହାଯାଉଛି । ପରେ ସାଧୁସନ୍ଥମାନେ ଏହି ଗୁମ୍ଫାରେ ରହି ତପସ୍ୟା କରିବା ଆରମ୍ଭ କରିବା ସହ ଏହା ଏକ ଉପାସନା ସ୍ଥଳ ପାଲଟିଯାଇଛି । ଏହି ଗୁମ୍ଫାରେ ପ୍ରଥମେ ପୂର୍ଣ୍ଣଚନ୍ଦ୍ର ବାବା ନାମଧାରୀ ଜଣେ ସନ୍ଥ ତପସ୍ୟା କରୁଥିଲେ । ସେ ସବୁବେଳେ ଗୁମ୍ଫା ମଧ୍ୟରେ ଏକ ବିରାଟ ବୋଡା ସାପ ଉପରେ ମୁଣ୍ଡ ରଖି ଶୟନ କରୁଥିଲେ ବୋଲି ସ୍ଥାନୀୟ ଅଞ୍ଚଳର ଲୋକେ କହନ୍ତି । ଏହାଙ୍କ ପରେ ଲାଲ୍ ମୋହନ ବାବା ଏଠାରେ ରହି ଧ୍ୟାନତପ କରୁଥିଲେ । ଗୁମ୍ଫା ନିକଟରେ ବର୍ତ୍ତମାନ ବହୁ ସଂଖ୍ୟାରେ ଫୁଲ ଓ ଫଳ ଗଛ ରୋପଣ କରାଯାଇ ପାରିଥିବାରୁ ଏହାର ସୌନ୍ଦର୍ଯ୍ୟ ବହୁମାତ୍ରାରେ ବୃଦ୍ଧି ପାଇଛି । ଏହି ଗୁମ୍ଫା ନିକଟରେ ଏକ ଶିବ ମନ୍ଦିର ପ୍ରତିଷ୍ଠ

କରାଯାଇଛି । ମକର ସଂକ୍ରାନ୍ତି ମେଳା ସମୟରେ ଏହି ଗୁମ୍ଫାଟି ଅଧିକ ଚଳଚଞ୍ଚଳ ହୋଇଉଠିଥାଏ । ହଜାରହଜାର ସଂଖ୍ୟାରେ ଭକ୍ତଙ୍କ ସମାବେଶରେ ପରିବେଶ ବେଶ୍ କୋଳାହଳପୂର୍ଣ୍ଣ ହୋଇପଡିଥାଏ । ଗୁମ୍ଫାରେ ପ୍ରତି ସନ୍ଧ୍ୟାରେ ଆଦିବାସୀଙ୍କ ହାଣ୍ଡିଆ ହାଟ ବସିଥାଏ ଏବଂ ନୃତ୍ୟଗୀତର ଆସର ଜମିଥାଏ । ଭାଲୁଘର ଗୁମ୍ଫାଟିର ପ୍ରାକୃତିକ ଶୋଭାରାଜି ବେଶ୍ ଚିତ୍ତାକର୍ଷକ । ଏଠାରେ ରାଶି ରାଶି ପାହାଡର ମେଳା ସାଙ୍ଗକୁ ଘଞ୍ଚ ସବୁଜ ଶାଳ ଜଙ୍ଗଲର ହାଟ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ ।

## ଧାନବେଣୀର ମହିମା ଗାଦି ଓ ଶୂନ୍ୟମନ୍ଦିର



ପ୍ରଚାର ଓ ପ୍ରସାର ଅଭାବରୁ କେନ୍ଦୁଝର ସହରଠାରୁ ମାତ୍ର ୧୨ କିଲୋମିଟର ଦୂର ପାଟଣା ବ୍ଲକ୍‌ର ଖିରେଇଟାଂଗିରି ନିକଟରେ ଥିବା ଧାନବେଣୀ ମହିମା ଗାଦି ଓ ଶୂନ୍ୟମନ୍ଦିରଟି ପର୍ଯ୍ୟଟକଙ୍କ ଦୃଷ୍ଟି ଆଢୁଆଳରେ ରହିଛି । କଇଁ ଫୁଲ ଆକୃତିରେ ନିର୍ମିତ ଏହି ଶୂନ୍ୟ ମନ୍ଦିରଟି ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଭଗ୍ନ ଓ ଜରାଜୀର୍ଣ୍ଣ ଅବସ୍ଥାରେ ପଡି ରହିଛି । ଘଞ୍ଚ ଜଂଗଲ ପରିବେଷ୍ଟିତ ବିଶାଳକାୟ ପଥର ଚଟାଣ ଉପରେ ରହିଛି ମହିମା ଧର୍ମର ଏହି ଶୂନ୍ୟମନ୍ଦିର । ଢେଂକାନାଳ ଜିଲ୍ଲାର ଯୋରନ୍ଦା ମହିମା ପୀଠ ପରେ ଏହା ଦ୍ୱିତୀୟ ମହିମା ଗାଦି ବୋଲି କୁହାଯାଉଛି । ଏହି ମଠଟି କେବେ ପ୍ରତିଷ୍ଠା କରାଯାଇଥିଲା, ସେଥିନେଇ ଇତିହାସ ନିରବ ।  ଯୋରନ୍ଦା ମଠରେ ସାଧୁ ସଦ୍ଗୁମଣି ଦାସ ଏଠାକୁ





ଆସି ଏଠାରେ ସାଧନା କରିବା ସହିତ ପୀଠଟିକୁ ଲୋକଲୋଚନକୁ ଆଣି ପାରିଥିଲେ । ତାଙ୍କ ପରେ ସାଧୁ ଶଂକର ଦାସ ପୀଠର ଦାୟିତ୍ୱ ବୁଝିଥିଲେ । ତେବେ କୌଣସି କାରଣରୁ ସାଧୁ ଶଂକର ଦାସ ଏଠାରୁ ଅର୍ନ୍ତଧ୍ୟାନ ହୋଇଯିବା ପରେ ତାଙ୍କ ସ୍ମୃତିରେ ଏଠାରେ ଏକ ସମାଧି ସ୍ଥାପନ କରାଯାଇଥିଲା । ତେବେ ଶ୍ରଦ୍ଧା ଓ ଶାନ୍ତିର ମହିମାକୁ ପ୍ରଚାର କରିଆସୁଥିବା ଏହି ମହିମା ସନ୍ଥଙ୍କ ମଠଟି ଏବେ ଅବହେଳିତ ହୋଇପଡିଛି । କେନ୍ଦୁଝର ସହର ଦେଇ ମୟୂରଭଞ୍ଜ ଜିଲ୍ଲା ଅଭିମୁଖେ ୪୯ ନମ୍ବର ଜାତୀୟ ରାଜପଥର ଏକ ପାର୍ଶ୍ୱରେ ଏହି ମଠଟି ଅବସ୍ଥିତ । ପ୍ରାୟ ୭୨ ଏକର ପରିମିତ ଜମି ଉପରେ ଏକ ବିଶାଳ ପଥର ଉପରେ ଥିବା ଏହି ପୀଠଟି କେନ୍ଦୁଝରର ଅନ୍ୟତମ ପ୍ରାଚୀନତମ କ୍ଷେତ୍ର ବୋଲି କୁହାଯାଉଛି । ସବୁଠୁ ବଡ଼ କଥା, ଢେଂକାନାଳର ପବିତ୍ର ପୀଠ ଯୋରନ୍ଦାରେ ମଧ୍ୟ କେନ୍ଦୁଝରର ଧାନବେଣୀ ମଠର ପ୍ରାଚୀନତା ସଂପର୍କରେ ଉଲ୍ଲେଖ ରହିଛି । ମହିମା ଧର୍ମର ୬୪ ଜଣ ସିଦ୍ଧ ପୁରୁଷଙ୍କ ମଧ୍ୟରେ ଅନ୍ୟତମ ସାଧୁ ଶଙ୍କର ଦାସଙ୍କ ସମାଧି ଏଠାରେ ରହିଛି । ଏହାସହିତ ଅନ୍ୟ ସାଧୁସନ୍ଥଙ୍କ ସମାଧି, ଶୂନ୍ୟ ମନ୍ଦିର, ଧ୍ୱନି ମନ୍ଦିର, ହାତୀଗୁମ୍ଫା, ଅନନ୍ତ ଗୁମ୍ଫା, ସର୍ପ ମନ୍ଦିର, ବାବା ମଠ ଆଦି ଏଠାରେ ରହିଛି । ଏହି ଶୂନ୍ୟ ମନ୍ଦିର ପରିସରରେ 'ମୃତ୍ୟୁ ସଂଜୀବନୀ ଗୁଳ୍ମ', ବିଶଲ୍ୟକରଣୀ ଓ ଅନ୍ୟାନ୍ୟ ବହୁ ଦରକାରୀ ଔଷଧୀୟ ବୃକ୍ଷଲତାର ଏକ ଅନୁପମ ଉଦ୍ୟାନ ରହିଛି । ପାହାଡ ଉପରେ ଏକ ଆକର୍ଷଣୀୟ ଜଳକୁଣ୍ଡ ରହିଛି ଯାହାର ଜଳ ଗ୍ରୀଷ୍ମଦିନେ ମଧ୍ୟ ଶୁଖେନାହିଁ । ସେହି ଜଳରେ ସବୁ ଋତୁରେ ନୀଳ କମଳ ଓ କଇଁ ଫୁଲ ଫୁଟିଥାଏ । ଏଠାରେ ଏକ ବିରାଟ ସୁଡ଼ଙ୍ଗ ରହିଛି, ଏହି ସୁଡ଼ଙ୍ଗ ଦେଇ ସାଧୁ ଶଂକର ଦାସ ଅନ୍ତର୍ଧାନ ହୋଇଯିବା କଥା ସ୍ଥାନୀୟ ଲୋକେ କୁହନ୍ତି । ପ୍ରତି ମାଘ ପୂର୍ଣ୍ଣମୀରେ ଧାନବେଣୀ ମଠ ପରିସରରେ ତିନିଦିନ ଧରି ମେଳା ବସେ । ରାଜ୍ୟ ଓ ରାଜ୍ୟ ବାହାରୁ ଶହ ଶହ

ସନ୍ନ୍ୟାସୀ ଆସିଥାନ୍ତି । ସ୍ଥାନୀୟ ଜନସାଧାରଣଙ୍କ ସମେତ ଜିଲ୍ଲାର ବିଭିନ୍ନ ପ୍ରାନ୍ତରୁ ଶ୍ରଦ୍ଧାଳୁମାନେ ମେଳାକୁ ଆସିଥାନ୍ତି । ଏଠାରେ ଥିବା ଦୁଇଟି ଯଜ୍ଞ ମଣ୍ଡପ ମଧ୍ୟରୁ ଗୋଟିକରେ କପିଶାସେନୀ ସମାଜ ଧ୍ୱନି ଜାଳୁଥିବାବେଳେ ଅନ୍ୟଟିରେ ସନ୍ନ୍ୟାସୀମାନେ ଯଜ୍ଞ କରିଥାନ୍ତି । ଏଠାରେ ସାଧୁ ସନ୍ନ୍ୟାସୀମାନେ କୁଡ଼ିଆ କରି ଅବସ୍ଥାନ କରନ୍ତି । ମହିମା ଧର୍ମାନୁଗାମୀମାନଙ୍କର ମୂର୍ତ୍ତି ପୂଜା ଉପରେ ବିଶ୍ୱାସ ନ ଥିବାରୁ ଏହି ମନ୍ଦିରରେ କୌଣସି ଦେବଦେବୀ ନାହାନ୍ତି । ଏଣୁ ଏହାକୁ ଶୂନ୍ୟ ମନ୍ଦିର କୁହାଯାଉଛି । ସିଦ୍ଧ ପୁରୁଷ ଶଂକର ଦାସଙ୍କ ସମାଧିରେ ବାବାଙ୍କ ପାଦୁକା ପୂଜା ପାଇଆସୁଛି । ପ୍ରତିବର୍ଷ 'ମାଘ ମେଳା' ଏଠାରେ ବେଶ୍ ଜାକଜମକରେ ପାଳିତ ହୋଇଥାଏ । ଏହା ବ୍ୟତୀତ ଏଠାରେ ଗନ୍ଧ୍ୱା ପୂର୍ଣ୍ଣିମା, କାର୍ତ୍ତିକ ପୂର୍ଣ୍ଣିମା, ବୈଶାଖ ପୂର୍ଣ୍ଣିମା ମଧ୍ୟ ପାଳନ କରାଯାଇଥାଏ । ଏହିସବୁ ଉତ୍ସବମାନଙ୍କରେ ରାଜ୍ୟର ବିଭିନ୍ନ ସ୍ଥାନମାନଙ୍କରୁ ଆସିଥିବା ମହିମା ସନ୍ନ୍ୟାସୀମାନେ ଏକତ୍ରିତ ହୋଇଥାନ୍ତି । ଏଠାରେ 'ହାତୀ ଗୁମ୍ଫା' ଓ 'ଅନନ୍ତ ଗୁମ୍ଫା' ନାମରେ ଦୁଇଟି ଗୁମ୍ଫା ରହିଛି । ଏହି ଗୁମ୍ଫା ଦୁଇଟିରେ ପୂର୍ବରୁ ସିଦ୍ଧପୁରୁଷ ଓ ସାଧୁ ସନ୍ନ୍ୟାସୀମାନେ ଅନନ୍ତ ବାସୁକୀ ନାଗଙ୍କୁ ପୂଜା କରୁଥିଲେ । ଏଠାରେ ଏକ ବଟ ବୃକ୍ଷ ରହିଛି । ଏହି ବଟବୃକ୍ଷଟି ବହୁ ପୁରାତନ ବୋଲି ସ୍ଥାନୀୟ ଲୋକେ କୁହନ୍ତି । ଏହି ବଟ ବୃକ୍ଷ ତଳେ ମହିମା ସନ୍ନ୍ୟାସୀମାନଙ୍କ ସଭା ଆୟୋଜିତ ହୋଇଥାଏ । ଏହି ପୀଠରେ ବର୍ତ୍ତମାନ ପାଂଚ ଜଣ ସାଧୁ ଓ ଜଣେ ସନ୍ନ୍ୟାସିନୀ ରହୁଛନ୍ତି । ଅଲେଖ ମହିମା କପିଶାସେନି ସମାଜର ଉପସଭାପତି ସନ୍ୟାସୀ ଜଗବନ୍ଧୁ ଦାସ, ଗୌରାଙ୍ଗ ବାବା, ଭୋଳେଶ୍ୱର ବାବା, ଦୁର୍ଯ୍ୟୋଧନ ବାବା, ତ୍ରିନାଥ ବାବା ଏବଂ ସନ୍ନ୍ୟାସିନୀ ସାବିତ୍ରୀ ମାତା ଏହି ମଠର ପରିଚାଳନା ଦାୟିତ୍ୱରେ ଅଛନ୍ତି ।

## ବାଘମରା ଗୁମ୍ଫା

ଏହି ଗୁମ୍ଫାଟି ମୟୂରଭଞ୍ଜ ଜିଲ୍ଲାର ଠାକୁରମୁଣ୍ଡା ବ୍ଲକ୍ ଅନ୍ତର୍ଗତ ଶାଳବୁଆ ଗାଁରେ ଅବସ୍ଥିତ ଥିଲେ ମଧ୍ୟ ଆନନ୍ଦପୁର ସହିତ ଏହାର ସଂପର୍କ ବେଶି । ଏହି ପୀଠକୁ ଆନନ୍ଦପୁର ସଟରୁ ବେଶି ଯାତ୍ରୀମାନେ ଯାଆସ୍ କରିଥାନ୍ତି । ମୟୁରଭଞ୍ଜ ପାର୍ଶ୍ୱରୁ ଏଠାକୁ ଯାତାୟତର ସୁବିଧା ନଥିବାରୁ ଏ ଅଞ୍ଚଳରୁ ବେଶି ସଂଖ୍ୟାରେ ପର୍ଯ୍ୟଟକ ଆସି ପାରି ନଥାନ୍ତି । ଏହି ପୀଠଟି ଆନନ୍ଦପୁର ଓ ଠାକୁରମୁଣ୍ଡା ସୀମାନ୍ତରେ ଅବସ୍ଥିତ । ଏହା ଏକ ଅତ୍ୟନ୍ତ ମନୋରମ ପର୍ଯ୍ୟଟନସ୍ଥଳୀ ଭାବେ ସମଗ୍ର ଆନନ୍ଦପୁର ଅଞ୍ଚଳରେ ପରିଚିତି ଲାଭ କରିପାରିଛି । ଏଠାରେ ଜଙ୍ଗଲ ମଧ୍ୟରେ ଏକ ବିଶାଳ ପାହାଡ ରହିଛି । ଏହି ପାହାଡ ମଧ୍ୟରେ ଅନେକ ଗୁମ୍ଫା ଅଛି । ତେବେ ଏହା ମଧ୍ୟରୁ ବାଘମରା ଗୁମ୍ଫାଟି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । କୁହାଯାଏ, ଅତୀତରେ ଏଠାରେ ବାଘମାନେ ବହୁ ସଂଖ୍ୟାରେ ରହୁଥିଲେ । ଏହି ଗୁମ୍ଫା ମଧ୍ୟରେ ଏକ 'ଗୀତା ଭାଗବତ ଗାଦି' ରହିଛି । ଏଠାରେ ଜଣେ ସନ୍ନ୍ୟାସୀ ନରହରି



ନାଏକ ଗୀତା ଭାଗବତ ଗାଦି ପୂଜା କରନ୍ତି । ଏହା ନିକଟରେ ମହାଦେବ ସିଦ୍ଧେଶ୍ୱରଙ୍କ ଏକ ଭବ୍ୟ ମନ୍ଦିର ରହିଛି । ଶୀତ ଋତୁରେ ଏଠାକୁ ଆନନ୍ଦପୁର ଅଞ୍ଚଳରୁ ବହୁ ସଂଖ୍ୟାରେ ପର୍ଯ୍ୟଟକମାନେ ଆସିଥାନ୍ତି । ଏହି ପୀଠଟି ମୟୂରଭଞ୍ଜ ଜିଲ୍ଲାରେ ହୋଇଥିଲେ ମଧ୍ୟ ଘଞ୍ଚ ପାହାଡଜଙ୍ଗଲ ଅଞ୍ଚଳ ଅତିକ୍ରମ କରି ମୟୂରଭଞ୍ଜର ଲୋକେ ଏଠାକୁ ସହଜରେ ଆସି ପାରିନଥାନ୍ତି । ମାତ୍ର, ଆନନ୍ଦପୁର ଅଞ୍ଚଳର ଲୋକେ ଖୁବ୍ ସହଜରେ ଏଠାକୁ ଚଳପ୍ରଚଳ କରିଥାନ୍ତି । ଏହି ପୀଠର ମନୋରମ ଦୃଶ୍ୟ ଏବଂ ଶାନ୍ତ ଶୀତଳ ସବୁଜିମା ଘେରା ପରିବେଶ ପର୍ଯ୍ୟଟକଙ୍କୁ ମୋହିତ କରିଥାଏ ।

## ଜିଲ୍ଲାର କିଛି ଜଳଭଣ୍ଡାର

### ଶୀତ ଋତୁରେ ପର୍ଯ୍ୟଟକଙ୍କ ପ୍ରଥମ ପସନ୍ଦ: ହଦଗଡ଼ ଡ୍ୟାମ୍

ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ହାଟଡିହି ବ୍ଲକ୍‌ରେ ଶାଳନ୍ଦୀ ନଦୀ ଉପରେ ଏହି ଡ୍ୟାମ୍‌ଟି ନିର୍ମିତ ହୋଇଛି । ଗଡ଼ଚଣ୍ଡୀଠାରୁ କିଛି ଦୂରରେ ରହିଛି ଅନ୍ୟତମ ମନୋରମ ପର୍ଯ୍ୟଟନ କେନ୍ଦ୍ର ହଦଗଡ ଡ୍ୟାମ୍ । ଆନନ୍ଦପୁର ଉପଖଣ୍ଡ ସଦରମହକୁମାଠାରୁ ୩୦ କିଲୋମିଟର ଦୂରରେ ହାଟଡିହି ବ୍ଲକ୍‌ର ଘଞ୍ଚ ଜଙ୍ଗଲ ମଧ୍ୟରେ ରହିଛି ଏହି ଜଳଭଣ୍ଡାର । ୧୯୬୮ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଶାଳନ୍ଦୀ ନଦୀର ଜଳକୁ ଅଟକାଇ ରଖି ହଦଗଡ ଡ୍ୟାମ୍‌ର ପରିକଳ୍ପନା

କରାଯାଇଥିଲା । ଶାଳନ୍ଦୀ ନଦୀର ଜଳକୁ ସଂରକ୍ଷିତ କରାଯାଇ ଭଦ୍ରକ ଓ କେନ୍ଦୁଝର ଜିଲ୍ଲାର ଚାଷଜମିକୁ ଜଳସେଚନ କରାଯାଉଛି । ହଦଗଡ ଡ୍ୟାମ୍‌ଟି କେନ୍ଦୁଝର ଜିଲ୍ଲାର ଏକ ସବୁଠୁ ବଢିଆ ପିକ୍‌ନିକ୍ ସ୍ପଟ୍‌ର ମାନ୍ୟତା ଲାଭ କରିପାରିଛି । ବଣପାହାଡଘେରା ହସ୍ତୀ ଅଭୟାରଣ୍ୟ ମଧ୍ୟରେ ରହିଥିବା ଏହି ଜଳଭଣ୍ଡାରର ଶୋଭା ଅତ୍ୟନ୍ତ ମନୋରମ । ପ୍ରତିବର୍ଷ ଶୀତ ଋତୁରେ ଜିଲ୍ଲା ତଥା ଜିଲ୍ଲା ବାହାରୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସି ଏଠାରେ ବଣଭୋଜିର ମଜା ନେଇଥାନ୍ତି । ତେବେ ଆନନ୍ଦପୁର ଉପଖଣ୍ଡର ଏହି ହଦଗଡ-ଗଡ଼ଚଣ୍ଡୀ-ଚକ୍ରତୀର୍ଥ-ରାମଚଣ୍ଡୀ-ପୋତାସିଙ୍ଘିଡି



ପର୍ଯ୍ୟଟନ କେନ୍ଦ୍ରମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ପର୍ଯ୍ୟଟନ ଜୋନ୍ ପ୍ରତିଷ୍ଠା କରାଯାଇପାରିଲେ ରାଜ୍ୟର ପର୍ଯ୍ୟଟନ ମାନଚିତ୍ର ବେଶ୍ ସମୃଦ୍ଧ ହୋଇପାରନ୍ତା ବୋଲି ବିଶେଷଜ୍ଞମହଲରେ ମତ ପ୍ରକାଶ ପାଇଛି । ମାତ୍ର ଏ ପର୍ଯ୍ୟଟନ ସ୍ଥାନମାନଙ୍କରେ ଉପଯୁକ୍ତ ପାନୀୟ ଜଳର ବ୍ୟବସ୍ଥା ନଥିବାରୁ ପିକନିକ୍ ପାଇଁ ଏଠାକୁ ଆସୁଥିବା ପର୍ଯ୍ୟଟକମାନେ ବାଧ୍ୟ ହୋଇ ନିକଟରେ ବହି ଯାଉଥିବା ଝରଣାର ଦୂଷିତ ପାଣିକୁ ବ୍ୟବହାର କରନ୍ତି । ଜଙ୍ଗଲ ବିଭାଗ ପକ୍ଷରୁ ପର୍ଯ୍ୟଟନସ୍ଥଳର କଲ୍ୟାଣ ମଣ୍ଡପ ନିକଟରେ ଏକ ନଳକୂପ ନିର୍ମାଣ କରାଯାଇଛି, ମାତ୍ର ତାହା ଅଧିକାଂଶ ସମୟରେ ଅଚଳ ହୋଇ ପଡିଥାଏ । ପ୍ରତିବର୍ଷ ମକର ସଂକ୍ରାନ୍ତିରେ ଏଠାରେ ମା' ଗଡଚଣ୍ଡୀଙ୍କର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥାଏ ଏବଂ ଏହି ଉତ୍ସବରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

# ଅନ୍ୟତମ ପର୍ଯ୍ୟଟନସ୍ଥଳ 'କାଂଝାରୀ ଡ୍ୟାମ୍'

ପ୍ରାକୃତିକ ସୌନ୍ଦର୍ଯ୍ୟଭରା କେନ୍ଦୁଝର ଜିଲ୍ଲାରେ ଅନେକ ଗୁଡିଏ ମନୋରମ ପର୍ଯ୍ୟଟନ ସ୍ଥଳ ରହିଛି । ଏହା ମଧ୍ୟରୁ 'କାଂଝାରୀ ଡ୍ୟାମ୍' ଅନ୍ୟତମ ପ୍ରମୁଖ ପର୍ଯ୍ୟଟନ ସ୍ଥଳ ଭାବେ ସମଗ୍ର ଜିଲ୍ଲାରେ ପରିଚିତ ହୋଇପାରିଛି । ଶୀତଦିନିଆ ପିକ୍‌ନିକ୍ ଓ ବଣଭୋଜି ପାଇଁ କାନ୍‌ଝାରୀ ଡ୍ୟାମ୍ ଏକ ଅତି ଉତ୍ତମ ସ୍ଥାନ ଭାବେ କେନ୍ଦୁଝରବାସୀଙ୍କ ପ୍ରିୟଭାଜନ ହୋଇପାରିଛି । ପ୍ରତିବର୍ଷ ଶୀତ ଦିନେ ଜିଲ୍ଲା ତଥା ଜିଲ୍ଲା ବାହାରୁ ହଜାର ହଜାର ପର୍ଯ୍ୟଟକ ଏଠାକୁ ଆସି ବଣଭୋଜିର ମଜା ନେଇଥାନ୍ତି । ହଦଗଡ ଡ୍ୟାମ୍ ପରେପରେ କାଂଝାରୀ ଡ୍ୟାମ୍ ହିଁ ଦ୍ୱିତୀୟ ପର୍ଯ୍ୟଟନ ସ୍ଥଳ, ଯେଉଁଠିକୁ ଶୀତଦିନେ ବଣଭୋଜି ପାଇଁ ସର୍ବାଧିକ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ବିଶେଷକରି ବଡଦିନ ଓ ନୂଆବର୍ଷରେ ହଜାର ହଜାର ପର୍ଯ୍ୟଟକ ଏଠାକୁ ବଣଭୋଜି କରିବାକୁ ଆସିଥାନ୍ତି । ପବିତ୍ର ଗୋନାସିକା ପୀଠରୁ ବାହାରିଥିବା କାଲିଂଜର (କାଣିଜର/କାନ୍‌ଝାରି) ନଦୀ ଉପରେ ଦୁଇଟି ପାହାଡ ମଝିରେ ଏକ ସୁନ୍ଦର ମାଟିବନ୍ଧ ନିର୍ମାଣ କରାଯାଇଛି । ଏହା ହେଉଛି କାନ୍‌ଝାରୀ ଡ୍ୟାମ୍ । କାନ୍‌ଝାରୀ ଡ୍ୟାମର ଉଭୟ ପାର୍ଶ୍ୱରେ ଥିବା ସବୁଜ ବନାନୀ ଓ ଶାନ୍ତଶୀତଳ ପରିବେଶ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକାରୁ ଏହି କାଲିଂଜର ନଦୀର ଉଦ୍‌ଗମ ହୋଇଥିବାରୁ ଏହି ନଦୀରେ ସ୍ନାନ କଲେ ବୈତରଣୀ ଅନୁରୂପ ପୁଣ୍ୟଲାଭ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏଣୁ ଅନେକ ସଂଖ୍ୟାରେ ଶ୍ରଦ୍ଧାଳୁମାନେ ଏଠାକୁ ଆସି ପବିତ୍ର ବୁଡ ପକେଇଥାନ୍ତି । ନଦୀବନ୍ଧର ନିମ୍ନଭାଗରେ ନଦୀର ଉଭୟ ପାର୍ଶ୍ୱରେ ଅନତିଦୂରରେ ଶ୍ରୀଶ୍ରୀ ରଘୁନାଥେଶ୍ୱର ଓ ଶ୍ରୀଶ୍ରୀ ନୀଳକଣ୍ଠେଶ୍ୱର ନାମରେ ଦୁଇଟି ଶୈବପୀଠ ଥିବାରୁ ମକର ସଂକ୍ରାନ୍ତି, ମହାଶିବରାତ୍ରୀ, ଦୋଳପୂର୍ଣ୍ଣିମା ଆଦି ପବିତ୍ର ଦିନମାନଙ୍କରେ ଏଠାରେ ପ୍ରବଳ ଭକ୍ତ ସମାବେଶ ଘଟିଥାଏ । କେନ୍ଦୁଝର ସହରଠାରୁ ଘଟଗାଁ ମା' ତାରିଣୀ ପୀଠ ଆଡକୁ ଗଲାବେଳେ ୧୫ କିଲୋମିଟର ଦୂରରେ ପଡେ ଚାନ୍ଦପଶି ଛକ । ସେଠାରୁ ଉତ୍ତର ଦିଗକୁ ଯାଇଥିବା ପିଚୁ ରାସ୍ତାରେ ମାତ୍ର ତିନି କିଲୋମିଟର ଦୂରରେ ଅବସ୍ଥିତ ଏହି କାନ୍‌ଝାରୀ ଡ୍ୟାମ୍ । ୨୧୫ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଥିବା ଏହି ସ୍ଥାନଟି ପୂର୍ବରୁ ଯେପରି ସୁନ୍ଦର ଥିଲା ଏବେ ମଧ୍ୟ ସେହି ସୁନ୍ଦର ବଳବତ୍ତର ରହିଛି । କାନ୍‌ଝାରୀ ଡ୍ୟାମ୍ ସାଇଟ୍‌ର ଅଳ୍ପ କିଛି ଦୂର ପୂର୍ବରୁ କାଲିଂଜର ନଦୀ ସହିତ ଅନ୍ୟ ଦୁଇଟି ଛୋଟ ନାଳ ପରସ୍ପରକୁ ଭେଟିଛନ୍ତି । ଏହି ତିନୋଟି ନଦୀ ପରସ୍ପରକୁ ଭେଟିଥିବା ସ୍ଥଳକୁ ଗଙ୍ଗା, ଯମୁନା ଓ ସରସ୍ୱତୀର ତ୍ରିବେଣୀ ସଂଗମ ଭାବେ ବର୍ଣ୍ଣନା କରାଯାଇଥାଏ । ଡ୍ୟାମ୍ ନିର୍ମାଣ ହେବା ପୂର୍ବରୁ ସେଠାରେ କେବଳ କାଲିଂଜର ନଦୀ ଓ ପ୍ରାକୃତିକ ଜଙ୍ଗଲ ରହିଥିଲା । ଏଠାକାର ପ୍ରାକୃତିକ ପରିବେଶ, ଜଙ୍ଗଲୀ ବୃକ୍ଷ, ପଶୁପକ୍ଷୀ ଅତ୍ୟନ୍ତ ମନମୁଗ୍ଧକର । ବର୍ଷର ବିଭିନ୍ନ ଋତୁରେ ଏହି

ସ୍ଥାନର ଶୋଭା ସମସ୍ତଙ୍କୁ ଆକୃଷ୍ଟ କରେ । ସୁଉଚ୍ଚ ବନ୍ଧ ଉପରୁ ଜଳଭଣ୍ଡାର ଦୃଶ୍ୟ ଚମତ୍କାର । ଏଠାକାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ବେଶ୍ ଉପଭୋଗ୍ୟ । ଏଠାକାର ମନୋରମ ପ୍ରାକୃତିକ ଶୋଭା ଓ ବଣଭୋଜି ପାଇଁ ଉପଯୁକ୍ତ ମନେ ହେଉଥିବା କାଂଝାରୀକୁ ପ୍ରତିବର୍ଷ ହଜାରହଜାର ପର୍ଯ୍ୟଟକ ଆସିଥାନ୍ତି । ପର୍ଯ୍ୟଟନର ସୁଯୋଗ ଥିବାରୁ ଏହି ସ୍ଥାନରେ ପିକ୍‌ନିକ୍ ଓ ପାର୍କିଂ ପାଇଁ ସ୍ୱତନ୍ତ୍ର ସ୍ଥାନ ଓ ଏକ ଉଦ୍ୟାନର ବ୍ୟବସ୍ଥା କରିବା ଜରୁରୀ ହୋଇଛି ବୋଲି ସ୍ଥାନୀୟ ଲୋକମାନେ ପ୍ରକାଶ କରନ୍ତି । ଶୀତଦିନେ କାନ୍‌ଝାରୀ ଜଳଭଣ୍ଡାରର ଜଳରାଶିରେ ଲକ୍ଷଲକ୍ଷ ବିଦେଶୀ ପକ୍ଷୀଙ୍କ ସମାଗମ ହୋଇଥାଏ । ସୂର୍ଯ୍ୟାସ୍ତ ବେଳର ସୁନେଲୀ ତରଙ୍ଗାୟିତ ଜଳରାଶିରେ ରୁପା ରଙ୍ଗର ମାଛଙ୍କ ଖେଳ ବେଶ୍ ଉପଭୋଗ୍ୟ । କେବେକେବେ ପାଖ ଜଙ୍ଗଲରେ ରହୁଥିବା ହାତୀପଲଙ୍କ ଜଳକ୍ରୀଡା ପର୍ଯ୍ୟଟକଙ୍କୁ ବେଶ୍ ଆକର୍ଷିତ କରିଥାଏ । ୨୧୫ ନମ୍ବର ଜାତୀୟ ରାଜପଥରେ କାଳିଂଜର ନଦୀ ଉପରେ ଥିବା ପତଳା ପୋଲ ଉପରେ ଠିଆ ହୋଇ ନଦୀର ପଥୁରିଆ ଶଯ୍ୟାକୁ ଅବଲୋକନ କଲେ ଜଣେ ଆତ୍ମବିଭୋର ହୋଇଉଠେ ।

## ମନୋରମ ପର୍ଯ୍ୟଟନସ୍ଥଳ 'କାଳିମାଟି' ଡ୍ୟାମ୍

କେନ୍ଦୁଝର ଜିଲ୍ଲାରେ ଅନେକ ଗୁଡିଏ ମନୋରମ ପର୍ଯଟନସ୍ଥଳୀମାନଙ୍କ ମଧ୍ୟରୁ କାଳିମାଟି ଡ୍ୟାମ୍‌ଟି ଅନ୍ୟତମ ସୁନ୍ଦରତମ ସ୍ଥାନ । ଘଟଗାଁ ଓ ହରିଚନ୍ଦନପୁର ବ୍ଲକ୍ ସୀମାନ୍ତ ମନୋହରପୁର ପଞ୍ଚାୟତରେ ଏହି କାଳିମାଟି ଜଳଭଣ୍ଡାରଟି ଅବସ୍ଥିତ । ଘଟଗାଁ, ଢେଙ୍କିକୋଟ କିମ୍ବା ହରିଚନ୍ଦପୁର ଦେଇ ଏହି ଡ୍ୟାମକୁ ଯାଇହେବ । ନିକଟରେ ବାରବାଙ୍କ ଜଙ୍ଗଲ ଅବସ୍ଥିତ । ଡ୍ୟାମକୁ ଲାଗି ମନୋରମ ସୁଦୀର୍ଘ ପର୍ବତମାଳା ରହିଛି । ବଣଭୋଜି ପାଇଁ ଏହା ଏକ ପ୍ରକୃଷ୍ଟ ସ୍ଥାନ ହୋଇଥିବାରୁ ପ୍ରତିବର୍ଷ ଶୀତଦିନେ ଏଠାକୁ ଜିଲ୍ଲାର ବିଭିନ୍ନ ସ୍ଥାନରୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଏବଂ ସ୍ଥାନୀୟ ଲୋକେ ଏକତ୍ରିତ ହୋଇଥାନ୍ତି । ଶୀତଦିନେ ଏଠାରେ ବିଦେଶାଗତ ପକ୍ଷୀଙ୍କ ସମାଗମ ହୋଇଥାଏ । ଏହି ବିଦେଶାଗତ ପକ୍ଷୀଙ୍କୁ ଦେଖିବାକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ଏହି ଜଳଭଣ୍ଡାରର ନୀଳ ଜଳରାଶି ଓ ପାର୍ଶ୍ୱରେ ରାଶିରାଶି ପାହାଡମାଳା, ଘଞ୍ଚ ଜଂଗଲ ଏଠାକୁ ପର୍ଯ୍ୟଟକଙ୍କୁ ଟାଣି ଆଣିଥାଏ । ଯେଉଁମାନେ ଘଟଗାଁର ମା' ତାରିଣୀ, ଗୁଣ୍ଡିଚାଘାଗି ଜଳପ୍ରପାତ ବୁଲି ଆସନ୍ତି, ସେମାନେ ମଧ୍ୟ କାଳିମାଟି ଡ୍ୟାମ୍ ବୁଲିବାକୁ ଭୁଲି ନଥାନ୍ତି ।

## ରେମାଳ ଡ୍ୟାମ୍

ମାଓପ୍ରବଣ ହରିଚନ୍ଦନପୁର, ଘସିପୁରା ଓ ଦୈତାରୀ ଥାନାର ସୀମାନ୍ତରେ ରହିଛି ଜିଲ୍ଲାର ଅନ୍ୟ ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳ ରେମାଳ ଡ୍ୟାମ୍ । ବଣପାହାଡ ମଧ୍ୟରେ ରହିଥିବା ଏହି ଡ୍ୟାମ୍‌ର ଶୋଭା ଅତ୍ୟନ୍ତ ମନୋରମ । ଏଠାକୁ ଶୀତ ଋତୁରେ ପିକ୍‌ନିକ୍ ପାଇଁ କେନ୍ଦୁଝର ସମେତ ପଡୋଶୀ



ଢେଙ୍କାନାଳ ଓ ଯାଜପୁର ଜିଲ୍ଲାରୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ଘଞ୍ଚ ଜଙ୍ଗଲ ଓ ପାହାଡ଼ିଆ ପରିବେଶ ମଧ୍ୟରେ ଏହି ବିଶାଳ ଜଳଭଣ୍ଡାରଟି ପର୍ଯ୍ୟଟକଙ୍କ ମନ ମୋହିଥାଏ । ଏଠାରେ ଚିରସ୍ରୋତା ରେମାଳ ନଦୀର ପଥର ଶଯ୍ୟା, ଗଭୀର ଜଳଭଣ୍ଡାର ଏବଂ ଜଳଭଣ୍ଡାର ପାର୍ଶ୍ୱରେ ବନ୍ଧା ଯାଇଥିବା ସୁଦୀର୍ଘ ପଥର ବନ୍ଧ ସବୁଠୁ ଆକର୍ଷଣୀୟ ହୋଇଥାଏ । ଆନନ୍ଦପୁର ପଟୁ ବରିପାଳ ପର୍ଯ୍ୟନ୍ତ ରାସ୍ତାର ଅବସ୍ଥା ଶୋଚନୀୟ ହୋଇଥିବାରୁ ଏଠାକୁ ଯିବାଆସିବା କଷ୍ଟକର ହୋଇପଡ଼ିଛି । ତେବେ ନରଣପୁର-ଡୁବୁରୀ ରାସ୍ତା ଦେଇ ଏହି ସ୍ଥାନକୁ ଯାତାୟତର ସୁବିଧା ରହିଛି । ରେମାଳ ନଦୀ ଉପରେ ଏହି ଡ୍ୟାମ୍‌ଟି ପ୍ରତିଷ୍ଠିତ ହୋଇଛି । ୧୯୬୭ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ଦ୍ୱାରା ଏହି ଡ୍ୟାମ୍‌ଟି ନିର୍ମିତ ହୋଇଥିଲା । ଏହି ଡ୍ୟାମ୍‌ଟିର କ୍ୟାଚ୍‌ମେଣ୍ଟ୍ ଏରିଆ ୯୮·୫୦ ବର୍ଗ କିଲୋମିଟର । ଡ୍ୟାମ୍‌ଟିର ଦୈର୍ଘ୍ୟ ୧୪୫୪ ମିଟର ହୋଇଥିବାବେଳେ ଉଚ୍ଚତା ୩୪ ମିଟର । ଏଥିରେ ଥିବା ସ୍ପିଲ୍ ୱେରେ ମୋଟ ୪ଟି ଗେଟ୍ ରହିଛି । ଏହି ଜଳଭଣ୍ଡାରରୁ ଦୁଇଟି କେନାଲ୍ ମାଧ୍ୟମରେ ହରିଚନ୍ଦନପୁର ଓ ଘସିପୁରା ବ୍ଲକ୍‌ର ଚାଷଜମି ଜଳସେଚିତ ହୋଇଥାଏ । ବାମ କେନାଲ୍ ମାଧ୍ୟମରେ କେଶଦୁରାପାଳ, ତରିମୂଳ ପଞ୍ଚାୟତର ଚାଷଜମି ଜଳସେଚିତ ହେଉଥିବାବେଳେ ଡାହାଣ କେନାଲରେ ହରିଚନ୍ଦନପୁର ବ୍ଲକ୍‌ର ଟାଙ୍ଗିରିଆପାଳ, ରାଧିକାଦେଇପୁର, ଦରଡିପାଳ, ରାସୋଳ ଆଦି ପଞ୍ଚାୟତର ଜମି ଜଳସେଚିତ ହୋଇଥାଏ । ଏହି



ଡ୍ୟାମଟିର ବିଶେଷତ୍ୱ ହେଉଛି ମୁଖ୍ୟ ବନ୍ଧ ଉପରେ ସ୍ପିଲ୍ ୱେ୍ ନଥାଇ ଜଳଭଣ୍ଡାରର ଅନ୍ୟ ଏକ ପାର୍ଶ୍ୱରେ ସ୍ପିଲ୍ ୱେ୍ ନିର୍ମାଣ କରାଯାଇଛି । ସାଧାରଣତଃ, ଜଳଭଣ୍ଡାରଗୁଡ଼ିକରେ ମୁଖ୍ୟ ବନ୍ଧର ମଝିରେ ସ୍ପିଲ୍ ୱେ୍ ଥାଏ **(central spill way).** ମାତ୍ର ଏଠାରେ ଏହାର ବ୍ୟତିକ୍ରମ ଦେଖିବାକୁ ମିଳିଥାଏ ।

## ମିନି ଚିଲିକା; ତରଡିଆ ଡ୍ୟାମ୍

ମୟୂରଭଂଜ ଓ ଆନନ୍ଦପୁର ଉପଖଣ୍ଡ ସୀମାନ୍ତରେ ରହିଛି ତରଡିଆ ଡ୍ୟାମ୍ । ଠାକୁରମୁଣ୍ଡା କ୍ଷୁଦ୍ର ଜଳସେଚନ ବିଭାଗ ପକ୍ଷରୁ ଏଠାରେ ତରଡିଆ ଡ୍ୟାମ୍ ନିର୍ମାଣ କରାଯାଇଛି । ଏହି ଡ୍ୟାମକୁ ସ୍ଥାନୀୟ ଅଞ୍ଚଳରେ ମିନି ଚିଲିକା ଭାବେ ବର୍ଣ୍ଣନା କରାଯାଏ । ତେବେ ଏହି ତରଡିଆ ଜଳଭଣ୍ଡାରଟି ମୟୂରଭଂଜ ଜିଲ୍ଲାର କି କେନ୍ଦୁଝର ଜିଲ୍ଲାର ତାହା ଅନେକ ସମୟରେ ବିବାଦୀୟ ହୋଇ ରହିଛି । ଉଭୟ ଜିଲ୍ଲାବାସୀ ଏହାକୁ ନିଜ ଜିଲ୍ଲାର ବୋଲି ଦାବି କରନ୍ତି । ସାତକୋଶିଆ ପଞ୍ଚାୟତର ଗୋଡ଼ଭଂଗା ଗ୍ରାମ ନିକଟରେ ଆନନ୍ଦପୁର ଠାକୁରମୁଣ୍ଡା ରାସ୍ତାଠାରୁ ମାତ୍ର ଏକ କିଲୋମିଟର ଦୂରରେ ଏହି ଡ୍ୟାମ୍ ରହିଛି ।

## ଦୈତାରୀ ହିଲ୍‌ଟପ୍ ଓ 'ତାଳପଦା' ଡ୍ୟାମ୍

କେନ୍ଦୁଝର ଜିଲ୍ଲାର ଦୈତାରୀ ଖଣି ଅଞ୍ଚଳ ଏକଦା କେନ୍ଦୁଝରର ଭୂ-ସ୍ୱର୍ଗ ଥିଲା । ଏଠାରେ ଥିବା

'ଦୈତାରୀ ହିଲ୍ ଟପ୍'କୁ ବହୁ ସଂଖ୍ୟାରେ ବିଦେଶାଗତମାନେ ଆସିଥାନ୍ତି । ଏହି ହିଲ୍ ଟପ୍‌ରୁ ସୂର୍ଯ୍ୟାସ୍ତର ଦୃଶ୍ୟ ବେଶ୍ ଉପଭୋଗ୍ୟ । ଏହାର ନିକଟରେ ତାଳପଦା ଡ୍ୟାମ୍ ମଧ୍ୟ ଅବସ୍ଥିତ । ୧୯୬୫ ମସିହାରେ ଦୈତାରୀଖଣି ଅଞ୍ଚଳରେ ଏହି ଡ୍ୟାମ୍‌ଟି ନିର୍ମାଣ କରାଯାଇଥିଲା । ପାହାଡରୁ ବହି ଆସୁଥିବା କିଛି ଝରଣାର ଜଳକୁ ସଂରକ୍ଷିତ କରି ଏହି ଡ୍ୟାମ୍‌ର ପରିକଳ୍ପନା କରାଯାଇଛି । ତାଳପଦା ଜଳଭଣ୍ଡାରରୁ ଦୈତାରୀ ଟାଉନସିପ୍ ଓ ହିଲ୍ ଟପ୍‌କୁ ପାନୀୟ ଜଳ ଯୋଗାଣ କରାଯାଉଛି । ସ୍ଥାନୀୟ ବଜାରରେ ଏହି ଡ୍ୟାମ୍‌ର ମାଛର ଚାହିଦା ବହୁତ ବେଶି । ପ୍ରତିବର୍ଷ ସେପ୍‌ଟେମ୍ବରରୁ ଫେବୃଆରୀ ମାସ ମଧ୍ୟରେ ଏଠାରେ ପର୍ଯ୍ୟଟକଙ୍କ ଭିଡ ଜମିଥାଏ । ବଣଭୋଜି ପାଇଁ ଏହି ଡ୍ୟାମ୍ ସ୍ଥଳଟି କେନ୍ଦୁଝର ଜିଲ୍ଲାର ଏକ ମନୋରମ ସ୍ଥାନ ଭାବେ ବେଶ୍ ସୁନାମ ଅର୍ଜନ କରିଥିଲା । ତେବେ ଗତ ୨୦୧୦ ଅଗଷ୍ଟ ୬ ତାରିଖରେ ଦୈତାରୀ ଥାନା ଓ ଫରେଷ୍ଟ ଅଫିସରେ ମାଓବାଦୀଙ୍କ ହମଲା କାରଣରୁ ଏଠାକୁ ଆଉ ପର୍ଯ୍ୟଟକ ସେତେମାତ୍ରାରେ ଆସୁନାହାନ୍ତି ।

## କେନ୍ଦୁଝର ଜିଲ୍ଲାର ଚର୍ଚ୍ଚ

କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ବହୁ ସଂଖ୍ୟାରେ ଚର୍ଚ୍ଚ ପ୍ରତିଷ୍ଠିତ ହୋଇପାରିଛି । ପ୍ରତିବର୍ଷ ଡିସେମ୍ବର ୨୫ ତାରିଖ ବଡ଼ଦିନ ଅବସରରେ କେନ୍ଦୁଝର ଜିଲ୍ଲାରେ ଥିବା ଚର୍ଚ୍ଚଗୁଡିକ ଉତ୍ସବମୁଖର ହୋଇପଡିଥାଏ । ଜିଲ୍ଲାର ବହୁ ପ୍ରସିଦ୍ଧ ଆନନ୍ଦପୁର ଥାନା ଅନ୍ତର୍ଗତ ମନୋହରପୁର ଚର୍ଚ୍ଚ, ରଂଗମାଟିଆ ଚର୍ଚ୍ଚ, କେନ୍ଦୁଝର ସହରର ଜେଲ୍‌ରୋଡ୍‌ରେ ଥିବା ଚର୍ଚ୍ଚ, ହରିଚନ୍ଦନପୁର ବ୍ଲକ୍‌ର ତାଳଡିହି, ପଣ୍ଡାପଡା ଥାନା ଅନ୍ତର୍ଗତ ମିଶ୍ରମାଳ, ତେଲକୋଇ ବ୍ଲକ୍ ଅନ୍ତର୍ଗତ ଓରିଆ ଓ ରାମଚନ୍ଦ୍ରପୁର, ଘସିପୁରାର ସାଲକୁଡାହି, ବସନ୍ତପୁରା, ରାଇଘାଟି ଚର୍ଚ୍ଚ, ଚଂପୁଆ ବ୍ଲକ୍‌ର ରାମଲା ଆଦି ଚର୍ଚ୍ଚରେ ପ୍ରତିବର୍ଷ ବଡ଼ଦିନ ଓ ନୂଆବର୍ଷରେ ଭକ୍ତଙ୍କ ସମାଗମ ଘଟିଥାଏ । ରଂଗୀନ୍ ଆଲୋକମାଳାରେ ଏହି ଚର୍ଚ୍ଚଗୁଡିକୁ ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ସଜେଇଥାନ୍ତି । ତେବେ ମନୋହରପୁର ଗ୍ରାହାମ୍ ଷ୍ଟେନ୍‌ସ ପୋଡି ଘଟଣା ପରଠାରୁ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଚର୍ଚ୍ଚରେ ବଡ଼ଦିନ ଓ ନୂଆବର୍ଷ ଅବସରରେ ବ୍ୟାପକ ସୁରକ୍ଷା ବ୍ୟବସ୍ଥା ଗ୍ରହଣ କରାଯାଇଆସୁଛି । ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ଏହିସବୁ ଚର୍ଚ୍ଚମାନଙ୍କୁ ଆସି ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ ପ୍ରାର୍ଥନା କରନ୍ତି ।

## ଥରେ କେବେ ବୁଲି ଆସ 'କିରିବୁରୁ ହିଲ୍ ଟପ୍', ଦେଖ ମେଘାତୁବୁରୁରେ ସୂର୍ଯ୍ୟାସ୍ତର ଦୃଶ୍ୟ

ଆପଣ ଜୀବନରେ ନିଶ୍ଚୟ ଥରେ କେବେ କିରିବୁରୁ ହିଲ୍ ଟପ୍ ବୁଲି ଯାଆନ୍ତୁ ଏବଂ ସେଠାକାର ଶୀତ ଓ ଗ୍ରୀଷ୍ମ ଋତୁର ମଜା ନିଅନ୍ତୁ । କିରିବୁରୁ ହିଲ୍ ଷ୍ଟେସନ *(hill station)*କୁ କେହି କେହି

ଓଡ଼ିଶାର କାଞ୍ଚନଜଂଗା ବୋଲି କହିଥାନ୍ତି । ଏଠାରେ ଶୀତଦିନେ ବରଫପାତ ହୋଇଥାଏ । ହାଡଥରା ଶୀତରେ କିରିବୁରୁ ହିଲ୍ ଟପ୍ *(hill top)*ର ବୃକ୍ଷଲତା, ଘାସପତ୍ର, ଦୋକାନବଜାର, ଆଦିବାସୀ, ଶ୍ରମିକ ବସ୍ତି, ରାସ୍ତା ଉପରେ ଠିଆ ହୋଇଥିବା ଯାନବାହନ ଉପରେ ବିଛାଡି ହୋଇ ପଡିଥିବା ମୃଦୁ




ବରଫର ଆସ୍ତରଣକୁ ଦେଖିଲେ ଦେହରେ ଶିହରଣ ସୃଷ୍ଟିହୁଏ । ଏଠାରେ ଶୀତଦିନେ ତାପମାତ୍ରା ଶୁନ ଡିଗ୍ରୀ ତଳକୁ ଖସିଯାଇଥାଏ । ପ୍ରବଳ ଶୀତଦିନେ ରାତି ପାହିବା ବେଳକୁ କିରିବୁରୁ ହିଲ୍ ଟପ୍ ନିଜ ଦେହରୁ ଶ୍ୱେତ ବରଫର ପାତଳ ଚାଦରକୁ ଖୋଲିଦିଏ । କ୍ରମେ ସେଠାକାର ଜୀବନଯାତ୍ରା ଚଳଚଞ୍ଚଳ ହେବାକୁ ଆରମ୍ଭ କରିଦିଏ । ପାହାନ୍ତିଆ କାକରଭିଜା ସକାଳୁ ସକାଳୁ ରାସ୍ତାରେ ମେହେନ୍ତରମାନଙ୍କ ଝାଡୁ ମାରିବା ଆଉ ଜଳଖିଆ ଦୋକାନର ଚାକରପିଲାର ବାସନମଜା ଶବ୍ଦରେ ଆପଣ ଧୀରେ ଧୀରେ ଉଷ୍ମ ହେବାକୁ ଆରମ୍ଭ କରୁଥିବେ । ତଥାପି କିରିବୁରୁର ବାଘୁଆ ଶୀତର ପଞ୍ଝାରୁ ଆପଣ କ'ଣ ମୁକୁଳି ପାରିଥିବେ? ସ୍ଥାନେସ୍ଥାନେ ରାସ୍ତା ଉପରେ ସ୍ଥାନୀୟ ଲୋକେ ବଡ଼ବଡ଼

---

ମେଘାତୁବୁରୁ ପର୍ବତମାଳା (ବିସ୍ତୀର୍ଣ୍ଣ ସରଣ୍ଡା ଜଙ୍ଗଲ)





କାଠ ଗଣ୍ଡିରେ ଅଗ୍ନି ସଂଯୋଗ କରି ନିଆଁ ପୁଆଁଉଥିବେ । କିରିବୁରୁର ଆକାଶ କୁହୁଡିରେ ଭରି ଯାଇଥିବ ଏବଂ ସୂର୍ଯ୍ୟ ସେତେବେଳେ ପ୍ରାୟ ନିସ୍ତେଜ ହୋଇଯାଇଥିବେ । ଏ ଦୃଶ୍ୟ ସତରେ ଅବର୍ଣ୍ଣନୀୟ! ସକାଳୁ ସକାଳୁ ଆପଣ ବଡ଼ବିଲରୁ ବଲାଣୀ ଦେଇ ଅଂକାବଂକା ସର୍ପିଳ ପାହାଡିଆ ଘାଟି ରାସ୍ତା ଅତିକ୍ରମ କରୁଥିବାବେଳେ ଆପଣଙ୍କ ଦେହ ଉନ୍ମାଦନାରେ ଭରି ଉଠୁଥିବ । ଭୟ ଓ ରୋମାଞ୍ଚ ମିଶା ଅନୁଭବରେ ସାରା ଦେହ ଶୀତେଇ ଉଠୁଥିବ । କିରିବୁରୁ ଘାଟି ରାସ୍ତା ଦେଇ ଅତିକ୍ରମ କରୁଥିବା ସମୟରେ ଆପଣ ତଳକୁ ଚାହିଁଲେ ଯେମିତି ଶରୀରରୁ ଆତ୍ମା ଖସି ପଡୁଥିବା ଭଳି ମନେ ହେଉଥିବ ।

ମେଘାତୁବୁରୁ ଘାଟି ତଳେ ବୁଡି ଯାଉଥିବା ସୂର୍ଯ୍ୟଙ୍କର ଦୃଶ୍ୟ ସମଗ୍ର ବିଶ୍ୱର କିଛି ବିରଳ ଦୃଶ୍ୟ


ମେଘାତୁବୁରୁ ଘାଟିରେ ସୂର୍ଯ୍ୟାସ୍ତକୁ ରାଜ୍ୟ ତଥା ରାଜ୍ୟ ବାହାରର ଦର୍ଶକମାନେ ଉପଭୋଗ କରୁଛନ୍ତି




ମଧ୍ୟରୁ ଅନ୍ୟତମ ବୋଲି କୁହାଯାଇଥାଏ । ପୁରୀ ସମୁଦ୍ର ବେଳାଭୂମିରେ ଠିଆ ହୋଇ ସମୁଦ୍ର ଆଡକୁ ଚାହିଁଲେ ରାଶିରାଶି ନୀଳ ଉର୍ମି ଯେମିତି ସମୁଦ୍ର କୂଳ ଆଡକୁ ମାଡି ଆସୁଥିବାର ମନେ ହୋଇଥାଏ. ଠିକ୍ ସେହିଭଳି ମେଘାତୁବୁରୁ *sunset view point*ରୁ ଠିଆ ହୋଇ ତଳକୁ ଚାହିଁଲେ କେବଳ ଢେଉଢେଉକା ପାହାଡ *(wave of hill)*କୁ ହିଁ ଅନୁଭବ କରିହେବ । ଯେଉଁଠିକୁ ଚାହିଁବ କେବଳ ମେଘାତୁବୁରୁ ସନ୍‌ସେଟ୍ ଭିଉ ପଏଣ୍ଟରୁ ଠିଆ ହୋଇ ତଳକୁ ଚହିଁଲେ କେବଳ ଚତୁର୍ଦ୍ଦିଗ ପାହାଡମୟ ମନେହେବ । ସବୁଆଡେ ଖାଲି ପାହାଡ ଆଉ ପାହାଡ । ଯେମିତି ଖୁବ୍ ନିକଟରେ ପାହାଡମାନଙ୍କର ଏକ ମେଳା ଚାଲିଛି. ସେମିତି ଏକ ଅନୁଭୂତି ଆପଣଙ୍କୁ ଚହଲେଇଦେବ । ଏଠାରେ ପାହାଡ ଭିତରେ ସୂର୍ଯ୍ୟ ହଜିଯାଉଥିବାର ଦୃଶ୍ୟ ବାସ୍ତବରେ ମନମୁଗ୍‌ଧକର । ସରଣ୍ଡା ଜଙ୍ଗଲ ଓ ପର୍ବତମାଳାର ସବୁଠୁ ଉଚ୍ଚରେ ଥିବା କିରିବୁରୁ ଏବଂ ମେଘାତୁବୁରୁ ହିଲ୍ ଟପ୍‌ରୁ ଠିଆ ହୋଇ ଆପଣ ଆଖି ପାଉ ନଥିବା ପାହାଡ ଓ ଜଙ୍ଗଲର ଦୃଶ୍ୟ ଉପଭୋଗ କରିପାରିବେ । ଏହି ସରଣ୍ଡା ଜଙ୍ଗଲ ଓ ପର୍ବତମାଳା ଝାଡଖଣ୍ଡ, ଓଡ଼ିଶା ଓ ଛତିଶଗଡ ସୀମାକୁ ଛୁଇଁଛୁଇଁ କାହିଁ କେଉଁ ପର୍ଯ୍ୟନ୍ତ ଲମ୍ବିଛି ତାହା କହିବା ମୁସ୍କିଲ୍ । କୁହାଯାଉଛି ସରଣ୍ଡା ହିଁ ଦେଶର ସବୁଠୁ ବଡ଼ ଜଙ୍ଗଲ ଓ ପର୍ବତମାଳା *(forest & hill range)* । କିରିବୁରୁ ହିଲ୍ ଟପ୍‌ରୁ ଠିଆ ହୋଇ ଭଲ ଭାବେ ନିରୀକ୍ଷଣ କଲେ ରାଉରକେଲା ସହର ମଧ୍ୟ ଦୃଶ୍ୟମାନ ହୋଇଥାଏ । ଏହାର ଅନ୍ୟ ଏକ ପାର୍ଶ୍ୱରେ ଯୋଡା-ବଡ଼ବିଲ ସହର ଖୁବ୍ ଛୋଟ

ହୋଇ ଦେଖାଯାଇଥାଏ । ବିଶେଷକରି ରାତି ସମୟରେ କିରୁବୁରୁ ଓ ମେଘାତୁବୁରୁ ହିଲ୍‌ଟପ୍‌ରୁ ଠିଆ ହୋଇ ତଳକୁ ଚାହିଁଲେ ସ୍ଥାନେସ୍ଥାନେ ମିଞ୍ଜିମିଞ୍ଜି କରୁଥିବା ଆଲୋକର ପୁଞ୍ଜ ଦୃଶ୍ୟମାନ ହୋଇଥାଏ । ରାଶିରାଶି ପାହାଡ ଓ ଘଞ୍ଚ ଜଙ୍ଗଲ ମଧ୍ୟରେ ରାଉରକେଲା, ଯୋଡା-ବଡ଼ବିଲ, ବଲାଣି ସହରର ଶିଳ୍ପକାରଖାନା ଓ ଖଣି ଖାଦାନରୁ ଜଳି ଉଠୁଥିବା ଆଲୋକର ମାଳା ଅତ୍ୟନ୍ତ ଆକର୍ଷଣୀୟ ଓ ମନଲୋଭା ହୋଇଥାଏ । ଏଠାରେ ଭାରତ ସରକାରଙ୍କ ଷ୍ଟୀଲ୍ ଅଥରିଟି ଅଫ୍ ଇଣ୍ଡିଆ (ସେଲ୍) ପକ୍ଷରୁ ବହୁ ଖଣିଖାଦାନ ଚାଲୁ ରହିଛି । କିରିବୁରୁ ଓ ମେଘାତୁବୁରୁରେ ଗଢି ଉଠିଥିବା 'ସେଲ୍' ଟାଉନ୍‌ସିପ୍ ମଧ୍ୟ ଅତ୍ୟନ୍ତ ଆକର୍ଷଣୀୟ ।

## କାନୁପୁର ଜଳଭଣ୍ଡାରରେ ସଲିଳ ସମାଧି ନେବ ଐତିହାସିକ ଛେଳିଡେଗା ପୀଠ!

କେନ୍ଦୁଝର ଜିଲ୍ଲାର ଚଂପୁଆ ସବ୍ ଡିଭିଜନ ଅନ୍ତର୍ଗତ ଯୋଡା ବ୍ଲକ୍‌ର ଐତିହାସିକ ଚମକପୁର



ଗ୍ରାମର ଅପରପାର୍ଶ୍ୱରେ ବୈତରଣୀ ନଦୀ କୂଳରେ ଅବସ୍ଥିତ ଏହି ଛେଳିଡେଗା ପ୍ରତ୍ନତାତ୍ତ୍ୱିକ କ୍ଷେତ୍ର । ଏହି ସ୍ଥାନଟି ପୂଣ୍ୟତୋୟା ବୈତରଣୀ ନଦୀ କୂଳରେ ଥିବା ଏକ ବିରାଟ ପ୍ରସ୍ତରଶଯ୍ୟା ଉପରେ ଅବସ୍ଥିତ । ଏଠାରେ ଛେଳିଡେଗା ଭାବେ ନିର୍ଦ୍ଦିଷ୍ଟ କୌଣସି ଗ୍ରାମନାହିଁ । ଅତୀତରେ ଏଠାରେ

ମୁଣ୍ଡା ସଂପ୍ରଦାୟର ଆଦିବାସୀ ବସବାସ କରୁଥିଲେ, ମାତ୍ର ବର୍ତ୍ତମାନ ଏ ଅଞ୍ଚଳ ଜନଶୂନ୍ୟ । ଏଠାରେ ମହାଦେବ ଧବଳେଶ୍ୱରଙ୍କ ଏକ ମନ୍ଦିର ରହିଛି । ରିମୁଳି-ବଡ଼ବିଲ ରାସ୍ତା ମଧ୍ୟରେ ଥିବା ବିଲେଇପଦାଠାରୁ ଦକ୍ଷିଣକୁ ଏକ ପାଦଚଲା ରାସ୍ତାରେ ପାଞ୍ଚ କିଲୋମିଟର ଗଲେ ପଡେ ଏହି ଛେଳିଡେଗା । ଛେଳିଡେଗା ଯିବା ବାଟରେ ସୁନା ନଈ ପଡିଥାଏ । ଛେଳିଡେଗାଠାରେ ଏକ ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟାରେ ପ୍ରାଚୀନ ଯୁଗର ବହୁ ପ୍ରାଚୀନ ମୂର୍ତ୍ତି, ପ୍ରାଚୀନ ଯୁଗର ଇଟା, ପ୍ରସ୍ତରଖଣ୍ଡ, ଶିଳାଲେଖ, ବହୁ ଦେବଦେବୀଙ୍କ ପ୍ରସ୍ତର ମୂର୍ତ୍ତି ପଡି ରହିଥିବାର ଦେଖିବାକୁ ମିଳେ । ଏହି ଭଗ୍ନ ପ୍ରସ୍ତର ମୂର୍ତ୍ତି, ଶିଳାଲେଖ ଉପରେ ଉପଯୁକ୍ତ ଗବେଷଣା ହୋଇପାରି ନଥିବାରୁ ଏହି ପୀଠ ଆଜିବି



ଲୋକଲୋଚନର ଆଢୁଆଳରେ ରହିଯାଇଛି । ବୈତରଣୀ ନଦୀ କୂଳରେ ଥିବା ବୃହତ୍ ପ୍ରସ୍ତର ଶଯ୍ୟାରେ ଏକାଧିକ ଶିଳାଭିଲେଖ ମଧ୍ୟ ଦେଖିବାକୁ ମିଳେ । ଏଠାରେ ପ୍ରାଚୀନ ଯୁଗର ଧ୍ୱଂସପ୍ରାପ୍ତ ଏକ ବିହାର କିମ୍ବା ନଗରୀର ଛାପ ଦେଖିବାକୁ ମିଳିଥାଏ । ପ୍ରାଚୀନ ଯୁଗର ଇଟା ନିର୍ମିତ ଧ୍ୱଂସସ୍ତୂପକୁ ଦେଖିଲେ ଦିନେ ଏଠାରେ ବିହାର କିମ୍ବା ପ୍ରାସାଦ ଥିବାର ଅନୁମାନ ହୁଏ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ସ୍ୱାକ୍ଷର ବହନ କରୁଥିବା ସ୍ଥାନ ସରକାରଙ୍କ ଦୃଷ୍ଟିଗୋଚର ହୋଇପାରିନାହିଁ । ଏହାର ପ୍ରତ୍ନତାତ୍ତ୍ୱିକ ଖନନ ହୋଇପାରିଲେ ଏହି ପୀଠ ସଂପର୍କରେ ବହୁ ତଥ୍ୟ ଉନ୍ମୋଚିତ ହୋଇପାରନ୍ତା । ସବୁଠୁ ଦୁର୍ଭାଗ୍ୟଜନକ, ଏଠାରେ ପଡିରହିଥିବା ପ୍ରାଚୀନ ଇଟା, ପ୍ରସ୍ତରଗୁଡିକୁ ସ୍ଥାନୀୟ ଅଞ୍ଚଳର

ଲୋକେ ଘରୋଇ ବ୍ୟବହାର କରୁଛନ୍ତି । ଏଠାରୁ ମଧ୍ୟ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଉପକରଣ, ହାତହତିଆର ମିଳିଛି । ଏହି କ୍ଷେତ୍ରର ଚତୁର୍ଦିଗରେ ବହୁ ବିଶାଳ ଆକୃତିର ଗୋଲାକୃତି ପଥରଖଣ୍ଡମାନ ପୋତା ହୋଇଥିବାର ଦେଖାଯାଏ । ଏହାକୁ ସ୍ଥାନୀୟ ଅଞ୍ଚଳରେ ଭୀମକାଣ୍ଡ କହନ୍ତି । ପୋତା ହୋଇଥିବା ଏହି ଗୋଲାକୃତି ପଥରକୁ ଲକ୍ଷ୍ୟ କଲେ ଏହି ସ୍ଥାନର ସୀମା ନିର୍ଦ୍ଧାରଣ ସଂପର୍କରେ ଏକ ସ୍ପଷ୍ଟ ସୂଚନା ମିଳିଥାଏ । ଏହି ସ୍ଥାନରୁ ଉଦ୍ଧାର କରାଯାଇଥିବା ଏକ ଶିବଲିଙ୍ଗକୁ ଗ୍ରାମବାସୀମାନେ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରି ସ୍ଥାପନ କରିଛନ୍ତି । ଏହି ଶିବ ଧବଳେଶ୍ୱର ମହାଦେବ ଭାବେ ଏଠାରେ ପୂଜା ପାଉଛନ୍ତି । ପ୍ରତିବର୍ଷ ମକର ସଂକ୍ରାନ୍ତି ଅବସରରେ ଏଠାରେ ମକର ମେଳା ଅନୁଷ୍ଠିତ ହୋଇଥାଏ । ଏଠାରେ ଅନେକ କୁଣ୍ଡ ରହିଛି । ସବୁଠୁ ଦୁଃଖର କଥା ହେଉଛି, କେନ୍ଦୁଝର ଜିଲ୍ଲାର ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ସ୍ଥାନଟି ଏବେ କାନୁପୁର ଜଳଭଣ୍ଡାରରେ ବୁଡିଯିବାକୁ ବସିଛି । କାନୁପୁର ଜଳଭଣ୍ଡାର ନିର୍ମାଣ କାର୍ଯ୍ୟ ଶେଷ ହେବା ପରେ ଏହି ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନ ସ୍ଥଳଟି ଜଳଭଣ୍ଡାରରେ ସଂପୂର୍ଣ୍ଣ ଲୀନ ହୋଇଯିବ । ଛେଳିତେଗାକୁ ନେଇ ସ୍ଥାନୀୟ ଅଞ୍ଚଳରେ ଏକ ଲୋକକଥା ଶୁଣିବାକୁ ମିଳେ । ମୁଣ୍ଡାମାନେ ଏଠାରେ ବସବାସ କରୁଥିଲେ । ଧାନ ଫସଲ କରୁଥିଲେ । ମୁଣ୍ଡାମାନେ ଯେତେ ଥର ଏଠାରୁ ଧାନତକ କାଟିଆଣନ୍ତି ପୁଣି ଏହି କ୍ଷେତ ଧାନରେ ପୂର୍ଣ୍ଣ ହୋଇଯାଏ । ମୁଣ୍ଡାମାନେ ଧାନ କାଟିକାଟି ଏକ ପ୍ରକାର ବିରକ୍ତ ହୋଇଗଲେ । ସେତେବେଳେ ଏଠାରେ ବୁଲୁଥିବା ଏକ ଷଣ୍ଢକୁ ଦେଖି ମୁଣ୍ଡାମାନେ ଭାବିଲେ, ଏହି ଷଣ୍ଢ ଯୋଗୁଁ ଏଠାରେ ଧାନ ଶେଷ ହୋଇଯାଉନାହିଁ । ଏଣୁ ମୁଣ୍ଡାମାନେ ଷଣ୍ଢ ଉପରେ କ୍ରୋଧ ପ୍ରକାଶ କରିବା ସହିତ ତାକୁ ଖଣ୍ଡାରେ ହାଣି ଦେଲେ । ସେହିଦିନୁ ଏହି ଶିବ ମନ୍ଦିର ସମ୍ମୁଖରେ ଥିବା ଷଣ୍ଢ ମୂର୍ତ୍ତିଟି ଦୁଇ ଗଡ ହୋଇ ପଡିଛି । ତେବେ ଷଣ୍ଢକୁ କାଟି ଦୁଇଗଡ କରିବା ପରେପରେ ମହାଦେବଙ୍କ ବାହନ ମୁଣ୍ଡାମାନଙ୍କୁ ଅଭିଶାପ ଦେଇଥିଲେ ଏବଂ ସେହିଦିନଠାରୁ ଏଠାରେ ଆଉ ଧାନ ଫସଲ ହେଲାନାହିଁ । ଧାନ ନ ହେବାରୁ ମୁଣ୍ଡାମାନେ ଏ ଅଞ୍ଚଳ ଛାଡି ଅନ୍ୟତ୍ର ପଳେଇଗଲେ । ତେବେ ଛେଳିତେଗା ସଂପର୍କରେ ବହୁତ କିଛି ଗବେଷଣା ବାକି ରହିଛି । ଏଠାରେ ପ୍ରତ୍ନତାତ୍ତ୍ୱିକ ଖନନ କରାଗଲେ ପ୍ରାଚୀନ ପ୍ରସ୍ତର ସଭ୍ୟତା ସଂପର୍କରେ ବହୁତ କିଛି ତଥ୍ୟ ଉନ୍ମୋଚିତ ହୋଇପାରିବ ।

## ପୌରାଣିକ ପର୍ଯ୍ୟଟନସ୍ଥଳ: ଦୋ-ମୁହାଁଣୀ ଘାଟ

କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍‌ରେ ରହିଛି ଏହି ପୁରାଣପ୍ରସିଦ୍ଧ ପ୍ରାଚୀନ ଦୋ-ମୁହାଁଣୀ ଘାଟ । ବୈତରଣୀ ନଦୀର ଏହି ଦୋ-ମୁହାଁଣୀ ଘାଟରେ ଥିବା ପ୍ରାଚୀନ କୀର୍ତ୍ତିରାଜି ଓ ଦୁଇଟି ନଦୀର ସଙ୍ଗମ ସ୍ଥଳ କେନ୍ଦୁଝରର ଏକ ପ୍ରମୁଖ ପୌରାଣିକ ପର୍ଯ୍ୟଟନ ସ୍ଥଳ ଭାବେ ପ୍ରସିଦ୍ଧିଲାଭ କରିପାରିଛି । ଏହି ଦୋ-ମୁହାଁଣୀ ଘାଟରେ ବିଶେଷକରି ପୁଣ୍ୟତୋୟା ବୈତରଣୀ ନଦୀ ଓ ମୟୂରଭଞ୍ଜର

ଶିମିଳିପାହାଡରୁ ବହି ଆସିଥିବା ଖଇରିଭଞ୍ଜନ ନଦୀର ମିଳନ ଘଟିଛି । ଏହା ଏକ ପବିତ୍ର ସ୍ଥଳ ଏବଂ ଏଠାରେ ବୁଡ ପକେଇଲେ କିମ୍ବା ଅସ୍ଥି ବିସର୍ଜନ କଲେ ମୋକ୍ଷପ୍ରାପ୍ତି ମିଳିଥାଏ ବୋଲି ଲୋକବିଶ୍ବାସ ରହିଛି । ପ୍ରତିବର୍ଷ ଶୀତଦିନେ ଏହି ଦୋ-ମୁହାଁଣୀ ଘାଟକୁ ବହୁ ସଂଖ୍ୟାରେ ପର୍ଯ୍ୟଟକମାନେ ଆସିଥାନ୍ତି ଏବଂ ବୈତରଣୀ ନଦୀର ସୌନ୍ଦର୍ଯ୍ୟଭରା ରୂପକୁ ଉପଭୋଗ କରିଥାନ୍ତି । ଏଠାରେ ପ୍ରାଚୀନ କାଳରେ ମାର୍କଣ୍ଡ ଋଷିଙ୍କ ପୁତ୍ର ମୁର୍କଣ୍ଡ ମହର୍ଷିଙ୍କ ମଠ ସ୍ଥାପନ ହୋଇଥିଲା ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି କ୍ଷେତ୍ରର ପୂର୍ବରେ ଆଦିପୁର, ପଶ୍ଚିମରେ ପଦ୍ମପୁର, ଦକ୍ଷିଣରେ ଜ୍ୟୋତିପୁର ଓ ଉତ୍ତରରେ ଦେଓଢିପା ଅବସ୍ଥିତ । ଆଦିପୁରର ଇଷ୍ଟଦେବତା ନୀଳକଣ୍ଠେଶ୍ବର ଏହି ମନ୍ଦିରରେ ସ୍ଥାପିତ । ବିରାଟ ରାଜାଙ୍କ ଅମଳରେ ଏହି ମନ୍ଦିର ନିର୍ମାଣ ହୋଇଥିବାର କିମ୍ବଦନ୍ତୀ ରହିଛି । ସମୟାନୁକ୍ରମେ ଏହି ମନ୍ଦିରଟି ଭାଙ୍ଗିରୁଜି ଯାଇଛି । ତେବେ ସ୍ଥାନୀୟ ଅଞ୍ଚଳର ଲୋକମାନଙ୍କ ସହଯୋଗରେ ଏଠାରେ ଏକ ନୂତନ ମନ୍ଦିର ନିର୍ମିତ ହୋଇପାରିଛି । ପୁଣ୍ୟତୋୟା ବୈତରଣୀ ନଦୀର ଦୋ-ମୁହାଁଣୀ ଘାଟ (ବୈତରଣୀ ଓ ଖଇରିଭଞ୍ଜନ ନଦୀର ମିଳନ ସ୍ଥଳ) ପୁରାଣ ପ୍ରସିଦ୍ଧ ହୋଇଥିବାବେଳେ ଏହା କେନ୍ଦୁଝର, ମୟୂରଭଞ୍ଜ ଓ ଝାଡଖଣ୍ଡ ରାଜ୍ୟରେ ଏକ ପବିତ୍ର ପୀଠ ଭାବେ ପରିଚିତ । ଏହି ଦୋ-ମୁହାଁଣୀ ଘାଟରେ ବୁଡ଼ ପକେଇଲେ କିମ୍ବା ପୂର୍ବପୁରୁଷଙ୍କ ଅସ୍ଥି ବିସର୍ଜନ କରିଲେ ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ଲୋକବିଶ୍ବାସ ରହିଛି । ଦୋମୁହାଁଣୀ ଘାଟର ପାଣି ସଂଗ୍ରହ କରି ଯେଉଁ ସ୍ଥାନରେ ସିଞ୍ଚନ କରାଯିବ ସେ ସ୍ଥାନ ଶୁଦ୍ଧ ହୋଇଥାଏ । ମହାଶିବରାତ୍ରୀ, ମକର ମେଳା ଏଠାରେ ବେଶ୍ ଧୁମଧାମରେ ପାଳିତ ହୋଇଥାଏ । ଅପରପକ୍ଷେ, ଏହି ଦୋ-ମୁହାଁଣୀ ଘାଟକୁ ପଞ୍ଚତୀର୍ଥ ବୋଲି ବର୍ଣ୍ଣନା କରାଯାଇଥାଏ । ପୁରାଣର ବର୍ଣ୍ଣନା ଅନୁସାରେ, ଏହି ଘାଟ ଗଂଗାଠାରୁ ମଧ୍ୟ ପ୍ରାଚୀନ । ଏହି ପଞ୍ଚତୀର୍ଥରେ ଜଳେଶ୍ବର ମହାଦେବ, ମହୋଦଧି, ମୁକ୍ତେଶ୍ବର ମହାଦେବ, ଧବଳେଶ୍ବର ଓ ନୀଳକଣ୍ଠେଶ୍ବର ବିରାଜମାନ କରିଛନ୍ତି । ଦୋ-ମୁହାଁଣୀ ଘାଟ ସନ୍ନିକଟରେ ରୂପା କୁଣ୍ଡଠାରେ ମୁର୍କଣ୍ଡ ଋଷିଙ୍କର ଯଜ୍ଞକୁଣ୍ଡ ରହିଥିବାର ସ୍ଥାନୀୟ ଲୋକେ କୁହନ୍ତି । ଏହି କୁଣ୍ଡଟି ବୈତରଣୀ ନଦୀର ଏକ ଗଭୀର ଗଣ୍ଡ ମଧ୍ୟରେ ରହିଛି । ନଦୀକୂଳରେ ଗୋ ସଂପଦର ସୁବିଧା ଦୃଷ୍ଟିରୁ ବିରାଟ ରାଜାଙ୍କ ଏକ ଗୋଧନ ଶାଳା ଏଠାରେ ରହିଥିବାର କୀମ୍ବଦନ୍ତୀ ରହିଛି । ବୈତରଣୀ ନଦୀର ଗୋଟିଏ ପଟେ ଆଦିପୁରରେ ଆଦିଭଞ୍ଜଙ୍କର ରାଜଧାନୀ ରହିଥିବାବେଳେ ନଦୀର ଆରପଟେ ଜ୍ୟୋତିପୁରଠାରେ ଜ୍ୟୋତିଭଞ୍ଜଙ୍କ ରାଜଧାନୀ ରହିଛି । ଏଠାରେ ବହୁ ପୌରାଣିକ ସ୍ଥାନମାନ ରହିଥିବାର ଏବେବି ଦୃଷ୍ଟିଗୋଚର ହୋଇଥାଏ । ଏଠାରେ ପାଣ୍ଡବମାନଙ୍କ ସଂପୃକ୍ତି ନେଇ ବହୁ ସୂଚନା ରହିଛି । ଏଠାରେ ପାଣ୍ଡବ ଶବ୍ଦ ଅନୁସାରେ ପାଣ୍ଡରାଶିଳି, ଅର୍ଜୁନଙ୍କ ନାମାନୁସାରେ ଅର୍ଜୁନବିଲା ଭଳି ସ୍ଥାନ ରହିଛି । ବିରାଟ ରାଜାଙ୍କ ଗଡ ଭାବେ ପରିଚିତ ଖିଚିଂରେ ଅନେକ ପୌରାଣିକ ନିଦର୍ଶନ ରହିଥିବାର ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହି ଦୋ-ମୁହାଁଣୀ ଘାଟରେ ମଧ୍ୟ ମହାତ୍ମା ଗାନ୍ଧୀ, ଲାଲ୍

ବାହାଦୁର ଶାସ୍ତ୍ରୀ, ଜବାହରଲାଲ୍ ନେହେରୁଙ୍କ ଚିତାଭସ୍ମ ବିସର୍ଜନ କରାଯାଇଛି । ପ୍ରାଚୀନ କୀର୍ତ୍ତି ବହନ କରିଆସୁଥିବା ନୀଳକଣ୍ଠେଶ୍ୱର ମନ୍ଦିର, ଭଗ୍ନ ଅବସ୍ଥାରେ ପଡିରହିଥିବା ବହୁ ପ୍ରାଚୀନ କୀର୍ତ୍ତିରାଜି ବୈତରଣୀ ନଦୀର ଗତି ପରିବର୍ତ୍ତନ ଯୋଗୁଁ ନଦୀ ମଧ୍ୟରେ ଲୀନ ହେବାକୁ ଯାଉଛି । ଉଭୟ ନଦୀର ମିଳନ ସ୍ଥଳର ମଝିରେ ମନ୍ଦିର ଅବସ୍ଥିତ । ନଦୀରେ ବନ୍ୟା ହେଲେ ମନ୍ଦିର ପ୍ରତି ବିପଦ ସୃଷ୍ଟି ହୋଇଥାଏ ।

## କେନ୍ଦୁଝରରେ ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା

କେନ୍ଦୁଝର ଜିଲ୍ଲା ଏକଦା ବୌଦ୍ଧ ଓ ଜୈନ ଧର୍ମ ପ୍ରଚାର ଓ ପ୍ରସାରର ପ୍ରମୁଖ ପେଣ୍ଠସ୍ଥଳି ଥିବାର ବହୁ ଐତିହାସିକ ନଜିର ରହିଛି । ଜିଲ୍ଲାର ବିଭିନ୍ନ ସ୍ଥାନରୁ ମିଳିଥିବା ପ୍ରାଚୀନ ମୂର୍ତ୍ତି, ଶିଳାଲେଖକୁ ଅନୁଧ୍ୟାନ କଲେ ଏଠାରେ ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା ସଂପର୍କରେ ବହୁତ କିଛି ଜାଣିହୁଏ । ଜିଲ୍ଲାର ଚଂପୁଆରୁ ମିଳିଥିବା ପ୍ରାଚୀନ ଶିଳାଖଣ୍ଡଠାରୁ ଆରମ୍ଭ କରି ବୈତରଣୀ ନଦୀ ଅବବାହିକାର ରାମଲା, ପାଟଣା, ଜଗନ୍ନାଥପୁର, ସିତାବିଞ୍ଜ ଆଦି ସ୍ଥାନରେ ପ୍ରାଚୀନ ବୌଦ୍ଧ ଓ ଜୈନ କୀର୍ତ୍ତି ଥିବାର ଅନେକ ପ୍ରମାଣ ମିଳେ । ଆନନ୍ଦପୁର ଅଞ୍ଚଳରୁ ମିଳୁଥିବା କିଛି ଅବଶେଷ ଷଷ୍ଠ ଓ ସପ୍ତମ ଶତାବ୍ଦୀର ଜୈନ ଧର୍ମ ଓ ପରଂପରାର ପ୍ରମାଣ ଦେଉଛି । ଆନନ୍ଦପୁର ଉପଖଣ୍ଡର ଚକ୍ରତୀର୍ଥ, ପୋତାସିଙ୍ଗିଡି, ବୈଦାଖିଆ (ଗଡ଼ଚଣ୍ଡୀ), ଫକୀରପୁରର ବାଲୁଙ୍କେଶ୍ୱର ଶୈବକ୍ଷେତ୍ର ଆଦି ଅଞ୍ଚଳରେ ବୌଦ୍ଧ ଓ ଜୈନ ଧର୍ମର ସ୍ମୃତି ବହନ କରୁଥିବା ଅନେକ ପ୍ରାଚୀନ ଶିଳାଖଣ୍ଡ ଦେଖିବାକୁ ମିଳେ । ସେହିପରି ଦେଓଗାଁର କୁଶଳେଶ୍ୱର ମନ୍ଦିରରେ ଅବଲୋକିତେଶ୍ୱର ମୂର୍ତ୍ତି ସେଠାରେ ବୌଦ୍ଧ ପରଂପରାର ପ୍ରମାଣ ରଖେ । ପୋତାସିଙ୍ଗିଡି ଓ ଆଖପାଖ ଅଞ୍ଚଳରୁ ସଂଗୃହୀତ ବହୁ ପୁରାତନ ମୂର୍ତ୍ତିକୁ ଏବେ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହିସବୁ ଅଞ୍ଚଳକୁ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅଧିକ ଖନନ କରାଗଲେ ଏଠାରେ ବୌଦ୍ଧ ଓ ଜୈନ ପରଂପରାର ପ୍ରାଚୀନତା ସଂପର୍କରେ ବହୁ ତଥ୍ୟ ଉନ୍ମୋଚନ ହୋଇପାରିବ । କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତ ବଉଳା ପର୍ବତମାଳା ପ୍ରାଚୀନ କାଳରେ ଏକ ଜୈନକ୍ଷେତ୍ର ଥିବାର ଅନୁମାନ କରାଯାଏ । ଏହି ପର୍ବତରେ ଅନେକ ଜୈନ ମନ୍ଦିର ଥିଲା ଏବଂ ଏଠାରେ ଜୈନ ସନ୍ଥମାନେ ଜୈନ ଧର୍ମ ପ୍ରତିଷ୍ଠା କରିପାରିଥିବା ଗବେଷଣାରୁ ଜଣାପଡିଛି । ଏହାଛଡା ଆଖପାଖ ଅଞ୍ଚଳରେ ବହୁ ସଂଖ୍ୟାରେ ଜୈନ ଓ ଯକ୍ଷ ମୂର୍ତ୍ତିକୁ ଏବେ ମଧ୍ୟ ଲୋକମାନେ ଗ୍ରାମଦେବୀ ଭାବେ ପୂଜା କରିଆସୁଛନ୍ତି । କାଠକଟାଠାରେ ପୂଜିତ ବଉଳାଶୁଣି ଗ୍ରାମଦେବୀ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଆନନ୍ଦପୁର ସହରର ଉତ୍ତର-ପୂର୍ବରେ ଅବସ୍ଥିତ ପୋତାସିଙ୍ଗିଡି ଗ୍ରାମରେ ବହୁ ଜୈନ ତୀର୍ଥଙ୍କର ମୂର୍ତ୍ତି ଆବିଷ୍କୃତ ହୋଇଛି ଯାହାକି ଅଷ୍ଟମ ଶତାବ୍ଦୀର ବୋଲି ଅନୁମାନ କରାଯାଉଛି । ଚକ୍ରତୀର୍ଥ ଓ ଏହାର ଆଖପାଖ

ଅଞ୍ଚଳରେ ଏବେ ମଧ୍ୟ ଅନେକ କଳାକୃତିର ଭଗ୍ନାବଶେଷ ଏଣେତେଣେ ବିକ୍ଷିପ୍ତ ଭାବେ ପଡି ରହିଥିବାର ଦେଖିବାକୁ ମିଳେ । ଏଠାରୁ ଆବିଷ୍କୃତ ୨ ଫୁଟ୍ ୬ ଇଞ୍ଚ ଉଚ୍ଚତାର ପଦ୍ମ ଉପରେ ଯୋଗାସନରେ ଉପବିଷ୍ଟ ଜିନ ନାଥ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ରହିଛି । ଏହାଛଡା ନିକଟରେ ଥିବା ରାମଚଣ୍ଡୀ ମନ୍ଦିରରେ ପୂଜା ପାଉଥିବା ଦେବୀଙ୍କ ପାର୍ଶ୍ୱରେ ଜୈନ ମୂର୍ତ୍ତି ଥିବା ମଧ୍ୟ କୁହାଯାଏ । ଆନନ୍ଦପୁର ଉପଖଣ୍ଡର ବୈଦାଖିଆ, ଜମୃିରା, ଅଣା, ଠଣିଗାଁ, ବଂଚୋ, ସୋପୋ, ପାଇଁକୁଳ ଆଦି ଅଞ୍ଚଳରେ ଏବେ ବି ଜୈନମୂର୍ତ୍ତି ବିଭିନ୍ନ ଦେବାଦେବୀ ଭାବେ ପୂଜିତ ହେଉଥିବାର ଦେଖାଯାଏ । ସେହିପରି ଆପଣ କେବେ ଆନନ୍ଦପୁର ଉପଖଣ୍ଡର ଫକୀରପୁରରେ ଥିବା ବାଲୁଙ୍କେଶ୍ୱର ଶିବ ମନ୍ଦିରକୁ ବୁଲିଗଲେ ସେଠାରେ ଜୈନ ସଂସ୍କୃତି ସଂକ୍ରାନ୍ତରେ ଅନେକ ତଥ୍ୟ ହାସଲ କରିପାରିବେ । ଏହି ବାଲୁଙ୍କେଶ୍ୱର ଶିବ ମନ୍ଦିରର ଗର୍ଭଗୃହ ବାହାରେ ଆପଣ ଏକ ବିଶାଳ ଜୈନ ମୂର୍ତ୍ତି ଦେଖିବାକୁ ପାଇବେ । ଯଦିଓ ଏହା ଉପରେ ସିନ୍ଦୁର, ଚନ୍ଦନ ଦେଇ ଲୋକ ପୂଜା କରୁଛନ୍ତି, ମାତ୍ର ଏହା ଏକ ଜୈନ କ୍ଷେତ୍ର ଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହା ସହିତ ଏହି ମନ୍ଦିରର ପାର୍ଶ୍ୱରେ ଓ ମନ୍ଦିର ଭିତରେ ଜୈନ ଧର୍ମର ଅନେକ ଦେବଦେବୀଙ୍କର ଅନେକ ଛୋଟବଡ଼ ମୂର୍ତ୍ତି ସାଙ୍ଗକୁ ଜୈନ ତନ୍ତ୍ର ଦେବୀମାନଙ୍କର ବହୁ ମୂର୍ତ୍ତି ରହିଛି । ଏହା ଏକ ଜୈନ ତାନ୍ତ୍ରିକ କ୍ଷେତ୍ର ଥିବାର ବହୁ ପ୍ରମାଣ ଏଠାରେ ରହିଛି । ବଉଳା ପର୍ବତ ପାଦଦେଶରେ ଅବସ୍ଥିତ ପୋତାସିଙ୍ଗିଡି ଗ୍ରାମରୁ ମିଳିଥିବା ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ ଓ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିଛି । ଏଠାରେ ଜୈନ ଦେବୀ ଅମ୍ବିକା ରାମଚଣ୍ଡୀ ଭାବେ ପୂଜା ପାଉଛନ୍ତି ।

ଆନନ୍ଦପୁର ଉପଖଣ୍ଡ ବ୍ୟତୀତ କେନ୍ଦୁଝର ଓ ଚଂପୁଆ ଉପଖଣ୍ଡ ଅଞ୍ଚଳରେ ବୌଦ୍ଧ ପରଂପରାର ବହୁ ନିଦର୍ଶନ ଦେଖିବାକୁ ମିଳେ । ଦେଓଗାଁ କୁଶଳେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଥିବା ଅତି ପ୍ରାଚୀନ ବାମ୍ଫି ଯାହାକି ଯାଜପୁର ଜିଲ୍ଲାର ଉଦୟଗିରିର ବାମ୍ଫି ତୁଳନା କରାଯାଇପାରେ । ହାଟଡିହି ବ୍ଲକ୍‌ର ହାବଳେଶ୍ୱର ମନ୍ଦିର ନିକଟବର୍ତ୍ତୀ ପଞ୍ଚବୌଦ୍ଧା ମହାଶକ୍ତି (ପାଣ୍ଡରା, ମାପକି, ଲୋଚନା, ତାରା, ବଜ୍ରଅତ୍ରିଶ୍ୱରି)ଙ୍କ ମୂର୍ତ୍ତିକୁ ଅନୁଧ୍ୟାନ କଲେ ଏଠାରେ ବୌଦ୍ଧ ପରପଂରାର ପ୍ରାଚୀନତା ସଂପର୍କରେ ଅନେକ ତଥ୍ୟ ମିଳିଥାଏ । ଘସିପୁରା ଥାନା ନିକଟରେ ଅବସ୍ଥାପିତ ବୁଦ୍ଧଙ୍କ ମୂର୍ତ୍ତି, ଶୈଲଙ୍ଗ, ବୈତରଣୀ ନଦୀକୂଳସ୍ଥ ଶମଣା, ରକ୍ଷାପ, ବାସ୍ଥ, ସୁଲତା ଆଦି ଗ୍ରାମସମୂହ ବୌଦ୍ଧଧର୍ମର ସ୍ମୃତି ବହନ କରୁଛି । କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ପୂଜିତ ହେଉଥିବା ତାରା ମୂର୍ତ୍ତି ଓ ବିଭିନ୍ନ ସ୍ଥାନରୁ ଉଦ୍ଧାର କରାଯାଇଥିବା ଅବଶେଷରୁ ବୌଦ୍ଧଧର୍ମ, ପରଂପରାର ପ୍ରମାଣ ମିଳିଥାଏ । ଆନନ୍ଦପୁର ଉପଖଣ୍ଡର ଗଡଚଣ୍ଡୀ, କେନ୍ଦୁଝର ସହର ନିକଟସ୍ଥ ଘୁଟୁରୁ ଗ୍ରାମରେ ଥିବା ବିଷ୍ଣୁପାଟ ମୂର୍ତ୍ତି ବୌଦ୍ଧ ତନ୍ତ୍ର ସାଧନାର ଅନେକ ସ୍ମାରକୀ ବହନ କରିଥାଏ ବୋଲି ଗବେଷକ ମତବ୍ୟକ୍ତ କରନ୍ତି । କେନ୍ଦୁଝର

ସଦର ବ୍ଲକ୍ ଅନ୍ତର୍ଗତ ଘୁଟୁରୁ ଗାଁଟି ଐତିହାସିକ ଦୃଷ୍ଟିକୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏଠାରେ କେନ୍ଦୁଝର ରାଣୀଙ୍କର କୋଠିଥିଲା ଏବଂ ରାଣୀ ଏଠାରେ ଅଧିକାଂଶ ସମୟ ଅବସର ବିନୋଦନ କରନ୍ତି ବୋଲି ଗ୍ରାମବାସୀ ପ୍ରକାଶ କରନ୍ତି । ଘୁଟୁରୁ ଗାଁର ଶେଷମୁଣ୍ଡରେ ଥିବା ଶାଳ ନିକଟରେ ଏକ ପ୍ରାଚୀନ ମୂର୍ତ୍ତି ରହିଛି ଯାହାକୁ ସ୍ଥାନୀୟ ଗ୍ରାମବାସୀ ବିଷ୍ଣୁପାଟ ଭାବେ ପୂଜା କରନ୍ତି । ଏହା ଏକ ଦେବୀ ମୂର୍ତ୍ତି । ତେବେ ଏହି ମୂର୍ତ୍ତିଟି ବିଷ୍ଣୁପାଟ ଭାବେ ପୂଜା ପାଉଥିଲେ ମଧ୍ୟ ଏହା ବୌଦ୍ଧ ତନ୍ତ୍ରଯୁଗର ଦେବୀ ତାରାଙ୍କ ମୂର୍ତ୍ତି ବୋଲି ସ୍ଥାନୀୟ ଗବେଷକ ଡ. ବିମ୍ବାଧର ବେହେରା ମତବ୍ୟକ୍ତ କରନ୍ତି । ସୀତାବିଞ୍ଜିଠାରେ ଏକ ଚତୁର୍ମୁଖୀ ଶିବଲିଙ୍ଗ, ପ୍ରାଚୀନ ପ୍ରସ୍ତର ଯୁଗର ହସ୍ତୀମୂର୍ତ୍ତି ଏବଂ ଏକ ଭଗ୍ନ ବୌଦ୍ଧବିହାରର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଏଠାରେ ଭୂମି ତଳେ ପୋତି ହୋଇଥିବା ଇଟାର ପ୍ରାଚୀନ ଧ୍ୱଂସ ସ୍ତୂପକୁ ଅନୁଧ୍ୟାନ ମନେହୁଏ ଏଠାରେ ଦିନେ ଏକ ବୌଦ୍ଧବିହାର ଥିଲା ବୋଲି ବିଶ୍ୱାସ ହୁଏ । ହଜାର ହଜାର ବର୍ଷ ତଳର ଇଟାଗଦା ଓ ଶିଳାଲିପିକୁ ଦେଖିଲେ ଏହା ଏକ ଭଗ୍ନ ବୌଦ୍ଧବିହାରର ସୂଚନା ଦେଇଥାଏ । ବୌଦ୍ଧ ଯୁଗରେ ଏଠାରେ ଏକ ବୃହତ୍ ଶିକ୍ଷାନୁଷ୍ଠାନ ଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଏହି ଧ୍ୱଂସ ଇଟାସ୍ତୂପ ନିକଟରେ କୃଷ୍ଣବର୍ଣ୍ଣ ଅକର୍ମ ଶିଳା ଦେହରେ ଲିଖିତ ହୋଇଥିବା ଲିପିଗୁଡିକର ଆକାରପ୍ରକାର ଦକ୍ଷିଣ ଭାରତୀୟ ଲିପିର ଆକାର ବୋଲି କିଛି ଗବେଷକ ମତବ୍ୟକ୍ତ କରିଛନ୍ତି । ଆଉ କିଛି ଗବେଷକ ଏଠାରେ ବସବାସ କରୁଥିବା ପ୍ରାଚୀନ ଆଦିବାସୀଙ୍କର ଲିପି ଭାବେ ବର୍ଣ୍ଣନା କରିଛନ୍ତି । ତେବେ ଏହି ଲିପିକୁ ନେଇ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଅପରପକ୍ଷେ, ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ ଏବଂ ବୌଦ୍ଧମାନଙ୍କ ଉପରେ ହୋଇଥିବା ଧାର୍ମିକ ଆକ୍ରମଣ କାରଣରୁ ଏହି ବୌଦ୍ଧବିହାରଟି ଧ୍ୱଂସ ପାଇଯାଇଛି ବୋଲି ଐତିହାସିକମାନେ ମତ ପ୍ରକାଶ କରନ୍ତି ।ଏହା ବ୍ୟତୀତ ଚଂପୁଆ ଉପଖଣ୍ଡର ପ୍ରସିଦ୍ଧ ଐତିହାସିକ ନନ୍ଦପୁରର କପିଳମୁନି ଆଶ୍ରମ ଏକ ବିଷ୍ଣୁ ପୀଠ ଭାବେ ପରିଚିତ ହୋଇଥିଲେ ମଧ୍ୟ ଅତୀତରେ ଏକ ବୌଦ୍ଧତନ୍ତ୍ର କ୍ଷେତ୍ର ବୋଲି ଗବେଷକମାନେ ଦାବି କରନ୍ତି । ଏଠାରେ ଏକ ବିସ୍ତିର୍ଣ୍ଣ ଚଟାଣ ଉପରେ ଅନେକ ଛୋଟବଡ଼ ମନ୍ଦିରସମୂହ ରହିଛି । ଏହି ମନ୍ଦିରର ଶୈଳୀ ବଲାଙ୍ଗୀରର ଯୋଗିନୀ ପୀଠ 'ରାଣୀପୁର ଝରିଆଲ୍' ସହ ତୁଳନା କରାଯାଇପାରେ । ଏଠାରେ ବୌଦ୍ଧ ତନ୍ତ୍ର ଦେବୀ (ଯୋଗିନୀ)ଙ୍କର ବହୁ ପ୍ରାଚୀନ ମୂର୍ତ୍ତି ଏବେ ମଧ୍ୟ ସ୍ଥାନୀୟ ଲୋକଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ଦୁର୍ଭାଗ୍ୟ, ଜିଲ୍ଲାର ଏହି ପ୍ରାଚୀନ ତନ୍ତ୍ର ପୀଠଟି ସମସ୍ତଙ୍କ ନଜର ଆଢୁଆଳରେ ରହିଛି । ଏହାଛଡା ପଳାସପଙ୍ଗାର ସନ୍ଥେଭଞ୍ଜ ହୁଡିଟି ମଧ୍ୟ ଏକ ବୌଦ୍ଧ ଧାର୍ମିକ ପୀଠ ଭାବେ ପରିଚିତ । ଏଠାରେ ବୌଦ୍ଧ ରାଜା ଶାନ୍ତି ଭଞ୍ଜ (ଭୁସୁକୁପାଦ) ସାଧନାରତ ଥିଲେ ।

# ଚକ୍ରତୀର୍ଥ, ଗଡଚଣ୍ଡୀ ପୀଠ ଓ ଜୈନ କ୍ଷେତ୍ର



କେନ୍ଦୁଝର ଜିଲ୍ଲାର ଚକ୍ରତୀର୍ଥ ଓ ଗଡ଼ଚଣ୍ଡୀ ପୀଠ ସମଗ୍ର ରାଜ୍ୟରେ ଅତି ପ୍ରାଚୀନ ବୌଦ୍ଧ ଓ ଜୈନ ପୀଠ ଭାବେ ପରିଚିତ । ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ହାଟଡିହି ବ୍ଲକ୍‌ର ବଉଳା ପର୍ବତମାଳାର ପାଦଦେଶରେ ରହିଛି ଗଡ଼ଚଣ୍ଡୀ ପୀଠ । ବୌଦ୍ଧ ଓ ଜୈନ ଯୁଗର କିର୍ତ୍ତୀରାଜିସମୃଦ୍ଧ ଏହି ଅଞ୍ଚଳର ସ୍ୱତନ୍ତ୍ର ଖ୍ୟାତି ରହିଛି । ଗଡ଼ଚଣ୍ଡୀଠାରେ ଥିବା ଗୁମ୍ଫାରେ ବୌଦ୍ଧତନ୍ତ୍ରର ଦେବୀ ଚାମୁଣ୍ଡାଙ୍କୁ ପୂଜା କରାଯାଉଥିବା ବିଶ୍ୱାସ କରାଯାଏ । କିମ୍ବଦନ୍ତୀ କହେ, କେନ୍ଦୁଝରର ଆଠଟି ଗଡ଼ ମଧ୍ୟରୁ ଗଡ଼ ଚଣ୍ଡୀ ଅନ୍ୟତମ ପ୍ରତ୍ୟକ୍ଷ ଠାକୁରାଣୀ । ପୀଠର ତିନି ପାର୍ଶ୍ୱରେ ପାହାଡ ରହିଥିବାବେଳେ ପୂର୍ବ ପାର୍ଶ୍ୱରେ ଏକ ବିରାଟ ପ୍ରାଚୀର ଓ ଗଡ଼ଖାଇ ଥିଲା । ତେବେ ଏହା ଏବେ ଧ୍ୱଂସ ପାଇଯାଇଛି । ଏଠାରେ ପ୍ରାଚୀନ ବୌଦ୍ଧ ଓ ଜୈନ କୀର୍ତ୍ତି ରହିଥିବାବେଳେ ନିକଟସ୍ଥ ପୋତାସିଂଗିଡ଼ି ଗ୍ରାମ ଏହାର ସ୍ୱାକ୍ଷର ବହନ କରିଥାଏ । ୧୯୯୮ ମସିହାରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଏହି ପୀଠକୁ ରାଜ୍ୟର ଏକ ପର୍ଯ୍ୟଟନ ସ୍ଥଳୀ ଭାବେ ମାନ୍ୟତା ପ୍ରଦାନ କରାଯାଇଛି । ଏହି ଅଞ୍ଚଳରୁ ବହୁ ସଂଖ୍ୟାରେ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଛି । ପ୍ରତ୍ନତତ୍ତ୍ୱ ବିଭାଗ ଏ ଅଞ୍ଚଳରେ ଅଧିକ ଖନନ କରିପାରିଲେ ପ୍ରାଚୀନ ଜୈନ ସଂସ୍କୃତି ସଂପର୍କରେ ବହୁତ ତଥ୍ୟ ମିଳିପାରିବ ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । ଗଡଚଣ୍ଡୀ ନିକଟସ୍ଥ ବଉଳା ପର୍ବତମାଳାର ପାଦଦେଶରେ ରହିଛି ରାମଚଣ୍ଡୀ ଓ ପୋତାସିଙ୍ଗିଡି ।

ସେହିପରି ଗଡ଼ଚଣ୍ଡୀର ଅନ୍ୟ ଏକ ପାର୍ଶ୍ୱରେ ରହିଛି ପୁରାତନ ପୀଠ ଚକ୍ରତୀର୍ଥ । ଏଠାରେ ଥିବା ଶିବ ମନ୍ଦିର ନିକଟ ଦେଇ ଏକ ଝରଣା ବହି ଯାଇଛି । ଏହାକୁ ମା' ଗଙ୍ଗା ବୋଲି ସ୍ଥାନୀୟ ଲୋକେ କହନ୍ତି । ଗଡ଼ଚଣ୍ଡୀ ନିକଟରେ ବାଘ ଗୁମ୍ଫା, ଧବଳି କୁଣ୍ଡ, ଦେବସଭା ମଣ୍ଡପ, ସ୍ୱର୍ଗାରୋହଣ ପଥ, ବନଦୁର୍ଗାଙ୍କ ବିଜେସ୍ଥଳି, ଆକାଶଗଙ୍ଗା ତୀର୍ଥସ୍ଥଳୀ, ଯୋଗାଶ୍ରମ, ପ୍ରାଚୀନ ବୌଦ୍ଧ ଓ ଜୈନପୀଠ ଆଦି ପର୍ଯ୍ୟଟକଙ୍କ ମନ ମୋହିଥାଏ । ଗଡ଼ଚଣ୍ଡୀ ପୀଠରେ ଥିବା ଜୈନମୂର୍ତ୍ତିକୁ ଲୋକେ ବଉଳାଶୁଣୀ ଦେବୀ ଭାବେ ପୂଜା କରିଥାନ୍ତି । ଆନନ୍ଦପୁର ବ୍ଲକ୍ କାଠକଟା ପଞ୍ଚାୟତରେ ରହିଛି ଚକ୍ରତୀର୍ଥ ଜୈନକ୍ଷେତ୍ର । ଏହା ଏକ ଜୈନ କ୍ଷେତ୍ର ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଏହାକୁ ବିଷ୍ଣୁ ଓ ଶୈବ କ୍ଷେତ୍ର ଭାବେ ପ୍ରଚାର କରାଯାଇଛି । ଚକ୍ରତୀର୍ଥକୁ ନେଇ ହିନ୍ଦୁ ପୁରାଣଶାସ୍ତ୍ରରେ ବହୁ କିମ୍ବଦନ୍ତୀ ରହିଛି । ବଉଳା ପର୍ବତ ପାଦଦେଶରେ ଅବସ୍ଥିତ ପୋତାସିଙ୍ଗିଡି ଗ୍ରାମରୁ ମିଳିଥିବା ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ ଓ ଋଷଭନାଥଙ୍କ ମୂର୍ତ୍ତି ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିଛି । ଏଠାରେ ଜୈନ ଦେବୀ ଅମ୍ବିକା ରାମଚଣ୍ଡୀ ଭାବେ ପୂଜା ପାଉଛନ୍ତି ।

## ଦେଓଗାଁର ଐତିହାସିକ କୁଶଳେଶ୍ୱର ମନ୍ଦିର ଓ ବୌଦ୍ଧକ୍ଷେତ୍ର

ଓଡ଼ିଶାର ପ୍ରାଚୀନତମ ଶୈବପୀଠମାନଙ୍କ ମଧ୍ୟରେ ଦେଓଗାଁର କୁଶଳେଶ୍ୱର ଅନ୍ୟତମ । କେନ୍ଦୁଝର ଜିଲ୍ଲାର ଘସିପୁରା ବ୍ଲକ୍ ଅନ୍ତର୍ଗତ ଦେଓଗାଁର କୁଶଭଦ୍ରା ନଦୀ କୂଳରେ ରହିଛି ବହୁ ପୁରାତନ ଐତିହାସିକ କୁଶଳେଶ୍ୱର ଶୈବପୀଠ । କେନ୍ଦୁଝର ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ପୀଠ ଭାବେ ଦେଓଗାଁ ବେଶ୍ ଜଣାଶୁଣା ଦେଓଗାଁ । 'ଦେବଗ୍ରାମ'ର ଅପଭ୍ରଂଶ ହୋଇ ଦେଓଗାଁ ହୋଇଛି । ଏହା ଓଡ଼ିଶାର ଏକ ପ୍ରାଚୀନତମ ବୌଦ୍ଧ ତନ୍ତ୍ର ଉପାସନା କ୍ଷେତ୍ର ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଶୈବପୀଠ ଭାବେ ପରିଚିତ ହୋଇପାରିଛି । ଏଠାରେ ମହାଦେବ କୁଶଳେଶ୍ୱରଙ୍କ ଏକ ମନ୍ଦିର ରହିଛି । ଏହି ପୀଠରେ ମହାଦେବ ଶିବଙ୍କ ସମେତ ବହୁ ବୌଦ୍ଧ ତନ୍ତ୍ର ଦେବୀଙ୍କ ପ୍ରାଚୀନ ମୂର୍ତ୍ତି ରହିଛି । ଏସବୁ ଏବେ ବିଭିନ୍ନ ଦେବଦେବୀ ନାମରେ ପୂଜିତ ହେଉଛନ୍ତି । ଏଠାରେ ମହାଦେବ କୁଶଳେଶ୍ୱରଙ୍କ ଏକ ମନୋରମ ମନ୍ଦିର ରହିଛି । ରାଜା ଯଯାତି କେଶରୀ ଏହି ମନ୍ଦିର ନିର୍ମାଣ କରିଛନ୍ତି ଏବଂ ଏହା ଭୁବନେଶ୍ୱରର ଲିଂଗରାଜ ମନ୍ଦିରଠାରୁ ମଧ୍ୟ ପୁରୁଣା ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । କୁଶଭଦ୍ରା (କୁଶେଇ ନଈ) ନଦୀଟି କେନ୍ଦୁଝର ଜିଲ୍ଲାର କାଳିଆହତା ଗ୍ରାମ ପଞ୍ଚାୟତର ମେଘାସନ ପର୍ବତରୁ ବାହାରି ୮୦ କିଲୋମିଟର ପାର୍ବତ୍ୟ ଭୂମି ଅତିକ୍ରମ କରି ବାତୋ ଗ୍ରାମ ନିକଟରେ ବୈତରଣୀ ନଦୀରେ ମିଶିଛି । ୯୦୦ ଖ୍ରୀଷ୍ଟାବ୍ଦରେ ରାଜା ଯଯାତି କେଶରୀଙ୍କ ଦ୍ୱାରା ଏହି ମନ୍ଦିର ନିର୍ମାଣ ହୋଇଥିବା ଇତିହାସ କୁହେ । ମନ୍ଦିରର ଜଗମୋହନ ଓ ଦକ୍ଷିଣ ପାର୍ଶ୍ୱରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ରହିଛି । ଏହି ଅବଲୋକିତେଶ୍ୱରଙ୍କ ଉପସ୍ଥିତି ଏଠାରେ

ବୌଦ୍ଧ ପରଂପରାର ସୂଚନା ଦେଇଥାଏ । ଯାଜପୁର ଜିଲ୍ଲାର ଉଦୟଗିରି ଢାଙ୍କାର ଏକ ବାଙ୍କି ଏଠାରେ ରହିଛି । ଏହି ବାଙ୍କି ମଧ୍ୟ ବୌଦ୍ଧ ପରଂପରାର ସୂଚନା ପ୍ରଦାନ କରିଥାଏ । ଏଠାରେ ଥିବା ଏକପାଦୀ ଭୈରବ ମୂର୍ତ୍ତିଙ୍କର ନାମ 'ଘଣ୍ଟ କର୍ଣ୍ଣ' । ଏହି ଭୈରବ ମୂର୍ତ୍ତି ଜୈନ ସିଦ୍ଧଙ୍କର ମୂର୍ତ୍ତି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି ।

## ଘୁଟୁରୁ ଗାଁର ବିଷ୍ଣୁପାଟ ଓ ବୌଦ୍ଧ ତନ୍ତ୍ର ଦେବୀ

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ଘୁଟୁରୁ ଗାଁଟି ଐତିହାସିକ ଦୃଷ୍ଟିକୋଣରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏଠାରେ କେନ୍ଦୁଝର ରାଣୀଙ୍କର କୋଠିଥିଲା ଏବଂ ରାଣୀ ଏଠାରେ ଅଧିକାଂଶ ସମୟ କାଟିଥାନ୍ତି ବୋଲି ଗ୍ରାମବାସୀ ପ୍ରକାଶ କରନ୍ତି । ଘୁଟୁରୁ ଗାଁର ଶେଷମୁଣ୍ଡରେ ଥିବା ଶାଳ ନିକଟରେ ଏକ ପ୍ରାଚୀନ ମୂର୍ତ୍ତି ରହିଛି ଯାହାକୁ ସ୍ଥାନୀୟ ଗ୍ରାମବାସୀ ବିଷ୍ଣୁପାଟ ଭାବେ ପୂଜା କରନ୍ତି । ଏହା ଏକ ଦେବୀ ମୂର୍ତ୍ତି । ତେବେ ଏହି ମୂର୍ତ୍ତିଟି ବିଷ୍ଣୁପାଟ ଭାବେ ପୂଜା ପାଉଥିଲେ ମଧ୍ୟ ଏହା ବୌଦ୍ଧ ତନ୍ତ୍ରଯୁଗର ଦେବୀ ତାରାଙ୍କ ମୂର୍ତ୍ତି ବୋଲି ଗବେଷକ ଡ· ବିମ୍ବାଧର ବେହେରା ଦାବି କରନ୍ତି । ମାତ୍ର ଏହି ବୌଦ୍ଧ ତନ୍ତ୍ର ଦେବୀଙ୍କ ପ୍ରାଚୀନ ମୂର୍ତ୍ତିଟି ଏହି ଗାଁକୁ କିଭଳି ଆସିଛି ଏବଂ କେଉଁଠୁ ଆସିଛି ତାହା ଅଧିକ ଗବେଷଣାସାପେକ୍ଷ ବୋଲି ଡ· ବେହେରା ପ୍ରକାଶ କରନ୍ତି । ତେବେ ଘୁଟୁରୁ କେନ୍ଦୁଝର ରାଜାଙ୍କର ଏକ ଚାଷ ଗାଁ ଭାବେ ବିବେଚିତ ହେଉଥିବାରୁ ହୁଏତ ରାଜା ଏହି ମୂର୍ତ୍ତିଟିକୁ ଆଣି ଏଠାରେ ସ୍ଥାପନ କରିଥାଇପାରନ୍ତି ବୋଲି ଅନୁମାନ କରାଯାଏ ।

## ସୀତାବିଞ୍ଜିର ଧ୍ୱଂସପ୍ରାପ୍ତ ବୌଦ୍ଧବିହାର

ସୀତାବିଞ୍ଜିଠାରେ ରହିଛି ଏକ ଚତୁର୍ମୁଖୀ ଶିବଲିଙ୍ଗ, ପ୍ରାଚୀନ ପ୍ରସ୍ତର ଯୁଗର ହସ୍ତୀମୂର୍ତ୍ତି ଏବଂ ଭଗ୍ନ ବୌଦ୍ଧବିହାର । ଏଠାରେ ଥିବା ଇଟାର ପ୍ରାଚୀନ ଧ୍ୱଂସ ସ୍ତୂପକୁ ଦେଖିଲେ ମନେହୁଏ ଏଠାରେ ଦିନେ ଏକ ବୌଦ୍ଧବିହାର ଥିଲା । ହଜାର ହଜାର ବର୍ଷ ତଳର ଇଟାଗଦା ଓ ଶିଳାଲିପିକୁ ଦେଖିଲେ ଏହା ଏକ ଭଗ୍ନ ବୌଦ୍ଧବିହାରର ସୂଚନା ଦେଇଥାଏ । ବୌଦ୍ଧ ଯୁଗରେ ଏଠାରେ ଏକ ବୃହତ୍ ଶିକ୍ଷାନୁଷ୍ଠାନ ଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି ।ଏହି ଧ୍ୱଂସ ଇଟାସ୍ତୂପ ନିକଟରେ କୃଷ୍ଣବର୍ଣ୍ଣ ଅକର୍ମ ଶିଳା ଦେହରେ ଲିଖିତ ହୋଇଥିବା ଲିପିଗୁଡିକର ଆକାରପ୍ରକାର ଦକ୍ଷିଣ ଭାରତୀୟ ଲିପିର ଆକାର ବୋଲି କିଛି ଗବେଷକ ମତବ୍ୟକ୍ତ କରିଛନ୍ତି । ଆଉ କିଛି ଗବେଷକ ଏଠାରେ ବସବାସ କରୁଥିବା ପ୍ରାଚୀନ ଆଦିବାସୀଙ୍କର ଲିପି ଭାବେ ବର୍ଣ୍ଣନା କରିଛନ୍ତି । ତେବେ ଏହି ଲିପିକୁ ନେଇ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ଅପରପକ୍ଷେ, ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ ଏବଂ ବୌଦ୍ଧମାନଙ୍କ ଉପରେ ହୋଇଥିବା ଧାର୍ମିକ ଆକ୍ରମଣ କାରଣରୁ ଏହି ବୌଦ୍ଧବିହାରଟି ଧ୍ୱଂସ ପାଇଯାଇଛି ବୋଲି ଐତିହାସିକମାନେ ମତ ପ୍ରକାଶ କରନ୍ତି ।

## ଢେଙ୍କିକୋଟ

କେନ୍ଦୁଝରଗଡ଼ଠାରୁ ୩୦ କିଲୋମିଟର ଦୂରରେ ଘଟଗାଁ ବ୍ଲକ୍‌ରେ ଅବସ୍ଥିତ ଐତିହାସିକ ଢେଂକିକୋଟ । ଏହା ଏକ ବୌଦ୍ଧ କ୍ଷେତ୍ର ବୋଲି ଐତିହାସିକଙ୍କ ମତ । **Mystic Tales of Lanra Taraknath** ପୁସ୍ତକ ଅନୁସାରେ, ଓଡ଼୍ଡୀୟନ୍‌ର ପଶ୍ଚିମରେ ସାମନ୍ତ ଶୁଭ ନାମରେ ଜଣେ ରାଜା ଥିଲେ । ଲୁଇପା ଏହି ସାମନ୍ତ ଶୁଭ ଓ ତାଙ୍କ ମନ୍ତ୍ରୀଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଇଥିଲେ । ବୌଦ୍ଧ ଧର୍ମ ଗ୍ରହଣ କରିବା ପରେ ରାଜା ଦାରିକ ନାମରେ ଏବଂ ମନ୍ତ୍ରୀ ଢେଙ୍କି ନାମରେ ପରିଚିତ ହୋଇଥିଲେ । ଏହି ଢେଙ୍କି ପରେ ଢେଙ୍କିପାଦ ବା ଢେଙ୍କିପା ନାମରେ ପରିଚିତ ହେଲେ । ତାଙ୍କର ସାଧନାକ୍ଷେତ୍ର ଢେଙ୍କିକୋଟ ବୋଲି ଡ. କରୁଣାକର କର ତାଙ୍କର 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ' ପୁସ୍ତକରେ ଉଲ୍ଲେଖ କରିଛନ୍ତି । କୋଟ ଶବ୍ଦର ଅର୍ଥ ଗଡ଼ । ଢେଙ୍କିପା ଏହି ସ୍ଥାନରେ ଅବସ୍ଥାନ କରୁଥିବାରୁ ତାଙ୍କ ନାମାନୁସାରେ ଏହି ସ୍ଥାନର ନାମ ଢେଙ୍କିକୋଟ ହୋଇଛି ବୋଲି ଐତିହାସିକଙ୍କ ମତ । ରସାୟନବିତ୍ ନାଗାର୍ଜୁନ ଢେଙ୍କିକୋଟ ନିକଟରେ ଅବସ୍ଥାନ କରୁଥିଲେ ଏବଂ ସେ ଆର୍ଯ୍ୟତାରା (ଘଟଗାଁ ତାରିଣୀ)ଙ୍କ ଉପାସକ ଥିଲେ ବୋଲି ଗବେଷକ ବାନାମ୍ବର ଆଚାର୍ଯ୍ୟ ଦାବି କରନ୍ତି । ଏହି ଦୃଷ୍ଟିରୁ ତାରିଣୀ ବୌଦ୍ଧ ତନ୍ତ୍ର ଦେବୀ ବୋଲି ବିଶ୍ୱାସ କରାଯାଏ ।

## ପିପିଳିଆ

କେନ୍ଦୁଝରଗଡ଼ଠାରୁ ପ୍ରାୟ କୋଡିଏ କିଲୋମିଟର ଦୂରରେ ଏବଂ ଢେଙ୍କିକୋଟ ପୂର୍ବରୁ ଏହି ପିପିଳିଆ ସ୍ଥାନଟି ଅବସ୍ଥିତ । ଏହା ମଧ୍ୟ ଏକ ପ୍ରାଚୀନ ବୌଦ୍ଧ କ୍ଷେତ୍ର ବୋଲି ଗବେଷକମାନେ ଦାବି କରନ୍ତି ।ପ୍ରଥମ କିମ୍ବା ଦ୍ୱିତୀୟ ଶତାବ୍ଦୀ ବେଳକୁ ବୌଦ୍ଧ ଧର୍ମ ଯାଜକ ବୋଧିଶ୍ରୀ ଭାରତର ଅନେକ ସ୍ଥାନରେ ବୌଦ୍ଧ କୀର୍ତ୍ତି ସ୍ଥାପନ କରିଥିଲେ । ସେ ସୀତାବିଂଜିର ଫୁଲ ଚାଙ୍ଗୁଡି ହୁଡି (ପୁଷ୍ପଗିରି)ଠାରେ ଶୈଳ ମଣ୍ଡପ ନିର୍ମାଣ କରିବା ସହ ପିପିଳିଆଠାରେ ସାତ ଗୋଟି ଅପବାରକ (ଗିରିଗୃହ) ନିର୍ମାଣ କରିଥିବା କଥା ତୃତୀୟ ଶତାବ୍ଦୀର ନାଗାର୍ଜୁନ କୋଣ୍ଡ ଶିଳାଲେଖରୁ ଜଣାଯାଏ । 'ପୁଷ୍ପଗିରୌ ଶୈଳଃ ମଣ୍ଡପଃ ପପିଳୟମ୍ ଅପବାରକାଃ' ବୋଲି ଏହି ଶିଳାଲେଖରେ ଉଲ୍ଲେଖ ଅଛି । ଶିଳାଲେଖ ବର୍ଣ୍ଣିତ ପିପଳୟମ୍ ବା ପିପଳ ହିଁ ଆଧୁନିକ ପିପିଳିଆ ତଥା ଏହି ଗ୍ରାମ ନିକଟସ୍ଥ ଖଣ୍ଡଘର ଗ୍ରାମରେ ଲଗାଲଗି ହୋଇ ରହିଥିବା ସାତୋଟି ଖୋଦିତ ଗୁମ୍ଫାକୁ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଗିରିଗୃହ ଭାବେ ଚିହ୍ନିତ କରିଛନ୍ତି ।

## ଶାନ୍ତି ଭଞ୍ଜ (ଭୁସୁକୁପାଦ) ଓ ସଛେଇଭଞ୍ଜ ଗୁମ୍ଫା

କେନ୍ଦୁଝରଗଡ଼ଠାରୁ ପ୍ରାୟ କୋଡିଏ କିଲୋମିଟର ଦୂରରେ ସଛେଇଭଞ୍ଜ ପାହାଡ଼ ଓ ଗୁମ୍ଫା ଅବସ୍ଥିତ ।


ସଛେିଭଞ୍ଜ ଗୁମ୍ଫା

କେନ୍ଦୁଝରର ପଦର ବ୍ଲକ୍ ଅନ୍ତର୍ଗତ ପଳାସପଂଗା ଗ୍ରାମର ପୂର୍ବ ଦିଗରେ ଏକ ଅଳ୍ପ ଉଚ୍ଚ ତଥା ଦୀର୍ଘ ପର୍ବତମାଳା ରହିଛି । ଏହି ପାହାଡ ଉପରେ ସଛେିଭଞ୍ଜ ଗୁମ୍ଫା ଅବସ୍ଥିତ । ସଛେିଭଞ୍ଜ ଗୁମ୍ଫା ବ୍ୟତୀତ ଏହି ପାହାଡରେ ଆହୁରି ଅନେକ ଛୋଟବଡ଼ ଗୁମ୍ଫା ଦେଖିବାକୁ ମିଳେ । ଏଠାରେ ପ୍ରାଚୀନ ବୌଦ୍ଧ କୀର୍ତ୍ତି ସଂପର୍କରେ ଅନେକ ପ୍ରମାଣ ରହିଛି । ସଛେିଭଞ୍ଜ ପାହାଡ ଉପରେ ଗୁମ୍ଫା, ସୁଡ଼ଙ୍ଗ ଓ ଏକ ମନୋରମ ପୁଷ୍କରିଣୀ ରହିଛି । ଅଷ୍ଟମ ଶତାବ୍ଦୀରେ କେନ୍ଦୁଝରର ପ୍ରାକ୍ତନ ବୌଦ୍ଧ ନରପତି ଶାନ୍ତିଦେବ (ଶାନ୍ତି ଭଞ୍ଜ) ଏଠାରେ ନିଜର ଆଶ୍ରମ ଜୀବନ କଟାଇଥିବା କଥା ଗବେଷକମାନେ ମତ ପ୍ରକାଶ କରନ୍ତି । କେନ୍ଦୁଝରର ରାଜା ଶାନ୍ତି ଭଞ୍ଜ ୮୪ ସିଦ୍ଧ ସାଧକମାନଙ୍କ ମଧ୍ୟରୁ ଅନ୍ୟତମ ସିଦ୍ଧ ଥିଲେ । ସେ 'ଶାନ୍ତିପା', 'ଶାନ୍ତିଦେବ', 'ଶାନ୍ତିଭଞ୍ଜ', 'ଶାନ୍ତିନାଥ', 'ଭୁସୁକୁପା', 'ଭୁସୁକୁପାଦ' ନାମରେ ପ୍ରସିଦ୍ଧିଲାଭ କରିଥିଲେ । ସପ୍ତମ ଶତାବ୍ଦୀରେ ରଚନା କରାଯାଇଥିବା ବୌଦ୍ଧଗାନ ଓ ଦୋହା ରଚନା କରିବାରେ ସେ ଥିଲେ ପ୍ରଥମ ଓଡ଼ିଆ ସିଦ୍ଧ ସାଧକ । ପ୍ରାୟ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀର ମଧ୍ୟ ଭାଗରେ ଆଧୁନିକ କେନ୍ଦୁଝରର ପୂର୍ବ ନାମ 'ଜାହୋର' ଅଥବା 'ବିନ୍ଧ୍ୟାଟବୀ' ଥିଲା । ଏହି ଜାହୋର ରାଜ୍ୟର ଜଣେ ବୀର ରାଜକୁମାର ଥିଲେ ଶାନ୍ତିଭଞ୍ଜ । ସେ ଲଂକାର ରାଜକନ୍ୟା ଲକ୍ଷ୍ମୀଙ୍କରାଙ୍କୁ ବିବାହ କରିଥିଲେ । ଆଧୁନିକ ବଲାଂଗୀର ସେତେବେଳେ ଲଂକା ନାମରେ ପରିଚିତ ଥିଲା । ଲକ୍ଷ୍ମୀଙ୍କରା ଜଣେ ଜ୍ଞାନୀ ବିଦୁଷୀ ସିଦ୍ଧ ଯୋଗିନୀ ଥିଲେ । କେନ୍ଦୁଝରର ରାଜା ଶାନ୍ତିଭଞ୍ଜ ଜଣେ ବିଦ୍ୱାନ,

ସର୍ବଶାସ୍ତ୍ର ବିଶାରଦ, ଜ୍ଞାନୀ, ସିଦ୍ଧପୁରୁଷ ଏବଂ ଜଣେ ସଫଳ ଶିକ୍ଷାବିତ୍ ଥିଲେ । ତାଙ୍କର ଏହି ପାଣ୍ଡିତ୍ୟ ଯୋଗୁଁ ସେତେବେଳେ ତାଙ୍କୁ ନାଳନ୍ଦା ବିଶ୍ୱବିଦ୍ୟାଳୟର କୁଳପତି ଭାବେ ନିଯୁକ୍ତି ମିଳିଥିଲା । ସେତେବେଳେ ନାଳନ୍ଦା ବିଶ୍ୱବିଦ୍ୟାଳୟ ସମଗ୍ର ପୃଥିବୀର ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ ଭାବେ ବେଶ ସୁନାମ ଅର୍ଜନ କରିପାରିଥିଲା । ସେଠାରେ ପୃଥିବୀର ବିଭିନ୍ନ ଦେଶରୁ ଦଶ ହଜାର କିମ୍ବା ତାହାଠାରୁ ଅଧିକ ଛାତ୍ର ଅଧ୍ୟୟନ କରୁଥିଲେ । ଶାନ୍ତିଭଞ୍ଜ ଅତ୍ୟନ୍ତ ଛାତ୍ରବତ୍ସଳ ଥିଲେ ବୋଲି ବିଶ୍ୱାସ କରାଯାଉଛି । ତାଙ୍କର ଅଗାଧ ପାଣ୍ଡିତ୍ୟରେ ଈର୍ଷାନ୍ୱିତ ହୋଇ କିଛି ଚାଟୁକାର ତତ୍କାଳୀନ ନାଳନ୍ଦାର ସମ୍ରାଟ୍‌ଙ୍କ ସମ୍ମୁଖରେ ଏଣୁତେଣୁ ଅଭିଯୋଗ ଆଣିଥିଲେ । ଶାନ୍ତିଭଞ୍ଜ ଗୁପ୍ତରେ ଏକ କାଠର ଖଡ୍‌ଗ ବ୍ୟବହାର କରୁଛନ୍ତି ବୋଲି ଚାଟୁକାରମାନେ ସମ୍ରାଟଙ୍କ ସମ୍ମୁଖରେ ଫେରାଦ ହେଲାପରେ ସମ୍ରାଟ ଏହାର ସତ୍ୟତା ଜାଣିବା ପାଇଁ ଶାନ୍ତିଭଞ୍ଜଙ୍କୁ ରାଜସଭାକୁ ଡକାଇଥିଲେ । ଏହି ଖଡ୍‌ଗକୁ ଚାହିଁଲେ ଏହାର ତେଜରେ ରାଜାଙ୍କର ଦୃଷ୍ଟିହୀନ ହୋଇଯିବ ବୋଲି ଶାନ୍ତି ଭଂଜ ସେତେବେଳେ ସମ୍ରାଟଙ୍କୁ ସୂଚନା ଦେଇଥିଲେ । ଏହା ପରେ ଶାନ୍ତିଭଞ୍ଜ ରାଜାଙ୍କୁ ଗୋଟିଏ ଆଖି ବନ୍ଦ କରି ଖଡ୍‌ଗକୁ ଦେଖିବାକୁ କହିବାରୁ ରାଜା ତାହା ହିଁ କରିଥିଲେ । ସତକୁ ସତ ଖଡ୍‌ଗକୁ ଦେଖିବା ପରେ ରାଜାଙ୍କର ଗୋଟିଏ ଚକ୍ଷୁ ନଷ୍ଟ ହୋଇଯାଇଥିଲା । ଶାନ୍ତିଭଞ୍ଜଙ୍କର ଏଭଳି ଚମତ୍କାରିତା ଦେଖି ସମ୍ରାଟ ଶାନ୍ତିଭଞ୍ଜଙ୍କୁ ନିଜର ମୁଖ୍ୟ ସେନାପତି ନିଯୁକ୍ତ କରିଥିଲେ । ସେଠାରେ ଶାନ୍ତିଭଞ୍ଜ ମୁଖ୍ୟ ସେନାପତି ଭାବେ କିଛି

---

**ସଛେଭଞ୍ଜ ପାହାଡ ଉପତ୍ୟକା**





ବର୍ଷ ରହିବା ପରେ ନିଜ ରାଜ୍ୟ କେନ୍ଦୁଝରକୁ ଆସିଥିଲେ । କେନ୍ଦୁଝରଠାରେ ସେ ବୌଦ୍ଧ ଧର୍ମ ଗ୍ରହଣ କରି ଅନେକ ଚର୍ଯ୍ୟାଗୀତିକା ବା ଦୋହା ରଚନା କରି ସିଦ୍ଧ ସାଧକ ଭାବେ ନିଜର ପରିଚୟ ସୃଷ୍ଟି କରିପାରିଥିଲେ । ଶାନ୍ତିଭଞ୍ଜ ପରିବର୍ତ୍ତେ ଶାନ୍ତିପା ଭାବେ ସେ ପରିଚିତ ହୋଇଥିଲେ । କୁହାଯାଏ, ଶାନ୍ତିଭଞ୍ଜ ନିଜର ଶେଷ ଜୀବନ ସମୟରେ କେନ୍ଦୁଝରଗଡ଼ ନିକଟସ୍ଥ ପଳାସପଂଗା ପର୍ବତ ନିକଟରେ ତପସ୍ୟା କରି ଦେହତ୍ୟାଗ କରିଥିଲେ । ଶାନ୍ତିଭଞ୍ଜଙ୍କ ନାମାନୁସାରେ ଏହି ପାହାଡର ନାମ 'ଶାନ୍ତିଭଞ୍ଜ ପାହାଡ' ଓ ପରେପରେ ଅପଭ୍ରଂଶ ହୋଇ 'ସଛେିଭଞ୍ଜ ପାହାଡ' ନାମରେ ବିଖ୍ୟାତ ହୋଇଥିଲା । ଏବେ ମଧ୍ୟ ଏହି ପାହାଡରେ ଅନେକ ଗୁମ୍ଫା ଏବଂ ଶାନ୍ତି ଭଞ୍ଜ ତପସ୍ୟା କରୁଥିବା ସ୍ଥାନ ଦେଖିବାକୁ ମିଳେ । କେନ୍ଦୁଝର ରାଜପ୍ରାସାଦରୁ ଏହି ପାହାଡ ପର୍ଯ୍ୟନ୍ତ ଏକ ସୁଡ଼ଙ୍ଗ ଅଛି ବୋଲି ଜନଶ୍ରୁତି ରହିଛି । ଏଠାରେ ଏକ ଦେବୀଙ୍କ ଶାଳ ରହିଛି । ଏହା 'ଶାନ୍ତି ଦେବୀ' ନାମରେ ଖ୍ୟାତ । ସଛେିଭଞ୍ଜ ଗୁମ୍ଫାରୁ ବୁଦ୍ଧଦେବଙ୍କ ଏକ ମୂର୍ତ୍ତି ଉଦ୍ଧାର କରାଯାଇଥିଲା ।

ତେବେ ଏହି ସଛେିଭଞ୍ଜ ପାହାଡଟିର ଆଉ ଏକ ବିଶେଷତ୍ୱ ରହିଛି । ଏହାକୁ ସ୍ଥାନୀୟ ଅଞ୍ଚଳରେ 'କଂସା ପାହାଡ' ବୋଲି କହିଥାନ୍ତି । ଏହି ପାହାଡରେ ଥିବା ପଥର ଖଣ୍ଡମାନଙ୍କୁ ପିଟିଲେ କଂସା ଭଳି ଢାଉଁ ଢାଉଁ ଶବ୍ଦ କରିଥାଏ । ଏହି ପାହାଡରେ ବହୁ ପରିମାଣରେ ବ୍ରୋଞ୍ଜ ଧାତୁ ରହିଥିବା କଥା ସ୍ଥାନୀୟ ଲୋକେ କହନ୍ତି । ଏଠାରେ ବ୍ରୋଞ୍ଜ ଧାତୁ ଥିବା ନେଇ ସରକାରୀ ସ୍ତରରେ କୌଣସି ସର୍ଭେ ହୋଇନାହିଁ । ତେବେ ଏଠାକୁ ଆସୁଥିବା ପର୍ଯ୍ୟଟକ, ଦର୍ଶକ ପ୍ରଥମେ

ମ୍ବାର ପଥର ଉପରେ ପଥରକୁ ପିଟି ଘଣ୍ଟ ପିଟିଲା ଭଳି ଶବ୍ଦ ସୃଷ୍ଟି କରିଥାନ୍ତି ଏବଂ ଆନନ୍ଦ ଅନୁଭବ କରିଥାନ୍ତି ।

## ଲକ୍ଷ୍ମୀପାଦ ଓ ବୌଦ୍ଧ ଧର୍ମ



କେନ୍ଦୁଝର ଜିଲ୍ଲାର ପ୍ରାଚୀନ ପୌରାଣିକ ପୀଠ ଲକ୍ଷ୍ମୀପାଦ ଉପତ୍ୟକାକୁ ନେଇ ଅନେକ କିମ୍ବଦନ୍ତୀ ଓ ଲୋକ କଥା ରହିଛି । କିଛି ଗବେଷକ ଏହାକୁ ଏକ ବୌଦ୍ଧପୀଠ ଭାବେ ଉପସ୍ଥାପନ କରୁଥିବାବେଳେ ଆଉ କିଛି ଏହାକୁ ବୈଷ୍ଣବ ପୀଠ ଭାବେ ବର୍ଣ୍ଣନା କରନ୍ତି । ଶ୍ରୀବଳଦେବଜୀଉ ମନ୍ଦିର, ସିଦ୍ଧମଠ ଓ ରାଜବାଟୀର ନିକଟରେ ରହିଛି ଏହି 'ଲକ୍ଷ୍ମୀପାଦ' ଉପତ୍ୟକା । କେନ୍ଦୁଝରଗଡ଼ ନିକଟରେ 'ଲକ୍ଷ୍ମୀପାଦ ହୁଡି' ନାମରେ ଏକ ଛୋଟ ପାହାଡ ରହିଛି । ଏଠାରେ ପଥର ଉପରେ ଏକ ପାଦଚିହ୍ନ ରହିଛି । ଏହାକୁ ହିନ୍ଦୁ ଧର୍ମର ଧନସଂପଦର ଦେବୀ ବିଷ୍ଣୁପତ୍ନୀ ଲକ୍ଷ୍ମୀଙ୍କର ପାଦଚିହ୍ନ ବୋଲି ସ୍ଥାନୀୟ ଲୋକେ କହନ୍ତି । ମାତ୍ର, ଏହା ବୌଦ୍ଧ ଶ୍ରମଣା ସିଦ୍ଧାଚାର୍ଯ୍ୟା ଯୋଗିନୀ ଲକ୍ଷ୍ମୀଙ୍କରା (କେନ୍ଦୁଝରର ରାଜା ଶାନ୍ତିଭଂଜଙ୍କ ପତ୍ନୀ)ଙ୍କ ପାଦ ଚିହ୍ନ ହୋଇଥାଇପାରେ ବୋଲି ଆଉ କିଛି ଗବେଷକ ମତବ୍ୟକ୍ତ କରନ୍ତି । ସାଧାରଣତଃ ବୌଦ୍ଧ ଧର୍ମର ସିଦ୍ଧ ଆଚାର୍ଯ୍ୟ, ଆଚାର୍ଯ୍ୟାମାନଙ୍କ ସହିତ 'ପାଦ' ଶବ୍ଦ ଯୋଗ କରାଯାଇଥାଏ । ଏଣୁ ଲକ୍ଷ୍ମୀଙ୍କରାଙ୍କ ନାମ ସହିତ ପାଦ ଶବ୍ଦ ଯୋଗ କରାଯାଇ ଏହାକୁ ଲକ୍ଷ୍ମୀପାଦ ପାହାଡ ବୋଲି କୁହାଯାଉଛି । ଏଠାରେ ଏକ ଛୋଟ ଝରଣା ରାଜପ୍ରାସାଦ ଆଡକୁ

ପ୍ରବାହିତ ହୋଇଥାଏ । ଏଠାରେ ବିଷ୍ଣୁଙ୍କର ଏକ ମୂର୍ତ୍ତି ରହିଛି । ଅପରପକ୍ଷେ, ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହି ଲକ୍ଷ୍ମୀପାଦର ଉପସ୍ଥିତିକୁ ଗବେଷକମାନେ ପ୍ରତିଷ୍ଠିତ କରାଇପାରିଛନ୍ତି । କୁହାଯାଉଛି କେନ୍ଦୁଝରଗଡ଼ଠାରେ ଲକ୍ଷ୍ମୀଙ୍କର ଗୋଟିଏ ପାଦ ଥିବାବେଳେ ବଣେଇଗଡ଼ଠାରେ ଆଉ ଗୋଟିଏ ପାଦ ରହିଛି । ସବୁଠୁ ଆଶ୍ଚର୍ଯ୍ୟର ବିଷୟ, କେନ୍ଦୁଝରଗଡ଼ ଓ ବଣେଇଗଡ଼ ଅଞ୍ଚଳ ହେଉଛି ଧନସଂପଦରେ ପରିପୂର୍ଣ୍ଣ । ଅର୍ଥାତ୍ ଏଠାରେ ଲକ୍ଷ୍ମୀ ଅବସ୍ଥାନ କରିଥାନ୍ତି ବୋଲି କିଛି ଗବେଷକ ମତବ୍ୟକ୍ତ କରିଥାନ୍ତି । କେନ୍ଦୁଝରଗଡ଼ ଓ ସୁନ୍ଦରଗଡ଼ର ବଣେଇ ମଧ୍ୟରେ ଦେଶର ସର୍ବାଧିକ ପରିମାଣରେ ଉନ୍ନତ ମାନର ଲୁହାପଥର ଗଚ୍ଛିତ ରହିଛି । ଏଣୁ ଏଠାରେ ଥିବା ଲକ୍ଷ୍ମୀ ପାଦକୁ ନେଇ ଲୋକ କଥାରେ ମଧ୍ୟ ଯଥେଷ୍ଟ ବୈଜ୍ଞାନିକ ସତ୍ୟତା ରହିଛି ବୋଲି ଗବେଷକମାନେ ମତବ୍ୟକ୍ତ କରନ୍ତି । କେନ୍ଦୁଝରଗଡ଼ରୁ ବାଂଶପାଳ ଯିବାବେଳେ ଦଅଁଳା ଗ୍ରାମ ପରେ ଗୋଟିଏ ବଡ଼ ନାଳ ପଡେ । ନାଳଟିର ନାମ 'ପଖାଳ ଭୁଞ୍ଜା' । ଲୋକବିଶ୍ୱାସ ଅନୁସାରେ ଲକ୍ଷ୍ମୀ ଠାକୁରାଣୀ ଏଠାରେ ପଖାଳ ଭୁଞ୍ଜିଥିଲେ । ଏଣୁ ଏହି ନାଳର ନାମ ପଖାଳଭୁଞ୍ଜା ହୋଇଛି ବୋଲି କିଛି ଗବେଷକ ମତବ୍ୟକ୍ତ କରନ୍ତି । ଭୂୟାଁ ପୀଢର ପ୍ରତ୍ୟକ ଗ୍ରାମରେ 'ଲକ୍ଷ୍ମୀଘର' ବୋଲି ଗୋଟିଏ ଗୋଟିଏ ଘର ରହିଥାଏ । ଲକ୍ଷ୍ମୀଙ୍କରାଙ୍କ ପ୍ରଭାବରେ ଏହି ଲକ୍ଷ୍ମୀଘର ଭୂୟାଁପୀଢରେ ସୃଷ୍ଟି ହୋଇଥାଇପାରେ ବୋଲି ଗବେଷକ ମତବ୍ୟକ୍ତ କରନ୍ତି । କାରଣ ଭୂୟାଁ ପୀଢରେ ଥିବା 'ଲକ୍ଷ୍ମୀଘର'ରେ ବିଷ୍ଣୁପତ୍ନୀ ଲକ୍ଷ୍ମୀଙ୍କ ପୂଜା ହୋଇ ନଥାଏ । ଏଣୁ ଏହା ବୌଦ୍ଧ ଯୋଗିନୀ ଲକ୍ଷ୍ମୀଙ୍କରା ପ୍ରଭାବ ବୋଲି ଗବେଷକଙ୍କ ମତ ।

## ପ୍ରାଚୀନ ଜୈନ ପୀଠ: ବୈଦ୍ୟାଖିଆ, ଠୁଣିଗାଁ, ଫକୀରପୁର ଓ ପୋଡାସିଙ୍ଗିଡ଼ି

ଚକ୍ରତୀର୍ଥକୁ ଛାଡିଦେଲେ ଆନନ୍ଦପୁର ଉପଖଣ୍ଡରେ ଜୈନ ସ୍ମାରକୀ ବହନ କରୁଥିବା ଅନେକ ପୀଠ ରହିଛି । ଛେନାପଦି ଛକଠାରୁ ଅଳ୍ପ ଦୂରରେ ପ୍ରାଚୀନ ଜୈନ କ୍ଷେତ୍ର ଠୁଣିଗାଁ ଅବସ୍ଥିତ । ଏହାକୁ ରାମଚଣ୍ଡୀ କ୍ଷେତ୍ର ମଧ୍ୟ କୁହାଯାଏ । ନିକଟରେ ବଉଳା ପାହାଡ ଉପରେ ଏକ ପ୍ରକାଣ୍ଡ ଗୁମ୍ଫା ମଧ୍ୟ ରହିଛି । ଗୁମ୍ଫା ମଧ୍ୟକୁ ପ୍ରବେଶ କରିବା ପାଇଁ ପାହାଚ ରହିଛି । ଏହି ଗୁମ୍ଫାରେ ବହୁ ପ୍ରାଚୀନ କୀର୍ତ୍ତିରାଜି ଓ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ଏଠାରେ ଅମ୍ବିକା ଓ ଜୈନ ମୂର୍ତ୍ତି ରହିଛି । ଜୈନ ଦେବୀ ଅମ୍ବିକାଙ୍କ ମନ୍ଦିରଟି ଏବେ ଜରାଜୀର୍ଣ୍ଣ ହୋଇପଡିଛି । ନିକଟରେ କଳିଙ୍ଗ ଦ୍ୱାର ରହିଥିବାବେଳେ ଐତିହାସିକ ପୋଡାସିଙ୍ଗିଡ଼ି ଏବଂ ବୈଦ୍ୟାଖିଆ ରହିଛି ।

ଆନନ୍ଦପୁର ସବ୍ ଡ଼ିଭିଜନ ଅନ୍ତର୍ଗତ ପୋଡାସିଙ୍ଗିଡ଼ିଠାରେ ଋଷଭନାଥଙ୍କର ଏକ ଧ୍ୱଂସପ୍ରାପ୍ତ ମନ୍ଦିର ରହିଛି । ପ୍ରାଚୀନ କାଳରେ ଏହା ଜୈନମାନଙ୍କର ଏକ ପ୍ରସିଦ୍ଧ ପୀଠସ୍ଥଳୀ ଥିଲା । ଆନନ୍ଦପୁର

ଓ ପୋତାସିଙ୍ଗିଡ଼ିଠାରେ ଜୈନ ସନ୍ନ୍ୟାସୀମାନେ ଏଠାକାର ଗୁମ୍ଫାରେ ତପସ୍ୟା କରୁଥିବାର ଲୋକକଥା ଶୁଣିବାକୁ ମିଳେ । ପୋତାସିଙ୍ଗିଡ଼ି ସ୍ଥାନଟି ଜୈନ ସଂସ୍କୃତିକର ଏକ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା । ଏବେ ମଧ୍ୟ ଏଠାରେ ଅନେକ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ପୋତାସିଙ୍ଗିଡିରୁ ମିଳିଥିବା ଅନେକ ଜୈନମୂର୍ତ୍ତି ଏବେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ରହିଛି । ପୋତାସିଙ୍ଗିଡିଠାରୁ ମିଳିଥିବା ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ଏକ ଦଣ୍ଡାୟମାନ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ଅବସ୍ଥାରେ ରହିଛି । ରାଜ୍ୟ ସଂଗ୍ରହାଳୟରେ ଥିବା ଋଷଭନାଥଙ୍କର ଏହି ମୂର୍ତ୍ତିଟି ଖ୍ରୀ:ଅ ନବମ ଶତାବ୍ଦୀର ବୋଲି ଜଣାଯାଇଛି । ସେହିଭଳି ପୋତାସିଙ୍ଗିଡିଠାରୁ ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ପଦ୍ମାସନ ମୁଦ୍ରାରେ ତପସ୍ୟାରତ ଅନ୍ୟ ଏକ ମୂର୍ତ୍ତି ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ରହିଛି । ଏହି ମୂର୍ତ୍ତିଟି ଖ୍ରୀ:ଅ ଅଷ୍ଟମ ଶତାବ୍ଦୀର ବୋଲି ଐତିହାସିକମାନେ ନିରୂପଣ କରିଛନ୍ତି । ପୋତାସିଙ୍ଗିଡି ଅଞ୍ଚଳରୁ ନବମ ଶତାବ୍ଦୀର ଅନ୍ୟ ଏକ ଜୈନ ମୂର୍ତ୍ତି ମଧ୍ୟ ଉଦ୍ଧାର କରାଯାଇଛି । ଏହା ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କର ଏବଂ ସେହିଭଳି ଐତିହାସିକ ବୈଦ୍ୟାଖିଆରୁ ମଧ୍ୟ ଅନେକ ଜୈନ ମୂର୍ତ୍ତି ଉଦ୍ଧାର କରାଯାଇଛି । ବୈଦ୍ୟାଖିଆରୁ ଉଦ୍ଧାର କରାଯାଇଥିବା ତ୍ରୟୋବିଂଶ ଜୈନ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଏକ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ଶୋଭା ପାଉଛି । ଏହା ଏକାଦଶ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି ।

## ଐତିହାସିକ ସିଆଡିମାଳିଆ

ଆନନ୍ଦପୁର ସହରର ଉତ୍ତର ଦିଗରେ ଐତିହାସିକ ସିଆଡିମାଳିଆ ଅବସ୍ଥିତ । ଏଠାରେ ଗଡ଼ର ଆରାଧ୍ୟ ଦେବୀ ମା' ଧନେଇ ଠାକୁରାଣୀଙ୍କ ପୀଠ ରହିଛି । ଅତୀତରେ ଏଠାରେ ଏକ ଐତିହାସିକ ଗଡ଼ଖାଇ ଥିବାର ପ୍ରମାଣ ମିଳେ । ଗଙ୍ଗ ବଂଶ ରାଜତ୍ୱ କାଳରେ ଏଠାରେ ଗଡ଼ ପ୍ରତିଷ୍ଠା ହୋଇଥିବାର ବିଶ୍ୱାସ କରାଯାଏ । ଏଠାରେ ପ୍ରସ୍ତର ନିର୍ମିତ ବିଗ୍ରହ ସହିତ ଅନ୍ୟ ଏକ ପୁରାତନ କୂପ ମଧ୍ୟ ରହିଛି । ରକ୍ଷଣାବେକ୍ଷଣ ଅଭାବରୁ ପ୍ରାୟ ୨୦୦ ମିଟର ଓସାର ବିଶିଷ୍ଟ ଗଡ଼ଖାଇ ପୋତି ହୋଇପଡିଛି ।

## ଫକୀରପୁରରୁ ଉଦ୍ଧାର କରାଯାଇଥିବା ଜୈନମୂର୍ତ୍ତି

ଐତିହାସିକ ସ୍ୱାକ୍ଷର ବହନ କରୁଥିବା ଫକୀରପୁର ଗ୍ରାମଟି ଆନନ୍ଦପୁର ଉପଖଣ୍ଡର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଆନନ୍ଦପୁର ବ୍ଲକ୍‌ର ପୂର୍ବ ଦିଗରେ ମାତ୍ର ପାଞ୍ଚ କିଲୋମିଟର ଦୂରରେ ବୈତରଣୀ ନଦୀ କୂଳରେ ଫକୀରପୁର ଗ୍ରାମଟି ଅବସ୍ଥିତ । ଫକୀରପୁର ଗ୍ରାମରେ ଐତିହାସିକ ବାଲୁଙ୍କେଶ୍ୱର ଶିବ ମନ୍ଦିର ରହିଛି । ମାତ୍ର, ଏହା ଏକ ପ୍ରାଚୀନ ଜୈନ କ୍ଷେତ୍ର ଥିବାର ଅନେକ ପ୍ରମାଣ ମିଳିଛି । ଏହି ବାଲୁଙ୍କେଶ୍ୱର ଶିବ ମନ୍ଦିର ପରିସରରେ ଏକ ବିଶାଳ ଜୈନ ମୂର୍ତ୍ତି ରହିଛି ଏବଂ ଏହି ମନ୍ଦିରରେ

ଅନେକ ଜୈନ ଦେବୀଙ୍କ ମୂର୍ତ୍ତି ମଧ୍ୟ ପୂଜିତ ହେଉଛନ୍ତି । ଏହି ଜୈନ ମୂର୍ତ୍ତିଟି ଆନୁମାନିକ ଅଷ୍ଟମ କିମ୍ବା ନବମ ଶତାବ୍ଦୀର ବୋଲି ବିଶ୍ୱାସ କରାଯାଉଛି । ଏହା ବ୍ୟତୀତ ଫକୀରପୁର ଗ୍ରାମଟି ଟେରାକୋଟା ଓ ଟସର (ବୟନ) ଶିଳ୍ପ ପାଇଁ ସମଗ୍ର କେନ୍ଦୁଝର ଜିଲ୍ଲାରେ ପ୍ରସିଦ୍ଧିଲାଭ କରିପାରିଛି ।

## ପ୍ରାଚୀନ ବୌଦ୍ଧ ପୀଠ: ଐତିହାସିକ ଧଳେଇପାଟ

କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ହାଣ୍ଡିଭଂଗା ନିକଟସ୍ଥ ଫକୀରପୁର ଗ୍ରାମରେ ଐତିହାସିକ ଧଳେଇପାଟ ପୀଠ ଅବସ୍ଥିତ । ଏଠାରୁ ଅନେକ ବୁଦ୍ଧ ମୂର୍ତ୍ତି ସମେତ ଶିବ-ପାର୍ବତୀ, ଗଣେଷ, କାର୍ତ୍ତୀକ, ବିଷ୍ଣୁ ଆଦି ମୂର୍ତ୍ତି ମିଳିଛି । ଏହା ସହିତ ଏଠାରେ ଏକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ମିଳିଛି । ଏସବୁ ମୂର୍ତ୍ତି ଓ ଭଗ୍ନ ମନ୍ଦିରର ଚୂଡା, ବ୍ୟବହୃତ ପଥର ଖଣ୍ଡକୁ ଅନୁଧ୍ୟାନ କଲେ ଏଠାରେ ଏକ ମନ୍ଦିର ଥିବାର ଅନୁମାନ କରାଯାଉଛି । ତେବେ ଏଠାରୁ ବେଶି ସଂଖ୍ୟାରେ ଶିବ-ପାର୍ବତୀଙ୍କ ଯୁଗଳ ମୂର୍ତ୍ତି, ଗଣେଷ, କାର୍ତ୍ତୀକ ଏବଂ ବିଷ୍ଣୁ ମୂର୍ତ୍ତି ମିଳିଥିବାରୁ ଏହା ଉଭୟ ଶୈବ ଓ ବିଷ୍ଣୁ କ୍ଷେତ୍ର ଥିବାର ଅନୁମାନ କରାଯାଉଛି । ମାତ୍ର ଏଠାରେ ବହୁ ସଂଖ୍ୟାରେ ବୁଦ୍ଧଙ୍କ ମୂର୍ତ୍ତି ମିଳିଥିବାରୁ ଏହା ନିଶ୍ଚୟ ଏକ ବୌଦ୍ଧ କ୍ଷେତ୍ର ଥିବାର ଗବେଷକମାନେ ଦୃଢ଼ ଦାବି କରନ୍ତି । ହୁଏତ ପ୍ରଥମେ ଏହା ଏକ ପ୍ରାଚୀନ ବୌଦ୍ଧ କ୍ଷେତ୍ର ଥିଲା ଏବଂ ପରେ ଏହା ଶୈବ ଓ ବିଷ୍ଣୁ କ୍ଷେତ୍ର ଭାବେ ପରିଚିତ ହୋଇପାରିଛି । ତେବେ ଏହି ଗ୍ରାମଟି ନିକଟରେ ଚଂପୁଆ ଉପଖଣ୍ଡର ରାମଲା, ସରେଇ, ଅସନପାଟ, ନନ୍ଦପୁର ଆଦି ଐତିହାସିକ ସ୍ଥାନ ଥିବାରୁ ଏଠାକାର ପ୍ରାଚୀନତା ନେଇ ଅନେକ ପ୍ରମାଣ ମିଳିପାରିଛି । ଏ ଅଞ୍ଚଳମାନଙ୍କରୁ ପ୍ରାଚୀନ ପ୍ରସ୍ତର ଯୁଗର ବହୁ ଅବଶେଷ ମଧ୍ୟ ମିଳିଛି । ଅସନପାଟ ଭଳି ଏଠାରେ ମଧ୍ୟ ପ୍ରାଚୀନ କୀର୍ତ୍ତିରାଜି ଦେଖିବାକୁ ମିଳେ ।

ଧଳେଇପାଟ ଗାଁରେ ମାଟି ତଳୁ ଉଦ୍ଧାର କରାଯାଇଥିବା ଅନେକ କଳାକୀର୍ତ୍ତି ଏବେ ସ୍ଥାନୀୟ ଲୋକଙ୍କ ଦ୍ୱାରା ପୂଜିତ ହୋଇ ଆସୁଛନ୍ତି । ସବୁଠୁ ବଡ଼କଥା ହେଉଛି, ଧଳେଇପାଟରୁ ମିଳିଥିବା ବୁଦ୍ଧଙ୍କର ଏକ ପ୍ରାଚୀନ ମୂର୍ତ୍ତିକୁ ସ୍ଥାନୀୟ ଲୋକେ ଚୂନର ଏକ ପ୍ରଲେପ ଦେଇ ତାଙ୍କୁ ହିନ୍ଦୁ ଦେବଦେବୀଙ୍କ ଭଳି ପୂଜା କରୁଛନ୍ତି । ମାତ୍ର, ଏହି ବୁଦ୍ଧ ମୂର୍ତ୍ତିଟିକୁ ଧଳେଇପାଟ ଶିବ ମନ୍ଦିରର ସମ୍ମୁଖରେ ରଖାଯାଇଛି । ଏଠାରୁ ଅନେକ ମୂର୍ତ୍ତି ମଧ୍ୟ ଚୋରି ହୋଇଗଲାଣି । ତେବେ ଏହି ସ୍ଥାନରେ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅଧିକ ଖନନ କରାଯାଇ ପାରିଲେ ବହୁ ପ୍ରାଚୀନ କଳାକୀର୍ତ୍ତି ମିଳିପାରିବ ବୋଲି ଆଶା କରାଯାଉଛି । ଧଳେଇପାଟରୁ ମିଳିଥିବା ମୂର୍ତ୍ତିସବୁ ବହୁ ପ୍ରାଚୀନ ବୋଲି ସ୍ଥାନୀୟ ଲୋକେ ପ୍ରକାଶ କରିଛନ୍ତି । ଏହି କଳାକୀର୍ତ୍ତି ନାଗବଂଶୀୟ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କୁହାଯାଉଛି । ଏଠାରେ ଏହା ପଞ୍ଚମ ଶତାବ୍ଦୀରେ ନିର୍ମିତ ଏକ ମନ୍ଦିର ରହିଥିଲା ବୋଲି ବିଶ୍ୱାସ କରାଯାଉଛି । ଆହୁରି ମଧ୍ୟ ଏଠାରୁ ମିଳିଥିବା ବୁଦ୍ଧଙ୍କ ମୂର୍ତ୍ତିକୁ ଲକ୍ଷ୍ୟ କରି ଏହା

ଏକ ବୌଦ୍ଧପୀଠ ଥିଲା ବୋଲି ସ୍ଥାନୀୟ ଗବେଷକ ମତବ୍ୟକ୍ତ କରନ୍ତି । ପରବର୍ତୀ ଅବସ୍ଥାରେ ଏହା ଶୈବ ଓ ବିଷ୍ଣୁ ପୀଠ ଭାବେ ପରିଚିତ ହୋଇଥାଇପାରେ ବୋଲି ଗବେଷକଙ୍କ ମତ । ତେବେ ପ୍ରତ୍ନତତ୍ତ୍ୱ ବିଭାଗ ଏହି ଅଞ୍ଚଳରେ ବିଧିବଦ୍ଧ ଭାବେ ଖନନ କଲେ ବହୁ ପ୍ରାଚୀନ ରହସ୍ୟର ଉନ୍ମୋଚନ ହୋଇପାରିବା ସହିତ ପ୍ରାଚୀନ ସଭ୍ୟତାର ପ୍ରମାଣ ମିଳି ପାରନ୍ତା ବୋଲି ସ୍ଥାନୀୟ ଗବେଷକ ମହଲରେ ମତ ପ୍ରକାଶ ପାଇଛି ।

## ବୁଦ୍ଧଦେବଙ୍କ ପ୍ରଥମ ଶିଷ୍ୟ: କେନ୍ଦୁଝରର ଭୂୟାଁ ବଣିକ ତପସୁ ଓ ଭଲ୍ଲିକ

କେନ୍ଦୁଝରର ଦୁଇ ଜଣ ଭୂୟାଁ ବଣିକ ତପସୁ ଓ ଭଲ୍ଲିକ ବୁଦ୍ଧଙ୍କର ପ୍ରଥମ ଶିଷ୍ୟତ୍ୱ ଲାଭ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲେ । ସମ୍ଭବତଃ, ଏ ଦୁହେଁ ବିଶ୍ୱରେ ପ୍ରଥମ ବୁଦ୍ଧ ଭିକ୍ଷୁଦ୍ୱୟ ବୋଲି ବିଚାର କରାଯାଉଛି । ଏଣୁ କେନ୍ଦୁଝରରେ ବୌଦ୍ଧ ଧର୍ମର ପ୍ରାଚୀନତା ନେଇ ଆଲୋଚନାର ଯଥେଷ୍ଟ ସୁଯୋଗ ମିଳିଥାଏ । ଗୌତମ ବୁଦ୍ଧ ଯେତେବେଳେ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ସମାଧିରୁ ଉଠିଲେ ସେତେବେଳେ ତପସୁ ଓ ଭଲ୍ଲିକ ନାମକ ଦୁଇ ଜଣ ଭୂୟାଁ ବଣିକ ତାଙ୍କୁ ଆରିସା ପିଠା ଖାଇବାକୁ ଦେଇ ତାଙ୍କର ବ୍ରତ ଉଦ୍‌ଯାପନ କରାଇଥିଲେ । ବୁଦ୍ଧଦେବଙ୍କ ଶିଷ୍ୟ ତପସୁ ଓ ଭଲ୍ଲିକ ବୁଦ୍ଧଦେବଙ୍କ ମହାପ୍ରୟାଣ ପରେ ତାଙ୍କର କେଶକୁ ନେଇ କେଶସ୍ତୁପ ଓ ଦନ୍ତକୁ ନେଇ ଦନ୍ତସ୍ତୁପ ଏବଂ ବୁଦ୍ଧଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ସ୍ମୃତିପୀଠମାନ ସ୍ଥାପନ କରିଥିଲେ । ଏହି ଦୁଇ ବୌଦ୍ଧ ଭିକ୍ଷୁ କେନ୍ଦୁଝର ଜିଲ୍ଲାର ଭୂୟାଁ ସଂପ୍ରଦାୟର ହୋଇଥିବାରୁ ଏମାନଙ୍କ ଉଦ୍ୟମରେ କେନ୍ଦୁଝରରେ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାରଲାଭ ହୋଇଥାଇପାରେ ବୋଲି ବିଶ୍ୱାସ କରାଯାଉଛି ।

# କେନ୍ଦୁଝର ଜିଲ୍ଲାର ପର୍ବପର୍ବାଣୀ

## ଜିଲ୍ଲାର ଗଣପର୍ବ; ମକର ଓ ଟୁସୁ

ଆଦିବାସୀ ଅଧ୍ୟୁଷିତ କେନ୍ଦୁଝର ଜିଲ୍ଲାରେ ମକର ସଂକ୍ରାନ୍ତି ଓ କୁଡୁମୀ ସଂପ୍ରଦାୟ ପକ୍ଷରୁ ପାଳିତ ହେଉଥିବା 'ଟୁସୁ ପର୍ବ' ଜିଲ୍ଲାର ଏକ ଗଣପର୍ବ ଭାବେ ପରିଚିତ । ମକର ପର୍ବ ଅବସରରେ ସମଗ୍ର କେନ୍ଦୁଝର ଜିଲ୍ଲା ଉତ୍ସବମୁଖର ହୋଇ ଉଠିଥାଏ । ମାଘ ମାସରେ ମକର ଉତ୍ସବ ସପ୍ତାହେ ଧରି କେନ୍ଦୁଝରରେ ପାଳିତ ହୋଇଥାଏ । ମକର ପର୍ବ ଅବସରରେ ସାପ୍ତାହିକୀ ହାଟଗୁଡିକରେ କୁକୁଡା ଲଢେଇ ସହ ପାରଂପରିକ ଜୁଆଖେଳ ମଧ୍ୟ ଚାଲେ । ସଂକ୍ରାନ୍ତି ସତ୍ତ୍ୱେ ଏହି ଦିନ ପ୍ରାୟ ସମସ୍ତଙ୍କ ଘରେ କୁକୁଡା ମାଂସ, ଖାସି ମାଂସ ଓ ମାଛ ଆଦି ଆମିଷ ଭୋଜନ ହୋଇଥାଏ । ବନ୍ଧୁତ୍ୱକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ମଣିଷ ମଣିଷ ମଧ୍ୟରେ ସହି ସଂଗାତ, ମକର, ବଉଳ ଆଦି ବସିଥାଏ । ମକର ସଂକ୍ରାନ୍ତି ଦିନ ସୂର୍ଯ୍ୟ ଉଦୟ ପୂର୍ବରୁ ପରିବାରର ସମସ୍ତ ସଦସ୍ୟ ନିକଟସ୍ଥ ନଦୀ, ପୋଖରୀ

ମକର ମେଳା ଅବସରରେ ବୈତରଣୀ ନଦୀରେ ମକର ବୁଡ



ଆଦିରେ 'ମକର ବୁଡ' ଦେଲେ ପୁଣ୍ୟ ଅର୍ଜନ ହୋଇଥାଏ ବୋଲି ବିଶ୍ୱାସ ରହିଛି ।

କେନ୍ଦୁଝର ଜିଲ୍ଲାର ବାର୍ହାଟିପୁରାରେ ସର୍ବାଧିକ ପନ୍ଦର ଦିନ ଧରି ମକର ଉତ୍ସବ ପାଳିତ ହୋଇଥାଏ । ଏହା କେନ୍ଦୁଝର ଜିଲ୍ଲାର ସବୁଠୁ ବଡ଼ ମକର ମେଳାର ମାନ୍ୟତା ଅର୍ଜନ କରିପରିଛି । ସେହିଭଳି କେଶରୀକୁଣ୍ଡଠାରେ ଦିନିକିଆ ମକର ମେଳା ଅନୁଷ୍ଠିତ ହୋଇଥାଏ । ମକର ସମଗ୍ର ଉତ୍ତର ଓଡ଼ିଶାର ଏକ ଗଣପର୍ବର ମାନ୍ୟତା ଲାଭ କରିପାରିଛି । ମକର ମେଳା ଆସିଲେ କେନ୍ଦୁଝର ଜିଲ୍ଲା ଉତ୍ସବମୁଖର ହୋଇଉଠିଥାଏ । ଏହି ମେଳା ଜିଲ୍ଲାର ବିଭିନ୍ନ ସ୍ଥାନରେ ପାଳିତ ହୋଇଥାଏ । କେଉଁଠି ମକର ସଂକ୍ରାନ୍ତି ଗୋଟିଏ ଦିନ ପାଳନ ହୋଇଥାଏ ତ, ଅନ୍ୟ କେଉଁଠି ତିନି ଦିନ, କେଉଁଠି ସାତ ଦିନ ଏବଂ ଆଉ କିଛି ସ୍ଥାନରେ ପନ୍ଦର ଦିନ ଧରି ପାଳିତ ହୋଇଥାଏ । କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା ସୀମାନ୍ତବର୍ତ୍ତୀ ଚଂପୁଆ ବ୍ଲକ୍‌ର କେଶରୀକୁଣ୍ଡରେ ଦିନିକିଆ ମେଳା ଅନୁଷ୍ଠିତ ହୋଇଥାଏ । ସେହିଭଳି ବାଲିବନ୍ଧ ନିକଟସ୍ଥ ଖଲିକୁଣ୍ଡ ମକରମେଳା ମଧ୍ୟ ବେଶ୍ ପ୍ରସିଦ୍ଧିଲାଭ କରିପାରିଛି । ଲକ୍ଷାଧିକ ଭକ୍ତ କେଶରୀକୁଣ୍ଡରେ ମକର ବୁଡ ପକେଇଥାନ୍ତି । କେଶରୀକୁଣ୍ଡ ମକରମେଳା ଗୋପାଳ ଓ କୁଡୁମୀ ସଂପ୍ରଦାୟର ଲୋକଙ୍କ ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ବିଭିନ୍ନ ସ୍ଥାନରେ ମକର ଚାଉଳ ପୂଜା ହେବା ପରେ ପରସ୍ପର ମଧ୍ୟରେ ସଂପର୍କକୁ ସୁଦୃଢ଼ କରିବା ପାଇଁ ମକର ବସିଥାଏ । ଜିଲ୍ଲାର ଅନ୍ୟତମ ପ୍ରମୁଖ ପର୍ଯ୍ୟଟନସ୍ଥଳ ଭୀମକୁଣ୍ଡଠାରେ ମକର ଉତ୍ସବରେ ଲକ୍ଷାଧିକ ଭକ୍ତଙ୍କ ସମାବେଶ ଘଟିଥାଏ ।

ମକର ମେଳା ଅବସରରେ ପୁଣ୍ୟତୋୟା ବୈତରଣୀ ନଦୀର ବିଭିନ୍ନ ସ୍ଥାନରେ ଥିବା କୁଣ୍ଡମାନଙ୍କରେ ଭକ୍ତମାନେ ମକର ବୁଡ ପକେଇଥାନ୍ତି । ପାଟଣା ବ୍ଲକ୍ ଅନ୍ତର୍ଗତ ବୈତରଣୀ କୂଳରେ ଥିବା ପରମେଶ୍ୱର ମନ୍ଦିର ନିକଟରେ ମଧ୍ୟ ମକରବୁଡ ପଡିଥାଏ । ମକର ଉତ୍ସବ ଅବସରରେ



କୁଡୁମୀ ସଂପ୍ରଦାୟର ଯୁବତୀମାନେ ପାଳନ କରୁଥିବା 'ଟୁସୁ ପର୍ବ'

ସୂର୍ଯ୍ୟଙ୍କ ଉତ୍ତରାୟଣ ହେଉଥିବାରୁ କେନ୍ଦୁଝରର ବଳଦେବଜୀଉଙ୍କ ମନ୍ଦିର ନୀତିରେ ଅନେକ ପରିବର୍ତ୍ତନ ହୋଇଥାଏ । ସନ୍ଧ୍ୟାରେ ବଳଦେବଜୀଉଙ୍କ ମନ୍ଦିରରେ ମକର ବେଢା ପରିକ୍ରମା କରାଯିବା ସହ ନେତ ବନ୍ଧାଯାଇଥାଏ ।

କେନ୍ଦୁଝର ଜିଲ୍ଲାର ବୃହତ୍ତମ ମକର ମେଳା କୁହାଯାଉଥିବା ବାର୍ହାଟିପୁରା ବ୍ୟତୀତ ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକା, କୁଣ୍ଡ ପିଠାର କୁଣ୍ଡେଶ୍ୱର ପୀଠ, ଟୁକୁଣାର କୁଣ୍ଡେଶ୍ୱର, କେନ୍ଦୁଝର ସହରର ସିଦ୍ଧମଠ, ରସବନ୍ତଳା, ମଥୁରାମଣ୍ଡଳୀ, ଚିଲିଦା, ପାଟଣାର ଭୀମକୁଣ୍ଡ, କେନ୍ଦୁଝର ସଦର ବ୍ଲକ୍‌ର ଚକ ନିକଟସ୍ଥ ରଘୁନାଥପୁର, ଚଂପୁଆ ଉପଖଣ୍ଡର କେଶରୀକୁଣ୍ଡ, ମିରିଗସିଙ୍ଗା, ଆନନ୍ଦପୁର ଉପଖଣ୍ଡର ଗଡଚଣ୍ଡୀପୀଠ, ପଢିଆରିପଲ୍ଲୀରେ ଥିବା ଗିରିଗୋବର୍ଦ୍ଧନ ସିଦ୍ଧ ଗୁମ୍ଫା ଦଧିବାମନଜୀଉ ମନ୍ଦିର, ଉତ୍ତରେଶ୍ୱର ମନ୍ଦିର, ବାଲୁଙ୍କେଶ୍ୱର ମନ୍ଦିର, ଝାଡେଶ୍ୱର ପୀଠ, ବ୍ରହ୍ମେଶ୍ୱର ପୀଠ, ମା' ବ୍ରାହ୍ମଣୀଦେବୀ ପୀଠ, ଧନେଇଶୁଣୀ ପୀଠ, ଘଟଗାଁର ମା' ତାରିଣୀ ପୀଠ, ଦେଓଗାଁସ୍ଥିତ କୁଶଳେଶ୍ୱର ମନ୍ଦିର, ଭାଟିଆଶୁଣୀ ପୀଠ, ଟୁକୁଣାର କୁଣ୍ଡେଶ୍ୱର ପୀଠ, ଧାନବେଣୀ, ଭୀମକୁଣ୍ଡ, ଖଳିକୁଣ୍ଡ,ଦେବକୁଣ୍ଡ, ରାମତୀର୍ଥ, ଚକ୍ରତୀର୍ଥ, ଅସୁରଖୋଲ, ତେଲକୋଇର ଖୁଣ୍ଟାପଡା, ସିରିଗିଡାରେ ମକର ପର୍ବ ଅନୁଷ୍ଠିତ ହୋଇଥାଏ ।

କୁଡ଼ୁମୀ ସଂପ୍ରଦାୟ ବା ମହନ୍ତ ଜାତିର କୁମାରୀ ଝିଅ ଓ ସଧବା ସ୍ତ୍ରୀମାନଙ୍କ ଦ୍ୱାରା ପାଳିତ ହେଉଥିବା ଟୁସୁ ପର୍ବ ମକର ସଂକ୍ରାନ୍ତି ଦିନଠାରୁ ଆରମ୍ଭ ହୋଇଥାଏ । କେନ୍ଦୁଝର ଜିଲ୍ଲାର ଅବିବାହିତ ମହନ୍ତ ସଂପ୍ରଦାୟର ଝିଅମାନେ ଟୁସୁ ଦେବୀଙ୍କ ମୂର୍ତ୍ତି ଗଢି ବୈତରଣୀ ଓ ଅନ୍ୟାନ୍ୟ ନଦୀ କୂଳରେ ସ୍ଥାପନା କରି ପୂଜା କରିଥାନ୍ତି । କୁଡ଼ୁମୀ ଝିଅମାନେ ପାରଂପରିକ ଗୀତ ଗାଇ ଶୋଭାଯାତ୍ରାରେ ଗ୍ରାମ ପରିକ୍ରମା କରିଥାନ୍ତି । ପୂଜା ଶେଷ ହେବାପରେ ଗାଁର ଝିଅବୋହୂମାନେ ଟୁସୁ ଦେବୀଙ୍କ ମୂର୍ତ୍ତିଙ୍କୁ ନଦୀରେ ବିସର୍ଜନ କରିଥାନ୍ତି । ଓଡ଼ିଆ ଘରର ଭାଲୁକୁଣୀ ଭଳି 'ଟୁସୁ' ହେଉଛି ଏକ ମାଟି ପ୍ରତିମା । ଦେଖିବାକୁ କଣ୍ଢେଇ ଭଳି । ମାତ୍ର, କୁଡ଼ୁମୀ ସଂପ୍ରଦାୟର ଝିଅମାନେ ଏହି ମୂର୍ତ୍ତିକୁ ପୂଜା କରିବା ପଛରେ ଅନେକ କାରଣ ରହିଛି । ମହନ୍ତ ବା କୁଡ଼ୁମୀ ସଂପ୍ରଦାୟରେ 'ଟୁସୁ' ଦେବୀଙ୍କୁ ସେମାନଙ୍କର ଇଷ୍ଟଦେବୀ ଭାବେ ପୂଜା କରିଥାନ୍ତି । ଟୁସୁ ପୂଜା ନେଇ କୌଣସି ଇତିହାସ ନଥିଲେ ମଧ୍ୟ ଏନେଇ ଏକ ପ୍ରବାଦ ଅଛି । ଟୁସୁ ଦେବଲୋକର କୌଣସି ଦେବୀ ନୁହଁନ୍ତି । କିମ୍ବଦନ୍ତୀ ଅନୁସାରେ, ଜନୈକ କୁଡ଼ୁମୀ ଜମିଦାରଙ୍କର ଏକମାତ୍ର ଅଲିଅଳି ଝିଅ ଥିଲା 'ଟୁସୁ' । ଟୁସୁ ଥିଲା ଅପରୂପା ସୁନ୍ଦରୀ । ସେତେବେଳେ କେନ୍ଦୁଝର ଓ ମୟୂରଭଞ୍ଜ ଅଞ୍ଚଳରେ ମୋଗଲ ଶାସନ ପ୍ରଚଳିତ ଥିଲା । ମୋଗଲ୍ ବାଦଶାହା 'ଟୁସୁ'ର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ତାକୁ ନିଜର ବେଗମ୍ କରିବାକୁ ଚାହିଁଥିଲେ । ଟୁସୁର ବାପା ଜମିଦାର ଥିଲେ ବି କାମନାଶକ୍ତ ବାଦଶାହାଙ୍କର ଏଭଳି ମତିଗତି ତାଙ୍କୁ ଭଲ ଲାଗି ନଥିଲା । ଏଭଳି ପରିସ୍ଥିତିରେ କିଂକର୍ତ୍ତବ୍ୟବିମୂଢ ହୋଇ ଜମିଦାର ନିଜ ଝିଅ ଟୁସୁକୁ ଅନ୍ୟତ୍ର ବିବାହ କରିବାକୁ ବରପାତ୍ର ଠିକ୍ କରିଦେଲେ । ମାତ୍ର, ବାଦଶାହା ଟୁସୁର ଭାବି ବରକୁ ହତ୍ୟା କରିବା ସହିତ ଜମିଦାରକୁ ମଧ୍ୟ ନାନା ପ୍ରକାର ନିର୍ଯାତନା ଦେଇଥିଲେ । ନିଜର ଭାବି ସ୍ୱାମୀର ହତ୍ୟା, ବାପାଙ୍କୁ ଦିଆଯାଉଥିବା ନିର୍ଯାତନା ଓ ବାଦଶାହାର କାମୁକ ନଜରରୁ ନିଜକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ପବିତ୍ର ମକର ସଂକ୍ରାନ୍ତି ଦିନ ଟୁସୁ କଂସାବତୀ ନଦୀରେ ଝାସ ଦେଇ ନିଜର ସତୀତ୍ୱ ରକ୍ଷା କରିଥିଲେ । ସେହିଦିନଠାରୁ ମକର ସଂକ୍ରାନ୍ତି ଦିନଟିକୁ 'ଟୁସୁ'ର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଟୁସୁ ପର୍ବ ପାଳନ କରାଯାଇଆସୁଛି ।

ମକର ଉତ୍ସବ କେନ୍ଦୁଝର ଜିଲ୍ଲାର ଗଣପର୍ବର ମାନ୍ୟତା ଲାଭ କରିପାରିଛି । ଏହା ଜିଲ୍ଲାବାସୀଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନଧାରାକୁ ବେଶ୍ ପ୍ରଭାବିତ କରିପାରିଛି । କେନ୍ଦୁଝର ଜିଲ୍ଲାର ଆଦିବାସୀ ଜନଜୀବନ ଓ ମକର ମେଳା ପରସ୍ପର ସହ ଅଙ୍ଗାଙ୍ଗି ଭାବେ ଜଡ଼ିତ । ମକର ସଂକ୍ରାନ୍ତି ଅବସରରେ ଆୟୋଜିତ ମକର ମେଳାରେ ଭୂୟାଁ ଓ ଜୁଆଙ୍ଗ ସଂପ୍ରଦାୟରେ ଯୁବକ, ଯୁବତୀମାନେ ନିଜ ନିଜର ଜୀବନ ସାଥୀ ଚୟନ କରିବାର ସୁଯୋଗ ଲାଭ କରିଥାନ୍ତି । ମକର ମେଳାରେ ଭୂୟାଁ, ଜୁଆଙ୍ଗ, ବାଥୁଡି ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି ଏବଂ ସେମାନଙ୍କ ମଧ୍ୟରେ ମନ ଦିଆନିଆ

ହୁଏ । ମକର ମେଳାରେ ଯେଉଁ ଯୁବକ-ଯୁବତୀ ପରସ୍ପରକୁ ଭଲ ପାଇ ବସନ୍ତି ଏବଂ ସେମାନଙ୍କର ମନ ମିଳେ, ପରବର୍ତ୍ତୀ ଦିନମାନଙ୍କରେ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହୋଇଥାନ୍ତି । କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ସ୍ଥାନରେ ମକର ମେଳା ସପ୍ତାହେ ଧରି ଚାଲେ । ଏହି ଅବସରରେ ପାଖଆଖ ଗାଁମାନଙ୍କରୁ ଆଦିବାସୀ ଯୁବକ, ଯୁବତୀମାନେ ମେଳା ଦେଖିବାକୁ ଆସନ୍ତି । ମେଳାରେ ହିଁ ଯୁବକ, ଯୁବତୀ ପରସ୍ପର ସହ ସାକ୍ଷାତ ହୁଅନ୍ତି ଓ ମନ ଦିଆନିଆ ଚାଲେ । କ୍ରମେ ଯୁବକ, ଯୁବତୀମାନେ ନାଚଗୀତରେ ମସ୍‌ଗୁଲ୍ ହୋଇ ପଡନ୍ତି । ଯୁବକ, ଯୁବତୀ ସ୍ୱାଭାବିକ ଭାବେ ନିଜର ଜୀବନ ସାଥୀ ଚୟନ କରନ୍ତି । କେତେକ ସ୍ଥଳେ ଯୁବକମାନେ ବଳପୂର୍ବକ ଯୁବତୀମାନଙ୍କୁ ଅପହରଣ କରି ନେଇଯିବାର ମଧ୍ୟ ପରଂପରା ରହିଛି । ଯୁବକଟି ଯୁବତୀକୁ ବଳପୂର୍ବକ ଅପହରଣ କରିନେଲାବେଳେ ଝିଅ ପକ୍ଷରୁ ଏହାକୁ ପ୍ରତିବାଦ କରାଯାଏ । ଏହାପରେ ଉଭୟ ପକ୍ଷରୁ ବୁଝାମଣା ଭିତ୍ତିରେ ବିବାହ ସଂପନ୍ନ ହୁଏ । ତେଲକୋଇ ବ୍ଲକ୍‌ର ତିମିରିଆ, ଖୁଣ୍ଟାପତା ଓ ବିମଳାରେ ପ୍ରତିବର୍ଷ ମକର ମେଳାରେ ଭୂୟାଁ, ଜୁଆଙ୍ଗ, ବାଥୁଡି ଯୁବକ, ଯୁବତୀମାନେ ନିଜନିଜର ସାଥୀ ଚୟନ କରିଥାନ୍ତି । ଝୁଂପରା ବ୍ଲକ୍‌ର ଅରଡେଇ ନଦୀ କୂଳସ୍ଥ 'ଖଡ଼ିକୁଣ୍ଡ' ମକରମେଳାରେ ଉଭୟ ଆଦିବାସୀ ଓ କୁଡୁମୀ ସଂପ୍ରଦାୟର ଯୁବକ, ଯୁବତୀମାନଙ୍କ ମଧ୍ୟରେ ଜୀବନ ସାଥୀ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ସେହିଭଳି ଚଂପୁଆ ବ୍ଲକ୍‌ର କେଶରୀକୁଣ୍ଡ ଓ ରୂପାକୁଣ୍ଡ ମକରମେଳାରେ ମଧ୍ୟ ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ବିନିମୟ ଓ ସାଥୀ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ପାଟଣା ବ୍ଲକ୍‌ର ଭୀମକୁଣ୍ଡ ମକର ମେଳାରେ ଅନୁରୂପ କନ୍ୟା ଦେଖା ପ୍ରକ୍ରିୟାର ସୂତ୍ରପାତ ହୋଇଥାଏ । କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ହେଉଥିବା ମକର ମେଳା ହେଉଛି ଆଦିବାସୀ, କୁଡୁମୀ ସଂପ୍ରଦାୟର ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ଓ ମନ ଦିଆନିଆର ଏକ ଉପଯୁକ୍ତ ସ୍ଥାନ । ଏହିଠାରୁ ଓ ଏହି ଦିନରୁ ହିଁ ପୁଅ ଝିଅଙ୍କ ମଧ୍ୟରେ ବିଭାଘରର ବୀଜ ବପନ ହୋଇଥାଏ । ଏଣୁ କେନ୍ଦୁଝର ଜିଲ୍ଲାର ସାମାଜିକ ଓ ଗୋଷ୍ଠୀ ଜୀବନରେ ମକର ମେଳାର ଏକ ପ୍ରମୁଖ ଭୂମିକା ରହିଛି ।

## ପବିତ୍ର ମକର ମେଳା ଓ ଆଦିବାସୀ ଯୁବକ, ଯୁବତୀଙ୍କ ଜୀବନ ସାଥୀ ଚୟନ

ମକର ଉତ୍ସବ କେନ୍ଦୁଝର ଜିଲ୍ଲାର ଗଣପର୍ବର ମାନ୍ୟତା ଲାଭ କରିପାରିଛି । ଏହା ଜିଲ୍ଲାବାସୀଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନଧାରାକୁ ବେଶ୍ ପ୍ରଭାବିତ କରିପାରିଛି । କେନ୍ଦୁଝର ଜିଲ୍ଲାର ଆଦିବାସୀ ଜନଜୀବନ ଓ ମକର ମେଳା ପରସ୍ପର ସହ ଅଙ୍ଗାଙ୍ଗି ଭାବେ ଜଡ଼ିତ । ମକର ସଂକ୍ରାନ୍ତି ଅବସରରେ ଆୟୋଜିତ ମକର ମେଳାରେ ଭୂୟାଁ ଓ ଜୁଆଙ୍ଗ ସଂପ୍ରଦାୟରେ ଯୁବକ, ଯୁବତୀମାନେ ନିଜ ନିଜର ଜୀବନ ସାଥୀ ଚୟନ କରିବାର ସୁଯୋଗ ଲାଭ କରିଥାନ୍ତି । ମକର ମେଳାରେ ଭୂୟାଁ, ଜୁଆଙ୍ଗ,



ବାଥୁଡି ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି ଏବଂ ସେମାନଙ୍କ ମଧ୍ୟରେ ମନ ଦିଆନିଆ ହୁଏ । ମକର ମେଳାରେ ଯେଉଁ ଯୁବକ-ଯୁବତୀ ପରସ୍ପରକୁ ଭଲ ପାଇ ବସନ୍ତି ଏବଂ ସେମାନଙ୍କର ମନ ମିଳେ, ପରବର୍ତ୍ତୀ ଦିନମାନଙ୍କରେ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହୋଇଥାନ୍ତି । କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ସ୍ଥାନରେ ମକର ମେଳା ସପ୍ତାହେ ଧରି ଚାଲେ । ଏହି ଅବସରରେ ପାଖଆଖ ଗାଁମାନଙ୍କରୁ ଆଦିବାସୀ ଯୁବକ, ଯୁବତୀମାନେ ମେଳା ଦେଖିବାକୁ ଆସନ୍ତି । ମେଳାରେ ହିଁ ଯୁବକ, ଯୁବତୀ ପରସ୍ପର ସହ ସାକ୍ଷାତ ହୁଅନ୍ତି ଓ ମନ ଦିଆନିଆ ଚାଲେ । କ୍ରମେ ଯୁବକ, ଯୁବତୀମାନେ ନାଚଗୀତରେ ମସ୍‌ଗୁଲ୍ ହୋଇ ପଡନ୍ତି । ଯୁବକ, ଯୁବତୀ ସ୍ୱାଭାବିକ ଭାବେ ନିଜର ଜୀବନ ସାଥୀ ଚୟନ କରନ୍ତି । କେତେକ ସ୍ଥଳେ ଯୁବକମାନେ ବଳପୂର୍ବକ ଯୁବତୀମାନଙ୍କୁ ଅପହରଣ କରି ନେଇଯିବାର ମଧ୍ୟ ପରଂପରା ରହିଛି । ଯୁବକଟି ଯୁବତୀକୁ ବଳପୂର୍ବକ ଅପହରଣ କରିନେଲାବେଳେ ଝିଅ ପକ୍ଷରୁ ଏହାକୁ ପ୍ରତିବାଦ କରାଯାଏ । ଏହାପରେ ଉଭୟ ପକ୍ଷରୁ ବୁଝାମଣା ଭିତ୍ତିରେ ବିବାହ ସଂପନ୍ନ ହୁଏ । ତେଲକୋଇ ବ୍ଲକ୍‌ର ତିମିରିଆ, ଖୁଣ୍ଟାପଡା ଓ ବିମଳାରେ ପ୍ରତିବର୍ଷ ମକର ମେଳାରେ ଭୂୟାଁ, ଜୁଆଙ୍ଗ, ବାଥୁଡି ଯୁବକ, ଯୁବତୀମାନେ ନିଜନିଜର ସାଥୀ ଚୟନ କରିଥାନ୍ତି । ଝୁଂପରା ବ୍ଲକ୍‌ର ଅରତେଇ ନଦୀ କୂଳସ୍ଥ 'ଖଡ଼ିକୁଣ୍ଡ' ମକରମେଳାରେ ଉଭୟ ଆଦିବାସୀ ଓ କୁଡୁମୀ ସଂପ୍ରଦାୟର ଯୁବକ, ଯୁବତୀମାନଙ୍କ ମଧ୍ୟରେ ଜୀବନ ସାଥୀ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥାଏ ।

ସେହିଭଳି ଚଂପୁଆ ବ୍ଲକ୍‌ର କେଶରୀକୁଣ୍ଡ ଓ ରୁପାକୁଣ୍ଡ ମକରମେଳାରେ ମଧ୍ୟ ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ବିନିମୟ ଓ ସାଥୀ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ପାଟଣା ବ୍ଲକ୍‌ର ଭୀମକୁଣ୍ଡ ମକର ମେଳାରେ ଅନୁରୂପ କନ୍ୟା ଦେଖା ପ୍ରକ୍ରିୟାର ସୂତ୍ରପାତ ହୋଇଥାଏ । କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ହେଉଥିବା ମକର ମେଳା ହେଉଛି ଆଦିବାସୀ, କୁଡ଼ୁମୀ ସଂପ୍ରଦାୟର ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ଓ ମନ ଦିଆନିଆର ଏକ ଉପଯୁକ୍ତ ସ୍ଥାନ । ଏହିଠାରୁ ଓ ଏହି ଦିନରୁ ହିଁ ପୁଅ ଝିଅଙ୍କ ମଧ୍ୟରେ ବିଭାଘରର ବୀଜ ବପନ ହୋଇଥାଏ । ଏଣୁ କେନ୍ଦୁଝର ଜିଲ୍ଲାର ସାମାଜିକ ଓ ଗୋଷ୍ଠୀ ଜୀବନରେ ମକର ମେଳାର ଏକ ପ୍ରମୁଖ ଭୂମିକା ରହିଛି ।

## ମକର ମେଳା ଅବସରରେ କେନ୍ଦୁଝରର ପୁରପଲ୍ଲୀରେ ଚାଲେ ଗଞ୍ଜା ଲଢେଇ

କେନ୍ଦୁଝର ଜିଲ୍ଲାର ପ୍ରସିଦ୍ଧ ଗଣପର୍ବ ମକର ଅବସରରେ ଜିଲ୍ଲାର ପୁର ପଲ୍ଲୀ ଉତ୍ସବ ମୁଖର ହୋଇଉଠିଥାଏ । ଗାଁ ଗାଁରେ ମକର ଉତ୍ସବର ଆୟୋଜନ କରାଯାଇଥାଏ । ବିଭିନ୍ନ ନଦୀ ଓ ଜଳ ଉତ୍ସମାନଙ୍କରେ ମକର ବୁଡ଼ ପକାଯାଇଥାଏ । ତେବେ ଏହି ସମୟରେ ସବୁଠୁ ଏକ ଆକର୍ଷଣୀୟ ପରଂପରା ଗାଁ ଗହଳିରେ ଦେଖିବାକୁ ମିଳିଥାଏ, ତାହା ହେଉଛି ଗଞ୍ଜା ଲଢେଇ ପ୍ରତିଯୋଗିତା ।



କେନ୍ଦୁଝରରେ ମକର ମେଳା ଅବସରରେ ଗଞ୍ଜା ଲଢେଇ



ଏହା ଏକ ପାଶବିୟ ଓ ଘୃଣ୍ୟ ପରଂପରା ହୋଇଥିଲେ ମଧ୍ୟ ଏହାକୁ ବନ୍ଦ କରିବା ସମ୍ଭବପର ହୋଇପାରିନାହିଁ । ପରଂପରା ନାମରେ ଏହି ଗଞ୍ଜା ଲଢେଇ ପ୍ରତିଯୋଗିତା କାହିଁ କେଉଁ ସମୟରୁ ପ୍ରଚଳିତ ହୋଇ ଆସୁଛି । ମକର ଉତ୍ସବ ସମୟରେ କେନ୍ଦୁଝର ସମେତ ମୟୂରଭଞ୍ଜ ଜିଲ୍ଲାର ଗ୍ରାମାଞ୍ଚଳରେ ଏହି ଗଞ୍ଜା ଲଢେଇ ପ୍ରତିଯୋଗିତା ଦେଖିବାକୁ ମିଳିଥାଏ । ଏହି ଗଞ୍ଜା ଲଢେଇ ମୁଖ୍ୟତଃ ଦୁଇଟି ପକ୍ଷ ମଧ୍ୟରେ ଅନୁଷ୍ଠିତ ହୋଇଥାଏ । ଏହି ଖେଳରେ ଦୁଇ ପକ୍ଷର ଗଞ୍ଜାକୁ



**ଲଢେଇ ପୂର୍ବରୁ ଗଞ୍ଜାର ଗୋଡରେ ଧାରୁଆ ଲୁହା କାତି ବନ୍ଧା ଯାଉଛି**



ଲଢେଇ ପରେ ଆହତ ଗଞ୍ଜାର ଅସ୍ତ୍ରୋପଚାର କରାଯାଉଛି

ପରସ୍ପର ମଧ୍ୟରେ ଲଢେଇ କରିବାକୁ ପଡିଥାଏ । ଦୁହିଁଙ୍କ ମଧ୍ୟରେ ଯେଉଁ ଗଞ୍ଜାଟି ବଞ୍ଚି ରହେ ସେ ହିଁ ହୁଏ ବିଜେତା । ଦେଖଣାହାରୀ ଉଭୟ ପକ୍ଷର ଗଞ୍ଜାକୁ ନେଇ ବାଜି ଲଗେଇଥା'ନ୍ତି । କେଉଁ ଗଞ୍ଜା ବିଜୟୀ ହେବ ତାହା ଲଢେଇ ହେବା ପୂର୍ବରୁ ବାଜି ଲଗାଯାଇଥାଏ । ବିଶାଳ ଖେଳ ପଡିଆ କିମ୍ବା ଗୋଚର ଭୂମିକୁ ଗଞ୍ଜା ଲଢେଇ ପାଇଁ ବ୍ୟବାହର କରାଯାଇଥାଏ । ଏଥିରେ ହଜାର ହଜାର ସଂଖ୍ୟାରେ ଗଞ୍ଜା ମାଲିକମାନେ ଅଂଶଗ୍ରହଣ କରି ଖେଳକୁ ଉପଭୋଗ କରିଥାନ୍ତି । ଏହି ଖେଳରେ ଲକ୍ଷାଧିକ ଟଙ୍କାର ବାଜି ଲଗାଯାଇଥାଏ । ବେଳେବେଳେ ମଧ୍ୟ ବାଜି ହାର୍‌ଜିତ୍‌କୁ ନେଇ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି ହୋଇଥାଏ ।

ଲଢେଇ ପୂର୍ବରୁ ଗଞ୍ଜାମାନଙ୍କ ଗୋଡରେ ଲୁହାର ଏକ ଧାରୁଆ ପାତିଆ (କାତି) ଲଗାଯାଇଥାଏ । ବାଣି କିମ୍ବା ସୁତା ସାହାଯ୍ୟରେ ଏହି ପାତିଆକୁ ଗଞ୍ଜାର ଗୋଡରେ ବନ୍ଧାଯାଏ । ଲଢେଇ ପାଇଁ ବ୍ୟବହୃତ ହେଉଥିବା ଗଞ୍ଜାମାନେ ସାଧାରଣ ଗଞ୍ଜାଙ୍କ ତୁଳନାରେ ଭିନ୍ନ । ଏମାନେ ସୁସ୍ଥ ଓ ସବଳ । ଏହି ଗଞ୍ଜାମାନଙ୍କୁ ମାଲିକମାନେ ବିଶେଷ ଭାବେ ପ୍ରଶିକ୍ଷଣ ଦେଇଥାନ୍ତି । ଗଞ୍ଜା ଲଢେଇ ପାଇଁ ଏକ ସ୍ୱତନ୍ତ୍ର ପ୍ରଜାତିର ଗଞ୍ଜାକୁ ବ୍ୟବହାର କରାଯାଇଥାଏ । ଲଢେଇ ପାଇଁ ପ୍ରସ୍ତୁତ କରିବା ପୂର୍ବରୁ ଏହି ଧରଣର ଗଞ୍ଜାମାନଙ୍କ ଉପଯୁକ୍ତ ଯତ୍ନ ଓ ଲାଳନପାଳନ ପାଇଁ ବହୁ ଅର୍ଥ ବ୍ୟୟ କରାଯାଇଥାଏ । ଏମାନଙ୍କୁ ମୁଖ୍ୟତଃ ଗହମ ଓ ବାଜରାରୁ ପ୍ରସ୍ତୁତ ଗଜା (ଚାରା), ପିସ୍ତା, କାଜୁ ବାଦାମ ଆଦି ଖାଦ୍ୟ ଦିଆଯାଇଥାଏ । ଏଭଳି ଖାଦ୍ୟ ଖାଇ ଏହି ଗଞ୍ଜାମାନେ ବେଶ୍ ଶକ୍ତିଶାଳୀ ହୋଇଥାନ୍ତି ବୋଲି ଗଞ୍ଜାମାଲିକ (ଚାଷୀ)ମାନେ କହିଥାନ୍ତି । ତେବେ ମକର ଉତ୍ସବ

ସମୟରେ ଏହି ଧରଣର ଗଞ୍ଜାମାନଙ୍କର ଦର୍ ଆକାଶଛୁଆଁ ହୋଇଥାଏ । ମକର ସଂକ୍ରାନ୍ତି ସମୟରେ ଗଞ୍ଜା ଲଢେଇରେ ଅଂଶଗ୍ରହଣ କରିବାକୁ ଥିବା ପକ୍ଷମାନେ ଗାଁ ଗାଁ ବୁଲି ଗଞ୍ଜାମାଲିକ (ଚାଷୀ)ଙ୍କ ନିକଟରୁ ଚଢା ଦରରେ କିଣିଥା'ନ୍ତି । ଏହି ଧରଣର ଗଞ୍ଜାର ଦର ୫ ହଜାରରୁ ୨୫ ହଜାର ଟଙ୍କା ପର୍ଯ୍ୟନ୍ତ ହୋଇଥାଏ । କେନ୍ଦୁଝର ଅଞ୍ଚଳର ବଡ଼ ବଡ଼ ବ୍ୟବସାୟୀ କିମ୍ବା ଖଣି ଅଞ୍ଚଳରେ କାମ କରୁଥିବା ଟ୍ରାନ୍ସପୋର୍ଟରମାନେ ବେଳେବେଳେ ୫୦ ହଜାର ଟଙ୍କା ଦେଇ ଗୋଟେ ଗୋଟେ ଆକର୍ଷଣୀୟ ଗଞ୍ଜା କିଣିଥାନ୍ତି ।

ଗଞ୍ଜା ଲଢେଇ ହେଉଥିବା ସ୍ଥାନମାନଙ୍କରେ ଲକ୍ଷାଧିକ ଟଙ୍କାର ବାଜି ଲାଗିଥାଏ । ବ୍ୟବସାୟୀଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକେ ଏହି ଲଢେଇରେ ୧୦ ଟଙ୍କାରୁ ଆରଂଭ କରି ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ବାଜି ଲଗେଇଥାନ୍ତି । ଗୋଟିଏ ଗଞ୍ଜା ଉପରେ ହଜାର ହଜାର ସଂଖ୍ୟାରେ ଲୋକମାନେ ବାଜି ମଧ୍ୟ ଲଗେଇ ପାରନ୍ତି । ବିଶେଷକରି କେନ୍ଦୁଝର ଜିଲ୍ଲାର ପଡୋଶୀ ଝାଡଖଣ୍ଡ ଅଞ୍ଚଳରୁ ବହୁ ବିହାରୀ ବ୍ୟବସାୟୀମାନେ ଏ ଅଞ୍ଚଳର ଗଞ୍ଜା ଲଢେଇରେ ଲକ୍ଷଲକ୍ଷ ଟଙ୍କା ବାଜି ଲଗାଉଥିବାର ଦେଖାଯାଇଥାଏ । ଗଞ୍ଜା ଲଢେଇ ସମୟରେ ଆୟୋଜକମାନେ ମାଗଣାରେ ମଦ ବାଣ୍ଟିଥାନ୍ତି । ଅପରପକ୍ଷେ, ଗଞ୍ଜା ଲଢେଇ ହେଉଥିବା ସ୍ଥାନମାନଙ୍କରେ ମଦ, କାତି, ବିଭିନ୍ନ ପ୍ରକାର ପକ୍ଷୀ ଔଷଧ ଆଦି ବିକ୍ରି ହେବା ଉଦ୍ଦେଶ୍ୟରେ ହାଟ ବସିଥାଏ । ଏଠାରେ ଗଞ୍ଜା ଲଢେଇ ପାଇଁ ବ୍ୟବହୃତ ହେଉଥିବା ଜାତିଜାତିକା ଲୁହା କାତି, ଛୁରୀ, ନାନା ପ୍ରକାର ଦେଶୀ ମଦ, ଚାଖଣା (ବୁଟ ଭଜା, ସୋଲା ଭଜା, ମଟର ସିଝା, ଲୁଣି ଶୁଖୁଆ, ଚିଙ୍ଗୁଡ଼ି ଶୁଖୁଆ) ଓ ଆହତ ଗଞ୍ଜାମାନଙ୍କ ଚିକିତ୍ସା ନିମନ୍ତେ ଔଷଧ ବିକ୍ରି ହୋଇଥାଏ । ଏହି ହାଟମାନଙ୍କରେ ସ୍ଥାନୀୟ କୁଡୁମୀ ସଂପ୍ରଦାୟର ଲୋକମାନଙ୍କ ମଧ୍ୟରୁ କିଛି ଲୋକ ଆହତ ଗଞ୍ଜାମାନଙ୍କୁ ଅସ୍ତ୍ରୋପଚାର (ଚିକିତ୍ସା) କରିବା ଉଦ୍ଦେଶ୍ୟରେ ଦୋକାନ (ଉଠା କ୍ଲିନିକ୍) ଖୋଲି ବସିଥିବାର ଦେଖାଯାଇଥାଏ । ଏମାନେ ସେ ଅଞ୍ଚଳରେ 'ଗଞ୍ଜା ଡାକ୍ତର' ଭାବେ ପରିଚିତ । ଏହି ଗଞ୍ଜା ଡାକ୍ତରମାନେ ନିକଟସ୍ଥ ପଶୁ ଡାକ୍ତରମାନଙ୍କ ସହ ପରାମର୍ଶ କରି ପଶୁପକ୍ଷୀଙ୍କ କ୍ଷେତ୍ରରେ ବ୍ୟବହାର କରାଯାଉଥିବା କିଛି ମଲମ ଓ ଔଷଧ, ଛୁରି, କଇଁଚି, ଇଞ୍ଜେକ୍ସନ୍, ସିରିଞ୍ଜ ଧରି ନିଜର 'ଉଠା କ୍ଲିନିକ୍'ରେ ଅପେକ୍ଷା କରି ବସିଥିବାର ଦେଖାଯାଏ । ଗଞ୍ଜା ଲଢେଇରେ ଶହଶହ ଗଞ୍ଜା ଆହତ ହେବା ପରେ ତୁରନ୍ତ ସେମାନଙ୍କୁ ଏହି ଗଞ୍ଜା ଡାକ୍ତରମାନଙ୍କ ନିକଟକୁ ଅଣାଯାଇ ସେମାନଙ୍କର ଆଶୁ ଚିକିତ୍ସା କରାଯାଇଥାଏ । ଆମେ ଥରେ ଝୁଂପୁରା ବ୍ଲକ୍‌ର ଉଖୁଣ୍ଡାରେ ଚାଲିଥିବା ଏକ ଗଞ୍ଜା ଲଢେଇ କାର୍ଯ୍ୟକ୍ରମରେ ଉପସ୍ଥିତ ଥିଲୁ । ସେଠାରେ କ୍ଲିନିକ୍ ଖୋଲି ବସିଥିବା ଗଞ୍ଜା ଡାକ୍ତର ବୈଶାଖୁ ମହାନ୍ତ ଓ ମନୋଜ ମହାନ୍ତଙ୍କ ସହ କଥା ହେଉ ହେଉ ଅନେକ କଥା ଜାଣିବାକୁ ପାଇଲୁ । ଏହି ଗଞ୍ଜା ଡାକ୍ତରମାନେ ଲଢେଇ ପାଇଁ ଆସିଥିବା ଗଞ୍ଜାମାନଙ୍କ ଗୋଡରେ କାତି ବାନ୍ଧିଥାନ୍ତି ।

ଗାଟିଏ ଗଞ୍ଜାର ଗୋଡରେ କାତି ବାନ୍ଧିବା ପାଇଁ ଏମାନେ ଶହେରୁ ଦେଢ ଶହ ଟଙ୍କା ନେଇଥାନ୍ତି ।

ମକର ଉତ୍ସବ ବେଳକୁ କେନ୍ଦୁଝର ଜିଲ୍ଲାର ଗ୍ରାମାଞ୍ଚଳରେ ଏହି ଗଞ୍ଜା ଲଢେଇ ଦୃଶ୍ୟ ସବୁଠି ଦେଖିବାକୁ ମିଳିଥାଏ । ଏହି ଲଢେଇକୁ ଦେଖି ସ୍ଥାନୀୟ ଲୋକେ ମଜା ଉଠାଉଥିବାବେଳେ ପଶୁପକ୍ଷୀଙ୍କ ପ୍ରତି ଅତ୍ୟାଚାର ହେଉଥିବାରୁ କିଛି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ପଶୁପକ୍ଷୀ ପ୍ରେମୀ ଏହାକୁ ବିରୋଧ କରି ଆସୁଛନ୍ତି । ମାତ୍ର, ଏଭଳି ଏକ ପରଂପରାକୁ କେନ୍ଦୁଝର ଜିଲ୍ଲାରେ ବନ୍ଦ କରିବା ସମ୍ଭବପର ହୋଇପାରିନାହିଁ ।

## କେନ୍ଦୁଝରର ଲୋକ ସଂସ୍କୃତିରେ 'ପାଲା'

ଆଧୁନିକତାର ପ୍ରଭାବରେ ରାଜ୍ୟରେ ପାଲା ସଂସ୍କୃତି ଲୋପ ପାଇଯିବାକୁ ବସିଥିବାବେଳେ କେନ୍ଦୁଝର ଜିଲ୍ଲାର ବହୁ ପ୍ରାଚୀନ ପାଲା ସଂସ୍କୃତି ଆଜିବି ବଞ୍ଚି ରହିଛି । ଏବର ବ୍ୟସ୍ତବହୁଳ ଦୁନିଆରେ ଟିଭି, କଂପ୍ୟୁଟର, ଘରୋଇ କେବୁଲ୍ ଚ୍ୟାନେଲ, ମୋବାଇଲ ଓ ଟେକ୍ନୋଲୋଜି ଯୁବ ସମାଜକୁ ପ୍ରଭାବିତ କରିଥିବାବେଳେ କେନ୍ଦୁଝର ଜିଲ୍ଲାରେ ତଥାପି କିଛି ପାଲା ଗାୟକ ଏହି ପରଂପରାକୁ ବଞ୍ଚେଇ ରଖିବାକୁ ଉଦ୍ୟମ ଜାରି ରଖିଛନ୍ତି । ଏଭଳି ଜଣେ ପାଲା ଗାୟକ ହେଉଛନ୍ତି କେନ୍ଦୁଝର ଜିଲ୍ଲାର ନେଲୁଂ ଗ୍ରାମର ନାରାୟଣ ଚନ୍ଦ୍ର ଦାଶ । ଦୀର୍ଘ ପଚାଶ ବର୍ଷ ଧରି ପାଲା ପରିବେଷଣ କରି ନିଜ ଜୀବନକୁ ସଂପୂର୍ଣ୍ଣ ଉତ୍ସର୍ଗ କରି ଦେଇଛନ୍ତି ନାରାୟଣ । ନାରାୟଣଙ୍କ ନିଜ ଘର ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଡରଡରା ଗ୍ରାମରେ । ମାତ୍ର, ବିବାହ ପରେ ସେ କେନ୍ଦୁଝର ସହର ନିକଟସ୍ଥ ନିଜ ଶ୍ୱଶୁରଙ୍କ ଗାଁ ନେଲୁଂକୁ ଚାଲିଆସି ଏଠାରେ ସ୍ଥାୟୀ ଭାବେ ବସବାସ କରିଆସୁଛନ୍ତି । ଏବେ ନେଲୁଂ ହିଁ ତାଙ୍କ ସାଧନାର ଭୂମି ପାଲଟିଛି । ନାରାୟଣଙ୍କ ପରିବାର ଏକ କଳାକାର ପରିବାର ଭାବେ ସମଗ୍ର କେନ୍ଦୁଝର ଜିଲ୍ଲାରେ ଜଣାଶୁଣା । ତାଙ୍କର ବାପା ସ୍ୱର୍ଗତଃ ଶୁକଦେବ ଦାଶ ଥିଲେ ତତ୍କାଳୀନ ରାଜା ଲକ୍ଷ୍ମୀ ନାରାୟଣ ଭଂଜଙ୍କ ରାଜ ଗାୟକ । ନାରାୟଣଙ୍କ ଶ୍ୱଶୁର ତଥା ନେଲୁଂ ଗ୍ରାମର ମିଟୁ ପଣ୍ଡା ମଧ୍ୟ ଜଣେ କଳାକାର ଥିଲେ । ଏହି କାରଣରୁ ନାରାୟଣ ମଧ୍ୟ


ପାଲା ଗାୟକ ନାରାୟଣ ଚନ୍ଦ୍ର ଦାଶ

ପାଲା ଗାୟକଟିଏ ହୋଇପାରିଛନ୍ତି ବୋଲି ନିଜେ ନାରାୟଣ ପ୍ରକାଶ କରନ୍ତି ।

ପାଲା ଗାୟକ ନାରାୟଣ ଚନ୍ଦ୍ର ଦାଶ ଏଭଳି ଏକ ପରିବାରରେ ଜନ୍ମ ଗ୍ରହଣ କରିଛନ୍ତି, ଯାହାଙ୍କ ବାପା, ଜେଜେବାପା, ଗୋସେଇଁ ବାପା, ଶ୍ୱଶୁର, ଶଳା, ପୁତ୍ର, ପତ୍ନୀ ସମସ୍ତେ ନିଜନିଜ କ୍ଷେତ୍ରରେ ପ୍ରତିଷ୍ଠିତ ଜଣେ ଜଣେ ଦକ୍ଷ କଳାକାର । ନାରାୟଣଙ୍କ ବାପା ଶୁକଦେବ ଦାଶ ତତ୍କାଳୀନ କେନ୍ଦୁଝରରେ ଜଣେ ଦକ୍ଷ ପାଲା ଗାୟକ ଭାବେ ବେଶ୍ ପ୍ରତିଷ୍ଠା ଅର୍ଜନ କରିପାରିଥିଲେ । ଶୁକଦେବ ଦାଶଙ୍କ ବାପା ଅର୍ଥାତ୍ ନାରାୟଣଙ୍କ ଜେଜେବାପା ଗଦାଧର ଦାଶ ଓ ତାଙ୍କ ବାପା ମଧୁସୂଦନ ଦାଶ ମଧ୍ୟ ଜଣେ ଜଣେ ଦକ୍ଷ ପାଲା ଗାୟକ ଭାବେ ସେତେବେଳେ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଥିଲେ । ବର୍ତ୍ତମାନ ନାରାୟଣ ବୟସର ଅପରାହ୍ନରେ ପହଞ୍ଚି ଯାଇଥିବାରୁ ପୂର୍ବଭଳି ଆଉ ଚଳଚଞ୍ଚଳ ନାହାନ୍ତି ମାତ୍ର, ଏବେ ତାଙ୍କର ସ୍ୱପ୍ନକୁ ପୂରଣ କରିବାକୁ ତାଙ୍କ ପୁତ୍ର ରଂଜନ କୁମାର ଦାଶ ଆଗେଇ ଆସିଛନ୍ତି । ନାରାୟଣଙ୍କ ପୁତ୍ର ରଂଜନ ମଧ୍ୟ ଜଣେ ଦକ୍ଷ ଯୁବ ପାଲା ଗାୟକ ଭାବେ ସମଗ୍ର କେନ୍ଦୁଝର ଜିଲ୍ଲାରେ ପ୍ରସିଦ୍ଧି ଅର୍ଜନ କରିପାରିଛନ୍ତି ।ନାରାୟଣଙ୍କ ଶ୍ୱଶୁର ମିଟୁ ପଣ୍ଡା ଜଣେ ପ୍ରସିଦ୍ଧ କଳାକାର ଥିଲେ । ଏଣୁ ନାରାୟଣଙ୍କ ପରିବାର ଏକ 'ପାଲାଗାୟକ ପରିବାର' ଭାବେ ଏ ଅଞ୍ଚଳରେ ବେଶ୍ ପରିଚିତ । ନାରାୟଣଙ୍କର ଶଳା ହେଉଛନ୍ତି ଓଡ଼ିଶାର ପ୍ରସିଦ୍ଧ କ୍ଲାସିକାଲ୍ ଓଡ଼ିଶୀ କଣ୍ଠଶିଳ୍ପୀ ଘନଶ୍ୟାମ ପଣ୍ଡା । ନାରାୟଣଙ୍କ ସ୍ତ୍ରୀ ମଧ୍ୟ ଜଣେ କଳାକାର । ନିଜ ପୈତୃକ ପରିବାର ଓ ଶ୍ୱଶୁର ଘର ପରିବାରଃ ଉଭୟ କଳାକାର ପରିବାରରେ ଆବଦ୍ଧ ହୋଇଥିବାରୁ ନାରାୟଣ ଆଜି ଜଣେ ପ୍ରତିଷ୍ଠିତ ପାଲାଗାୟକ ହୋଇପାରିଛନ୍ତି ।



ନିଜର ନିଷ୍ଠା, ଅଧ୍ୟବସାୟ ବଳରେ ପାଲା ଉପରେ ଅଧିକ ପରୀକ୍ଷାନିରୀକ୍ଷା କରି ନାରାୟଣ ପାଲାକୁ ଅଧିକ ଲୋକପ୍ରିୟ କରାଇ ପାରିଛନ୍ତି । ପ୍ରାଚୀନ କ୍ଲାସିକାଲ୍ ପାଲା ଏବଂ ଆଧୁନିକତାର ମିଶ୍ରଣରେ ନାରାୟଣ ପାଲାର ଏକ ନୂତନ ସ୍ୱରୂପ ଦେବାରେ ସମର୍ଥ ହୋଇଛନ୍ତି । ତାଙ୍କର ସାଧନା ଓ ସମର୍ପଣ ପାଇଁ ନାରାୟଣ ବହୁ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ ହୋଇଛନ୍ତି । ଅଷ୍ଟାଦଶ ପୁରାଣ, ସଂସ୍କୃତ କାବ୍ୟ ନାଟକ, ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, କାଳିଦାସଙ୍କ ସଂସ୍କୃତ କାବ୍ୟ ରଘୁବଂଶମ୍, କୁମାରସମ୍ଭବମ୍, ଶକୁନ୍ତଳମ୍, ନାଗାର୍ଜୁନ, ନାଗାନନ୍ଦ, ବିକ୍ରମ, ଉର୍ବଶୀ, ମାଳବିକା, ଭାସ ନାଟକ ଚକ୍ର, କର୍ଣ୍ଣଭାରମ୍, ଉରୁଭଙ୍ଗମ୍, ବେଣୀ ସଂହାର, ମଧ୍ୟମ ବିୟୋଗ, ରୁକ୍ମିଣୀ ପରିଣୟ ପରି ବହୁ ପୌରାଣିକ ଶାସ୍ତ୍ରକୁ ଆଧାର କରି ଦକ୍ଷତାର ସହ ପାଲା ପରିବେଷଣ କରି ଆସୁଛନ୍ତି ନାରାୟଣ । କେବଳ କେନ୍ଦୁଝର ନୁହେଁ, ରାଜ୍ୟର ବିଭିନ୍ନ ଜିଲ୍ଲା ସମେତ ରାଜ୍ୟ ବାହାରେ ଝାଡଖଣ୍ଡ, ବିହାର, ପଶ୍ଚିମବଙ୍ଗ ଆଦି ରାଜ୍ୟରେ ପାଲା ପରିବେଷଣ କରି ନାରାୟଣ ବହୁ ପ୍ରଶଂସାର ଅଧିକାରୀ ହୋଇପାରିଛନ୍ତି । କେନ୍ଦୁଝର ଓ ମୟୂରଭଂଜ ଜିଲ୍ଲାର ୩୦ରୁ ଊର୍ଦ୍ଧ୍ୱ ଶିଷ୍ୟଙ୍କୁ ତାଲିମ୍ ଦେଇ ପାଲା ସଂସ୍କୃତିର ସୁରକ୍ଷା ପାଇଁ ସେ ଆପ୍ରାଣ ଉଦ୍ୟମ ଜାରି ରଖିଛନ୍ତି ।

ମୟୂରଭଞ୍ଜ ଜିଲ୍ଲାର ବର୍ଷୀୟାନ୍ ପାଲା ଗାୟକ ଗୁରୁ ମାଗୁଣୀ ଚରଣ ଗିରି (ଅନ୍ଧ), ବନମାଳି ଦାଶ, ଢେଙ୍କାନାଳର ପଣ୍ଡିତ ପଦ୍ମନାଭ ମିଶ୍ର, କାଶୀନାଥ ହୋତା, ପିତା ଶୁକଦେବ ଦାଶ, ଶ୍ୱଶୁର ମିଟୁ ମୁଣ୍ଡା ଆଦି ପାଲା ଗୁରୁମାନେ ନାରାୟଣଙ୍କ ପାଇଁ ଆଦର୍ଶ ପାଲଟିଛନ୍ତି । ସେମାନଙ୍କ ପଥ ଅନୁସରଣ କରି ନାରାୟଣ ପାଲାକୁ ବହୁ ବାଟ ଆଗେଇ ନେଇ ପାରିଛନ୍ତି । ନାରାୟଣ ପାଲା ସଂସ୍କୃତିକୁ ବଞ୍ଚେଇ ରଖିବାକୁ ଉଦ୍ୟମ କରିବା ସହିତ ଏଥିରେ ପରୀକ୍ଷା ନିରୀକ୍ଷା କରି ଲୋକପ୍ରିୟ କରିପାରିଥିବାରୁ ତାଙ୍କୁ ବିଭିନ୍ନ ସଂସ୍ଥା ଓ ସଂଗଠନ ପକ୍ଷରୁ ସମ୍ବର୍ଦ୍ଧନା ମିଳିପାରିଛି । 'ଗାୟକ ଭୂଷଣ', 'ଗାୟକ ପ୍ରଦୀପ' ଏବଂ 'ସଂସ୍କୃତ ପ୍ରବୀଣ' ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ସମ୍ମାନ ତାଙ୍କୁ ମିଳିପାରିଛି ।

ନାରାୟଣ କୁହନ୍ତି ଯେତେବେଳେ ୨୦ ଟଂକା ପାରିଶ୍ରମିକରେ ପାଲା ପରିବେଷଣ କରୁଥିଲେ ସେତେବେଳେ ସେ ପାଲାକୁ ଅଧିକ ଉପଭୋଗ କରିପାରୁଥିଲେ । ମାତ୍ର, ଆଜି ତାଙ୍କୁ ତିନି ହଜାର ଟଙ୍କା ଏବଂ ସ୍ଥଳ ବିଶେଷରେ ପାଞ୍ଚ ହଜାର ଟଙ୍କା ମିଳିଲେ ମଧ୍ୟ ତାହା ତାଙ୍କୁ ସନ୍ତୁଷ୍ଟ କରିପାରୁନି । ନାରାୟଣ କୁହନ୍ତି ଏହାର କାରଣ କେବଳ ଦର୍ଶକଙ୍କ ରୁଚିରେ ଅସ୍ୱାଭାବିକ ପରିବର୍ତ୍ତନ । ସେତେବେଳେ ଦର୍ଶକମାନଙ୍କର ପାଲା ପ୍ରତି ସ୍ୱତନ୍ତ୍ର ଆଗ୍ରହ ଓ ନିଷ୍ଠା ରହିଥିଲା । ଏବେ ଦର୍ଶକମାନଙ୍କର ଏହି ଆଗ୍ରହ ଆଉ ନାହିଁ ବୋଲି ଦୁଃଖର ସହ ପ୍ରକାଶ କରନ୍ତି ପାଲା ଗାୟକ ନାରାୟଣ । ଅତୀତରେ ପାଲାର ଏଭଳି ଚାହିଦା ଥିଲା, ସେ ସ୍ମୃତିକୁ ମନେ ପକାଇବାବେଳେ ନାରାୟଣଙ୍କ ଆଖିରେ ଲୁହ ଚାଲିଆସେ । ଥରେ ମୟୂରଭଞ୍ଜ ଜିଲ୍ଲାର ଗୋଡାପଳାସାରେ 'ପ୍ରଭାସ ଯଜ୍ଞ' ବିଷୟବସ୍ତୁକୁ ନେଇ ପାଲା ହେଉଥିଲା । ପାଲା ଦେଖାରେ ଦର୍ଶକମାନଙ୍କ ଏଭଳି ନିଶା ଲାଗି

ଯାଇଥିଲା, ରାତି ୧୧ଟାରୁ ଆରମ୍ଭ ହୋଇଥିବା ପାଲା ପାଖାପାଖି ୨ଟା ସମୟରେ ଶେଷ ହେବା କଥା, ମାତ୍ର ରାତି ୨ଟା ପାର୍ ହୋଇ ପରଦିନ ସକାଳ ୮ଟା ହୋଇଯାଇଥିଲା, ଲୋକେ ନିଜନିଜ ସ୍ଥାନରୁ ଉଠି ନଥିଲେ । ଏ ସ୍ମରଣୀୟ ଅଭୂଲା ଅନୁଭୂତିକୁ ମନେ ପକାଇ ନାରାୟଣ ବେଶ୍ ରୋମାଞ୍ଚିତ ହୋଇ ଉଠନ୍ତି ।

ନାରାୟଣଙ୍କର ପାଲା ଦଳରେ ମୋଟ ୬ ଜଣ ସଦସ୍ୟ ଅଛନ୍ତି । ନିଜ (ପାଲା ଗାୟକ) ବ୍ୟତୀତ ଜଣେ ବାୟକ (ବାଦକ), ୪ ଜଣ ପାଳିଆଙ୍କୁ ନେଇ ନାରାୟଣଙ୍କ ପାଲା ଦଳ ରାଜ୍ୟ ତଥା ରାଜ୍ୟ ବାହାରେ ବେଶ୍ ସୁନାମ ଅର୍ଜନ କରିପାରିଛି । ତେବେ ଓଡ଼ିଶାର ଏହି ପ୍ରାଚୀନ ପାଲା ସଂସ୍କୃତିକୁ ବଞ୍ଚେଇ ରଖିବାକୁ ହେଲେ ସବୁ ବର୍ଗରୁ ଉଦ୍ୟମ ହେବା ଜରୁରୀ ବୋଲି ନାରାୟଣ ମତ ପ୍ରକାଶ କରିଛନ୍ତି । ପାଲା ଗାୟକଙ୍କ ଭୂମିକାଠାରୁ ଦର୍ଶକ ଓ ଆୟୋଜକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ନାରାୟଣଙ୍କ ମତ । ସରକାରୀସ୍ତରରେ ଯେଉଁଭଳି ପ୍ରୋତ୍ସାହନ ମିଳିବା କଥା ତାହା ମିଳୁ ନଥିବାରୁ ଏହି ସଂସ୍କୃତି ଧୀରେଧୀରେ ଲୋପ ପାଇଯିବାକୁ ବସିଛି । ପାଲା ସାଧାରଣତଃ ଚାରି ପାଞ୍ଚ ଘଣ୍ଟା ପରିବେଷଣ କରାଯାଇଥାଏ । ବେଳେବେଳେ ସଂଜ ପହରୁ ଆରମ୍ଭ ହୋଇ ବିଳମ୍ବିତ ରାତିରେ ଶେଷ ହୋଇଥାଏ ଏବଂ ବେଳେବେଳେ ରାତି ୧୨ଟାରୁ ଆରମ୍ଭ ହୋଇ ରାତି ୪ଟା ପର୍ଯ୍ୟନ୍ତ ଚାଲେ । ତେବେ ପାଲା ସଂସ୍କୃତିର ବିକାଶ ପାଇଁ କେନ୍ଦୁଝରଠାରେ ଏକ 'ପାଲା ଏକାଡେମୀ' ଗଠନ କରିବା ସହିତ ଏଠାରେ ପାଲା ସଂପର୍କିତ ଗବେଷଣା ଓ ତାଲିମ ପ୍ରଦାନ କରାଯିବାର ବ୍ୟବସ୍ଥା ରହିପାରିଲେ ଏହା ଆହୁରି ବିକଶିତ ହୋଇପାରିବ ବୋଲି ସ୍ଥାନୀୟ ବୁଦ୍ଧିଜୀବି ଦାବି କରନ୍ତି । କେନ୍ଦୁଝର ପାଲା ସଂସ୍କୃତିର ପ୍ରାଚୀନତମ କ୍ଷେତ୍ର ବୋଲି ମତ ଦେଇ ନାରାୟଣ କେନ୍ଦୁଝର ଜିଲ୍ଲାରେ ପାଲା ସଂସ୍କୃତିକୁ ଅଧିକ ଲୋକପ୍ରିୟ କରିବା ନେଇ ଉଦ୍ୟମ ଆବଶ୍ୟକ ହେବା ଜରୁରୀ ବୋଲି ମତବ୍ୟକ୍ତ କରନ୍ତି ।

ସବୁଠୁ ବଡ଼ ଖୁସିର ଖବର, ପାଲା ସଂସ୍କୃତିକୁ ଅଧିକ ଲୋକପ୍ରିୟ କରାଇବା ଉଦ୍ଦେଶ୍ୟରେ ଆନନ୍ଦପୁର ଅଞ୍ଚଳରେ ପ୍ରତିବର୍ଷ ପାଲା ପ୍ରତିଯୋଗିତାର ଆୟୋଜନ କରାଯାଇ ଆସୁଛି । ଏହା ଏକ ଶୁଭ ସୂଚନା । ତେବେ ପାଲାରେ ପୁରୁଷମାନଙ୍କ ସମେତ ମହିଳାମାନଙ୍କର ପ୍ରବେଶ ମଧ୍ୟ ଏକ ଅନୁକୂଳ ଦିଗ । କେନ୍ଦୁଝର ଜିଲ୍ଲାର ଅନେକ ଶିକ୍ଷିତ ଯୁବତୀ ପାଲା ଗାୟକ ଭାବେ ରାଜ୍ୟ ତଥା ରାଜ୍ୟ ବାହାରେ ସୁନାମ ଅର୍ଜନ କରିବା ସହିତ ଏହି ସଂସ୍କୃତିକୁ ବଞ୍ଚାଇ ରଖିବାର ଉଦ୍ୟମ ଜାରି ରଖିଛନ୍ତି ।

ଓଡ଼ିଶାର 'ଶ୍ରୀ ଶ୍ରୀ ନୀଳାଚଳ ନିଖିଳ ଉତ୍କଳ ପାଲା ଗାୟକ ପରିଷଦ'ର ସଭ୍ୟ ଅଛନ୍ତି ନାରାୟଣ । ତେବେ ନାରାୟଣ ପ୍ରଥମ କରି କେନ୍ଦୁଝର ଜିଲ୍ଲାର ନେଲୁଂଠାରେ 'ମା' ତାରିଣୀ ପାଲାକାର ପରିଷଦ' ଗଠନ କରି ପାଲାର ବିକାଶ ପାଇଁ ଉଦ୍ୟମ ଜାରି ରଖିଛନ୍ତି । ଏହି ସଂଗଠନ

ମାଧ୍ୟମରେ ନାରାୟଣ କେନ୍ଦୁଝର ଜିଲ୍ଲାରେ ପାଲାକୁ ଅଧିକ ଲୋକପ୍ରିୟ କରାଇବା ସହ ପାଲାର ବିକାଶ ନେଇ ଅନେକ ପଦକ୍ଷେପ ନେଇଛନ୍ତି । ଏହି ସଂସ୍ଥା ମାଧ୍ୟମରେ କେନ୍ଦୁଝର ଜିଲ୍ଲାରେ 'ପାଲା'ର ବିକାଶ ନେଇ ବିଭିନ୍ନ ସ୍ଥାନରେ ପ୍ରଶିକ୍ଷଣ, ଆଲୋଚନା ଆଦି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ ।

କେନ୍ଦୁଝର ଜିଲ୍ଲାରେ ପାଲା ସଂସ୍କୃତି ବହୁ ପୁରୁଣା । କେବଳ ନାରାୟଣ ନୁହଁନ୍ତି ତାଙ୍କ ପୂର୍ବରୁ କେନ୍ଦୁଝର ମାଟିର ବହୁ ପ୍ରସିଦ୍ଧ ପାଲାଗାୟକ ଆଜି ବଞ୍ଚି ନାହାନ୍ତି ସତ, ସେମାନେ ପାଲା ସଂସ୍କୃତିକୁ ଅଧିକ ସମୃଦ୍ଧ କରିବାରେ ନିଜନିଜର ଯେଉଁ ଅମୂଲ୍ୟ ଅବଦାନ ଛାଡି ଯାଇଛନ୍ତି ତାହା ଅବର୍ଣ୍ଣନୀୟ । ନାରାୟଣଙ୍କ ପିତା ସ୍ୱର୍ଗତଃ ଶୁକଦେବ ଦାଶ, ଶ୍ୱଶୁର ମିଟୁ ପଣ୍ଡା, ଟଙ୍କଧର ପଣ୍ଡା, ଦାଶରଥୀ ଦାଶ, ହରିହର ପଣ୍ଡା, ରାମଚନ୍ଦ୍ର ପଣ୍ଡା, ଷଙ୍କର୍ଷଣ ପଣ୍ଡା, ଗିରିଧାରୀ ପଣ୍ଡା, ବନମାଳୀ ସ୍ୱାଇଁ, ବିଦ୍ୟାଧର ମାନସିଂ, ମକରଧ୍ୱଜ ପ୍ରଧାନ, କରୁଣାକର ବାରିକ, ରଂଗାଧର କର ପ୍ରମୁଖ କେନ୍ଦୁଝର ଜିଲ୍ଲାର ପ୍ରସିଦ୍ଧ ପାଲା ଗାୟକ ଆଜି ମର୍ତ୍ତ୍ୟଲୋକରେ ନାହାନ୍ତି ସତ, ପାଲା ସଂସ୍କୃତିରେ ସେମାନଙ୍କ ଅବଦାନ ସ୍ମରଣୀୟ ହୋଇ ରହିଛି । କେନ୍ଦୁଝର ଜିଲ୍ଲାରେ ପାଲାକୁ ଅଧିକ ଲୋକପ୍ରିୟ କରାଇବାରେ ଏହି ଦିବଗଂତ ପାଲାଗାୟକଙ୍କ ଅବଦାନ ବେଶ୍ ମହତ୍ୱ ରକ୍ଷା କରିଥାଏ ।

## କେନ୍ଦୁଝର ଜିଲ୍ଲାର ଗଣ ପର୍ବ: ରଜ

ମକର ପରେପରେ ଯଦି ଅନ୍ୟ କୌଣସି ପର୍ବ କେନ୍ଦୁଝରର ଗ୍ରାମ୍ୟ ଜୀବନକୁ ସର୍ବାଧିକ ପ୍ରଭାବିତ କରିଥାଏ, ତାହା ହେଉଛି ରଜପର୍ବ । ରଜ ପର୍ବ ପାଳନ ଅବସରରେ କେନ୍ଦୁଝରର ଗାଁଠାରୁ ପଲ୍ଲୀ ଉତ୍ସବମୁଖର ହୋଇଉଠେ । ସବୁଠି ଦୋଳି ଖେଳ ଓ ଦୋଳି ଗୀତର ପ୍ରତିଯୋଗିତା ଆୟୋଜନ କରାଯାଏ । ସୀତାବିଞ୍ଜିଠାରୁ ଆରମ୍ଭ କରି ସିଦ୍ଧମଠ, ବାଂଶପାଳରୁ ବୀଣାଝରି, ସବୁଠି ରଜର ପରିବେଶ ଉତ୍ସବମୁଖର ହୋଇଉଠେ । କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜି ଓ ବୀଣାଝରି ରଜ ପର୍ବ ସମଗ୍ର ରାଜ୍ୟରେ ପ୍ରସିଦ୍ଧିଲାଭ କରିପାରିଛି । ଏଠାରେ ରଜ ଅବସରରେ ଦୋଳି ଓ ଗୀତର ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ ।

ରଜ ପର୍ବ ତିନି ଦିନ ବ୍ୟାପି ଚାଲେ । କେତେକ ସ୍ଥାନରେ ଏହା ପାଞ୍ଚ ଦିନ ଧରି ଚାଲେ । ଜ୍ୟେଷ୍ଠ ମାସର ଶେଷ ଦିନଟି ପହିଲି ରଜ । ପହିଲି ରଜର ପୂର୍ବଦିନକୁ 'ସଜବାଜ' ବା 'ପାଣିବୁହା' ବୋଲି କୁହାଯାଏ । ଆଷାଢ ମାସର ପ୍ରଥମ ଦିନଟି ମଝି ରଜ । ଏହାକୁ ରଜ ସଂକ୍ରାନ୍ତି କୁହାଯାଏ । କେନ୍ଦୁଝରରେ ରଜର ମୁଖ୍ୟ ଆକର୍ଷଣ ହେଉଛି ଦୋଳି ଖେଳ ଓ ଦୋଳି ଗୀତ । ଗାଁ ଗାଁରେ ଦୋଳି ଲାଗିଥାଏ ଓ ଦୋଳି ଗୀତ ବୋଲି ତରୁଣୀମାନେ ଜୀବନକୁ ଉପଭୋଗ କରନ୍ତି । ଦୋଳି ତିଆରୀ ଶେଷ ହେଲେ ଦୋଳି ପୂଜା ହୁଏ । ଗାଁର କୁମାରୀମାନେ ରଜପିଠା ନେଇ ଦୋଳି ପାଖକୁ ଯାଆନ୍ତି ।


ବିଭିନ୍ନ ସ୍ଥାନରେ ରଜଦୋଳିର ଦୃଶ୍ୟ


ବିଭିନ୍ନ ସ୍ଥାନରେ ରଜଦୋଳିର ଦୃଶ୍ୟ



ତିନି ଦିନ ଧରି ରଜ ଉତ୍ସବରେ ଝିଅବୋହୂମାନେ ବିଭିନ୍ନ ଅଞ୍ଚଳ ବୁଲନ୍ତି ଏବଂ ଏହି ସମୟରେ ଝିଅମାନେ କାମଧନ୍ଦା କରନ୍ତି ନାହିଁ । ଏହି ସମୟରେ ମାଟି ମଧ୍ୟ ଖୋଳାଯାଏ ନାହିଁ । ପୃଥିବୀମାତାଙ୍କୁ କଷ୍ଟ ଦେଲା ଭଳି କିଛି କାର୍ଯ୍ୟ କରାଯାଏନାହିଁ । ଶେଷ ଦିନ ହେଉଛି ରଜ ବିଦାୟର ପର୍ବ । ଗ୍ରାମର ଝିଅଠାରୁ ବୃଦ୍ଧାମାନେ ରଜକୁ ବିଦାୟ ଦିଅନ୍ତି । ଗାଁ ଝିଅମାନେ ବରକନ୍ୟା ବସନ୍ତି । ତା' ପରେ ଶବର ଶବରୁଣୀ ନାଚ ଅନୁଷ୍ଠିତ ହୋଇଥାଏ । ଏହି ବିଦାୟ ଉତ୍ସବରେ ପୁରୁଷମାନେ ଅଂଶଗ୍ରହଣ କରନ୍ତି ନାହିଁ । ରଜ ତିନି ଦିନ କୃଷି କର୍ମ ନିଷିଦ୍ଧ କରାଯାଏ । କାରଣ ଏହି ସମୟରେ ପୃଥିବୀ ମାତା ରଜବତୀ ହୋଇଥାଏ । ରଜବତୀ ନାରୀ ପରି ଏହି ସମୟରେ ଧରଣୀ ଅସ୍ପୃଶ୍ୟା ହୋଇଥାଏ । ଶବର ଶବରୁଣୀ ନୃତ୍ୟ ମାଧ୍ୟମରେ ପ୍ରକୃତି ଓ ପୁରୁଷର ମିଳନରେ ଶସ୍ୟ ଶ୍ୟାମଳା ଧରିତ୍ରୀ କାମନା କରନ୍ତି । ଏହି ଦିନ ସୀତା ଗର୍ଭବତୀ ହୋଇଥିଲେ ବୋଲି କେନ୍ଦୁଝର ଜିଲ୍ଲାର ଅଧିବାସୀଙ୍କ ବିଶ୍ୱାସ ରହିଥାଏ । ଶେଷ ଦିନ ବସୁମତୀ ଗାଧୁଆ କରାଯାଇଥାଏ । ରଜ ଅବସରରେ ଯୁବତୀମାନେ ଗାନ କରୁଥିବା ଦୋଳି ଗୀତ ସବୁଠୁ ଆକର୍ଷଣୀୟ ହୋଇଥାଏ । ଏହି ଦୋଳି ଗୀତ ତିନି ପାଦିଆ । ଏହାର ପ୍ରଥମ ପାଦରେ ଆଠଟି, ଦ୍ୱିତୀୟ ପାଦରେ ଏଗାରଟି ଓ ତୃତୀୟ ପାଦରେ ଆଠଟି ଅକ୍ଷର ଥାଏ । ତେବେ କେନ୍ଦୁଝରରେ ରଜ ଗୀତର କୌଣସି ଲିଖିତ ପୁସ୍ତକ ନାହିଁ । କେବଳ ମୌଖିକ

ଭାବେ ଯୁବତୀମାନେ ଏହି ଗୀତ ଗାନ କରିଥାନ୍ତି ।

ରଜପର୍ବକୁ ଅନ୍ୟ ଅର୍ଥରେ ମିଳନର ପର୍ବ ବୋଲି କହିଥାନ୍ତି । ଜିଲ୍ଲା ତଥା ଜିଲ୍ଲା ବାହାରେ ଚାକିରୀ କରିଥିବା ସମସ୍ତ କେନ୍ଦୁଝରିଆମାନେ ନିଜନିଜ ଗାଁକୁ ଫେରି ଆସନ୍ତି । ରଜ ତିନି ଦିନ ଗାଁଗାଁରେ ମାଛ, ମାଂସ, ପିଠାପଣାରେ ଭାସେ । କେଉଁଠି ଗାଁ ଛକରେ ଖାସି କଟାଯାଏ ତ ପୋଖରୀରୁ ମାଛ ଧରାଯାଏ । ଭୋଜିଭାତ କରି ଲୋକେ ଏହି ତିନି ଦିନ ବେଶ୍ ଉତ୍ସବ ମନେଇଥାନ୍ତି । ରଜ ପୋଡପିଠା ଓ ମାଂସ ଝୋଳର ବାସ୍ନାରେ ଗାଁଭୁଇଁ ମହକି ଉଠେ । ଏହି ଅବସରରେ ଯୁବକମାନଙ୍କ ମଧ୍ୟରେ ତାସ୍, କବାଡି, ପଶା ଆଦି ଖେଳର ଆୟୋଜନ ହୋଇଥାଏ । ଅନେକ ଗ୍ରାମରେ ଯୁବକମାନଙ୍କ ଦ୍ୱାରା ଯାତ୍ରା ନାଟକ ମଞ୍ଚସ୍ଥ ହୋଇଥାଏ । ଘଟଗାଁ ବ୍ଲକ୍‌ର ବୀଣାଝରି ରଜରେ ପ୍ରତିବର୍ଷ ଶହେରୁ ଉର୍ଦ୍ଧ୍ୱ ବିଭିନ୍ନ କିସମର ଦୋଳିର ଆୟୋଜନ ହୋଇଥାଏ । ସେହିଭଳି କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ପୁଟୁଳିଆ, ରାଇସୁଆଁ, ଜଳବଙ୍ଗ, ନରଣପୁର, ଡିମ୍ବୋ ଏବଂ ଆନନ୍ଦପୁର ଉପଖଣ୍ଡର ଘସିପୁରା, ଆନନ୍ଦପୁର, ହାଟଡିହି, ଶାଳବଣି ଆଦି ସ୍ଥାନରେ ରଜପର୍ବ ମହାସମାରୋହରେ ପାଳିତ ହୋଇଥାଏ ।



ବିଭିନ୍ନ ସ୍ଥାନରେ ରଜଦୋଳିର ଦୃଶ୍ୟ



**ବିଭିନ୍ନ ସ୍ଥାନରେ ରଜଦୋଳିର ଦୃଶ୍ୟ**



ବିଭିନ୍ନ ସ୍ଥାନରେ ରଜଦୋଳିର ଦୃଶ୍ୟ

## ଆଷାଢି ପର୍ବ

ଆଷାଢ ମାସରେ କେନ୍ଦୁଝରରେ ଆଦିବାସୀମାନେ ଆଷାଢି ପର୍ବ ପାଳନ କରିଥାନ୍ତି । ଏହା ଏକ କୃଷିଭିତ୍ତିକ ପର୍ବ । ଭଲ ଫସଲ ଓ ବର୍ଷା ଉଦ୍ଦେଶ୍ୟରେ ଏହି ପର୍ବ ପାଳନ କରାଯାଇଥାଏ । ଏହି ପର୍ବ ପାଳନ ଅବସରରେ ଆଦିବାସୀମାନେ ନିଜର ଇଷ୍ଟଦେବତା ଓ ପିତୃପୁରୁଷଙ୍କୁ ସ୍ମରଣ କରିଥାନ୍ତି । ଗ୍ରାମ ଦେବୀଙ୍କ ପାଖରେ ଭୋଗ ଲଗାଯାଇ ନାଚଗୀତର ଆୟୋଜନ ହୋଇଥାଏ । ଏହି ପର୍ବ ପାଳନ ପରେପରେ ଚାଷକାମ ଆରମ୍ଭ ହୋଇଥାଏ । ଆଷାଢି ପର୍ବ ପାଳନ ପାଇଁ ନିର୍ଦ୍ଦିଷ୍ଟ କିଛି ଦିନ ଧାର୍ଯ୍ୟ ହୋଇ ନଥିଲେ ମଧ୍ୟ ଆଷାଢ ମାସର ଯେକୌଣସି ଦିନରେ ପାଳିତ ହୋଇଥାଏ । ଏହି ଅବସରରେ ଗାଁର ଣାଳ (ଗ୍ରାମଦେବୀ) ନିକଟରେ କୁକୁଡା, ଛେଳି ବଳି ପଡିଥାଏ । ଆଷାଢି ପାଳନ ପରେ ସ୍ଥାନୀୟ ଲୋକେ ନୂଆ ଆମ୍ବୁଲକୁ ଖାଦ୍ୟ ଭାବେ ଗ୍ରହଣ କରିଥାନ୍ତି ବୋଲି ବିଶ୍ୱାସ ରହିଛି । ଏହା ବ୍ୟତୀତ ଏହି ପର୍ବ ପାଳନ ବେଳେ ଏଠାକାର ଆଦିବାସୀମାନେ କୁସୁମ କୋଳିକୁ ନିଜନିଜର ଇଷ୍ଟ ଦେବତା ଓ ଦେବୀଙ୍କଠାରେ ସମର୍ପଣ କରିବା ପରେ ନିଜେ ଖାଇଥାନ୍ତି । ଏହି ଅବସରରେ ପ୍ରତିବର୍ଷ କେନ୍ଦୁଝରର ପ୍ରତ୍ୟକ୍ଷ ଠାକୁରାଣୀ ଘଟଗାଁ ମା' ତାରିଣୀଙ୍କ ପୀଠରେ ମଧ୍ୟ ଆଷାଢି ପର୍ବ ପାଳନ କରାଯାଇଥାଏ ।

## କେନ୍ଦୁଝରର ପ୍ରସିଦ୍ଧ 'ଉଡ଼ା-ପାଟ' ପର୍ବ





ଉଡ଼ା-ପାଟ ପର୍ବଟି କେନ୍ଦୁଝର ଜିଲ୍ଲାର ମହନ୍ତ ସଂପ୍ରଦାୟର ଲୋକମାନେ ପାଳନ କରୁଥିବା ଏକ ପ୍ରମୁଖ ଉତ୍ସବ । ଏହି ପର୍ବ ମଧ୍ୟ ମୟୂରଭଞ୍ଜରେ ପାଳନ କରାଯାଇଥାଏ । ପ୍ରତିବର୍ଷ ମହାବିଷୁବ ସଂକ୍ରାନ୍ତି ଦିନ କେନ୍ଦୁଝର ଜିଲ୍ଲାର ଚଂପୁଆ ବ୍ଲକ୍ ଅନ୍ତର୍ଗତ ଜ୍ୟୋତିପୁରଗଡ଼ରେ ଏହି ପ୍ରସିଦ୍ଧ ଉଡ଼ା-ପାଟ ପର୍ବ ପାଳିତ ହୋଇଥାଏ । ରାଜାରାଜୁଡ଼ା ଶାସନ କାଳରୁ ଚାଲିଆସିଥିବା ଜ୍ୟୋତିପୁରଗଡର ଏହି ପ୍ରସିଦ୍ଧ ଉଡ଼ା-ପାଟ ପର୍ବ ସମଗ୍ର କେନ୍ଦୁଝର କାହିଁକି ଓଡ଼ିଶାରେ ପ୍ରସିଦ୍ଧିଲାଭ କରିପାରିଛି । ଜ୍ୟୋତିପୁରର ବାସୁଳି ଶାଳରେ ପ୍ରତିବର୍ଷ ପଣା ସଂକ୍ରାନ୍ତି ଦିନ ଏହି ଉଡା ପର୍ବ ପାଳିତ ହୋଇଥାଏ । ଏହି ପର୍ବ ପାଳନ ବେଳେ ଭକ୍ତମାନେ ଦେବୀ ବାସୁଳିଙ୍କ ଉଦ୍ଦେଶ୍ୟରେ ନିଜ ଶରୀରରେ ନାନା ପ୍ରକାର ଯାତନା ଦେଇ ପୂଜାର୍ଚ୍ଚନା କରିଥାନ୍ତି । ଏହି ଯାତ୍ରା ସମୟରେ ଚୈତ୍ର ମାସର ଶେଷରୁ ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ଛଅ ଦିନ ଧରି ବାସୁଳିପଟି ଓ ଘଟ ଶୋଭାଯାତ୍ରା, ତନ୍ତ୍ରଯାନର କୃଚ୍ଛ୍ରସାଧନା ସ୍ୱରୂପ କଣ୍ଟା ପିଢାରେ ବସିବା, ଶୁଖିଲା ଅଙ୍ଗରାନ୍ତି କଣ୍ଟା ଗଦା ଉପରେ ଗଡିବା, ହାତ, ବାହୁ ମାଂସପେଶି ଭିତରେ ଲୁହା କଣ୍ଟା ସାହାଯ୍ୟରେ କଣା କରି ତା ଭିତରେ ଦଉଡି ପୂରାଇ ଦଉଡିକୁ ଟଣାଓଟରା

କରି ନାଚିବା, ରାଧାଚକ୍ରରେ ଉଡିବା ଓ ସତୀଭଙ୍ଗା ଦୃଶ୍ୟ ଆଦି ପ୍ରଦର୍ଶିତ ହୋଇଥାଏ ।

କେନ୍ଦୁଝର ରାଜ୍ୟର ପ୍ରଥମ ଶାସକ ଜ୍ୟୋତି ଭଞ୍ଜଙ୍କ ଦ୍ୱାରା ସ୍ଥାପିତ ଏହି ଗଡ଼ର ନାମ ଜ୍ୟୋତିପୁର । ଏହାକୁ କେନ୍ଦୁଝର ରାଜ୍ୟର ପ୍ରଥମ ରାଜଧାନୀ ବୋଲି କୁହାଯାଏ । ଏହାର ଉତ୍ତର ଦିଗରେ ପୂଣ୍ୟତୋୟା ବୈତରଣୀ ନଦୀ ପ୍ରବାହିତ । ଅନତି ଦୂରରେ ଭଞ୍ଜ କିର୍ତ୍ତୀ ଖିଚିଂ ମନ୍ଦିର ଶୋଭା ପାଉଛି । ଜ୍ୟୋତିପୁର ଗଡ଼ର ବରିଷ୍ଠ ଦେବୀ ମା' ବାସୁଳିଙ୍କ ତୃପ୍ତି ବିଧାନ ପାଇଁ ପାଟ ପର୍ବ ବା ଉଡ଼ା ଯାତ୍ରା ପଣା ସଂକ୍ରାନ୍ତି ଦିନ ମହା ସମାରୋହରେ ପାଳିତ ହୋଇଥାଏ । ପ୍ରତବର୍ଷ ମା'ବାସୁଳୀଙ୍କ ପୀଠରେ ଭକ୍ତମାନେ ପଣା ସଂକ୍ରାନ୍ତି ଦିନ ଏକତ୍ରିତ ହୋଇଥାନ୍ତି । ମା' ବାସୁଳୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଭକ୍ତମାନେ ନିଜ ଶରୀରରେ କଣ୍ଟା ଫୋଡିବା ସହିତ ଆଉ କେତେକ ଭକ୍ତ କଣ୍ଟା ଉପରେ ଚାଲିଥାନ୍ତି ଏବଂ ଶୋଇଥାନ୍ତି । ଭକ୍ତମାନେ ବିନା ଯନ୍ତ୍ରଣାରେ ନିଜ ପିଠିରେ କିମ୍ବା ପେଟରେ କଣ୍ଟା ଫୋଡୁଥିବାବେଳେ ପରମ ସନ୍ତୋଷ ଲାଭ କରିଥାନ୍ତି । ଶହଶହ ଭକ୍ତ କଣ୍ଟା ଫୋଡୁଥିବା ସହ କଣ୍ଟା ଉପରେ ଚାଲୁଥିବାର ଦୃଶ୍ୟ ଦେଖିଲେ ଦେହ ଶୀତେଇ ଯାଏ, ମାତ୍ର ଏଭଳି କରିବା ଦ୍ୱାରା ଭକ୍ତମାନଙ୍କର କିଛି ବି କ୍ଷତ ହୋଇନଥାଏ । ପଣା ସଂକ୍ରାନ୍ତି ପୂର୍ବ ଦିନରୁ ଆରମ୍ଭ ହୋଇ ଏହି ପର୍ବ ତିନିଦିନ ଧରି ଚାଲେ ଏବଂ ତୃତୀୟ ଦିନ ଉଡା ପର୍ବ ପାଳିତ ହୋଇଥାଏ । ଭକ୍ତମାନେ ଦିନ ତମାମ ଉପବାସ ରହି ଦୁଇ ବାହୁରେ କଣ୍ଟା ଫୋଡି ଏକ କାଠରେ ଝୁଲି



ଆକାଶରେ ଉଡିଥାନ୍ତି । ଏହା ହିଁ ଉଡାପର୍ବ । ଏହି ପର୍ବର ଶେଷ ଦୃଶ୍ୟ ଦେଖିବା ପାଇଁ ଜ୍ୟୋତିପୁରଗଡ଼ରେ ପ୍ରତିବର୍ଷ ଲକ୍ଷାଧିକ ଭକ୍ତଙ୍କ ଗହଳି ଲାଗିଥାଏ । ମହନ୍ତ ସଂପ୍ରଦାୟର ଭକ୍ତମାନେ ଏହି ଉଡା ପର୍ବ ପାଳନ କରିଥାନ୍ତି । ଯେଉଁମାନେ ମାନସିକ କରିଥାନ୍ତି, ସେମାନେ ପଣା ସଂକ୍ରାନ୍ତି ପୂର୍ବଦିନ ବାସୁଳୀ ଶାଳକୁ ଆସି ଏଠାରେ ଥିବା ମହାଦେବ ଚଂପକେଶ୍ୱରଙ୍କ ସମେତ ମା' ବାସୁଳୀଙ୍କୁ ପୂଜାର୍ଚ୍ଚନା କରିଥାନ୍ତି । ଏହି ଅବସରରେ ମା' ବାସୁଳୀଙ୍କ ନିକଟରେ ପଶୁପକ୍ଷୀ ବଳି ଦିଆଯାଇଥାଏ । ଉଡାପର୍ବ ପାଳନ ଅବସରରେ ମାନସିକ କରିଥିବା ଭକ୍ତଙ୍କ ପିଠିରେ ପ୍ରଥମେ ରାଶି ତେଲ ଘସାଯାଏ ଏବଂ ଏହାପରେ ସେମାନଙ୍କ ପିଠିରେ ମୁନିଆ କଣ୍ଟା ଫୋଡାଯାଇଥାଏ । କଣ୍ଟା ଫୋଡାଯିବା ପରେ ଏହି ଭକ୍ତଙ୍କ ଶରୀରରେ ଦେବଦେବୀ ଆବିର୍ଭୂତ ହୋଇଥାନ୍ତି ବୋଲି ବିଶ୍ୱାସ ରହିଛି । ଆଉ ଭକ୍ତମାନେ ନିଶାସକ୍ତ ହେଲା ଭଳି ଶୂନ୍ୟରେ ଝୁଲିବାକୁ ଲାଗନ୍ତି । ସେମାନଙ୍କ ଶରୀରରେ ଦେବଦେବୀଙ୍କ ଆତ୍ମା ସବାର ହୋଇଥିବାରୁ ସେମାନଙ୍କୁ ଠାକୁର ମନେକରି ଲୋକେ ଭକ୍ତି କରନ୍ତି ଏବଂ ଅନେକ ଭକ୍ତ ସେମାନଙ୍କର ଶିଶୁମାନଙ୍କର ମଙ୍ଗଳ ନିମନ୍ତେ ଏହି କାଳିସୀଙ୍କ ସମ୍ମୁଖରେ ଶୁଆଇ ଦିଅନ୍ତି । କାଳିସୀମାନେ ଏହି ଶିଶୁଙ୍କ ଉପରେ ମାଡି ଚାଲିଗଲେ ପିଲାଙ୍କର ମଙ୍ଗଳ ହୋଇଥାଏ ବୋଲି ବିଶ୍ୱାସ ରହିଛି । ଉଡ଼ା ଯାତ୍ରାରେ କାଠ ଭାଡ଼ି ଉପରେ 'ରାଧା ଚକ୍ର' ନିର୍ମାଣ କରାଯାଏ । ସେଥିରେ ଅନେକ ଗୁଡିଏ ଖଣ୍ଡା ଖଞ୍ଜା ଯାଇଥାଏ । ଭୀଷ୍ମ ଶରଶଯ୍ୟାରେ ଶୟନ କଲାଭଳି ପୂଜକ (ଦେହୁରୀ) ଏହି ରାଧାଚକ୍ର ଉପରେ ଶୁଏ । ରାଧାଚକ୍ରକୁ ବୋହି ଶୋଭାଯାତ୍ରାରେ ଗଲାବେଳେ ବାହକ ସେହି ଭାଡିରେ ଚଢି ଦେହୁରୀ ଶୋଇଥିବା ଶଯ୍ୟାକୁ ଚକ୍ରାକାରରେ ବୁଲାଏ । ପକ୍ଷୀ ଚକ୍ର କାଟି ଆକାଶରେ ଉଡିଲା ପରି ଦେହୁରୀ ଶୂନ୍ୟ ଆକାଶରେ ଘୁରେ । ଏହି ଦୃଶ୍ୟ ମଣିଷ ଆକାଶରେ ଉଡିବା ପରି ଦିଶୁଥିବାରୁ ଏହାକୁ 'ଉଡାଯାତ୍ରା' କୁହାଯାଏ । ପଣା ସଂକ୍ରାନ୍ତିର ପୂର୍ବ ଚାରି ଦିନ 'ବାସୁଳି ପଟି' ଗ୍ରାମ ପରିକ୍ରମା କରେ । ଏହି ଚିତ୍ରପଟରେ ଦେବଦେବୀ, ପୌରାଣିକ ଚରିତ୍ରମାନଙ୍କର ଚିତ୍ର ରଙ୍ଗୀନ୍ ତୁଳୀରେ ଅଙ୍କନ କରାଯାଇଥାଏ । ପୂଜକଙ୍କ ସହାୟତାରେ ଏହି ଚିତ୍ରପଟ ପ୍ରତ୍ୟକ ଗୃହସ୍ଥଙ୍କ ଅଗଣାରେ ପୂଜା କରାଯାଏ ।

ପଣା ସଂକ୍ରାନ୍ତି ପୂର୍ବଦିନ 'ଭଗତା'ମାନେ ବୈତରଣୀ ନଦୀରେ ସ୍ନାନ ସାରି ବାସୁଳି ଠାକୁରାଣୀଙ୍କ ପ୍ରାଙ୍ଗଣରେ ସମବେତ ହୁଅନ୍ତି । ପୂଜା କର୍ମ ପରେ ଦେହୁରୀ (ପୂଜକ)ଙ୍କ ଆଦେଶରେ ଶୃଙ୍ଖଳା ଅଙ୍କରାନ୍ତି କଣ୍ଟା ଗଦା ଉପରେ ଭଗତାମାନେ ଗଡନ୍ତି । ଏହାକୁ 'ଗଡାପାଟ' କୁହାଯାଏ । ସଂକ୍ରାନ୍ତି ଦିନ ଭଗତାମାନେ ଉପବାସ କରନ୍ତି । ତାଙ୍କର ଦୁଇ ବାହୁ ଓ ପିଠି ପଟେ ବଡ଼ ତାମ୍ରଣ ସାହାଯ୍ୟରେ କଣା କରି ତା' ଭିତରେ ଦଉଡି, ହଳଦିଆ ସୁତା ଓ ବାଉଁଶ ପାତିଆ ପୂରେଇ ଦିଆଯାଏ । ଆଗରେ ଓ ପଛରେ ଦୁଇ ଜଣ ଲୋକ ସେହି ଲମ୍ବ ଦଉଡିକୁ ଧରନ୍ତି । ଦଉଡି ମଝିରେ ରହି ଭଗତା ଉଦଣ୍ଡ ନୃତ୍ୟ କରିଥାନ୍ତି । ଏହାକୁ 'ଫୋଡାପାଟ' କହନ୍ତି । ଫୋଡାପାଟ

ପରେ ବାସୁଳି ପଟି ପୂଜା କରାଯାଏ । ଏହାପରେ 'ମଳା ବ୍ରାହ୍ମଣୀ', 'ଖଣ୍ଡା ପାଟ' ଓ 'ରାଧାଚକ୍ର' ଆଦି ଶୋଭାଯାତ୍ରାର ଆୟୋଜନ କରାଯାଏ । ଛଅ ଖଣ୍ଡି କାଠରେ ନିର୍ମିତ କୋକେଇରେ ଶବ ବୋହିଲା ପରେ ଜଣେ ଭଗତାଙ୍କୁ ସେହି କୋକେଇରେ ଧାରୁଆ ଖଣ୍ଡା ଓ କଣ୍ଟା ଶଯ୍ୟାରେ ଶୁଆଇ ଦିଆଯାଇ ଏକ ନୂତନ ବସ୍ତ୍ର ଉପରେ ଘୋଡାଇ ଦିଆଯାଏ । ଶ୍ମଶାନକୁ ଶବ ବୋହି ନେଲା ଭଳି ଚାରି ଜଣ ଲୋକ ତାଙ୍କୁ ଶୋଭାଯାତ୍ରାରେ ବୋହି ନିଅନ୍ତି । 'ଖଣ୍ଡା ପାଟ'ରେ ଚଉଢଳି ପରି କାଠର ମଞ୍ଚାଟିରେ ତିନୋଟି ଧାରୁଆ ଖଣ୍ଡା ଖଞ୍ଜି ଦିଆଯାଏ । ଜଣେ ଭଗତା ସେହି ଖଣ୍ଡା ଉପରେ ଠିଆ ହୁଅନ୍ତି ଏବଂ ସେହି ମଞ୍ଚାଟିକୁ ଲୋକମାନେ ଶୋଭାଯାତ୍ରାରେ ବୋହି ନିଅନ୍ତି । ରାଧାଚକ୍ରର ନିର୍ମାଣ ଶୈଳୀ ଭିନ୍ନପ୍ରକାରର । ଏହାର ସୃଷ୍ଟି ଅନ୍ତରାଳରେ ତନ୍ତ୍ରର ପ୍ରଭାବ ରହିଥିବା ପରି ମନେ ହୁଏ ।

## ଧାନ ନୂଆଖିଆ ପର୍ବ

ଏହା ଏକ କୃଷିଭିତ୍ତିକ ପର୍ବ । କ୍ଷେତରେ ନୂଆ ଧାନ ଅମଳ ହେବା ପୂର୍ବରୁ ଆଦିବାସୀମାନେ ନୂଆ



ଧାନକୁ ପ୍ରଥମେ ନିଜର ଇଷ୍ଟଦେବତାଙ୍କ ଉଦ୍ଦେଶ୍ୟରେ ଭୋଗଲାଗି କରିଥାନ୍ତି । କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ, ଭୂୟାଁ, ମୁଣ୍ଡା, ବାଥୁଡି ସଂପ୍ରଦାୟର ଆଦିବାସୀମାନେ ଭାଦ୍ରବ ମାସ ବେଳକୁ ଧାନ ନୂଆଖିଆ ପର୍ବ ପାଳନ କରିଥାନ୍ତି । ଆଷାଢି ପରି ଏହି ଉତ୍ସବରେ ଗ୍ରାମ ଦେବୀଙ୍କ ନିକଟରେ ବଳି ପଡିଥାଏ । ଆଦିବାସୀମାନେ ଛେଳି, ମେଣ୍ଢା, କୁକୁଡା ଆଦି ବଳି ଦେବା ପରେ ଏହାକୁ ନିଜନିଜ ମଧ୍ୟରେ ବାଣ୍ଟି



ନେଇଥାନ୍ତି । ପୂର୍ବେ ଆଦିବାସୀମାନେ ବଳି ପଡୁଥିବା ଛେଳି, ମେଣ୍ଢା, କୁକୁଡାକୁ ଗାଁରେ ଦେବୀ ପୀଠ ନିକଟରେ ରୋଷେଇ କରି ଏକତ୍ର ପଙ୍‌କ୍ତି ଭୋଜନ କରୁଥିଲେ । ମାତ୍ର, ବର୍ତ୍ତମାନ ଏହି କଟା ମାଂସକୁ ନିଜନିଜ ମଧ୍ୟରେ ବାଣ୍ଟି ନେଉଛନ୍ତି । ଆଦିବାସୀମାନେ ଏହି ଅବସରରେ କ୍ଷେତରେ



ହୋଇଥିବା ନୂଆ ଧାନକୁ ନିଜର ଇଷ୍ଟଦେବୀଙ୍କ ନିକଟରେ ପୂଜା ଲାଗି କରିଥାନ୍ତି । ପ୍ରତ୍ୟକ ଘରେ ଇଷ୍ଟଦେବତାଙ୍କୁ ପୂଜା କରିବା ପରେ ନବାନ୍ନ ଭକ୍ଷଣ କରାଯାଏ ।

## ଆଦିବାସୀଙ୍କ ଇନ୍ଦ୍ରପୂଜା 'ରୋଟେବାପ୍‌ଲା'

ବର୍ଷା ପାଇଁ ଆଦିବାସୀମାନେ ଇନ୍ଦ୍ର ଦେବତାଙ୍କୁ ଆବାହନ କରିଥାନ୍ତି । କେନ୍ଦୁଝର ଜିଲ୍ଲାର ସାନ୍ତାଳ, ମୁଣ୍ଡା, କୋହ୍ଲ, ବାଥୁଡି ସଂପ୍ରଦାୟରେ ବୃଷ୍ଟିପାତ କରାଇବା ଉଦ୍ଦେଶ୍ୟରେ ଇନ୍ଦ୍ର ଦେବତାଙ୍କୁ ପୂଜା କରିଥାନ୍ତି । ଆଦିବାସୀମାନେ ଇନ୍ଦ୍ରଦେବତାଙ୍କୁ ତୁଷ୍ଟ କରିବା ପାଇଁ ବେଂଗ ଓ ବେଂଗୁଲି ବିଭାଘର କରିଥାନ୍ତି । ଏହାକୁ ସାନ୍ତାଳୀ ଭାଷାରେ 'ରୋଟେବାପଲା' କୁହାଯାଏ । 'ରୋଟେ' ଅର୍ଥ ବେଂଗ ଓ 'ବାପ୍‌ଲା' ଅର୍ଥ ବିଭାଘର । ଭଲ ବର୍ଷା ପାଇଁ ସାନ୍ତାଳମାନେ ବେଂଗବେଂଗୁଲି ପୂଜା କରି ଇନ୍ଦ୍ର ଦେବତାଙ୍କୁ ସନ୍ତୁଷ୍ଟ କରିଥାନ୍ତି । ଏହି ପୂଜା କଲେ ଭଲ ବର୍ଷା ହୋଇଥାଏ ବୋଲି ସାନ୍ତାଳ ସଂପ୍ରଦାୟରେ ବିଶ୍ୱାସ ରହିଛି । ଏହି ପୂଜା ଅବସରରେ ଆଦିବାସୀମାନେ ଦୁଇଟି ଭିନ୍ନ ଭିନ୍ନ ପୋଖରୀରୁ ବେଂଗ ଓ ବେଂଗୁଲି ସଂଗ୍ରହ କରନ୍ତି । ଏମାନଙ୍କୁ ସୁସଜ୍ଜିତ କରି ଦୁଇଟି ଛୋଟଛୋଟ ଶବାରୀରେ ରଖନ୍ତି । ଏହା ପରେ ଗ୍ରାମଦେବତୀଙ୍କ ନିକଟରେ ପାରମ୍ପରିକ ଭାବେ ଉଭୟଙ୍କ ବିବାହ ପର୍ବ ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ଆଦିବାସୀମାନେ ଭୋଜିଭାତ ଓ ହାଣ୍ଡିଆ, ମହୁଲି ପାନ କରି ନୃତ୍ୟଗୀତର ଆସର ଜମେଇଥାନ୍ତି । ବିବାହ ପରେ ଉଭୟ ବେଂଗ ଓ ବେଂଗୁଲିଙ୍କୁ ଗୋଟିଏ ପୋଖରୀରେ ଛାଡି ଦିଆଯାଇଥାଏ । ଏହି ବେଂଗବେଂଗୁଲି ବିଭାଘର ସାନ୍ତାଳ ସଂପ୍ରଦାୟ ବ୍ୟତୀତ ବାଥୁଡି, ମୁଣ୍ଡା, କୋହ୍ଲ ସଂପ୍ରଦାୟରେ ମଧ୍ୟ ଦେଖାଯାଏ ।

## ସାନ୍ତାଳଙ୍କ 'କରମା ପୂଜା'

କେନ୍ଦୁଝରରେ ବସବାସ କରୁଥିବା ସାନ୍ତାଳ ସଂପ୍ରଦାୟର ଆଦିବାସୀମାନେ କରମା ପୂଜା ପାଳନ କରିଥାନ୍ତି । ଏହା ଏକ କୃଷିଭିତ୍ତିକ ପର୍ବ । ଫସଲ ଅମଳ ଶେଷ ହୋଇସିବା ପରେ ଏହି ପର୍ବ ପାଳନ କରାଯାଇଥାଏ । ସାନ୍ତାଳମାନେ 'କରମା ଡାଳ'କୁ ବରଣ କରି ମାଟିରେ ପୋତି ଦିଅନ୍ତି । କରମା ଦୁଇ ପ୍ରକାରର- ଇନ୍ଦ କରମା ଓ ଭାଦ କରମା । ଭାଦ୍ରବ ମାସ ଶୁକ୍ଳ ଏକାଦଶୀ ଦିନ ଇନ୍ଦ କରମା ପାଳିତ ହୋଇଥାଏ ।



ବିଶେଷକରି ବର୍ଷା ଛାଡିଯିବା ପରେ ଉପରେ ନିର୍ମଳ ଆକାଶ ଓ ତଳେ ସବୁଜ ଧାନ କ୍ଷେତ; ଏଭଳି ଏକ ସମୟରେ ଇନ୍ଦ କରମା ପୂଜା ପାଳିତ ହୋଇଥାଏ । ସେହିଭଳି ମାର୍ଗଶିର ମାସରେ ସାନ୍ତାଳମାନେ ଜାତ କରମା ପାଳନ କରିଥାନ୍ତି । କରମା ପୂଜା ପାଳନ କରିବା ନେଇ ନିର୍ଦ୍ଦିଷ୍ଟ କିଛି ତିଥିବାର ନଥାଏ । ଗ୍ରାମର ଦେହୁରୀ ତିଥି ନିର୍ଦ୍ଧାରଣ କରିଥାନ୍ତି । 'କରମା'ର ପୂର୍ବ ଦିନ କରମା ସାଇଁଙ୍କ ସ୍ଥାନକୁ ଲିପାପୋଛା କରାଯାଏ । ଝିଅବୋହୂମାନେ ଝୋଟି ପକାନ୍ତି । ଦେହୁରୀ ଗ୍ରାମବାସୀଙ୍କ ସହ ଯାଇ କରମା ସାଇଁଙ୍କ ପାଇଁ ଉଦ୍ଦିଷ୍ଟ କରମା ଗଛକୁ ପୂଜା କରିଥାଏ । କରମା ପୂଜା ପାଇଁ କରମା ଗଛର ଡାଳଟିଏ ବରଣ କରାଯାଏ । ପୂଜା ପାଇଁ ବରଣ କରାଯାଇଥିବା ଡାଳର ଚାରିପଟେ ଚଉଦ ବେଢା ସୂତା ଗୁଡେଇ ଦିଆଯାଏ । କରମା ପୂଜା ଦିନ ସନ୍ଧ୍ୟାବେଳେ କରମା ଡାଳ ଅଣାଯାଏ । ଦେହୁରୀ ଉପବାସ କରନ୍ତି । ଗ୍ରାମ ମଧ୍ୟରେ କରମା ଡାଳ ଧରିଥିବା ବ୍ୟକ୍ତିର ଗୋଡକୁ ହଳଦି ପାଣିରେ ଧୋଇ କରମା ଡାଳକୁ ବନ୍ଦାପନା କରାଯାଏ । କରମା ଡାଳକୁ କରମା ଶାଳରେ ସ୍ଥାପନ କରି ଦେହୁରୀ ଧୂପ ଦୀପ ଦେଇ ପୂଜା କରେ । ଯେଉଁ ଦୀପରେ ବନ୍ଦାପନା କରନ୍ତି, ତାହା ରାତି ସାରା ଜଳିଥାଏ । ପୂଜା ପରେ ଦେହୁରୀ ପୋଥି ପଢନ୍ତି । ଏହି 'କରମା ପୋଥି' ପଠନ ପରଂପରା ବହୁ ପ୍ରାଚୀନ ବୋଲି କୁହାଯାଏ । ଏଥିରେ ପ୍ରାଚୀନ ଓଡ଼ିଆ ଶବ୍ଦମାନ ବ୍ୟବହୃତ ହୋଇଥାଏ । ଏଥିନେଇ ଅଧିକ ଗବେଷଣା ଆବଶ୍ୟକ । ପୋଥିପଢା ସରିବା ପରେ କରମା ନୃତ୍ୟଗୀତର ଆରମ୍ଭ ହୁଏ । ସଙ୍ଗୀତ ଓ ନୃତ୍ୟର ତାଳେତାଳେ ଆଦିବାସୀ ଯୁବକ, ଯବତୀମାନେ ଝୁମି ଉଠନ୍ତି । କରମା ନାଚରେ ମାଦଳ ମୁଖ୍ୟ ବାଦ୍ୟ । ତେବେ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ କରମା ପୂଜାରେ ଉଭୟ ଯୁବକ ଯୁବତୀମାନେ ନୃତ୍ୟ କରୁଥିବାବେଳେ କେନ୍ଦୁଝରରେ କେବଳ ଯୁବକମାନେ ନୃତ୍ୟ ପରିବେଷଣ କରିଥାନ୍ତି । କରମା ନାଚରେ ମୁଖ୍ୟ ଆକର୍ଷଣ ହେଉଛି ଯୁବକମାନେ ବୋଲୁଥିବା କରମା ଗୀତ । କରମା ନୃତ୍ୟ ସହିତ କରମା ଗୀତର ଏକ ସ୍ୱତନ୍ତ୍ର ଆକର୍ଷଣ ଥାଏ । କରମା ପୂଜାରେ ବୃକ୍ଷର ଡାଳ ପୂଜା କରାଯାଉଥିବାରୁ ଏହାର ପ୍ରାଚୀନତା ସଂପର୍କରେ ବହୁ ପ୍ରମାଣ ମିଳିଥାଏ । ଆଦିମ ମାନବ ପ୍ରଥମେ ବୃକ୍ଷ ଉପାସନା କରୁଥିଲା । ପରେ ପ୍ରତିମା ପୂଜା କଲା । ଏଣୁ କରମା ପୂଜା ଏକ ବହୁ ପ୍ରାଚୀନ ପର୍ବ ବୋଲି ଅନେକ ମତବ୍ୟକ୍ତ କରନ୍ତି । କରମା ପୂଜା ଗୋଟିଏ ରାତିକ ପାଇଁ ଅନୁଷ୍ଠିତ ହୋଇଥାଏ । ପୂଜା ଶେଷରେ ଆଦିବାସୀମାନେ କରମା ସାଇଁଙ୍କୁ ଅଶ୍ରୁଳ ବିଦାୟ ଜଣାଇ ବୋଲନ୍ତି-

"ବାଉଁଶ ଠେଙ୍ଗା, କୁସୁମ ଠେଙ୍ଗା ବାଜିଗଲା କପାଳେ, ହାୟ ହାୟ କରମା ରଜା ଛାଡିଗଲ ଅକାଳେ" ।

## ଭୂୟାଁମାନଙ୍କ 'ଡାଲଜମ୍ପୀର ନୃତ୍ୟ ଓ ଗୀତ'

କେନ୍ଦୁଝର ଜିଲ୍ଲାର ଅବିବାହିତ ଭୂୟାଁ ଯୁବକ, ଯୁବତୀମାନେ ବିଶେଷକରି ଖୁସିର ମୁହୂର୍ତ୍ତରେ ଏହି 'ଡାଳଜମ୍ପୀର' ନୃତ୍ୟ ଓ ଗୀତର ଆସର ଜମେଇଥାନ୍ତି । ଅବିବାହିତ ଯୁବକ ଯୁବତୀ ହାଟକୁ କିମ୍ବା କୌଣସି ମେଳାମହୋତ୍ସବକୁ ଯାଉଥିବାବେଳେ କିମ୍ବା ଫେରୁଥିବାବେଳେ ସେମାନଙ୍କ ମଧ୍ୟରେ ସଂଗୀତର ଆସର ଜମେ । ଯୁବକ, ଯୁବତୀମାନେ କେନ୍ଦୁଝର ଜିଲ୍ଲାର ଆରାଧ୍ୟ ଦେବୀ ମା' ତାରିଣୀ ଓ ବିଶିରି ଠାକୁରାଣୀଙ୍କୁ ପ୍ରଣାମ ଜଣାଇ ଗୀତ ଆରମ୍ଭ କରିଥାନ୍ତି । ଗୀତ ଓ ନାଚର ତାଳେତାଳେ କ୍ରମଶଃ ମାତାଲ୍ ହୋଇ ଉଠନ୍ତି ଭୂୟାଁ ଯୁବକ, ଯୁବତୀ । ଯୁବକ, ଯୁବତୀମାନଙ୍କ ମଧ୍ୟରେ ଗୀତରେ ଗୀତରେ ପ୍ରତିଯୋଗିତା ଓ ପ୍ରଶ୍ନୋତ୍ତର ଛଳରେ ଭାବ ଦିଆନିଆ ହୋଇଥାଏ । ରାତି ରାତି ଯୁବକ, ଯୁବତୀମାନଙ୍କ ମଧ୍ୟରେ ଗୀତର ଆସର ଜମେ । ଏହି ଗୀତଗୁଡିକ ସାଧାରଣତଃ ପ୍ରେମ ଓ ଶୃଙ୍ଗାର ରସରେ ପୂର୍ଣ୍ଣ ଏବଂ ଭାବ ବିନିମୟର ଏକ ବଳିଷ୍ଠ ମାଧ୍ୟମ ପାଲଟିଥାଏ ।

## ଆଦିବାସୀଙ୍କ 'ଭଣ୍ଡ ପର୍ବ'

ଚଂପୁଆ ଉପଖଣ୍ଡର ଚଂପୁଆ, ଯୋଡା ଅଞ୍ଚଳରେ ବସବାସ କରୁଥିବା ମୁଣ୍ଡା ସଂପ୍ରଦାୟର ଆଦିବାସୀମାନେ ଭଣ୍ଡ ପର୍ବ ପାଳନ କରିଥାନ୍ତି । ଏହି ପର୍ବ ତିନି ଦିନ ଧରି ଅନୁଷ୍ଠିତ ହୋଇଥାଏ । ଏହି ତିନି ଦିନ ଆଦିବାସୀ ଲୋକମାନେ କିଛି କାମ କରିନଥାନ୍ତି । ପିଲାଠାରୁ ବୁଢ଼ା ସମସ୍ତେ ହାଣ୍ଡିଆ ପିଇ ମାଦଳର ତାଳେ ତାଳେ ଝୁମି ଉଠନ୍ତି । ଘରେ ଘରେ ପିଠାପଣା ସମ୍ଭାର ଯୋଗୁ ସମସ୍ତଙ୍କ ମନରେ ଆନନ୍ଦରେ ନାଚି ଉଠେ ।

## ବାଥୁଡିମାନଙ୍କ 'ବଡ଼ାମ୍-ବଡ଼ାମଣି' ପର୍ବ

କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା ବାଥୁଡି ସଂପ୍ରଦାୟର ଆଦିବାସୀମାନଙ୍କର ଇଷ୍ଟ ଦେବତା ହେଉଛନ୍ତି 'ବଡ଼ାମ୍' ଓ 'ବଡ଼ାମଣି' । ଭଲ ଫସଲ, ଗାଁରେ ସୁଖଶାନ୍ତି ଓ ରୋଗ ବଇରାଗରୁ ମୁକ୍ତି ଉଦ୍ଦେଶ୍ୟରେ ବାଥୁଡିମାନେ ବଡ଼ାମଙ୍କୁ ପୂଜା କରିଥାନ୍ତି । ପ୍ରତିବର୍ଷ ଚୈତ୍ରମାସରେ ବାଥୁଡିମାନେ 'ବଡ଼ାମ୍-ବଡ଼ାମଣି'ଙ୍କୁ ପୂଜା କରିଥାନ୍ତି । ଚୈତ୍ର ମାସରେ ୧୮ ଦିନରେ ଏମାନେ ଅଠର ଦେଉଳକୁ ଯାଆନ୍ତି । ମୟୂରଭଞ୍ଜ ଜିଲ୍ଲାର ଖିମିଳିପାଳରେ ରହିଛି ବାଥୁଡି ଜାତିର ଆଦିଭୂମି 'ଆଠରଦେଉଳ' । ମୟୂରଭଞ୍ଜର ବଙ୍କୁଆଠାରେ ଥିବା 'ମାନବ ଦେଉଳ' ବାଥୁଡିମାନଙ୍କର ଅତି ପ୍ରାଚୀନ ଧର୍ମ ପୀଠ । ଏହାବ୍ୟତୀତ ଅନ୍ୟ ସତରଟି ଦେବଦେବୀଙ୍କର ଆସ୍ଥାନ ମଧ୍ୟ ରହିଛି । ଏହା 'ଅଠର ଦେଉଳ' ଭାବେ ପରିଚିତ । ବାଥୁଡିମାନେ ଏହି ଅଠର ଦେଉଳ ବୁଲି ନିଜ ଗାଁକୁ ଫେରି ଗାଁରେ ଥିବା 'ବଡ଼ାମ୍ ଶାଳ'ରେ ପାଂରପରିକ ଭାବେ ପୂଜା କରିବା ସହିତ ତାଙ୍କୁ ନୃତ୍ୟ କରିଥାନ୍ତି । ଏହାବ୍ୟତୀତ

ପ୍ରତି ବାଥୁଡି ଗ୍ରାମରେ ବଡ଼ାମ ଶାଳ ରହିଥାଏ । ଝୁଂପୁରା ବ୍ଲକ୍‌ର ଐତିହାସିକ ଅସନପାଟ ହେଉଛି ଏକ ବାଥୁଡିବହୁଳ ଗ୍ରାମ । ଏହି ଗାଁରେ ମଧ୍ୟ ଭାଗରେ ବଡାମ୍‌ଙ୍କ ପୀଠ ରହିଛି । ଏଠାରେ ପ୍ରତିବର୍ଷ ବଡ଼ାମ୍-ବଡାମଣି ପର୍ବ ମହାସମାରୋହରେ ପାଳିତ ହୋଇଥାଏ । ଏହାବ୍ୟତୀତ ଅନ୍ୟ ଦିନମାନଙ୍କରେ ମଧ୍ୟ ବଡାମ୍‌ଙ୍କୁ ପୂଜା କରାଯାଇଥାଏ ।

## ସାନ୍ତାଳମାନଙ୍କ ବାହାବଂଗା ପର୍ବ

କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା ସାନ୍ତାଳମାନଙ୍କର ଏକ ପ୍ରମୁଖ ପର୍ବ ହେଉଛି ବାହାବଂଗା



ପର୍ବ । ଏହାକୁ ବାହା ପରବ୍ ମଧ୍ୟ କୁହାଯାଇଥାଏ । ପ୍ରତିବର୍ଷ ଫାଲ୍‌ଗୁନ୍ ପୂର୍ଣ୍ଣିମା ଦିନ ଏହି ପର୍ବ ପାଳିତ ହୋଇଥାଏ । ଏହି ଅବସରରେ ଗ୍ରାମର ସମସ୍ତ ଯୁବକ, ଯୁବତୀ ପାରଂପରିକ ପୋଷାକ (ଫୁଟା କାଚା, ଫୁଟା ଖାଣ୍ଡି) ପରିଧାନ କରି ମାଦଳ, ନାଗରା, ଟାମକ, ଟୁମଡା, ଝୁମୁକା ଆଦି ବାଦ୍ୟ ବଜାଇ ମସଗୁଲ୍ ହୋଇପଡନ୍ତି । ସାନ୍ତାଳ ଯୁବକ, ଯୁବତୀମାନେ ଗ୍ରାମର ପୂଜକ ବା ନାୟକଙ୍କୁ କାନ୍ଧରେ ବସାଇ ପୂଜା ସ୍ଥଳକୁ ପାଛୋଟି ନିଅନ୍ତି । ପୂଜା ସ୍ଥଳ (ଜାହେରଗାଳ)ରେ ପହଞ୍ଚି ପୂଜକ ସାନ୍ତାଳମାନଙ୍କର ଆରାଧ୍ୟ ଦେବୀ ମାରାଂବୁରୁ, ଜାହେରଆୟ, ଲିଟା ଆଦି ଦେବଦେବୀଙ୍କୁ ଆରାଧନା କରିଥାନ୍ତି । ସାନ୍ତାଳମାନେ ନିଜର ଇଷ୍ଟ ଦେବତା ମାରାଂବୁରୁଙ୍କୁ ନୂତନ ବନ୍ୟଜାତ ଦ୍ରବ୍ୟ, ଫଳ, ଫୁଲ ଭୋଗ ଲଗାଇବା ପରେ ନିଜେ ବ୍ୟବହାର କରିଥାନ୍ତି । ବାହାବଂଗା ପର୍ବଟି ସାନ୍ତାଳମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ପର୍ବ । ଅନ୍ୟ ସଂପ୍ରଦାୟର ନୂଆଖିଆ ପର୍ବ ପରି ସାନ୍ତାଳମାନେ ବାହାବଂଗା ପର୍ବ ପରଠାରୁ ନୂତନ ବନ୍ୟଜାତ ଦ୍ରବ୍ୟ ବ୍ୟବହାର କରିଥାନ୍ତି । ସାନ୍ତାଳ ସଂପ୍ରଦାୟର ଲୋକମାନେ ଏହି

ବାହା ପର୍ବକୁ ଫାଲ୍‌ଗୁନ ମାସ ପଞ୍ଚମୀ ତିଥିଠାରୁ ପୂର୍ଣ୍ଣିମା ମଧ୍ୟରେ ପାଳନ କରିଥାନ୍ତି । ନିଜର ଇଷ୍ଟ ଦେବତା ମାରାଂବୁରୁ, ଜାହେରଆୟଙ୍କ ନିକଟରେ ପୂଜା ପାରି ଶାଳ ପତ୍ରରେ ସାନ୍ତାଳ ଯୁବକ, ଯୁବତୀମାନେ ଖେଚୁଡ଼ି ଭୋଗ ପାଇଥାନ୍ତି । ଶେଷରେ ସାନ୍ତାଳ ଯୁବକ, ଯୁବତୀ ପୂଜକଙ୍କଠାରୁ ଶାଳ ଫୁଲ ଗ୍ରହଣ କରି କାନରେ ଏବଂ ମୁଣ୍ଡରେ ଖୋସି ସଞ୍ଜ ବେଳକୁ ନାଚ ଓ ଗୀତର ଆସର ଜମେଇଥାନ୍ତି । ରାତି ସାରା ସାନ୍ତାଳ ଯୁବକ, ଯୁବତୀମାନେ ବାହା ନାଚଗୀତରେ ମାତାଲ୍ ହୋଇ ଜୀବନକୁ ଉପଭୋଗ କରିଥାନ୍ତି । ଶାଳ ଗଛ ସାନ୍ତାଳମାନଙ୍କର ଏକ ପ୍ରମୁଖ ବୃକ୍ଷ ଅଟେ । ସାନ୍ତାଳମାନଙ୍କର ପୂର୍ବପୁରୁଷମାନେ ଯେତେବେଳେ ଧର୍ମର ଅନ୍ୱେଷଣରେ ଥିଲେ ସେତେବେଳେ ମାରାଂବୁରୁ ସେମାନଙ୍କୁ ଶୂନ୍ୟବାଣୀ କରିଥିଲେ –'ତୁମେ ଆକାଶକୁ ତୀର ନିକ୍ଷେପ କର । ତୀରଟି ଯେଉଁ ସ୍ଥାନରେ ପତିତ ହେବ ସେଠାରେ ତୁମେମାନେ ପୂଜାପାଠ କରିବ ଏବଂ ନିଜର ଇଷ୍ଟଦେବୀଙ୍କୁ ପ୍ରାର୍ଥନା କରିବ" । ଏହି ଶୂନ୍ୟବାଣୀ ଅନୁସାରେ ସେମାନେ ଆକାଶକୁ ତୀର ନିକ୍ଷେପ କଲେ । ତୀରଟି ଏକ ଶାଳଗଛ ମୂଳରେ ପଡ଼ିଲା । ସେହିଦିନଠାରୁ ସାନ୍ତାଳମାନେ ଶାଳଗଛ ମୂଳରେ ପୂଜାପାଠ କରି ଆସୁଛନ୍ତି । ଏହି ଶାଳଗଛର ନାମ ଅନୁସାରେ ସାନ୍ତାଳମାନଙ୍କର ଧର୍ମ ହେଉଛି 'ଶାର୍ନାଧରମ୍' । ସାନ୍ତାଳମାନଙ୍କର କୌଣସି ମନ୍ଦିର, ମୂର୍ତ୍ତି ପୂଜା ହୋଇ ନଥାଏ । କେବଳ ଶାଳ ବୃକ୍ଷ ହିଁ ଏମାନଙ୍କର ଦେବତା ଓ ମନ୍ଦିର । ପଥରର ଶାଳଗ୍ରାମକୁ ଏମାନେ ନିଜର ଦେବତା, ଦେବୀ ଭାବେ ପୂଜା କରିଥାନ୍ତି ।

## କେନ୍ଦୁଝରର ପ୍ରସିଦ୍ଧ 'ବାଲିଓଷା'

ପ୍ରତିବର୍ଷ ମାଘ ମାସରେ ଠିକ୍ ମକର ଉତ୍ସବ ପରେପରେ କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ବାଲି ଓଷା ଅନୁଷ୍ଠିତ ହୋଇଥାଏ । ବାଲିଓଷା ଏକ କୃଷିଭିତ୍ତିକ ପର୍ବ ଏବଂ ଏହି ପର୍ବ ପାଳନ କଲେ ଜମିରେ ଭଲ ଫସଲ ହେବା ସାଙ୍ଗକୁ ଗାଁଲୋକେ ସକଳ ବିପଦରୁ ମୁକ୍ତି ପାଇବେ ଏବଂ ଗାଈ ଗୋରୁଙ୍କୁ ରୋଗବଇରାଗ ହେବନାହିଁ ବୋଲି ସ୍ଥାନୀୟ ଲୋକଙ୍କର ବିଶ୍ୱାସ ରହିଛି । ଏହି ଓଷା ସାତ ଦିନ ଧରି ଚାଲେ । ପ୍ରଥମ ଦିନ ସ୍ଥାନୀୟ ଲୋକମାନେ ନିକଟସ୍ଥ ନଦୀରୁ ପୂଜା ନୀତି ପାଳନପୂର୍ବକ ବାଲି ଆଣି ଗାଁର ମଣ୍ଡପ ଘରେ ସ୍ଥାପନ କରନ୍ତି । ଗାଁର ଦେହୁରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗାଁର ସମସ୍ତ ଲୋକ ବାଲି ଆଣିବା ପାଇଁ ନିକଟସ୍ଥ ନଦୀକୁ ଯାଆନ୍ତି । ନଦୀକୂଳରେ ଦେହୁରୀ (ପୂଜକ) ଓଦା ବାଲିରେ ଗ୍ରାମ ଦେବୀଙ୍କର ଏକ ମୂର୍ତ୍ତି ତିଆରି କରି ମାତାଙ୍କୁ ପୂଜା କରିବା ପରେ ନଦୀରୁ ବାଲି ଉଠାଯାଏ । ଭକ୍ତମାନେ ନଦୀ କୂଳରୁ ବାଲି ଟାଙ୍ଗୁଡ଼ିକୁ ମୁଣ୍ଡରେ ବୋହି ଗାଁର ବାଲି କୁଡ଼ିଆ (ମଣ୍ଡପ ଘର) ପର୍ଯ୍ୟନ୍ତ ଆଣନ୍ତି । ବାଲି ଆଣିବା ବେଳେ କିଛି ଭକ୍ତଙ୍କ ଶରୀରରେ ଦେବଦେବୀଙ୍କ ଆତ୍ମା ସବାର ହେଲାବେଳେ ସେମାନେ କାଳିସୀଙ୍କ ଭଳି ମୁଣ୍ଡବାଳକୁ



ମୁକୁଳା କରି ନାଚନ୍ତି । ଗାଁରେ ବାଲି ସ୍ଥାପନା ପରେ ଦେହୁରୀ ଗାଁର ସମସ୍ତ ଘରୁ ଧାନ, ମକା, ମାଣ୍ଡିଆ, ବିରି, ମୁଗ, ଶିମ୍ବ ଆଦି ବିଭିନ୍ନ ପ୍ରକାର ଶସ୍ୟର ମଞ୍ଜି ସଂଗ୍ରହ କରନ୍ତି । ଗାଁର ପ୍ରତି ପରିବାରରୁ ଆସିଥିବା ବାଲି ଟାଙ୍ଗୁଡିଗୁଡିକୁ ବାଲି କୁଡିଆ(ମଣ୍ଡପ ଘର)ରେ ଧାଡି ଧାଡି କରି ସଜା





ହୋଇ ସ୍ଥାପନ କରାଯାଏ । ଏହା ପରେ ଗାଁର ପ୍ରତି ପରିବାରରୁ ସଂଗ୍ରହ କରାଯାଇଥିବା ମଞ୍ଜିସବୁକୁ ପୂଜକ ଉକ୍ତ ବାଲି ଚାଙ୍ଗୁଡିଗୁଡିକରେ ବୁଣି ଦିଅନ୍ତି । ମଞ୍ଜି ବୁଣିବା ପରଦିନଠାରୁ ପ୍ରତି ଦିନ ପୂଜକ ହଳଦି ପାଣି ମନ୍ତ୍ର କରି ଏହି ବାଲି ଚାଙ୍ଗୁଡିରେ ସିଞ୍ଚନ କରିଥାନ୍ତି । ପ୍ରତିଦିନ ଏହି ଅବସରରେ ମଣ୍ଡପ



ଘର ନିକଟରେ ନାଚଗୀତ ହୁଏ । ବାଲି ଚାଙ୍ଗୁଡିରେ ପୋତା ଯାଇଥିବା ମଞ୍ଜିର ଅଙ୍କୁରୋଦ୍‌ଗମ ହୁଏ । ଯଦି ଏହି ଗଜାଗୁଡିକ ପୁଷ୍ଟ ସବଳ ହୋଇ ଜନ୍ମ ନିଏ, ତେବେ ସେବର୍ଷ ଭଲ ବର୍ଷା ହେବା ସହିତ ଭଲ ଫସଲ ହେବ ବୋଲି ଏଠାକାର ଲୋକେ ବିଶ୍ୱାସ କରନ୍ତି । ଶେଷ ଦିନ ହେଉଛି ବିସର୍ଜନର ପର୍ବ । ଲୋକମାନେ ମଣ୍ଡପ ଘରେ ସ୍ଥାପନ ହୋଇଥିବା ବାଲି ଚାଙ୍ଗୁଡିକୁ ମୁଣ୍ଡରେ ବୋହି ନିକଟସ୍ଥ ନଦୀରେ ବିସର୍ଜନ କରିଥାନ୍ତି । ଅପରପକ୍ଷେ, ଏହି ଓଷା ସମୟରେ ନିଆଁରେ ଚାଲିଲେ ଭକ୍ତମାନଙ୍କ ମନସ୍କାମନା ପୂର୍ଣ୍ଣ ହେବା ସାଙ୍ଗକୁ ରୋଗ ବଇରାଗରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ ରହିଛି । ଏହି ଅବସରରେ ମାଟି ଉପରେ ଲମ୍ବା ଲମ୍ବା ଗାତ ଖୋଳି ସେଥିରେ ନିଆଁ ଭର୍ତ୍ତି କରାଯାଏ । ଏହାକୁ ନିଆଁ ଖନ୍ଦା କୁହାଯାଏ । ଏହି ନିଆଁ ଉପରେ ପୂଜକ ଏବଂ ଭକ୍ତମାନେ ଚାଲିବାର ପରଂପରା ରହିଛି । ନିଆଁ ଉପରେ ଚାଲିଲେ ମଧ୍ୟ ଏମାନଙ୍କର ପାଦ ପୋଡିଯାଇ ନଥାଏ । ଏହି ନିଆଁରେ ଚାଲିବା ପରଂପରାକୁ 'ଖନ୍ଦା ମତା' ବୋଲି କହନ୍ତି । ଏହି ଅବସରରେ ଭକ୍ତମାନେ ନିଜର ମାନସିକ ପୂରଣ ନିମନ୍ତେ ଛେଳି, କୁକୁଡା, ବତକ ଆଦି ଜୀବଜନ୍ତୁଙ୍କୁ ବଳି ପକେଇଥାନ୍ତି । ଏହି ପୂଜା କଲେ ପରିବାରର ମଙ୍ଗଳ ହେବା ସହ ପୁରୁଷ ଓ ମହିଳା ବିଶେଷକରି ଦାଂପତ୍ୟ ଜୀବନ ମଧ୍ୟ ସୁଖମୟ ହୋଇଥାଏ । ଏହି ପୂଜା ପରେ ପରେ କେନ୍ଦୁଝର ଜିଲ୍ଲାର ଯୁବକ, ଯୁବତୀମାନଙ୍କ ବିବାହ ପାଇଁ ବର, କନ୍ୟା ଖୋଜାଖୋଜି ପର୍ବ ଆରମ୍ଭ ହୋଇଥାଏ ।

## ଆଦିବାସୀଙ୍କ ଠାକୁରାଣୀ ଓଷା

ପୌଷ, ମାଘ ମାସ ବେଳକୁ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଆଦିବାସୀ ପୁରପଲ୍ଲୀମାନଙ୍କରେ ଠାକୁରାଣୀ ଓଷା ପାଳନ କରାଯାଉଥିବାର ଦେଖାଯାଏ । ଭୂୟାଁ, କୋହ୍ଲ, ବାଥୁଡି, ଜୁଆଙ୍ଗ, ମୁଣ୍ଡା ସଂପ୍ରଦାୟର ଆଦିବାସୀ ସମାଜରେ ଏହି ଠାକୁରାଣୀ ଓଷା ପାଳନ କରାଯାଉଥିବାର ଦେଖାଯାଏ । ଆଦିବାସୀମାନେ ଠାକୁରାଣୀ ଓଷା ମାଧ୍ୟମରେ ନିଆଁ ଉପରେ ଚାଲି ଓ ଶରୀରକୁ ଯନ୍ତ୍ରଣା ପ୍ରଦାନ କରି ମାନସିକ ପୂରଣ କରିଥାନ୍ତି । ଏହି ଓଷାରେ ଗ୍ରାମର ପିଲାଠାରୁ ବୁଢା ପର୍ଯ୍ୟନ୍ତ ନିଷ୍ଠାର ସହ ଉପବାସ ରହି ମାଟି ନିର୍ମିତ ଠାକୁରାଣୀଙ୍କୁ ଆବାହନ କରିଥାନ୍ତି । ଠାକୁରାଣୀ ଓଷା ସାତ ଦିନ ଧରି ଚାଲେ । ଗାଁ ଦାଣ୍ଡରେ ଦେବୀଙ୍କର ଆସ୍ଥାନ ନିର୍ମାଣ କରାଯାଇ ଠାକୁରାଣୀଙ୍କୁ ନବ ବସ୍ତ୍ର ପରିଧାନ କରାଯାଇଥାଏ । ଖଇ, ମୁଆଁ ଆଦି ଭୋଗ ପ୍ରଦାନ କରାଯାଇଥାଏ । କାଳିସୀଙ୍କ ଶରୀରରେ ଦେବତା, ଦେବୀମାନେ ସବାର ହୋଇ ଗ୍ରାମବାସୀଙ୍କୁ ଆଶିର୍ବାଦ ପ୍ରଦାନ କରିଥାନ୍ତି । ମାନସିକ କରିଥିବା ବ୍ୟକ୍ତି ଶକ୍ତି ମୁତାବକ ଠାକୁରାଣୀଙ୍କ ନିକଟରେ ଛେଳି, କୁକୁଡା ବଳି ଦେଇଥାନ୍ତି । ଆଦିବାସୀ ପୁରୁଷମାନେ ଗୀତ ବୋଲି ଠାକୁରାଣୀଙ୍କୁ ପୂଜାର୍ଚ୍ଚନା କରିଥାନ୍ତି । ଗୀତ ବୋଲୁଥିବା ଆଦିବାସୀଙ୍କୁ 'ଗାଉଣି' କୁହାଯାଏ । ସେମାନେ ଗୀତ ବୋଲୁଥିବା ସମୟରେ ଗ୍ରାମର ଯୁବତୀ ଓ ମହିଳାମାନେ 'ଗାଉଣି'



ମାନଙ୍କୁ ଅଭ୍ୟର୍ଥନା ଜଣାଇଥାନ୍ତି । ଗାଁ ଦାଣ୍ଡରେ ଏକ ଦୀର୍ଘ ଖାତ ଖୋଳାଯାଇ ସେଥିରେ କାଠ ଭର୍ତ୍ତି କରାଯାଏ ଏବଂ ସେଥିରେ ନିଆଁ ଲଗାଇବା ପରେ ଆଦିବାସୀମାନେ ଏହି ନିଆଁ ଉପରେ ଚାଲନ୍ତି ।ଏହି ନିଆଁରେ ଚାଲିବା ପରଂପରାକୁ 'ଖନ୍ଦା ମତା' ବୋଲି କହନ୍ତି । ଏହାକୁ ଦେଖିବା ପାଇଁ ବିଭିନ୍ନ ସ୍ଥାନରୁ ବହୁ ସଂଖ୍ୟାରେ ଭକ୍ତମାନେ ଆସିଥାନ୍ତି । ନିଆଁ ଉପରେ ଚାଲିଲେ ମାନସିକ ପୂରଣ ହୋଇଥାଏ ବୋଲି ଆଦିବାସୀଙ୍କର ବିଶ୍ୱାସ ରହିଛି । ଗାଁ ଦାଣ୍ଡରେ ଦେବୀଙ୍କର ଆସ୍ଥାନ ନିର୍ମାଣ କରାଯାଇ ଠାକୁରାଣୀଙ୍କୁ ନବବସ୍ତ୍ର ପରିଧାନ ପୂର୍ବକ ଖଇ ମୁଆଁ ଭୋଗ କରାଯାଇ ଧୂପଦୀପ ଅର୍ପଣ କରାଯାଏ । ପାରଂପରିକ ବିଶ୍ୱାସମତେ ସୁଦ୍ଧପୁତ କାଳିସିମାନଙ୍କୁ ଆଦିବାସୀମାନେ ଭକ୍ତିପୁତ ଭାବେ ଶ୍ରଦ୍ଧା କରିବା ସହିତ ସେମାନଙ୍କ ଆଶିର୍ବାଦ କାମନା କରିଥାନ୍ତି । ଏହି ଓଷା ସମୟରେ ଠାକୁରାଣୀ ଦେବୀଙ୍କର ମହିମା ବର୍ଣ୍ଣନା ଗୀତ ମାଧ୍ୟମରେ କରାଯାଇଥାଏ । ଏହି ଠାକୁରାଣୀ ଓଷା ବିଶେଷକରି ପୌଷମାସ ବେଳକୁ ହେଉଥିବାର ଜଣାଯାଏ । ମାନସିକ ପୂରଣ ଉଦ୍ଦେଶ୍ୟରେ ଭକ୍ତମାନେ ଠାକୁରାଣୀଙ୍କୁ ଛେଳି, କୁକୁଡା, ହଂସ ଆଦି ଜୀବଜନ୍ତୁଙ୍କୁ ବଳି ପକାଇଥାନ୍ତି । ଦେହୁରୀ ଠାକୁରାଣୀଙ୍କ ନିକଟରେ ଏସବୁ ଜୀବଜନ୍ତୁଙ୍କୁ ସମର୍ପଣ କରିବା ପରେ ଏହା ରୋଷେଇ ହୋଇଥାଏ ।

# କୋହ୍ଲମାନଙ୍କ 'ମାଘେ ପରବ୍'



କେନ୍ଦୁଝର ଜିଲ୍ଲାର ମୁଣ୍ଡା ଓ କୋହ୍ଲ ସଂପ୍ରଦାୟର ଆଦିବାସୀଙ୍କ ଅନ୍ୟତମ ପ୍ରମୁଖ ପର୍ବ ହେଉଛି ମାଘେ ପରବ୍ । ମାଘ ମାସ ବେଳକୁ କୋହ୍ଲ ଓ ମୁଣ୍ଡା ସଂପ୍ରଦାୟର ଆଦିବାସୀମାନେ ଏହି ପର୍ବ ପାଳନ କରୁଥିବାରୁ ଏହାକୁ 'ମାଘେ ବରବ୍' କୁହାଯାଏ । ମାଘେ ପରବ୍ ସାତ ଦିନ ଧରି ଚାଲେ । ମାଘେ ପରବ୍‌ର ପ୍ରଥମ ଦିନକୁ 'ଗାଭମାହାରା' ବା 'ଗାଭଓଲ' କୁହାଯାଏ । ଏହି ଦିନ କୋହ୍ଲ ମହିଳାମାନେ ନିଜନିଜ  ଘରକୁ ନାଲି, ଧଳା, କଳା ଓ ହଳଦିଆ ରଂଗର ମାଟିରେ ଲିପାପୋଛା କରି ପରିଷ୍କାର ପରିଚ୍ଛନ୍ନ କରନ୍ତି । କାନ୍ଥରେ ବିଭିନ୍ନ ଚିତ୍ର ଅଂକନ କରନ୍ତି । ସମସ୍ତେ ନୂଆ ଲୁଗା ପରିଧାନ କରନ୍ତି । ଠାକୁରାଣୀଶାଳକୁ ଲିପାପୋଛା କରି ସେଠାରେ 'ମାରାଂବୁରୁ' (ପର୍ବତ ଦେବତା) ଓ ଅନ୍ୟ ଦେବତାଙ୍କୁ 'ଡିଆଂଗ' (ଚାଉଳି ମଦ) ଓ 'ଅର୍କି' (ମହୁଲି ମଦ) ଭୋଗ ଲାଗି ହୋଇଥାଏ । ସାତ ଦିନ ସାତ ରାତି ଅଖଣ୍ଡ ଉତ୍ସବ ଚାଲିଥାଏ । କୋହ୍ଲ ଯୁବକ, ଯୁବତୀ ଓ ବୃଦ୍ଧବୃଦ୍ଧା ଏହି ଅବସରରେ ହାଣ୍ଡିଆ ପିଇ ମାତାଲ୍ ହୋଇ ନାଚଗୀତ କରିଥାନ୍ତି । ଶେଷରେ କୋହ୍ଲମାନେ ଗାଁରେ ପଙ୍‌କ୍ତି ଭୋଜନରେ ଯୋଗ ଦେଇଥାନ୍ତି । 'ମାଘେ ପରବ୍' ଅବସରରେ କୋହ୍ଲମାନେ ସାତଦିନ ବ୍ୟାପୀ ଗୀତ ଗାଇଗାଇ ଗ୍ରାମ ପରିକ୍ରମା କରିଥାନ୍ତି । ଅମ୍‌ସା, ନାଗରା, ମାଦଲ୍, କେନ୍ଦରା ଆଦି ବାଜା ବଜେଇ ଗୀତ ଗାଇ ପୁରୁଷ ଓ ମହିଳାମାନେ ମତୁଆଲା ହୋଇ ଉଠନ୍ତି ।  ମାଘେ ପରବ୍ ଆରମ୍ଭରେ ଯୁବକ, ଯୁବତୀମାନେ ଗୀତ ଗାଇବା ଆରମ୍ଭ ମଙ୍ଗଳା ଚରଣରୁ  ଆରମ୍ଭ କରନ୍ତି ।

ମଙ୍ଗଳାଚରଣ ପରେ ଗୀତର ଆସର ଜମିଥାଏ । କ୍ରମେ ରାତି ପାହିଯାଏ । ଏହା ପରେ ଆସେ ମାଘେ ପରବ୍‌ର ଦ୍ୱିତୀୟ ଦିବସ । ଏହାକୁ 'ଆତେ ଝିଲ୍ଲୀ' କୁହାଯାଏ । ଗ୍ରାମର ଗୋଟିଏ ମୁଣ୍ଡକୁ ଗୋବରରେ ଲିପାପୋଛା କରି ବେଦି ତିଆରି କରି ତା' ଉପରେ ବିରି ଚାଉଳ ଘୋଡେଇ ଜାମୁ ପତ୍ର ଠୋଲାରେ ହାଣ୍ଡିଆ ଭୋଗ ଦିଆଯାଏ । ସେଦିନ ଗ୍ରାମର ସମସ୍ତ ଯୁବକ, ଯୁବତୀ, ବୃଦ୍ଧ, ବୃଦ୍ଧା ହାଣ୍ଡିଆ ପିଇ ମାତାଲ୍ ହୋଇଉଠନ୍ତି । ମାଘେ ପରବ୍‌ର ତୃତୀୟ ଦିବସକୁ 'ମାଘେଗୁରି' ବା 'ମାଘେ ବଙ୍ଗା' କୁହାଯାଏ । ଏହି ଦିନ ପ୍ରକୃତରେ ଉତ୍ସବର ଦିନ ହୋଇଥାଏ । ବନ୍ଧୁବାନ୍ଧବମାନେ ଆସି ଏକତ୍ରିତ ହୋଇଥାନ୍ତି । ଗାଁଟି ଏହି ଦିନ ଉତ୍ସବମୁଖର ହୋଇଉଠେ । ଯୁବକ, ଯୁବତୀମାନେ ନାଚ ଗୀତର ଆୟୋଜନ କରନ୍ତି । ଗୀତରେ ଗୀତରେ ଯୁବକ, ଯୁବତୀମାନଙ୍କ ମଧ୍ୟରେ ଭାବ ଦିଆନିଆ ହୋଇଥାଏ । ଗୀତରେ ଗୀତରେ ଯୁବକ ଯୁବତୀମାନଙ୍କ ମଧ୍ୟରେ ପ୍ରଶ୍ନୋତ୍ତର କାର୍ଯ୍ୟ ଦୀର୍ଘ ସମୟ ଧରି ଚାଲେ । ମାଦଳ, ଧୁମ୍‌ସା ଓ ବଇଁଷିର ତାଳେତାଳେ ନୃତ୍ୟ ସଂଗୀତର ଆସର ଜମେ । ଏହା ପରେ ମାଘେ ପରବ୍‌ର ଚତୁର୍ଥ ଦିବସ (ସାପାକି) ଓ ପଞ୍ଚମ ଦିବସ (ରିଡ୍‌ରାଓ୍ୱାଁ), ଷଷ୍ଠ ଦିବସ (ବାଘେୟାଁ)ରେ ମଧ୍ୟ ଗାଁରେ ନୃତ୍ୟ, ଗୀତର ଆସର ଜମିଥାଏ । ସପ୍ତମ ଦିନ ମାଘେ ପରବ୍ ଉଦ୍‌ଯାପିତ ହୋଇଥାଏ ।

## କୁମାରୀମାନଙ୍କ ପର୍ବ: ଭାଲୁକୁଣୀ

ଭାଲୁକୁଣୀ ଓଷା କେନ୍ଦୁଝର ଜିଲ୍ଲାର କୁମାରୀମାନେ ପାଳନ କରୁଥିବା ଏକ ପ୍ରମୁଖ ପର୍ବ । କେନ୍ଦୁଝର ଜିଲ୍ଲାର ଗ୍ରାମେଗ୍ରାମେ ଅବିବାହିତ କୁମାରୀମାନେ ଏହି ପୂଜା କରିଥାନ୍ତି । ଗହ୍ମା ପୂର୍ଣ୍ଣିମାଠାରୁ ଦ୍ୱିତୀୟା ଓଷା ପର୍ଯ୍ୟନ୍ତ ଏହା ପ୍ରତି ରବିବାର ଦିନ ପାଳିତ ହୋଇଥାଏ । ଲଗାତାର ପାଞ୍ଚଟି ରବିବାର ଏହି ଓଷା ପ୍ରାୟ ମାସେ କାଳ ପର୍ଯ୍ୟନ୍ତ ପାଳିତ ହୁଏ । ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ପାଳିତ ହେଉଥିବା ଖୁଦୁରୁକୁଣୀ କେନ୍ଦୁଝର ଜିଲ୍ଲାରେ ଭାଲୁକୁଣୀ ଓଷା ଭାବେ ପରିଚିତ । ତଅପୋଇ ପ୍ରଥମେ ଏହି ଓଷା ପାଳନ କରିଥିବାରୁ ଏହାକୁ ମଧ୍ୟ 'ତଅପୋଇ ଓଷା' କୁହାଯାଇଥାଏ । ଭାଉଜମାନଙ୍କ ଦ୍ୱାରା ନିର୍ଯାତିତା ହୋଇ ଖୁଦକୁଣ୍ଡ ଦେଇ ବନଦୁର୍ଗା ମା' ମଙ୍ଗଳାଙ୍କୁ ପୂଜା କରି ତଅପୋଇ ନିଜର ସୌଭାଗ୍ୟ ଫେରି ପାଇଥିଲା । ମା' ଦୁର୍ଗା ଖୁଦ ରଙ୍କୁଣି ହୋଇ ଖୁଦକୁଣ୍ଡ ଖାଇଥିବାରୁ ଏହାକୁ ଖୁଦରଙ୍କୁଣି ଅର୍ଥାତ୍ ଖୁଦୁରୁକୁଣି ଓଷା ବୋଲି କୁହାଯାଏ । ଓଡ଼ିଶାର ଉପକୂଳ ଅଞ୍ଚଳରେ ଭାଲୁକୁଣୀ ମୂର୍ତ୍ତିର ରଙ୍ଗ ହଳଦିଆ ହୋଇଥିବାବେଳେ କେନ୍ଦୁଝର ଜିଲ୍ଲାରେ ଭାଲୁକୁଣି ମୂର୍ତ୍ତିର ରଂଗ ରକ୍ତବର୍ଣ୍ଣର ହୋଇଥାଏ । କେନ୍ଦୁଝର ଏକ ତନ୍ତ୍ର ସାଧନା ପୀଠ ହୋଇଥିବାରୁ ଏଠାରେ ଦେବୀ ସୁଭଦ୍ରାଙ୍କ ରଙ୍ଗ ମଧ୍ୟ ଲୋହିତ ବର୍ଣ୍ଣର । ତନ୍ତ୍ର ପ୍ରଭାବରେ ଏଠାରେ ଦେବୀଙ୍କ ମୂର୍ତ୍ତିସବୁ ଲାଲ୍ ରଙ୍ଗର ବୋଲି ଗବେଷକମାନେ ମତପୋଷଣ କରନ୍ତି । ଗହ୍ମା ପୂର୍ଣ୍ଣମୀ ପରଠାରୁ

ପ୍ରତି ରବିବାର ଦିନ ଏହି ଓଷା ପାଞ୍ଚ ପାଳି ଧରି ଚାଲେ । କାରିଗରଠାରୁ ମୂର୍ତ୍ତି କିଣି ଆଣିବା ପରେ ଝିଅମାନେ ପୂଜା କଳସ ଆବାହନ କରିଥାନ୍ତି । ସେମାନେ କଳସ ଧରି ପୋଖରୀକୁ ଗାଧୋଇବାକୁ ଯାଆନ୍ତି । ସେଠାରେ କଳସ ସ୍ଥାପନ କରାଯାଇ ପୋଖରୀ କୂଳରେ କୁମାରୀମାନେ ପୂଜା କରନ୍ତି । ଏହି ପୂଜାରେ ପୂଜକର ଆବଶ୍ୟକତା ନଥାଏ । ଝିଅମାନେ ନିଜେନିଜେ ପୂଜା କରନ୍ତି । ରାତିରେ ଭାଲୁକୁଣୀଙ୍କ ନିକଟରେ ଖୁଦୁରୁକୁଣୀ ବହି ପଢା ହୁଏ । ବହି ପଢା ପରେ ଭୋଗ ଲାଗି ହୋଇ ପୂଜା ଶେଷ ହୁଏ । ଶେଷ ପାଳିରେ ଭାଲୁକୁଣୀଙ୍କୁ ବିସର୍ଜନ କରାଯାଏ । ଏହି ଅବସରରେ କୁମାରୀମାନଙ୍କ ଦ୍ୱାରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ । ଯେଉଁ ଗ୍ରାମରେ ଭାଲକୁଣି ନୃତ୍ୟଗୀତର ପରଂପରା ଥାଏ, ସେଠାରେ କୁମାରୀମାନଙ୍କ ମଧ୍ୟରେ ନାନା ପ୍ରକାର ପ୍ରତିଯୋଗିତା ଅନୁଷ୍ଠିତ ହୋଇଥାଏ ।

## କୁଡୁମୀ ସଂପ୍ରଦାୟର 'ଗୋ ବନ୍ଦନା' (ଗୋବର୍ଦ୍ଧନ) ପର୍ବ ଓ 'ଅଣ୍ଡାପୂଜା'

ଗାଈ ଗୋରୁମାନଙ୍କ ଉଦ୍ଦେଶ୍ୟରେ କେନ୍ଦୁଝର ଜିଲ୍ଲାର କୁଡୁମୀ ସଂପ୍ରଦାୟର ଲୋକମାନେ କାଳୀ ପୂଜା ଅବସରରେ ଗୋ ବନ୍ଦନା ବା ଗୋବର୍ଦ୍ଧନ ପର୍ବ ପାଳନ କରିଥାନ୍ତି । ଏହାକୁ ମଧ୍ୟ 'ବାନ୍ଦନା' ପର୍ବ କୁହାଯାଇଥାଏ । ଏହି ଗୋବର୍ଦ୍ଧନ ପର୍ବଟି କେନ୍ଦୁଝର ଓ ମୟୂରଭଞ୍ଜ ଅଞ୍ଚଳରେ ତିନି ଦିନ ବ୍ୟାପୀ ପାଳିତ ହୋଇଥାଏ । ଗାଈଗୋରୁ କିପରି ସୁସ୍ଥ ରହିବେ, ଫାଟୁଆ ରୋଗରେ ଆକ୍ରାନ୍ତ ହେବେନାହିଁ, ବଣ ଜଙ୍ଗଲରେ ନିଖୋଜ ହୋଇଗଲେ କିଭଳି ସୁରକ୍ଷିତ ଭାବେ ଘରକୁ ଫେରି ଆସିବେ ଏବଂ ସର୍ବୋପରି ଗୋରୁଗାଈଙ୍କ ମଙ୍ଗଳ କାମନା କରି କୁଡୁମୀମାନେ 'ବାନ୍ଦନା' ବା 'ଗୋବର୍ଦ୍ଧନ' ପୂଜା କରିଥାନ୍ତି । ଏହା ଦୀପାବଳୀ ଦିନ ଆରମ୍ଭ ହୋଇ ତିନି ଦିନ ଧରି ପାଳିତ ହୋଇଥାଏ । ଏହି ପୂଜା ଅବସରରେ କୁଡୁମୀ ସଂପ୍ରଦାୟରେ ଗୋରୁ ଗୁହାଳ ଓ ଗୋରୁମାନଙ୍କୁ ପୂଜା କରାଯାଇଥାଏ । କେନ୍ଦୁଝର ଜିଲ୍ଲାରେ ବସବାସ କରୁଥିବା କୁଡୁମୀମାନେ ଗୋବର୍ଦ୍ଧନ ପୂଜା ବା ଗୋ ବନ୍ଦନା ପୂଜା କରିଥାନ୍ତି । ପ୍ରତିବର୍ଷ ଫସଲ ଅମଳ ହେବା ପୂର୍ବରୁ ଏହି 'ବାନ୍ଦନା' ପର୍ବ ପାଳନ କରାଯାଇଥାଏ । କାର୍ତ୍ତିକ ଅମାବାସ୍ୟା ତିଥିରେ ଯେତେବେଳେ କାଳୀପୂଜା, ଦୀପାବଳି ପାଳନ କରାଯାଉଥାଏ ସେହି ସମୟରେ କୁଡୁମୀମାନେ ଏହି ପର୍ବକୁ ପାରଂପରିକ ରୀତିନୀତିରେ ପାଳନ କରିଥାନ୍ତି । ଏହି ପର୍ବ ପାଳନ ପୂର୍ବରୁ କୁଡୁମୀମାନେ ସେମାନଙ୍କ ଘରଦ୍ୱାର ସଫାସୁତର କରିଥାନ୍ତି । ଲିପାପୋଛା କରି ଘରକୁ ସାଜସଜା କରିଥାନ୍ତି । ଏହି ପର୍ବ ପାଳନ ଦିନ ଅର୍ଥାତ୍ ପ୍ରଥମ ଦିନ, ଗ୍ରାମର ଦେହୁରୀ ଉପବାସ ରହିଥାନ୍ତି । ସକାଳୁ ସକାଳୁ ଗ୍ରାମର ସମସ୍ତ ଗାଈଗୋରୁଙ୍କୁ ସ୍ନାନ କରାଯାଏ । ଅପରାହ୍ନରେ ପ୍ରତି ଘରର ଗାଈଗୋରୁଙ୍କୁ ଫୁଲ, ଚନ୍ଦନ ଲଗେଇ ଗାଈ ଗୋଠକୁ ନିଆଯାଇଥାଏ । ସେଠାରେ ଧର୍ମ ଦେବତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଏକ ଅଣ୍ଡାକୁ ଶସ୍ୟ

ମଣ୍ଡଳ ଭିତରେ ପୋତି ଦିଆଯାଏ । ଏହି ଅବସରରେ ବାସୁକୀ, ବସୁମତୀ ଓ ଧର୍ମ ଦେବତାଙ୍କୁ ବିଭିନ୍ନ ରଂଗର କୁକୁଡା ବଳି ଦିଆଯାଇଥାଏ । ପୂଜା ପରେ ପରେ ଅଣ୍ଡା ସ୍ଥାପନ କରାଯାଇଥିବା ସ୍ଥଳକୁ ଗାଇବଳଦମାନଙ୍କୁ ନିଆଯାଇଥାଏ । ଯେଉଁ ଗାଈ କିମ୍ବା ବଳଦ ଧର୍ମ ଦେବତାଙ୍କ ଉଦ୍ଦେଶ୍ୟରେ ସ୍ଥାପନ କରାଯାଇଥିବା ଅଣ୍ଡା ଉପରେ ଚଢିଯାଏ, ସେହି ଗାଈ କିମ୍ବା ବଳଦ ଏବଂ ସେଇ ଗାଈ କିମ୍ବା ବଳଦର ମାଲିକଙ୍କୁ ଭାଗ୍ୟବାନ ମନେ କରାଯାଏ । ଏହା ପରେ ସେହି ଭାଗ୍ୟବାନ ଗୋରୁ ମାଲିକଙ୍କୁ ଫୁଲମାଳ ଦେଇ ବାଜା ବଜେଇ, ନୃତ୍ୟଗୀତ ମାଧ୍ୟମରେ ଗ୍ରାମ ପରିକ୍ରମା କରାଯାଏ ।ଏହା ପରେ ଶୋଭାଯାତ୍ରାରେ ଶ୍ରଦ୍ଧାଳୁମାନେ ସେହି ଭାଗ୍ୟବାନ ଗୋରୁ ମାଲିକଙ୍କ ଘରକୁ ଯାଆନ୍ତି । ସଂପୃକ୍ତ ଭାଗ୍ୟବାନ୍ ବ୍ୟକ୍ତି ଏହି ଅବସରରେ ଗ୍ରାମବାସୀଙ୍କୁ ଭୋଜି, ହାଣ୍ଡିଆ, ମଦ, ମାଂସରେ ଆପ୍ୟାୟିତ କରିଥାନ୍ତି । ଏହି ଦିନ ସମସ୍ତଙ୍କ ଘରେ ପିଠାପଣା ହୋଇଥାଏ । ଏହି ଅବସରରେ କୁଡୁମୀମାନେ ସୋମାନଙ୍କ ଧାର୍ମିକ ଗୀତ ଗାଆନ୍ତି । ଏହା ପରେ ଆରମ୍ଭ ହୁଏ ନାଚଗୀତ । ନାଚଗୀତରେ ମସଗୁଲ ହୋଇ ସମସ୍ତେ ଏକ ଶୋଭାଯାତ୍ରାରେ ବାହାରି ଗାଁ ମୁଣ୍ଡକୁ ଯାଆନ୍ତି । ଏହାକୁ ଧାଦେଇଁ ଖେଳ କହନ୍ତି । ସମସ୍ତ ପୁରୁଷ ନାରୀ ହସଖୁସିରେ ପରସ୍ପର ଦେହରେ ଚୂନା ବୋଳି ଦେଇଥାନ୍ତି । ଦ୍ୱିତୀୟ ଦିନରେ କୁଡୁମୀ ସଂପ୍ରଦାୟର ଲୋକମାନେ ଲଙ୍ଗଳ, ମଇ, କୁରାଢ଼ୀ ଆଦି କୃଷି ସରଞ୍ଜାମକୁ ସଫାସୁତର କରିଥାନ୍ତି । ତାପରେ ଶିବ, ପାର୍ବତୀ, ବାସୁକୀ, ବସୁମତି, ଧର୍ମଦେବତା, ଗ୍ରାମ ଠାକୁରାଣୀ, ବଡପାହାଳ, ଗୋସେଇଁରାୟ, ମା' କାଳୀ ଆଦି ଦେବଦେବୀଙ୍କୁ ବିଭିନ୍ନ ରଂଗର କୁକୁଡା ଦେଇପୂଜା କରି ସନ୍ତୁଷ୍ଟ କରିଥାନ୍ତି । ନିଜର ପିତୃପୁରୁଷ ଓ ଇଷ୍ଟଦେବଙ୍କୁ ମଧ୍ୟ ପିଠାପଣାର ଭୋଗ ଦେଇଥାନ୍ତି । ଗାଈଗୋରୁଙ୍କୁ କଅଁଳିଆ ଘାସ ପେଟ ପୂରା ଖାଇବାକୁ ଦିଆଯାଏ । ଏହା ଫଳରେ ଗାଈଗୋରୁ ବର୍ଷସାରା ପାଇଥିବା ଦୁଃଖକଷ୍ଟକୁ ସାମୟିକ ଭାବେ ଭୁଲିଯାଇଥାନ୍ତି । ଏହି ଦିନ ଗାଈଗୋରୁଙ୍କ ଅବସ୍ଥା ଦେଖିବାକୁ ମହାଦେବ କିମ୍ବା ତାଙ୍କ ବାହନ ଷଣ୍ଢ ମର୍ତ୍ତ୍ୟଲୋକକୁ ବୁଲି ଆସିଥାନ୍ତି ବୋଲି କୁଡୁମୀ ସଂପ୍ରଦାୟର ଲୋକେ ବିଶ୍ୱାସ କରନ୍ତି । ତୃତୀୟ ଦିନ ବିସର୍ଜନ ପର୍ବ ଅନୁଷ୍ଠିତ ହୋଇଥାଏ । ଏହି ଦିନ ଗ୍ରାମର ମଧ୍ୟ ଭାଗରେ ଏକ ଖୁଣ୍ଟ ପୋତାଯାଏ । ବ୍ରତ ହୋଇ ନଥିବା ବଳଦକୁ ସେଠାରେ ବନ୍ଧାଯାଇ ତାକୁ ତିନି ଥର ବୁଲାଯାଏ । ଗୋଠେଶ୍ୱର ମହାଦେବଙ୍କୁ ପୂଜା କରାଯାଏ । ଏହି ଅବସରରେ ପ୍ରତି କୁଡୁମୀ ଘରର ମହିଳାମାନେ ଘରକୁ ଚିତା, ଝୋଟିରେ ସଜାଇ ଥାନ୍ତି । ସମସ୍ତେ ନୂଆ ବସ୍ତ୍ର ପରିଧାନ କରନ୍ତି । ଅପରାହ୍ଣରେ ଆରମ୍ଭ ହୋଇଯାଏ ବଳଦ ନାଚ ଓ ଏଥିରେ ସମସ୍ତେ ନାଚଗୀତରେ ମସଗୁଲ ହୋଇଉଠନ୍ତି । ବାନ୍ଧନା ପର୍ବକୁ କୁଡୁମୀ (ମହାନ୍ତମାନେ)ମାନେ ବଡପର୍ବ ବୋଲି ମାନିଥାନ୍ତି । ଏହି ପର୍ବ ପାଳନ ନେଇ ଏକ କିମ୍ବଦନ୍ତୀ ରହିଛି । ଏକଦା ମର୍ତ୍ତ୍ୟରେ ସବୁ ଷଣ୍ଢ, ଗୋରୁ, ଗାଈ କ୍ରୋଧାନ୍ୱିତ ହୋଇ

ଚାଷ କାର୍ଯ୍ୟ ଛାଡି ସ୍ୱର୍ଗ (ଶିବଙ୍କ ପାଖକୁ)କୁ ଚାଲିଗଲେ । ଏହା ଫଳରେ ମର୍ତ୍ତ୍ୟରେ ଚାଷ କାର୍ଯ୍ୟ ବନ୍ଦ ହୋଇଯିବାରୁ ମଣିଷମାନଙ୍କ ମଧ୍ୟରେ ଭାଳେଣୀ ପଡିଗଲା । ଏନେଇ ଅକଳା, ବକୁଳା, ଗୋକୁଳା ତିନି ଜଣ ମହାପୁରୁଷ ସ୍ୱର୍ଗକୁ ଯାଇ ଗୋରୁ,ଗାଈଙ୍କୁ ମର୍ତ୍ତ୍ୟଲୋକକୁ ଫେରେଇ ଆଣିବାକୁ ଶିବଙ୍କୁ ପ୍ରାର୍ଥନା କରିଥିଲେ । ଗାଈ, ଗୋରୁଙ୍କୁ ନିର୍ଯାତନା ବନ୍ଦ କଲେ ସେମାନେ ମର୍ତ୍ତ୍ୟଲୋକକୁ ଫେରିବେ ବୋଲି ଶିବ ଏହି ତିନି ଜଣ ମହାପୁରୁଷଙ୍କୁ କହିଲେ । ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ଦିନରେ ମର୍ତ୍ତ୍ୟପୁରକୁ ବୁଲିଯାଇ ଗୋରୁଗାଈଙ୍କ କଥା ବୁଝି ଆସିବେ ବୋଲି ଶିବ ଏହି ତିନି ଜଣଙ୍କୁ କହି ଗୋରୁଗାଈଙ୍କୁ ସେମାନଙ୍କ ସାଥୀରେ ପ୍ରେରଣ କଲେ । ଏଣୁ ଗୋବର୍ଦ୍ଧନ ପୂଜାର ଦ୍ୱିତୀୟ ଦିନ ଶିବ କିମ୍ବା ତାଙ୍କ ଦୂତ ଷଣ୍ଢ ଗୋରୁଗାଈଙ୍କ ଅବସ୍ଥା ବୁଝିବାକୁ ମର୍ତ୍ତ୍ୟପୁରକୁ ବୁଲି ଆସିଥାନ୍ତି ବୋଲି କୁଡୁମୀ ସଂପ୍ରଦାୟରେ ବିଶ୍ୱାସ ରହିଛି ।

## କେନ୍ଦୁଝର ଜିଲ୍ଲାରେ ବୋଇତ ବନ୍ଦାଣ ଉତ୍ସବ



କେନ୍ଦୁଝର ଜିଲ୍ଲାର ପୁଣ୍ୟତୋୟା ବୈତରଣୀ ନଦୀର ବିଭିନ୍ନ ଘାଟରେ ବୋଇତ ବନ୍ଦାଣ ଉତ୍ସବ ପାଳନ ହୋଇଥାଏ । ରାଜନଗରର ଶୈବ୍ୟାକାବେରୀ ଘାଟ, ଘଟିପୁରାର ବୈତରଣୀ ନଦୀ ଘାଟରେ ଗତ କିଛି ବର୍ଷ ଧରି କାର୍ତ୍ତିକ ପୂର୍ଣ୍ଣମୀ ତିଥିରେ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହେଉଛି । ଘଟିପୁରାରେ ପାଳିତ ହେଉଥିବା ବୋଇତ ବନ୍ଦାଣ ଉତ୍ସବରେ ଆନନ୍ଦପୁର ସବ୍‌ଡିଭିଜନର ଲକ୍ଷାଧିକ

ଶ୍ରଦ୍ଧାଳୁ ରାତି ତିନିଟାରୁ ଉଠି ବୋଇତ ବନ୍ଦାଣ ଉତ୍ସବରେ ଅଂଶଗ୍ରହଣ କରିବା ସହିତ ପବିତ୍ର ବୁଢ଼ା ବୈତରଣୀ ନଦୀରେ ସ୍ନାନ କରି ପ୍ରସିଦ୍ଧ ଶୈବରାଜ ଝାଡେଶ୍ୱରଙ୍କ ଦର୍ଶନ କରିଥାନ୍ତି । ସେହିପରି ଆନନ୍ଦପୁରର ଫକୀରପୁର ବୈତରଣୀ ନଦୀ ଘାଟରେ ବୋଇତ ବନ୍ଦାଣ ଉତ୍ସବ ପ୍ରତିବର୍ଷ ଅନୁଷ୍ଠିତ ହୋଇଥାଏ । ଆନନ୍ଦପୁର ବ୍ଲକ୍ ଶାଳବଣି ପଞ୍ଚାୟତ ମୋଚିଡ଼ା ବିଶାଳ ପୁଷ୍କରିଣୀରେ ପ୍ରତିବର୍ଷ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ପୂଜା ସହ ବୋଇତ ବନ୍ଦାଣ ଉତ୍ସବ ପାଳନ ହୋଇଆସୁଛି । ଅପରପକ୍ଷେ, କେନ୍ଦୁଝର ଜିଲ୍ଲାର ମଇଳା କୁଣ୍ଡ କୁହାଯାଉଥିବା ବଡ଼ବିଲ୍‌ରେ ମଧ୍ୟ ପ୍ରତିବର୍ଷ ବୋଇତ ବନ୍ଦାଣ ଉତ୍ସବ ପାଳିତ ହେଉଛି । ବଡ଼ବିଲର ମାଟ୍‌କାମ୍‌ବେଡାସ୍ଥିତ ଚଂପକେଶ୍ୱର ମନ୍ଦିର ନିକଟରେ ବହିଯାଇଥିବା କାରୋ ନଦୀ କୂଳରେ ପ୍ରତିବର୍ଷ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଐତିହାସିକ ରାଜନଗର ଗ୍ରାମର ଶୈବ୍ୟାକାବେରୀ ବୈତରଣୀ ଘାଟରେ ପାଳିତ ହେଉଥିବା ବୋଇତ ବନ୍ଦାଣ ଉତ୍ସବରେ ସହସ୍ରାଧିକ ଭକ୍ତମାନେଙ୍କ ସମାବେଶ ଘଟିଥାଏ ।

## କେନ୍ଦୁଝରର 'ଠାକୁର ପଟି' ପରିକ୍ରମା

ପଣା ସଂକ୍ରାନ୍ତିର କିଛି ଦିନ ପୂର୍ବରୁ ବିଭିନ୍ନ ଦେବଦେବୀଙ୍କର ଚିତ୍ରପଟ କେନ୍ଦୁଝର ଜିଲ୍ଲାର ଗ୍ରାମାଞ୍ଚଳରେ ପରିକ୍ରମା କରାଯାଉଥିବାର ଦେଖାଯାଏ । ଏହାକୁ 'ଠାକୁରପଟି ବୁଲା' କୁହାଯାଏ । ଏହି ପଟି ବୁଲା କାର୍ଯ୍ୟକ୍ରମ ପଣା ସଂକ୍ରାନ୍ତିର ତିନି ଦିନ ପୂର୍ବରୁ ଆରମ୍ଭ ହୋଇ ସଂକ୍ରାନ୍ତି ଦିନ ଶେଷ ହୋଇଥାଏ । ତେବେ ସମୟକ୍ରମେ କେନ୍ଦୁଝର ଜିଲ୍ଲାରୁ ଏହି ପରଂପରା ଏବେ ଲୋପ ପାଇଯିବାକୁ ବସିଛି । ଗାଁ ଭାଁ କେଉଁ ଗ୍ରାମରେ ଠାକୁର ପଟି ବୁଲାଯାଉଛି । ଏହି ପଟି ବା ମସିଣାରେ ବିଭିନ୍ନ ଦେବଦେବୀ, ଯୋଗିନୀ, ପଶୁପକ୍ଷୀଙ୍କ ଚିତ୍ର ଅଙ୍କନ କରାଯାଇଥାଏ । ଏହାକୁ ସ୍ଥାନୀୟ ଅଞ୍ଚଳରେ ତନ୍ତ୍ର ପରଂପରା ବୋଲି ବିବେଚନା କରାଯାଇଥାଏ । କାରଣ ଏହି ପଟିରେ ମିଳିତ ଭାବେ ମହାଦେବ, ଯୋଗିନୀ, ବାସୁଳି, କାଳୀ, ଚଣ୍ଡି, ଦୁର୍ଗା ଆଦି ଦେବଦେବୀଙ୍କ ସମେତ ବାଘ, ସାପ, ପରୀମାନଙ୍କ ଚିତ୍ର ଅଂକନ କରାଯାଇଥାଏ । ଏହି ଠାକୁର ପଟିକୁ ଫୁଲ, ଚନ୍ଦନ, ସିନ୍ଦୁର ଦେଇ ଘଣ୍ଟ, ଘଣ୍ଟା, ମର୍ଦ୍ଦଳ ବଜାଇ ଘରକୁ ଘର ବୁଲାଯାଇଥାଏ । ଭକ୍ତମାନେ ନିଜନିଜ ଘର ସାମ୍ନାରେ ଠାକୁରଙ୍କୁ ପୂଜା କରିଥାନ୍ତି । ଫଳ ଭୋଗ ସହିତ ଅନେକ ସ୍ଥାନରେ ଏହି ଠାକୁର ପଟି ଉଦ୍ଦେଶ୍ୟରେ କୁକୁଡ଼ା ବଳି ମଧ୍ୟ ଦିଆଯାଇଥାଏ । ଏହି ପରଂପରା ରାଜାରାଜୁଡ଼ା ଅମଳରୁ ଚାଲି ଆସୁଛି । ନିଷାର୍ଦ୍ଧରେ ପ୍ରତ୍ୟକ ଗ୍ରାମର ଠାକୁର ପଟି କେନ୍ଦୁଝର ବଳଦେବଜୀଉଙ୍କ ମନ୍ଦିରକୁ ବିଜେ କରିଥାନ୍ତି । ସେଠାରେ ଥିବା ଚାଞ୍ଚଖାଇ ବା ଚର୍ଚ୍ଚିକାଙ୍କୁ ଭେଟ କରିବା ପରେ ଏହି ଠାକୁରପଟି ପୁନର୍ବାର ନିଜ ଗାଁକୁ ଫେରିଥାନ୍ତି । ତେବେ ଏଭଳି ଏକ ବିରଳ ପରଂପରା କେନ୍ଦୁଝର ଜିଲ୍ଲାର ଜନମାନସରୁ ଧୀରେଧୀରେ ଲିଭିଯିବାକୁ ବସିଲାଣି । ପୂର୍ବରୁ ଗୁମୁରା, କବିତ୍ରା, ଘୁଟୁରୁ, ଗଂଭାରିଆ, ମୁକୁନା, ବାଉରୀପଦା, ବ୍ରାହ୍ମଣୀ ଗ୍ରାମ

ଆଦି ୧୬ଟି ଗ୍ରାମରୁ ଠାକୁରପଟି ଶ୍ରୀବଳଦେବ ଜୀଉଙ୍କ ମନ୍ଦିରକୁ ଆସୁଥିଲା । ମାତ୍ର ଏବେ କେବଳ ଅଳ୍ପ କିଛି ଗାଁରୁ ଏହି ଠାକୁରପଟି ଆସୁଛି ।

## କେନ୍ଦୁଝର ସହରର ରୁକ୍ମିଣୀ ବିବାହ

କେନ୍ଦୁଝର ସହରରେ ଥିବା ବିଭିନ୍ନ ବିଷ୍ଣୁ ମନ୍ଦିରମାନଙ୍କରେ ପ୍ରତିବର୍ଷ ରୁକ୍ମିଣୀ ବିବାହ ଓ କୃଷ୍ଣଙ୍କ ବରବେଶ ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । କେନ୍ଦୁଝର ୟୁଥ୍ କ୍ଲବ୍ ଓ ଆଟପୁରସ୍ଥିତ ରାଧାରମଣ ମନ୍ଦିର ପରିଚାଳନା କମିଟି ପକ୍ଷରୁ ଏହି କାର୍ଯ୍ୟକ୍ରମ ଦୀର୍ଘ ବର୍ଷ ଧରି ଅନୁଷ୍ଠିତ ହୋଇଆସୁଛି । ବଣିଆପାଟରୁ କୃଷ୍ଣ ବରବେଶ ଧାରଣ କରି ବରଯାତ୍ରୀଙ୍କ ସହିତ ବଳଦେବଜୀଉଙ୍କ ମନ୍ଦିରକୁ ଆସିଥାନ୍ତି । ଏହାପରେ କୃଷ୍ଣଙ୍କ ସମେତ ସମସ୍ତ ବରଯାତ୍ରୀ ଆଟପୁରର ରାଧାରମଣ ମନ୍ଦିରରେ କନ୍ୟା ଘରେ ପହଞ୍ଚିଥିବା ପରେ ଏଠାରେ କନ୍ୟା ଅର୍ଥାତ୍ ରୁକ୍ମିଣୀଙ୍କ ମଙ୍ଗୁଳା କାର୍ଯ୍ୟ ସମାପନ ହୋଇଥାଏ ଏବଂ ରାଧାରମଣ ମନ୍ଦିର ପ୍ରାଙ୍ଗଣରେ ବିବାହ ସଂପନ୍ନ ହୋଇଥାଏ । କୃଷ୍ଣଙ୍କ ବରଯାତ୍ରୀରେ କେନ୍ଦୁଝର ସହରର ଶତାଧିକ ବିଶିଷ୍ଟ ବ୍ୟକ୍ତିଙ୍କ ସମେତ ଯୁବକ, ଯୁବତୀ ଅଂଶଗ୍ରହଣ କରିଥାନ୍ତି । ରୁକ୍ମିଣୀ ଓ କୃଷ୍ଣଙ୍କ ବିବାହ କାର୍ଯ୍ୟ ଶେଷ ପରେ ଉଭୟ ବର ଓ କନ୍ୟା ସ୍ନାନ କରି ନୂତନ ବସ୍ତ୍ର ପରିଧାନ କରି ବଳଦେବ ଜୀଉଙ୍କ ମନ୍ଦିରକୁ ଯାଆନ୍ତି । ଏହି କାର୍ଯ୍ୟକ୍ରମରେ କେନ୍ଦୁଝର ସମେତ ଆଖପାଖରୁ ଶତାଧିକ ଭକ୍ତଙ୍କ ସମାବେଶ ଘଟିଥାଏ । ସନ୍ଧ୍ୟାରେ ଏଠାରେ ନାନା ପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ । ସୂଚନାଯୋଗ୍ୟ, ପ୍ରତିବର୍ଷ କୁଆଁର ପୂନେଇଠାରୁ କାର୍ତ୍ତୀକ ପୂର୍ଣ୍ଣିମା ପର୍ଯ୍ୟନ୍ତ ମାସେ ଧରି ରାଧାରମଣ ମନ୍ଦିରରେ ଭାଗବତ ଗାଦି ବସିଥାଏ । ଏହି ଅବସରରେ ମାସେକାଳ ବିଭିନ୍ନ ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ । ଭଜନ, କୀର୍ତ୍ତନ ସାଙ୍ଗକୁ ସନ୍ଧ୍ୟାରେ ଏଠାରେ ବହୁ ସଂଖ୍ୟାରେ ଭକ୍ତଙ୍କ ଗହଳି ଜମେ । ଏହା ପରେ ରୁକ୍ମିଣୀ ବିବାହ କାର୍ଯ୍ୟକ୍ରମ ସଂପନ୍ନ ହୋଇଥାଏ ।

## କେନ୍ଦୁଝର ପ୍ରସିଦ୍ଧ କାଳୀପୂଜା

ଆଲୋକର ପର୍ବ ଦୀପାବଳି ଓ କାଳୀପୂଜା ପାଇଁ କେନ୍ଦୁଝର ସମଗ୍ର ରାଜ୍ୟରେ ସ୍ୱତନ୍ତ୍ର ପରିଚୟ ହାସଲ କରିପାରିଛି । ଏଣୁ କାଳୀ ପୂଜା କେନ୍ଦୁଝରର ଏକ ପ୍ରମୁଖ ଉତ୍ସବର ମାନ୍ୟତା ଲାଭ କରିଛି । ଏହି ସମୟରେ ସମଗ୍ର କେନ୍ଦୁଝର ସହର ଉତ୍ସବମୁଖର ହୋଇପଡେ । କେନ୍ଦୁଝର ଜିଲ୍ଲା ସଦର ମହକୁମାଠାରେ ପ୍ରାୟ ୧୨ ଦିନ ଧରି ଏହି କାଳୀପୂଜା ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୋଇଥାଏ । ବିଭିନ୍ନ ସ୍ଥାନରେ ସୁଉଚ୍ଚ ତ୍ୱରଣ ସାଙ୍ଗକୁ ରଙ୍ଗୀନରଙ୍ଗ ଆଲୋକମାଳାରେ କେନ୍ଦୁଝର ସହର ଝଲସି ଉଠେ । ଅପରପକ୍ଷେ, କେନ୍ଦୁଝର ଓ ଚଂପୁଆ ଉପଖଣ୍ଡରେ ବସବାସ କରୁଥିବା କୁଡୁମୀ ସଂପ୍ରଦାୟର ଲୋକେ ଦୀପାବଳି ଓ କାଳିପୂଜାକୁ ସେମାନଙ୍କର ମୁଖ୍ୟ ପର୍ବ ଭାବେ ପାଳନ କରିଥାନ୍ତି । ଏଣୁ



କେନ୍ଦୁଝର ଜିଲ୍ଲାର ଗାଁଗହଳିରେ ଦୀପାବଳି ଓ କାଳୀପୂଜା ବେଶ୍ ଜାକଜମକରେ ପାଳିତ ହୋଇଥାଏ । କେନ୍ଦୁଝର ସହରର କାଳୀପଡିଆ, କାଶୀପୁର, ପୁରୁଣାବଜାର, ଟେଲିଫୋନ୍ ଏକ୍ସଚେଞ୍ଜ, ବେସରକାରୀ ବସ୍ ଷ୍ଟାଣ୍ଡ ଆଦି ଅନେକ ସ୍ଥାନରେ ବେଶ୍ ଆକର୍ଷଣୀୟ ମେଢ ହୋଇଥାଏ । ସହରର କାଳୀପଡିଆଠାରେ ୧୨ ଦିନ ବ୍ୟାପୀ ମେଳା ଅନୁଷ୍ଠିତ ହେବା ସାଙ୍ଗକୁ ଏଠାରେ ଲକ୍ଷାଧିକ ଲୋକଙ୍କ ସମାବେଶ ହୋଇଥାଏ । ଅନ୍ୟତମ ଶକ୍ତିପୀଠ ମାଧପୁରର ମା' କାଳୀଙ୍କ ମନ୍ଦିରରେ ମା' କାଳୀଙ୍କ ପୂଜା ମଧ୍ୟ ଅନୁଷ୍ଠିତ ହୋଇଥାଏ । କେନ୍ଦୁଝର ଘରୋଇ ବସ୍ ଷ୍ଟାଣ୍ଡ ନିକଟରେ ମା' ଶ୍ୟାମାକାଳୀଙ୍କ ପୂଜା ମଧ୍ୟ ଆନନ୍ଦ ଉଲ୍ଲାସର ସହ ସମାପନ ହୋଇଥାଏ । ପ୍ରତିବର୍ଷ କାଳିପଡିଆଠାରେ ଅପେରା ସାଙ୍ଗକୁ ମୀନାବଜାର ପଡିଥାଏ । କାଳୀପୂଜା କେନ୍ଦୁଝରର ଏକ ଗଣପର୍ବର ମାନ୍ୟତା ଅର୍ଜନ କରିଛି । ଏହି ଅବସରରେ ପ୍ରତ୍ୟେକ ପରିବାର ଉତ୍ସବମୁଖର ହୋଇପଡେ ।

## କେନ୍ଦୁଝରର ଜୈବ ବିବିଧତା

ପ୍ରାକୃତିକ ଜଙ୍ଗଲ, ପାହାଡ ଓ ଜଙ୍ଗଲୀ ପଶୁପକ୍ଷୀଙ୍କ ପାଇଁ ଏକଦା କେନ୍ଦୁଝର ଜିଲ୍ଲାର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ଅତୀତରେ କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ପ୍ରଜାତିର ବୃକ୍ଷଲତା, ଜୀବଜନ୍ତୁ ଓ କୀଟପତଙ୍ଗ ଦେଖାଯାଉଥିଲେ । କାଳକ୍ରମେ ଦ୍ରୁତ ଶିଳ୍ପାୟନ ଓ ଜଙ୍ଗଲ କ୍ଷୟ କାରଣରୁ ପ୍ରାକୃତିକ ଜୈବବିବିଧତାରେ ଅନେକ ପରିବର୍ତ୍ତନ ଦେଖାଦେଲାଣି । ଅନେକ ବିରଳ ଜୀବଜନ୍ତୁ କେନ୍ଦୁଝର

ଜଙ୍ଗଲରୁ ସବୁଦିନ ପାଇଁ ଲୋପ ପାଇଗଲେଣି । ଅନେକ ମୂଲ୍ୟବାନ୍ ଗଛ ଓ ବହୁ ବିରଳ ପକ୍ଷୀ ଆଉ କେନ୍ଦୁଝର ଜଙ୍ଗଲରେ ଦେଖିବାକୁ ମିଳୁନି । ଶାଳିଆପତନି, ଧଳାଠେଙ୍କୁଆ, କୃଷ୍ଣସାରମୃଗ, ନୀଳଗାଈ କେନ୍ଦୁଝର ଜଙ୍ଗଲରୁ ସଂପୂର୍ଣ୍ଣ ବିଲୁପ୍ତ ହୋଇଯାଇଥିବାବେଳେ ହାତୀ ଭଳି ବିଶାଳକାୟ ପ୍ରାଣୀ ଏବେ ବିଲୋପ ହେବାକୁ ବସିଛନ୍ତି । ଆଜିବି କେନ୍ଦୁଝର ଜଙ୍ଗଲରେ ବିଭିନ୍ନ ବୃକ୍ଷଲତା, ପଶୁପକ୍ଷୀ ଦେଖିବାକୁ ମିଳନ୍ତି ।

## ବୃକ୍ଷଲତା

କେନ୍ଦୁଝର ଜିଲ୍ଲାରେ ଦେଖାଯାଉଥିବା ବିଭିନ୍ନ କିସମର ବୃକ୍ଷଲତାକୁ ବନ ବିଭାଗ ପକ୍ଷରୁ ଅନୁସୂଚିତ ଶ୍ରେଣୀଭୁକ୍ତ କରାଯାଇଛି ।

**ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ ଅନୁସୂଚିତ ବୃକ୍ଷ:** ଶାଗୁଆନ୍, ଚନ୍ଦନ

**ପ୍ରଥମ ଶ୍ରେଣୀଭୁକ୍ତ ଅନୁସୂଚିତ ବୃକ୍ଷ:** ଶାଳ, ପିଆଶାଳ (ବିଜା), ବନ୍ଧନ, କୁରୁମ, ଚଂପା, ତୁନ୍, ଶିଶୁ

**ଦ୍ୱିତୀୟ ଶ୍ରେଣୀଭୁକ୍ତ ଅନୁସୂଚିତ ବୃକ୍ଷ:** ଅସନ, କସି, କେନ୍ଦୁ, ଶିମିଳି, ଧଉରା, ସିଧ, କଦମ୍ବ, ମିଟିକୁନିଆ, ଅଶୋକ, ପାଣିଗମ୍ଭାର, ମହାନିମ୍ବ, ଗିରିଧିନି

**ତୃତୀୟ ଶ୍ରେଣୀଭୁକ୍ତ ଅନୁସୂଚିତ ବୃକ୍ଷ:** ରାଇ, ମାଇ, କୁମ୍ଭୀ, କୁସୁମ, ମେଣ୍ଡା, ମହୁଲ, କୁରଡୁ, ଧାତୁକି, ଅଁଳା, କରଡା, ସୁନାରି, ଚାର, କରଞ୍ଜ, ପଳାସ, ଚାକୁଣ୍ଡା, ଜାମୁ, ବେଲ, ବରକୋଳି, ବାଉଁଶ, ଆମ୍ବ, ପଣସ, ଅର୍ଜୁନ, ବାହାଡା, ଭେରୁ, ଧମନ, ଗେଣ୍ଡୁଳି, ହରିଡା, କୋଚିଲା, କଙ୍କରା, ତେନ୍ତରା, ମୁଣ୍ଡା ମଞ୍ଜି (ରିଠା), ଫା ସି, ପୀତମୟୀ, ରାଜମୋହି, ଗିମିଳି, ବର, ଅଶ୍ୱତଥ୍, ନିମ୍ବ ।

**ବାଉଁଶ ଜାତୀୟ ବୃକ୍ଷ:** ଜିଲ୍ଲାରେ କଣ୍ଟା ବାଉଁଶ, ସାଲିଆ ବାଉଁଶ, ସିଆଳି ବାଉଁଶ, ଦାବେ ବାଉଁଶ, ବେତ ଆଦି ବାଉଁଶ ଜାତୀୟ ବୃକ୍ଷ ଦେଖାଯାଏ ।

**ଔଷଧୀୟ ବୃକ୍ଷ:** ବିଡ଼ଙ୍ଗ, ସଫେଦ୍ ମୁଷ୍ଲି, ମୁଦଗତାର୍ଣ୍ଣି, ଭୂମି କୁସ୍ମାଣ୍ଡ, ଶତାବରୀ, ଅନନ୍ତମୂଳ, ବ୍ରହ୍ମଦଣ୍ଡି, କୋକଜଂଗା, ଶାଳପର୍ଣ୍ଣି, କୁଷ୍ଠାର୍ଣ୍ଣି, ପଦନ ଫଳ, ଗୁଡମାରି, ପାଟଳି, କୁଟଜ, ଗଂଗଶିଉଳି, ସମରଖାଇ, ମହାନୀଳ, ସୁଦର୍ଶନ, ସଂଖପୁଷ୍ପୀ, ବିଶଲ୍ୟକରଣୀ, ଘି କୁଆଁରୀ, ପଳାସ, ଧନ୍ୱନ୍ତରୀ, ଝୁମୁକା, ଘରପୋଡିଆ, ଚିତାକୁଟି, ଇନ୍ଦ୍ରମାରିଶ, ଭୂଇଁଅଁଳା, ବିଠାମାଳିଆ, କଣ୍ଟାଲେଉଟିଆ, କାଣିଲେଉଟିଆ, ଭେଜିବାଇଗଣ, ତୁଳସୀ, ବଡାଦୁର୍ଲଭା, ବାଳବାଳୁଆ, ପୋକସୁଙ୍ଘା, ଚିରେଇତା, ଅଣସୋରିଷ, କାନ୍‌ସିରି, ଖାଡିସିଜୁ, ଅପମାରଂଗ, କୁଆମଇତା, ଦହଦହିଆ, ଦେଶିମକମଲି, ଅଙ୍କାନବିନ୍ଧି, ଭୃଂଗରାଜ, କେଶରାଜ, ହିଡିମିଚିକା, ମଦରଂଗା, ସଦାବିହାରୀ, ରୁକୁଣୀ ହାତପୋଛା (କୁରୁମୁଲି), ନିର୍ଗୁଳିଲଟା, ଚେମିଣିଲଇ, ଭୂଇଁନିମ୍ବ, ସର୍ପଗନ୍ଧା, ରାମକେଦାର, କୃଷ୍ଣକେଦାର, ବଧୁଲି, ବଣକଦଳୀ, ପୁରୁଣି, ପିତାତରଡି, ପାନଥଇରୀ, ଆମ୍ବିଳିତି, ଗୋଖରା, ବିସର୍ଗି, ପୀଡିପୀଡିକା, ମଞ୍ଜୁଆ ଡି,

ଜବାମନ୍ଦାର, କରବୀ, ଗୁଳୁଚି, କନିଅର, ନାଗେଶ୍ୱର, ନିର୍ଗୁଣ୍ଡି (ବେଗୁନିଆ), ବାସଂଗ, ଅଂକରାତି, ଗଇସ, ଗଜ, କୁଂକୁମ, ଓଡ଼ସମାରି, ଗନ୍ଧଣା, ପାତାଳଗରୁଡ, ରାସ୍ନା, ଲାଜକୁଳି, ପସାରୁଣି, ବ୍ରାହ୍ମି, ଭେରଙ୍ଗଗା, ଅମରପୋଇ, ଧବଳ ଧୁତୁରା, କଳା ଧୁତୁରା, ଅର୍କ, କଳା ତୁଳସୀ, ତୁଳସୀ, ଗଂଗତୁଳସୀ, ବାଇତଙ୍କ, କାଇଁଚ, କାନ୍ଦୁଲ, ଜଡା, ଗବ, କିଆ, ଜୁନ୍‌ଜୁନ୍‌କା, କମଳାଗୁଣ୍ଡି, କଣ୍ଟେଇକୋଳି, ତମଶାଳ, ନିର୍ମୁଳି, କୁର୍ଚି, ଶଂଖୀକୁର୍ଚି, ରାମଦାନ୍ତୁଣୀ, ରାଣୀଦାନ୍ତୁଣୀ, ଅଥଣ୍ଡି, ବାଙ୍ଗପଶିଆ, ଭାଲିଆ, ଅତୁଣ୍ଡି, ଝିଂଗନ, କଇଁଥ, ସିଜୁ, ପାଣିସାରୁ । କାଞ୍ଜିପାଣିଠାରେ ଏକ ଔଷଧୀୟ ବୃକ୍ଷ ସଂରକ୍ଷଣ ପ୍ରକଳ୍ପ କାର୍ଯ୍ୟ କରୁଛି ।

**ଘାସ ଜାତୀୟ ବୃକ୍ଷ:** ଦୁବ, ମୁଥା, ସବାଇ, ଗୁର୍ଗୁଚିଆ, ଧଣିଚା ।

**ଅପତୃଣ ଜାତୀୟ ବୃକ୍ଷ:** ଜିଲ୍ଲାରେ ଉଇଡ୍ ବା ଅପତୃଣଜାତୀୟ ପୁଷ୍କରିଣୀଗୁଡିକରେ ଭାସମାନ ଅବସ୍ଥାରେ ଦେଖିବାକୁ ମିଳନ୍ତି । ସେହିଭଳି ଗୁଳ୍ମ ଜାତୀୟ ସ୍ୱୟଂ ବଢ଼ି ପାରୁଥିବା ବୁଦାଜାତୀୟ ଉଦ୍ଭିଦ ଦୃଷ୍ଟିଗୋଚର ହୋଇଥାଏ । ଜିଲ୍ଲାର କେତେକ ଅଞ୍ଚଳରେ ମାରାତ୍ମକ ପାର୍ଥେନିୟମ୍ ବୃକ୍ଷ ଦେଖାଯାଏ । ଏହାକୁ ଗ୍ରୀନ୍ କ୍ୟାନ୍‌ସର ବା ସବୁଜ କର୍କଟ କୁହାଯାଏ ।

**କୃଷିଭିତ୍ତିକ ବୃକ୍ଷ:** ଶସ୍ୟ ଜାତୀୟ, ଡାଲି ଜାତୀୟ, ତୈଳବୀଜ ଜାତୀୟ, ମୂଳ ଜାତୀୟ, ତନ୍ତୁଜାତୀୟ, ଫଳ, ପୁଷ୍ପ, ମସଲା ଓ ପନିପରିବା ଆଦି କୃଷିଭିତ୍ତିକ ଚାଷ କରାଯାଇଥାଏ ।

**ଶସ୍ୟ ଜାତୀୟ ବୃକ୍ଷ:** ଧାନ, ଗହମ, ମକା, ଯଅ, ବାଜରା, ମାଣ୍ଡିଆ

**ଡାଲି ଜାତୀୟ ବୃକ୍ଷ:** ମୁଗ, ବିରି, ହରଡ, ଚଣା, ମଟର, ବୁଟ, କୋଳଥ, ରାଜ୍‌ମା

**ତୈଳବୀଜ ଜାତୀୟ ବୃକ୍ଷ:** ଚିନାବାଦାମ୍, ସୋରିଷ, ରାଶି, ରାଇ, ସୂର୍ଯ୍ୟମୁଖୀ, ଜଡା, ମୁର୍ଗା, ଲିନ୍‌ସିଡ୍, ଅଳସୀ

**ମୂଳ ଜାତୀୟ ବୃକ୍ଷ:** ଆଳୁ, ସାରୁ, ଓଲକୋବି, ଖମ୍ବ ଆଳୁ, କନ୍ଦମୂଳ, ମୂଳା, ଗାଜର, ପିଆଜ, ଅଦା, ରସୁଣ, ହଳଦି, ପାଳୁଅ

**ପନିପରିବା ଜାତୀୟ ବୃକ୍ଷ:** ଫୁଲକୋବି, ବନ୍ଧାକୋବି, ଭେଣ୍ଡି, ବାଇଗଣ, ଜହ୍ନି, କଲରା, ପୋଟଳ, ବିନ୍‌ସ, ଝୁଡଙ୍ଗ, ଲାଉ, ଶିମ୍ବ, ମଟର ଛୁଇଁ, କାଙ୍କଡ, ଛଚିନ୍ଦ୍ରା, ଗୁଆଁର, କୁନ୍ଦୁରି, ସଜନା, ପାଣିକଖାରୁ, ବୋଇତି କଖାରୁ, ବିଲାତି (ଟମାଟୋ), କାକୁଡି, କଞ୍ଚା କଦଳୀ, ଓଲୁଅ

**ଶାଗ ଜାତୀୟ ବୃକ୍ଷ:** କୋଶଳା, ଖଡା, ପାଳଙ୍ଗ, ଦେଶୀ ପୋଇ, କଲକତି ପୋଇ, ମେଥି, ଲେଉଟିଆ, ଶୁନ୍‌ଶୁନିଆ, ଥାଲକୁଡି, ମଦରଂଗା, ପୁରୁଣି, ଗିରିଙ୍ଗା

**ଫଳ ଜାତୀୟ ବୃକ୍ଷ:** ଆମ୍ବ, ପଣସ, ଡାଳିମ୍ବ, ସପୁରୀ, କମଳା, ଲେମ୍ବୁ, ପିଜୁଳି, ବେଲ, ଲଂକାଆମ୍ବ, ଆତ, ସପେଟା, ଅମୃତଭଣ୍ଡା, କଦଳୀ, ଓଉ, କରମଂଗା, ଲିଚୁ, କେନ୍ଦୁ, ଅଁଳା, ତେନ୍ତୁଳି, ତୁତ୍, ବରକୋଳି, ଶାହାଡା, ଡିମିରି, ଚାରକୋଳି, ନଡ଼ିଆ, ତାଳ, ଖଜୁରୀ

**ପୁଷ୍ପ ଜାତୀୟ ବୃକ୍ଷ:** ଚଂପା, ଗୋଲାପ, ଯୁଇ, ଜାଈ, ମଲ୍ଲୀ, ହେନା, ମାଳତୀ, ସେବତୀ, ରଜନୀଗନ୍ଧା, ଟଗର, ଗେଣ୍ଡୁ, ସେଫାଳି, ବଉଳ, ବାସଙ୍ଗ, କିଆ, ମନ୍ଦାର, ହରଗୌରୀ, କୁକୁଡାଚୂଳ, କଇଁ, ପଦ୍ମ, ଗ୍ଲାଡିଅସ, ଡାଲିଆ, ଜିନିଆ

**ମସଲା ଜାତୀୟ ବୃକ୍ଷ:** ହଳଦି, ଧନିଆ, ଲଂକା, ଗୋଲମରିଚ, ମେଥି

**ତନ୍ତୁ ଜାତୀୟ ବୃକ୍ଷ:** ଝୋଟ, ମେସ୍ତା, କପା, ଛଣି, ସିଆଳି, ହେଂପ

**ମଧୁର ବୃକ୍ଷ:** ଆଖୁ

**ଛତୁ ଜାତୀୟ ବୃକ୍ଷ:** ବାଲିଛତୁ, ଖୁଦ ଛତୁ, ନଡା ଛତୁ, ମଣ୍ଡା ଛତୁ, କଳାଗୁଣ୍ଡି ଛତୁ, ପାଳ ଛତୁ, ଧିଙ୍ଗଡା ଛତୁ, ମଉଳା ଛତୁ, ବିହୁଡିଣି ଛତୁ, କାଠ ଛତୁ, ବାଉଁଶ ଛତୁ, ଗୋବର ଛତୁ, ପୋତା ଛତୁ

**ଚାହା ଓ ଧୂଆଁପତ୍ର ଜାତୀୟ ବୃକ୍ଷ:** କେନ୍ଦୁଝର ଜିଲ୍ଲାର ପାର୍ବତ୍ୟ ଅଞ୍ଚଳରେ ଚା ଓ ଧୂଆଁପତ୍ର ଚାଷ କରାଯାଇଥାଏ ।

## ଜୀବଜନ୍ତୁ

ବ୍ୟାପକ ଜଙ୍ଗଲ କ୍ଷୟ ଓ ଖଣି ଖନନ ସତ୍ତ୍ୱେ ଏବେ ବି କେନ୍ଦୁଝର ଜିଲ୍ଲାରେ ବିଭିନ୍ନ ପ୍ରଜାତିର ଜୀବଜନ୍ତୁ ଦେଖିବାକୁ ମିଳନ୍ତି । ଯଦିଓ ବହୁ ବିରଳ ପଶୁପକ୍ଷୀ କେନ୍ଦୁଝର ଜଂଗଲରୁ ଲୋପ ପାଇଗଲେଣି, ତଥାପି ବହୁ ପ୍ରକାର ଜୀବଜନ୍ତୁ ଏବେ ବି କେନ୍ଦୁଝର ଜଙ୍ଗଲରେ ଦେଖାଯାଉଛନ୍ତି ।

**ସ୍ତନ୍ୟପାୟୀ ମାଂସଭୋଜୀ:** ମହାବଳ ବାଘ, କଲରାପତରିଆ ବାଘ, ଢେଙ୍କିଆ ବାଘ, ଭାଲୁ, ହେଟା, ଗଧିଆ, ଶୃଗାଳ, ରାମଶିଆଳ, ଶାଳିଆପତନି, ବଣବିରାଡି, କଟାସ, କୁଜିନେଉଳ, ଓଧ, ମୂଷା, ଗାତୁଆ ମୂଷା, ନେପାଳୀ ମୂଷା । ଜିଲ୍ଲାର ରେବଣା ଓ କଳାପାଟ ଜଂଗଲରେ ବାଘ ରହିଥିବାବେଳେ ସନ୍ତୋଷପୁର, ଅଟେଇ, ବାରବାଙ୍କ, ରେବଣା, କଳାପାଟ ଜଂଗଲରେ କଲରାପତରିଆ ବାଘ ରହିଛନ୍ତି । ତେବେ ଆଜିର ଦିନରେ କେନ୍ଦୁଝର ଜିଲ୍ଲାରେ ଆଉ ମହାବଳ ବାଘ ଦେଖାଯାଉ ନାହାନ୍ତି ।

**ସ୍ତନ୍ୟପାୟୀ ତୃଣଭୋଜୀ:** ହାତୀ, ଗୟଳ, ଚିତଲ, ହରିଣ, କୁଟୁରା, ଖୁରାଣ୍ଟି, ନୀଳଗାଇ, ବାର୍ହା, ଠେକୁଆ, ଝିଂକ, ଗୁଣ୍ଡୁଚିମୂଷା, ବାଦୁଡି, ଚେମେଣି, ପାତିମାଙ୍କଡ଼, ହନୁମାଙ୍କଡ଼ ଆଦି ସ୍ତନ୍ୟପାୟୀ ତୃଣଭୋଜୀ ପ୍ରାଣୀ କେନ୍ଦୁଝର ଜିଲ୍ଲାରେ ଦେଖାଯାଆନ୍ତି । ଜିଲ୍ଲାର ବଉଳା, କଳାପାଟ, ରେବଣା, ଅଟେଇ, ସିଦ୍ଧମଠ ଓ କାରୋ ସଂରକ୍ଷିତ ଜଙ୍ଗଲରେ ଏହିସବୁ ଜୀବଜନ୍ତୁ ଦେଖିବାକୁ ମିଳନ୍ତି ।

**ଗୃହପାଳିତ ପ୍ରାଣୀ:** ଗୋରୁ, ମଇଁଷି, ଛେଳି, ମେଣ୍ଢା, ଘୁଷୁରୀ, ବିରାଡି, ଠେକୁଆ, କୁକୁର ।

**ପକ୍ଷୀ:** ଜିଲ୍ଲାରେ ମୁଖ୍ୟତଃ ଦୁଇ ପ୍ରକାରର ପକ୍ଷୀ ଦେଖିବାକୁ ମିଳନ୍ତି । ଜଳଚର, ସ୍ଥଳଚର ଓ ଗୃହପାଳିତ ପକ୍ଷୀ ।

**ସ୍ଥଳଚର ପକ୍ଷୀ:** କାଉ, କୋଇଲି, କଜଳପାତି, ଭଦଭଦଳିଆ, ଶାରୀ, ରାଜବଣୀ, ମହୁଲିଆବଣି, ଗୋଲାପାରା, ବଣୁଆପାରା, କପୋତ, ଶୁଆ, ଚଂପା, ଡାହୁକ, ବାଘ, ଘରଚଟିଆ, ବଣକୁକୁଡା, କୋଚିଲାଖାଇ, ମୟୁର, ତିତିରି, ଗୁଣ୍ଡୁରି, କୁମ୍ଭାଟୁଆ, ହରଡ, କାଠହଣା, ହଳଦିବସନ୍ତ, ଚିଲ, ଶାଗୁଣା, ବାଜ, ଗରୁଡ, ଛଞ୍ଚାଣ, ପେଚା ।

**ଜଳଚର ପକ୍ଷୀ:** ଗେଣ୍ଡିହଂସ, ହଂସ, ଲାଞ୍ଜିହଂସ, ହଂସରାଳି, ପାଣିହଂସ, ମାଛରଂକା, କଣ୍ଠିଆ ବଗ, ମାଟିଆ ବଗ, ବତକ, ଗେଣ୍ଡାଳିଆ, ପାଣିକୋଇଲି, ପାଣିକୁଆ, ଚକୁଆ

**ଗୃହପାଳିତ ପକ୍ଷୀ:** କୁକୁଡା, ବତକ, ଶୁଆ, ଶାରୀ, ପାରା, ବଣି, ଚଂପା ।

**ସରୀସୃପ**

**ବିଷଧର ସରୀସୃପ (ସର୍ପ):** ଗୋଖର, ନାଗ, ଡଂପ, ଅହିରାଜ, ଅଢେଇ କିଆରିଆ, ଚନ୍ଦ୍ର ବୋଡା, ରଣା, ଚିତି, କରେତ

**ବିଷହୀନ ସରୀସୃପ (ସର୍ପ):** ଅଜଗର, ଢମଣା, ଦୁଧିଆ, ମାଟିବିରାଡି, ଦୁଇ ମୁଣ୍ଡିଆ, କାଣ୍ଡନଳ, ଧଣ୍ଡ

**ଅନ୍ୟାନ୍ୟ ସରୀସୃପ:** ବଜ୍ରକାପ୍ଠ, ଗୋଧି, ପୋହଳା ଏଣ୍ଡୁଅ, ଝିଟିପିଟି, ଚଂପେଇ ନେଉଳ ।

**ମତ୍ସ୍ୟ:** ଜିଲ୍ଲାର ନଦୀ, ନାଳ, ଗାଡିଆ, ପୁଷ୍କରିଣୀଗୁଡିକରେ ବିଭିନ୍ନ କିସମର ମଧୁର ଜଳ ମାଛ ଦେଖାଯାଆନ୍ତି । ଏଗୁଡିକ ମଧ୍ୟରେ ରୋହି, ଭାକୁର, ମହୁରାଳି, ମିର୍କାଳି, ବାଟା, ଟୋଗୋ, ଗଡିଶା, ତୋଡି, କଣ୍ଟିଆ, ଜହ୍ଲା, ବୋମ୍ବି, ସିଙ୍ଗଲି, ବଏଁରି, କଳାବଇଁଷି, ପୁଟିଆ, ମାଗୁର

**ଅନ୍ୟାନ୍ୟ ଜୀବ:** ବିଛା, ଖଜୁରିଆ ବିଛା, କଂକଡା, ଜିଆ, ଗେଣ୍ଡା, ଶାମୁକା, ଜୋକ, ପାଣିବେଙ୍ଗ, କାଠବେଙ୍ଗ, ବ୍ରାହ୍ମଣୀବେଙ୍ଗ

**କୀଟପତଙ୍ଗ:** ପ୍ରଜାପତି, ଜଙ୍ଗି, ବିରୁଡି, ଭଅଁର, ମହୁମାଛି, ମଶା, ମାଛି, ପିଂପୁଡି, ଜଦା, ଉଇ, କାଇ, କଲେଇ, କାଚରା, ତେଲୁଣି, ମଥ୍, ବୁଢିଆଣୀ, ସାଧବବୋହୂ, ଝିଟିକା, ପଂଗପାଳ, ସରୁକଂକି, ଜଳଭଉଁରୀ, ପାଣିଚିରା ପୋକ, ପାଣିଲମ୍ଫି, ଇନ୍ଦ୍ରଗୋପୀ ଭୃଙ୍ଗ, କାରାବିଡ୍ ଭୃଙ୍ଗ, ଧାବନ ଭୃଙ୍ଗ, ଶାଗୁଆ ଷୁଣ୍ଢ ପୋକ, ଇୟର ଉଇଗ, ସିରଫିଡ ମାଛି, ଚିଲୋନସ୍ ବ୍ଲାକ୍ ବର୍ଡ୍, ନଈ ଡାଆଣୀ, ସ୍ନାୟୁପକ୍ଷ କୀଟ, ହତ୍ୟାକାରୀ ପୋକ, ପତ୍ରଡିଆଁ, ଗଛଡିଆଁ, ପତ୍ରମୋଡା, କାଣ୍ଡବିନ୍ଧାପୋକ, ଧଳାମାଛି, ଜଉଆପୋକ, ଧଳାପିଠିଆ ପୋକ, ଠିକିରିପିଠିଆ ପୋକ, ଦିଆଲି ପୋକ, ନଳୀ ପୋକ, ଲେଡାପୋକ, କାଣ୍ଡକଟା ପୋକ, ଖାଙ୍ଗୋଡିଆ ପୋକ, ଉକୁଣିଆ ପୋକ, ଶାଗୁଆ ପତ୍ରକଟା ପୋକ, ହଳଦିଗୁଣ୍ଡି ପୋକ, କଟାପୋକ, ଜଉ, ଦହିଆ, ଘୁଣ, ଉକୁଣୀ ।

# ନରଣପୁର-ଡୁବୁରି ରାସ୍ତାର ସ୍ମରଣୀୟ ଯାତ୍ରା

## ବାରରାଶି ପାହାଡ, ତୃପ୍ତି ଉଦ୍ୟାନ, ଆକର୍ଷଣୀୟ ଶଗଡ଼ପଟା ଓ ଟାଙ୍ଗିରିଆପାଳ ରେଳ ଷ୍ଟେସନ, ମା' ଦାନ୍ତୁଆଣୀପୀଠ

ବାରରାଶି ପାହାଡ



ଆପଣ ନରଣପୁର-ଡୁବୁରି ରାସ୍ତା ଦେଇ ଭୁବନେଶ୍ୱର ଯାଉଥିଲେ ପ୍ରଥମେ ବାରରାଶି ପାହାଡର ମନଲୋଭା ଦୃଶ୍ୟରୁ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ଆରମ୍ଭ କରିପାରିବେ । ବିଶାଳ ଦୀର୍ଘ ବାରରାଶି ପାହାଡଟି ଦୂରରୁ ଏକ ଐତିହାସିକ ଦୁର୍ଗର ଭ୍ରମ ସୃଷ୍ଟି କରିଥାଏ । ଏହି ବାରରାଶି ପାହାଡରେ ପୂଜା ପାଆନ୍ତି ବାରରାଶି ଠାକୁରାଣୀ । ଏହି ପାହାଡରୁ ଅରଡେଇ ଓ ମାଛକାନ୍ଦଣା ନଦୀ ଉତ୍ପତ୍ତିଲାଭ କରିଛି । ଏହା ପରେ ଆପଣ ପହଞ୍ଚିବେ ଅବସ୍ଥିତ ବସନ୍ତପୁର ଗ୍ରାମରେ । ବସନ୍ତପୁର ଗାଁଟି ଐତିହାସିକ ଦୃଷ୍ଟିରୁ ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରାମ । ଏଠାରେ ଫକୀର ମୋହନ ସେନାପତିଙ୍କୁ ଧରଣୀଧରଙ୍କ ସେନାମାନେ ବନ୍ଦୀ କରି ରଖିଥିଲେ । ଏହି ଗ୍ରାମଟି ଏକ ପ୍ରାଚୀନ ବାଥୁଡି ଗ୍ରାମ ହୋଇଥିବାରୁ ଏଠାରେ ବାରମାସରେ ତେର ପର୍ବ ପାଳିତ ହୋଇଥାଏ । ଏହାର ଟିକେ ଆଗକୁ ଗଲେ ପଡିବ ନୁଦୁରୁପଡା ଛକ । ନୁଦୁରୁପଡା ଛକରେ ମା' ତାରିଣୀଙ୍କର ଏକ ମନ୍ଦିର ରହିଛି । ନୁଦୁରୁପଡା ଛକରୁ ଡାହାଣକୁ ଗଲେ ଆପଣ ଜଂପିରା, ଦୁଷ୍ଟ ଆଦି ସ୍ଥାନକୁ

ତୃପ୍ତି ଉଦ୍ୟାନରେ ଥିବା କାଜୁ ଚାରା ବଗିଚା



ଯାଇପାରିବେ । ଐତିହାସିକ ହୁଣ୍ଡି ଗ୍ରାମଟି ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ଏଠାରେ ଆପଣ ପ୍ରଭୁ ଦଧିବାମନଜୀଉ, ମହାପାଟ ଓ ସମାକୋଇ ନଦୀର ଉତ୍ପତ୍ତିସ୍ଥଳ ଦେଖିପାରିବେ । ନୁଦୁରୁପଡା ଛକରୁ ସିଧା ଆଗକୁ ଗଲେ ପଡିବ ଦେଓବନ୍ଧ । ଦେଓବନ୍ଧର ଡାହାଣକୁ ଗଲେ ଆପଣ ପଟିଲୋ ଜଗନ୍ନାଥ ମନ୍ଦିର ଦେଖିବେ ଏବଂ ପଟିଲୋରୁ ଆଉ ଦଶ କିଲୋମିଟର ଡାହାଣକୁ ଗଲେ ଆପଣ ବି ଯାଇପାରିବେ ଐତିହାସିକ ହୁଣ୍ଡି ଗ୍ରାମ ଏବଂ ଜଂଘିରା ବଜାର । ଦେଓବନ୍ଧରୁ ବାମ ପାର୍ଶ୍ୱକୁ ମାତ୍ର ଛଅ କିଲୋମିଟର ଦୂର ଗଲେ ଆପଣ ଉପଭୋଗ କରିପାରିବେ କେନ୍ଦୁଝର ଜିଲ୍ଲାର ପ୍ରସିଦ୍ଧ 'ତୃପ୍ତି ଉଦ୍ୟାନ' । ଏଠାକୁ ଆସିଲେ ଆପଣଙ୍କ ମନରେ ଯେତେ ଯନ୍ତ୍ରଣା, ବିଷାଦ ଥାଉ ପଛକେ ତାହା ଅଳ୍ପ ସମୟ ମଧ୍ୟରେ ଦୂର ହୋଇଯିବ । ଆନନ୍ଦରେ ଆପଣଙ୍କ ମନ ତୃପ୍ତ ହୋଇ ଉଠିବ । ଏଣୁ ବୋଧହୁଏ ଏହାର ନାମ 'ତୃପ୍ତି ଉଦ୍ୟାନ' ରଖାଯାଇଛି । କୃଷକ ଶିରୋମଣି କ୍ଷେତ୍ରବାସୀ ବେହେରାଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି 'ତୃପ୍ତି ଉଦ୍ୟାନ'ଟି କେନ୍ଦୁଝର ପାଇଁ ଏକ ବିଶେଷ ଗୌରବ ବହନ କରିଥାଏ । ତେବେ ଦେଓବନ୍ଧରୁ ଆଗକୁ ଗଲେ ଆପଣ କୁଆଝରଣ ଘାଟୀ ରାସ୍ତା ଅତିକ୍ରମ କରିବେ । କୁଆଝରଣ ଘାଟୀଟି ଆପଣଙ୍କ ମନରେ ଯଥେଷ୍ଟ ରୋମାଞ୍ଚ ଓ ଶିହରଣ ସୃଷ୍ଟି କରିପାରିବ । ଏହି ଘାଟୀକୁ ନେଇ ଅନେକ ରହସ୍ୟ ଓ ରୋମାଞ୍ଚକର କଥା ଶୁଣିବାକୁ ମିଳେ । କିଛି କିଛି ଏହାକୁ 'ଡେଥ୍ ଟ୍ରାପ୍' ବା 'ମୃତ୍ୟୁର ଯନ୍ତା' ବୋଲି କହିଥାନ୍ତି । କୁଆଝରଣ ଘାଟି ଟପିଲେ ହରିଚନ୍ଦନପୁର ବଜାର ଦେଇ

ଆପଣ ଶଗଡ଼ପଟା. ଟାଙ୍ଗିରିଆପାଳ ରେଳ ଷ୍ଟେସନର ଦୃଶ୍ୟ ଉପଭୋଗ କରିବେ । ଶଗଡ଼ପଟା ଓ ଟାଙ୍ଗିରିଆପାଳ ରେଳ ଷ୍ଟେସନର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ପାହାଡ ଉପରେ ନିର୍ମିତ ହୋଇଥିବା ଏହି ଦୁଇଟି ରେଳ ଷ୍ଟେସନ ଜଙ୍ଗଲ ଦେଇ ଅତିକ୍ରମ କରୁଥିବା ଦୃଶ୍ୟ ପଥଚାରୀର ମନ ମୋହି ନେଇଥାଏ । ଏହା ବ୍ୟତୀତ ପାହାଡ ଉପର ଦେଇ ଯାଉଥିବା ରେଳର ଦୃଶ୍ୟ ମଧ୍ୟ ଅନ୍ତ୍ୟନ୍ତ ଆକର୍ଷଣୀୟ ହୋଇଥାଏ । ବ୍ରାହ୍ମଣୀପାଳ ନିଟକରେ ବହି ଯାଇଥିବା କୁଶଭଦ୍ରା (କୁଷେଇ) ନଈ ଉପରେ ଥିବା ସୁ-ଉଚ୍ଚ ରେଳ ପୋଲର ଦୃଶ୍ୟ ଆପଣଙ୍କୁ ଆନମନା କରିଦେବ । କୁଷେଇ ନଈ ଉପରେ ଥିବା ଏହି ସୁଦୀର୍ଘ ନଭଶ୍ଚୁମ୍ବୀ ରେଳ ପୋଲ. ଟାଂଗିରିଆପାଳ ପାହାଡ ଉପରେ ଥିବା ରେଳ ଷ୍ଟେସନ ଜଣେ ପଥିକକୁ ଆତ୍ମବିଭୋର କରିବାରେ ଢେର୍ ସହାୟକ ହୋଇପାରିବ । ଏହା ତ ଗଲା ଜଙ୍ଗଲ. ପାହାଡଭରା ପ୍ରକୃତିର ଦଶ୍ୟ । ତେବେ ହରିଚନ୍ଦନପୁର ବ୍ଲକ୍‌ର ଶଗଡ଼ପଟାର ଘଞ୍ଚ ଜଙ୍ଗଲ ମଧ୍ୟରେ ପୂଜା ପାଇ ଆସୁଛନ୍ତି ପ୍ରତ୍ୟକ୍ଷ ଦେବୀ ମା' ଦାନ୍ତୁଆଣୀ । କୁହାଯାଉଛି. ଏହି ଦାନ୍ତୁଆଣୀ ଠାକୁରାଣୀ କେନ୍ଦୁଝର ଜିଲ୍ଲାର ବହୁ ପ୍ରାଚୀନ ଶକ୍ତିପୀଠ । ଶଗଡ଼ପଟାଠାରେ ମଧ୍ୟ ରେଳଷ୍ଟସନ ରହିଛି । ନରଣପୁର-ତୁବୁରୀ ରାସ୍ତା ଦେଇ ଭୁବନେଶ୍ୱର. କଟକ ଯିବାଆସିବା କରୁଥିବା ସମସ୍ତ ଯାତ୍ରୀ ଏହି ଦାନ୍ତୁଆଣୀ ପୀଠରେ ଅଟକିଥାନ୍ତି । ଏଠାରେ ମା'ଙ୍କ ନିକଟରେ ଏକ ନଡ଼ିଆ ଭାଙ୍ଗି ନିଜନିଜର ମନସ୍କାମନା ପୂରଣ କରିଥାନ୍ତି । ଏହାର ଟିକେ ଆଗକୁ ଗଲେ ଟମ୍‌କା ଜଙ୍ଗଲ । ଏହି

**ତୃପ୍ତି ଉଦ୍ୟାନରେ** ଥିବା ଗୋଲାପ ଚାରା ବଗିଚା






ଟମ୍କା ଜଙ୍ଗଲକୁ ନେଇ ଅନେକ ଆଇମା' କାହାଣୀ ପେଡି ରହିଛି । ଏହା ଦିନେ ସବୁଠୁ ଘଞ୍ଚ ଜଙ୍ଗଲ ଭାବେ ଜଣାଶୁଣା ଥିଲା । ଏଠାରେ ମହାବଳ ବାଘଠାରୁ ଆରମ୍ଭ କରି ହାତୀ, ନୀଳଗାଇ, ଜଙ୍ଗଲୀ ବାର୍ହା, ହରିଣ, ଠେକୁଆ ଆଦି ନାନା ପ୍ରକାର ଜୀବଜନ୍ତୁ ଥିଲେ । ମାତ୍ର, ଆଜି ଏହିସବୁ ପ୍ରାଣୀମାନେ ବିରଳ । ଏଇଠୁଁ ହିଁ ଯାଜପୁର ଜିଲ୍ଲାର ସୀମା ଆରମ୍ଭ ହୋଇଥାଏ । ଏଠାରେ ଆପଣ ପାରାଦୀପ-




ଶଗଡ଼ପଟାର ମା' ଦାନୁଆଣୀ ପୀଠ

ଦୈତାରୀ ଜାତୀୟ ରାଜପଥକୁ ଉଠିଗଲା ପରେ ଗୋଟିଏ ରାସ୍ତାରେ ଯାଇ ସିଧା ଚଣ୍ଡିଖୋଲରେ ପହଞ୍ଚିଯିବେ । ବାଟରେ ଆପଣ ଉଚ୍ଛୁଳା ବ୍ରାହ୍ମଣୀ ନଦୀକୁ ଦେଖି ବିଭୋର ହୋଇଯିବେ ନିଶ୍ଚୟ ।

## ବର୍ଷାଦିନିଆ କେନ୍ଦୁଝର: ପାହାଡର ମଥାରେ ଶୋଭାପାଏ ମେଘଙ୍କ ପଣତ

କିଏ କହିଲା କେନ୍ଦୁଝର ଧୂଳିଧୂଆଁର ସହର? ଶବ୍ଦ ପ୍ରଦୂଷଣର ସହର? ଖଣି ମାଫିଆ ଓ ବିପର୍ଯ୍ୟୟର



ସହର? ବ୍ୟସ୍ତବହୁଳ ସହର? ଲୁହା ପଥର, ମାଙ୍ଗାନିଜ, ବକ୍ସାଇଟ୍, ଡୋଲାମାଇଟ୍ ଭଳି ଖଣିଜ ସଂପଦକୁ କେନ୍ଦ୍ର କରି ଶାନ୍ତଶୀତଳ, ସବୁଜିମାଭରା କେନ୍ଦୁଝରର ପ୍ରାକୃତିକ ବିଭବ କିଛି ମାତ୍ରାରେ ବ୍ୟାହତ ହୋଇଛି, ଏହା ସ୍ୱୀକାର୍ଯ୍ୟ । ଏଠାରେ ଗଢିଉଠିଛି ଖଣିଖାଦାନ, କାରଖାନା ଓ ସହରୀ ସଭ୍ୟତା । ରାତାରାତି ମଣିଷ ଧନୀ ହେବାର ନିଶାରେ ଧାଇଁଛି । ଚାଷୀଟିଏ ଚାଷ ଛାଡି ଦେଇଛି । ଶ୍ରମିକଟି ମୂଲମଜୁରୀକୁ ଭୁଲି ଯାଇଛି । ଲୁହାପଥର ଚୋରି କରିବାର ନିଶାରେ ସମସ୍ତେ ପାଗଳ । ଯାନ୍ତ୍ରିକ ଜୀବନ ବଞ୍ଚୁଥିବା ଆଧୁନିକ ମଣିଷ ପାଇଁ କେନ୍ଦୁଝର ଟଙ୍କା ଉପାର୍ଜନ କରିବାର ପର୍ଯ୍ୟାପ୍ତ ସୁଯୋଗ ଦେଇଥାଏ । ଲୁହା ପଥର ବିକି ଟଙ୍କା ଉପାର୍ଜନ କରି ରାତାରାତି ଧନୀ ହେବାର ମୋହରେ ମଣିଷ ଏଠି ମତୁଆଲା । ଏଠି ପ୍ରତିମୁହୂର୍ତ୍ତରେ ଜଙ୍ଗଲ କଟା ଚାଲିଛି । ପାହାଡ ଖୋଳା ଚାଲିଛି । ଏହାର ମାଟି, ପାଣି, ପବନରେ ବିଷ ଭରିବା ପ୍ରକ୍ରିୟା ଜାରି ରହିଛି । ଏସବୁ ସତ୍ତ୍ୱେ କେନ୍ଦୁଝରର ଅନୁପମ ପ୍ରାକୃତିକ ଶୋଭାରାଜି ଆଜିର ବ୍ୟସ୍ତବହୁଳ ମଣିଷକୁ ମୁହୂର୍ତ୍ତକ ପାଇଁ ହେଉ

ପଛେ ନିଜ ମୋହରେ ବାନ୍ଧି ରଖିବାରେ ଅସମର୍ଥ ହୋଇନି । କେନ୍ଦୁଝର ଜିଲ୍ଲାର ରାଶିରାଶି ନଭଶ୍ଚୁମ୍ବୀ ପାହାଡମାଳା, କଥାକୁହା ଛଳଛଳ ଝରଣା, ପଲ୍ଲୀଭୂଇଁର ଆଦିବାସୀ ଜନଜୀବନ ଓ ଶାନ୍ତଶୀତଳ ପ୍ରାକୃତିକ ପରିବେଶ ମଣିଷକୁ ମତୁଆଲା କରିଦିଏ । ଦିନ ଥିଲା କେନ୍ଦୁଝର ଜିଲ୍ଲାରେ ଶୀତଦିନେ ପାରଦ ଶୂନ ଡିଗ୍ରୀକୁ ଖସି ଆସୁଥିଲା ଓ ସ୍ଥାନେସ୍ଥାନେ ମୃଦୁ ବରଫପାତ ହେଉଥିଲା । ବର୍ଷା ଦିନେ ଲଗାଣ ବର୍ଷା ସପ୍ତାହ ସପ୍ତାହ ଧରି ବର୍ଷୁଥିଲା । ଯଦିଓ ଆଜି ସେଭଳି ପରିବେଶ ଆଉ ଦେଖିବାକୁ ମିଳେନାହିଁ, ତଥାପି କେନ୍ଦୁଝରର ଶୀତ ଓ ବର୍ଷା ଏବେବି ଉପଭୋଗ୍ୟ । ବିଶେଷକରି ବର୍ଷାଦିନର କେନ୍ଦୁଝରର ଦୃଶ୍ୟ ବେଶ୍ ଅନନ୍ୟ । ବର୍ଷାଦିନେ କେନ୍ଦୁଝର ଜିଲ୍ଲାର ଦିଗନ୍ତବିସ୍ତାରି ପାହାଡମାଳା ଓ ପାହଡକୁ ଲାଗି ରହିଥିବା ମେଘଙ୍କ ଶୋଭା ଦେଖିଲେ ଘଡିଏ ଅଟକିଯିବାକୁ ଇଛା ହୁଏ । କାହିଁ କେଉ ଅନାଦି କାଳରୁ ଠିଆ ହୋଇଥିବା ପାହାଡମାନଙ୍କ ମଥା ଉପର ଦେଇ ଧଳା ମେଘଖଣ୍ଡମାନ ଭାସିଭାସି ଯାଉଥିବାର ଦୃଶ୍ୟ ସତରେ ରୋମାଞ୍ଚକର । ବର୍ଷା ଭିଜା ପାହାଡ, ଶାଳ ଜଙ୍ଗଲ ଖୁବ୍ ସ୍ୱଚ୍ଛ ଓ ନିର୍ମଳ ଲାଗିଥାଏ । ବର୍ଷାଦିନେ ପାହାଡମାନଙ୍କ ମଥାରେ ଶୋଭା ପାଉଥିବା ମେଘଖଣ୍ଡମାନ ସତେଯେମିତି ଜଣେ ନବବିବାହିତା ନାରୀର ମଥାର ପଣତକାନି ଭଳି ମନେ ହୋଇଥାଏ । ବର୍ଷାଦିନିଆ କେନ୍ଦୁଝରର ଝିପିରିଝିପିରି ମେଘ ସାଙ୍ଗକୁ କଳାହାଣ୍ଡିଆ ବାଦଲଢଙ୍କା ଆକାଶ ଆହୁରି ମନମୁଗ୍‌ଧକର । କେନ୍ଦୁଝର ଜିଲ୍ଲାର ବର୍ଷାଦିନିଆ ପର୍ଯ୍ୟଟନକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଯଦିଓ କିଛି ପଦକ୍ଷେପ ଗ୍ରହଣ କରାଯାଇନାହିଁ, ତଥାପି ବର୍ଷାଦିନେ ବହୁ ପର୍ଯ୍ୟଟକ କେନ୍ଦୁଝରର ଏହି ଶୋଭାକୁ ଦେଖିବାକୁ ଆସିଥାନ୍ତି । ଜିଲ୍ଲାର ଗୋନାସିକା ପର୍ବତମାଳା, ଗନ୍ଧମାର୍ଦ୍ଦନ ପର୍ବତମାଳା, ସୀତାବିଞ୍ଜି, କାଞ୍ଜିପାଣି, ଖଣ୍ଡାଧାର ଆଦି ଅନେକ ପର୍ବତମାଳା ଏବେବି କେନ୍ଦୁଝରର ପ୍ରାକୃତିକ ଶୋଭା ବୃଦ୍ଧିରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଗୋଟିଏ ପଟେ ଗନ୍ଧମାର୍ଦ୍ଦନ ପର୍ବତରେ ବସିଥାଏ କ୍ରସର ଓ ଭାଙ୍ଗି ଗୁଣ୍ଡ କରୁଥାଏ ଲୁହାପଥରର ଏହି ବିଶାଳ ପାହାଡକୁ । ଆଉ ଗୋଟିଏ ପାର୍ଶ୍ୱରେ ପାହାଡର ମଥାରେ ଲାଗିଲାଗି ରହିଥାଏ ଖଣ୍ଡଖଣ୍ଡ ଭସା ମେଘ । ସତରେ ପ୍ରକୃତି ଓ ମଣିଷ ମଧ୍ୟରେ କି ବିଚିତ୍ର ସଂଘର୍ଷ ! ବର୍ଷା ଦିନେ କାଞ୍ଜିପାଣି ଘାଟି ରାସ୍ତା ଦେଇ ଅତିକ୍ରମ କରୁଥିବାବେଳେ ଯାତ୍ରୀଟିଏ ତଳକୁ ଚାହିଁଦେଲେ ତା' ଶରୀର ରୋମାଞ୍ଚିତ ହୋଇଉଠେ । ଘାଟି ରାସ୍ତାର ବହୁତ ତଳେ ସେ ଦେଖିଥାଏ ରାଶିରାଶି ପର୍ବତମାଳା ଓ ପାହାଡ ଉପରେ ଲାଖି ରହିଥିବା ଭସା ମେଘବାଦଲ ଖଣ୍ଡର ଅପରୂପ ଶୋଭାରାଜି । କେନ୍ଦୁଝର ସହରରୁ ଜୁଡିଆଘାଟି ଅତିକ୍ରମ କରିବା ପରେ ପଡିଥାଏ ଆକର୍ଷଣୀୟ ସାନଘାଗରା ଓ ବଡଘାଗରା ଜଳପ୍ରପାତ । ଏଠାରେ ଥିବା ରାଶିରାଶି ପର୍ବତମାଳାର ଦୃଶ୍ୟ ବର୍ଷାଦିନେ ବେଶ୍ ମନବୁଝାକର ହୋଇଥାଏ । କେନ୍ଦୁଝର ଜିଲ୍ଲାର ବିଶେଷକରି ବାଂଶପାଳ ବ୍ଲକ୍‌ର ଗୋନାସିକା ପର୍ବତମାଳା, କାଞ୍ଜିପାଣି ଘାଟି ପାର୍ଶ୍ୱର କେଉଁ କ୍ଷେତରେ ବର୍ଷାଦିନେ ଜୁଆଙ୍ଗ ରମଣୀଟି ମକା କିଆରିରୁ ଘାସ ବାଛୁଥିବ, ଜୁଆଙ୍ଗ

ଯୁବକଟି ମୁଣ୍ଡରେ ଛତା ଓ ହାତରେ ବାଡିଖଣ୍ଡେ ଧରି ଗୋରୁପଲ ଜଗିଥିବ ଓ ଝିପିରିଝିପିରି ବର୍ଷାରେ ଜୁଆଙ୍ଗ ଯୁବକ, ଯୁବତୀ ଆନନ୍ଦରେ ଗୀତ ଗାଇ ନାଚି ଯାଉଥିବେ । ସତରେ ଏ ଦୃଶ୍ୟ କେବଳ କେନ୍ଦୁଝର ବ୍ୟତୀତ ଆଉ କେଉଁଠି ଦେଖିବାକୁ ମିଳିବ ନାହିଁ । ବର୍ଷାଦିନିଆ ପର୍ଯ୍ୟଟନର ମଜା ନେବାକୁ ଏ ଅଞ୍ଚଳକୁ ପ୍ରତିବର୍ଷ ବହୁ ସଂଖ୍ୟାରେ ବିଦେଶୀ ପର୍ଯ୍ୟଟକ ଆସୁଥିବାବେଳେ ସରକାର କିମ୍ବା ପର୍ଯ୍ୟଟନ ବିଭାଗ ଏ ଦିଗରେ ସେମିତି କିଛି ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନେଇପାରିନି । ପର୍ଯ୍ୟଟନ ବିଭାଗ ଆହୁରି ସଚେତନ ହୋଇପାରିଲେ ବର୍ଷାଦିନିଆ ପର୍ଯ୍ୟଟନରୁ ଜିଲ୍ଲା ଅଧିକ ରାଜସ୍ୱ ହାସଲ ମଧ୍ୟ କରିପାରିବ ।

## କେନ୍ଦୁଝରର ଶୀତଲହରୀ ଓ ତୁଷାରପାତ

କେନ୍ଦୁଝରରେ କିଭଳି ହାଡଥରା ଶୀତ ଅନୁଭୂତ ହୁଏ ଓ ବରଫପାତ ହୋଇଥାଏ ସେ ସଂପର୍କରେ ପୁରୁଣାକାଳିଆ ଲୋକଙ୍କ ସହ କଥା ହେଲେ ଜଣାପଡେ । ଏକଦା କେନ୍ଦୁଝର ଜିଲ୍ଲା ଶୀତ ଓ ତୁଷାରପାତ ପାଇଁ ସମଗ୍ର ରାଜ୍ୟରେ ନିଜର ପରିଚୟ ସୃଷ୍ଟି କରିଥିଲା । କାଞ୍ଜିପାଣି ଘାଟୀରେ ପ୍ରତିବର୍ଷ ଶୀତ ଋତୁରେ ତୁଷାରପାତ ହୋଇଥାଏ । କାଞ୍ଜିପାଣି ସମେତ କେନ୍ଦୁଝର ଜିଲ୍ଲାର ଗୋନାସିକା, କିରିବୁରୁ, ଯୋଡା, ବଲାଣି ଅଞ୍ଚଳରେ ମଧ୍ୟ ତୁଷାରପାତ ହୋଇଥାଏ । ପ୍ରତିବର୍ଷ ଡିସେମ୍ବର-ଜାନୁୟାରୀ ମାସ ବେଳକୁ ଏସବୁ ଅଞ୍ଚଳରେ ପାରଦ ଶୂନ ଡିଗ୍ରୀକୁ ଖସିଆସେ ଓ ତୁଷାରପାତ ହୁଏ । କାଞ୍ଜିପାଣି ଘାଟି ଓ କିରିବୁରୁ ସମୁଦ୍ରପତନଠାରୁ ସର୍ବାଧିକ ଉଚ୍ଚତାରେ ଅବସ୍ଥିତ ଥିବାରୁ ଏଠାରେ ପ୍ରତିବର୍ଷ ଗଭୀର ଶୀତ ଅନୁଭୂତ ହୋଇଥାଏ । ମାତ୍ର ଜିଲ୍ଲାରେ ବଢି ଚାଲିଥିବା ଶିଳ୍ପାୟନ ଏବେ ଏହି ଶୀତ ଓ ତୁଷାରପାତ ପାଇଁ ବିପଦ ସୃଷ୍ଟି କରିଛି । ବ୍ୟାପକ ଶିଳ୍ପାୟନ ସତ୍ତ୍ୱେ ଏସବୁ ଅଞ୍ଚଳରେ ଏବେ ମଧ୍ୟ ଶୀତର ଭାଉ କମିନି । ମଧ୍ୟ ରାତିରୁ ବଣ ଗଛପତ୍ର ଓ ଘାସ ଉପରେ ତୁଷାର ପଡିବା ସହିତ ବରଫର ଆସ୍ତରଣ ଦେଖିବାକୁ ମିଳିଥାଏ । କେନ୍ଦୁଝର ଜିଲ୍ଲାର ଯୋଡା, ବଲାଣି, କିରିବୁରୁ, କାଞ୍ଜିପାଣିରେ ତାପମାତ୍ରା ୦° ସେଣ୍ଟିଗ୍ରେଡ୍ ହୋଇଯାଏ । ମାତ୍ର ବର୍ତ୍ତମାନ ପରିପ୍ରେକ୍ଷୀରେ ଶିଳ୍ପାୟନ ଓ ପ୍ରଦୂଷଣ ଯୋଗୁଁ ବଦଳୁଥିବା ପରିବେଶ ଏବେ କେନ୍ଦୁଝର ଜିଲ୍ଲା ପାଇଁ ବିପଦର ସୂଚନା ଦେଲାଣି ।

## କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' ୨୧୫ ନମ୍ବର ଜାତୀୟ ରାଜପଥ

ଆପଣ କେବେ କେନ୍ଦୁଝର ଜିଲ୍ଲାକୁ ବୁଲି ଆସିଥିବେ ତ ନିଶ୍ଚୟ ୨୧୫ ନମ୍ବର ଜାତୀୟ ରାଜପଥର ଦୁର୍ଦ୍ଦଶା, ଟ୍ରାଫିକ୍ ଜାମ୍ ଓ ରାତିରାତି ଧରି ରାସ୍ତା ଉପରେ ଅପେକ୍ଷା, ଦୁର୍ଘଟଣା, ବିକ୍ଷୋଭ ଃ ଏ ସମସ୍ତ ଅନୁଭୂତି ବିଷୟରେ ଅବଗତ ଥିବେ । ହଜାର ହଜାର ସଂଖ୍ୟାରେ ଟ୍ରକ୍‌ଗୁଡିକ ରାସ୍ତା ଉପରେ ଅଟକି ରହିବା କାରଣରୁ ଯାତ୍ରୀଟିଏକୁ ରାସ୍ତା ଉପରେ ଦିନଦିନ ଏମିତିକି ରାତିରାତି




କାଟିବାକୁ ପଡିଥାଏ । କେନ୍ଦୁଝର ଜିଲ୍ଲାର 'ଲାଇଫ୍ ଲାଇନ୍' କୁହାଯାଉଥିବା ଏହି ୨୧୫ ନମ୍ବର ଜାତୀୟ ରାଜପଥଟି ଏବେ ଜିଲ୍ଲାର ଦୁଃଖ ପାଲଟିଛି । ଦୈନିକ କୋଟିକୋଟି ଟଙ୍କା ରାଜସ୍ୱ ଆଦାୟ କରି ରାଜ୍ୟ ସରକାରଙ୍କ ଭଣ୍ଡାର ପୂରଣ କରୁଥିବା ଏହି ରାସ୍ତାଟି କେନ୍ଦୁଝରବାସୀଙ୍କ ପାଇଁ

ଅଭିଶାପ ହୋଇଛି । ଏହି ରାସ୍ତା ଓ ରାସ୍ତା ଦେଇ ଚଳାଚଳ କରୁଥିବା ଲୁହାପଥର ବୋଝେଇ ଭାରିଯାନ ଏବେ କେନ୍ଦୁଝରର ଜନଜୀବନକୁ ଅସ୍ତବ୍ୟସ୍ତ କରିଦେଇଛି । ଏହି ୨୧୫ ନମ୍ବର ଜାତୀୟ ରାଜପଥଟି ଯାଜପୁରର ପାଣିକୋଇଲିରୁ ସୁନ୍ଦରଗଡର ରାଜାମୁଣ୍ଡା ପର୍ଯ୍ୟନ୍ତ ଯାଇଛି । ତେବେ ଏହି ରାସ୍ତାର ସିଂହଭାଗ କେବଳ କେନ୍ଦୁଝର ଜିଲ୍ଲା ଦେଇ ଅତିକ୍ରମ କରିଛି କହିଲେ ଠିକ୍ ହେବ । ଯାଜପୁର ଜିଲ୍ଲା ଶେଷ ହେଉହେଉ ଠିକ୍ କେନ୍ଦୁଝର ଜିଲ୍ଲାର ଜର୍ଦ୍ଧା ଛକ ଛୁଉଁଛୁଉଁ ଆରମ୍ଭ ହୋଇଯାଏ ଯାତ୍ରାର ଦୁଃଖ ଓ ଯନ୍ତ୍ରଣା । ଏହି ଯାତ୍ରାକାଳୀନ ଦୁଃଖ ଲାଗିରହେ ଆନନ୍ଦପୁର, ଘଟଗାଁ, ଢେଙ୍କିକୋଟ, କେନ୍ଦୁଝର, ଝୁଂପୁରା, ରିମୁଳି ଦେଇ ଯୋଡାରେ ପହଞ୍ଚିବା ପର୍ଯ୍ୟନ୍ତ । ପ୍ରକୃତରେ, ଏହି ରାସ୍ତାକୁ ଅତିକ୍ରମ କରିବାକୁ ମାତ୍ର ୫ ଘଣ୍ଟା ସମୟ ଲାଗୁଥିବାବେଳେ ଟ୍ରାଫିକ୍ ଜାମ୍ କାରଣରୁ ରାତିରାତି, ଦିନଦିନ ବିତିଯାଏ, ଯାତ୍ରା ସରେନା । ବଡ଼ ଦୟନୀୟ ଏହି ରାସ୍ତାରେ ଯାତ୍ରା କରିବାର ଅନୁଭୂତି । ଏହି ରାସ୍ତାରେ କିଲୋମିଟର ବ୍ୟାପି ହଜାର ହଜାର ଟ୍ରକ୍ ଉଭୟ ପାର୍ଶ୍ୱରେ ଅଟକି ରହିଥିବାର ଦୃଶ୍ୟ ଦେଖିଲେ ମନେ ହୁଏ ପୃଥିବୀ ଆଉ ତାର କକ୍ଷପଥରେ ନ ଘୁରି ଏଇଠି ଅଟକି ଯାଇଛି । ଲାଗେ ଯେମିତି ସମସ୍ତ ଜନଜୀବନ ଏଇଠି ଠପ୍ ହୋଇଯାଇଛି । କେନ୍ଦୁଝର ଜିଲ୍ଲା ଦେଇ ଯାଇଥିବା ଏହି ୨୧୫ ନମ୍ବର ପାଣିକୋଇଲି-ରାଜାମୁଣ୍ଡା ଜାତୀୟ ରାଜପଥଟି ବର୍ତ୍ତମାନ ସମୟର ପୃଥିବୀର ସବୁଠୁ ବ୍ୟସ୍ତବହୁଳ ରାସ୍ତା ବୋଲି କୁହାଯାଉଛି । ଏହାର କାରଣ ଖୁବ୍ ସ୍ପଷ୍ଟ । ଏହି ରାସ୍ତାରେ ଦୈନିକ ୨୦ ହଜାରରୁ ଊର୍ଦ୍ଧ୍ୱ ଲୁହାପଥର ବୋଝେଇ ଟ୍ରକ୍ ଚଳାଚଳ କରୁଥିବାବେଳେ ଦୈନିକ ୧୫ ହଜାରରୁ ଊର୍ଦ୍ଧ୍ୱ ବସ୍, ମିନିବସ୍, ଅନ୍ୟାନ୍ୟ ଚାରିଚକିଆ ଯାନ ଚଳାଚଳ କରିଥାଏ । ମାତ୍ର ରାସ୍ତାଟିର ଅବସ୍ଥା କଥା ଭାବିଲେ ହୋସ୍ ଉଡିଯାଏ । ଦୈନିକ ଏତେ ସଂଖ୍ୟାରେ ମାଲ୍ ବୋଝେଇ ଟ୍ରକ୍ ଚଳାଚଳ କରୁଥିବା ରାସ୍ତାଟିର ଅବସ୍ଥା ଖୁବ୍ ଭଲ ହୋଇଥିବ ବୋଲି ସାଧାରଣ ଲୋକଟିଏ ମନେମନେ ଭାବିବା ସ୍ୱାଭାବିକ । ମାତ୍ର ବାସ୍ତବ ଚିତ୍ର ତାହା ନୁହେଁ । ପ୍ରଥମତଃ ଏହି ରାସ୍ତାଟି ବେଶ୍ ସଂକୀର୍ଣ୍ଣ ଓ ରାସ୍ତାଟିର ବହୁତ ସ୍ଥାନରେ ଛୋଟବଡ଼ ବିପଦପୂର୍ଣ୍ଣ ପୋଲ ରହିଛି । ଏହି ଜାତୀୟ ରାଜପଥଟି ଉପରେ ବେଲବାହାଳୀରେ କୁଶେଇ ନଦୀ ଉପରେ ଥିବା ପୋଲଟି ଏବେ ବିପଦପୂର୍ଣ୍ଣ ଅବସ୍ଥାରେ ରହିଛି । ବହୁ ପ୍ରାଚୀନ ସମୟର ଏହି ପୋଲଟିରେ ଏକ ସମୟରେ ଗୋଟିଏ ମାତ୍ର ଗାଡି ଅତିକ୍ରମ କରୁଥିବା ସମୟରେ ଅନ୍ୟ ଗାଡି ପୋଲଟି ଅପରପାର୍ଶ୍ୱରେ ଅଟକି ରହିଥାଏ । ଖାଲି ବେଲବାହାଳି ପୋଲର ଅବସ୍ଥା ନୁହେଁ । ଆନନ୍ଦପୁର ଅତିକ୍ରମ କରିଗଲେ ଗୋହିରା ନାଳ ଉପରେ ଥିବା ସଂକୀର୍ଣ୍ଣ ପୋଲ, ଢେଙ୍କିକୋଟ ନିକଟସ୍ଥ ସୀତା ନଦୀ ପୋଲ, ମୁଷଳ ନଦୀ ପୋଲ, ଗୋପାଳପୁର ନାଳ ଉପରେ ଥିବା ପତଳା ପୋଲ, ପଦ୍ମପୁର ଏମ୍ଏସପି ପ୍ଲାଣ୍ଟ ନିକଟରେ ଥିବା ବାଙ୍କମାରୁଣି ପୋଲ, ଝୁଂପୁରା ନିକଟସ୍ଥ ଅରଡେଇ ପୋଲ ଓ ଜିଲ୍ଲାର ଅନ୍ୟାନ୍ୟ ବହୁ

ଛୋଟବଡ଼ ପୋଲ ଏବେ ବିପଦପୂର୍ଣ୍ଣ ହୋଇ ପଡିଛି । ଏହି ପୋଲଗୁଡିକରେ ବିଶେଷକରି ଏକ ସମୟରେ ଗୋଟିଏ ମାତ୍ର ଗାଡି ଅତିକ୍ରମ କରିବାକୁ ହୋଇଥାଏ । ଜିଲ୍ଲାରେ ଥିବା ଏହି ବିପଦପୂର୍ଣ୍ଣ ପୋଲଗୁଡିକ ପାଇଁ ଟ୍ରାଫିକ୍ ଜାମ୍ ସମସ୍ୟା ଉତ୍କଟ ରୂପ ଧାରଣ କରିଥାଏ ।

କେନ୍ଦୁଝର ହେଉଛି ଓଡ଼ିଶାର ଏକମାତ୍ର ସହର ଯେଉଠି ଦୁଇଟି ଜାତୀୟ ରାଜପଥ ପରସ୍ପରକୁ ଅତିକ୍ରମ କରିଛନ୍ତି । କେନ୍ଦୁଝର ସହରର ଠିକ୍ ମଧ୍ୟ ଭାଗରେ ୨୧୫ ନମ୍ବର ପାଣିକୋଇଲି-ରାଜାମୁଣ୍ଡା ଜାତୀୟ ରାଜପଥ ଏବଂ ବିଳାସପୁର-ଖଡ଼ଗପୁର ୪୯ ନମ୍ବର ଜାତୀୟ ରାଜପଥ ପରସ୍ପରକୁ ଭେଟିଛନ୍ତି । ଦୁଇଦୁଇଟି ରାଜପଥ ଗୋଟିଏ ସହର ଦେଇ ଯାଇଥିବାରୁ ପରିବହନ ସମସ୍ୟା ସ୍ୱାଭାବିକ ଭାବେ ଉତ୍କଟ ରୂପ ଧାରଣ କରିଛି । ଏବେ ୪୯ ଓ ୨୧୫ ନମ୍ବର ଜାତୀୟ ରାଜପଥ ଦୁଇଟି ମରଣ ଯନ୍ତା ପାଲଟିଛି । ପ୍ରତିଦିନ କେଉଁଠି ନା କେଉଁଠି ଦୁର୍ଘଟଣା ଘଟୁଛି ଓ ଧନଜୀବନ କ୍ଷତି ଘଟୁଛି । ସଡ଼କ ଦୁର୍ଘଟଣାରେ କେନ୍ଦୁଝର ଏବେ ରାଜ୍ୟରେ ବେଶ୍ ଆଗରେ ରହିଛି । ଜିଲ୍ଲାରେ ଗଚ୍ଛିତ ଥିବା ଲୁହାପଥର, ମାଙ୍ଗାନିଜ୍, ଚୂନପଥର, ଡୋଲାମାଇଟ୍, ବକ୍ସାଇଟ୍, କ୍ରୋମାଇଟ୍ ଭଳି ଖଣିଜ ଦ୍ରବ୍ୟକୁ କେନ୍ଦ୍ରକରି ଏଠାକାର ପରିବହନ ସମସ୍ୟା ବିଗିଡି ଯାଇଛି । ପ୍ରଦୂଷଣ ଓ ଜଙ୍ଗଲ କ୍ଷୟ ଏତେ ମାତ୍ରାରେ ବଢିଚାଲିଛି ଯେ ଏକଦା ଖଣିଜ ସଂପଦକୁ ନେଇ ଗର୍ବ କରୁଥିବା କେନ୍ଦୁଝର ଜିଲ୍ଲାବାସୀ ଏହାକୁ ଅଭିଶାପ ବୋଲି ଭାବୁଛନ୍ତି । ଏହି ରାସ୍ତା ଦେଇ ଦୈନିକ ରାଜ୍ୟ ଓ ରାଜ୍ୟ ବାହାରୁ ୨୦,୦୦୦ରୁ ଅଧିକ ଟ୍ରକ୍ ଚଳାଚଳ କରିଥାଏ । ଯୋଡା, ବଡବିଲ, ବଲାଣି, କିରିବୁରୁ, ବାଂଶପାଳର ଗନ୍ଧମାର୍ଦ୍ଦନ ମାଇନ୍‌ସ ଅଞ୍ଚଳରୁ ଦୈନିକ ହଜାରହଜାର ଟ୍ରକ୍ ଲୁହା ପଥର ବାହାରକୁ ଚାଲାଣ ହୋଇଥାଏ । ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ଭାଇଜାଗ୍ ବନ୍ଦରକୁ ଗୁଣ୍ଡ ଲୁହାପଥର (ଫାଇନ୍‌ସ) ଉଠାଣ ହେଉଥିବାରୁ ପ୍ରତିଦିନ ଆନ୍ଧ୍ର ପ୍ରଦେଶରୁ ୫,୦୦୦ରୁ ଅଧିକ ଟ୍ରକ୍ ଗମନାଗମନ କରୁଛି । ଏହାଛଡା କଲିକତାର ହଳଦିଆ ବନ୍ଦରକୁ ଲୁହାପଥର ଉଠାଣ ହେବା କାରଣରୁ ପଶ୍ଚିମବଙ୍ଗର ଟ୍ରକ୍ ମଧ୍ୟ ଏହି ରାସ୍ତା ଦେଇ ଚଳାଚଳ କରୁଛି । ଏହା ସାଙ୍ଗକୁ ଏଠାରେ ଥିବା ଶତାଧିକ ଲୁହା ଶିଳ୍ପ କାରଖାନାକୁ ଦୈନିକ ହଜାର ହଜାର ସଂଖ୍ୟାରେ କୋଇଲା ବୋଝେଇ ଟ୍ରକ୍ ତାଳଚେର, ସୁନ୍ଦରଗଡ, ଝାରସୁଗୁଡାରୁ ଏହି ରାସ୍ତା ଦେଇ ଆସିଥାନ୍ତି । ହିସାବ କଲେ ଜଣାଯାଏ ଦିନକୁ ୩୦,୦୦୦ରୁ ଅଧିକ ଟ୍ରକ୍ ଏହି ରାସ୍ତାର ଛାତି ଉପରେ ମାଡିମକ୍‌ଚି ଧୂଳି, ଧୂଆଁରେ ଭର୍ତ୍ତିକରି ପାର ହୋଇଥାନ୍ତି ।

## କେନ୍ଦୁଝର ଜିଲ୍ଲାର ପ୍ରସିଦ୍ଧ ଟେରାକୋଟା ଶିଳ୍ପ

କେନ୍ଦୁଝର ଜିଲ୍ଲାର ବହୁ ପ୍ରସିଦ୍ଧ ଟେରାକୋଟା ଶିଳ୍ପ ଉପଯୁକ୍ତ ପ୍ରୋତ୍ସାହନ ଅଭାବରୁ ବୁଡିଯିବାକୁ ବସିଛି । ଶିଳ୍ପୀମାନଙ୍କର ନାନା ପ୍ରକାର ସମସ୍ୟା ଓ ଟେରାକୋଟା ଶିଳ୍ପର ଉପଯୁକ୍ତ ବଜାରର



ଅଭାବ କାରଣରୁ ଏହି ଶିଳ୍ପ ପ୍ରତି ଏବେ ବିପଦ ସୃଷ୍ଟି ହୋଇଛି । କେନ୍ଦୁଝର ଓ ଘଟଗାଁ ମଧ୍ୟରେ ରହିଛି ଏକ ସ୍ଥାନ ଯାହାର ନାମ ବାଟହରିଚନ୍ଦନପୁର । ଟେରାକୋଟା ଶିଳ୍ପ ପାଇଁ ଏହି ବାଟ ହରିଚନ୍ଦନପୁର ବେଶ୍ ପ୍ରସିଦ୍ଧି ଅର୍ଜନ କରିପାରିଛି । ସେହିଭଳି କେନ୍ଦୁଝର ସଦର ବ୍ଲକ୍ ଅନ୍ତର୍ଗତ ଟିକରପଡା ଗ୍ରାମଟି ମଧ୍ୟ ଟେରାକୋଟା ଶିଳ୍ପ ପାଇଁ ପ୍ରସିଦ୍ଧିଲାଭ କରିପାରିଛି । ବିକ୍ରିବଟା ନ ହୋଇପାରିବାରୁ ଏହି ଶିଳ୍ପ ଏବେ ବୁଡିଯିବାକୁ ବସିଲାଣି । ବାଟହରିଚନ୍ଦନପୁରରେ ପୂର୍ବରୁ ପାରଂପରିକ ଭାବେ ଏହି ଟେରାକୋଟା କାମ ହୋଇ ଆସୁଥିଲା । ତେବେ ଏହି ଗାଁରେ 'ମା' ତାରିଣୀ ସ୍ୱୟଂ ସହାୟକ ଦଳ' ଗଠନ କରାଯାଇ ଏହି ଗାଁର ସମସ୍ତ କାରିଗର ଏବେ ଆଧୁନିକ ପ୍ରଣାଳୀରେ ଏହି କାମ କରୁଛନ୍ତି, ମାତ୍ର ଉପଯୁକ୍ତ ବଜାରର ଅଭାବ ସହିତ ଅନ୍ୟାନ୍ୟ ଆନୁଷଙ୍ଗିକ ଅସୁବିଧା କାରଣରୁ ଏହି ଶିଳ୍ପୀମାନଙ୍କ ଭବିଷ୍ୟତ ଏବେ ଅନ୍ଧାର ହୋଇଯିବାକୁ ବସିଛି । ଯଦିଓ କେନ୍ଦୁଝର ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ପକ୍ଷରୁ ସେମାନଙ୍କୁ ଏକ ବିପଣୀ ଗୃହ ପ୍ରଦାନ କରାଯାଇଛି, ତାହା ଏତେ ଛୋଟ ଯେ ଏହା କେଉଁ କାମକୁ ଆସୁନି । ଏମାନଙ୍କର ଏହି ମାଟି ମୂର୍ତ୍ତିକୁ ପ୍ରଦର୍ଶିତ କରିବା ପାଇଁ ଏକ ବିରାଟ ଗୃହର ଆବଶ୍ୟକତା ଥିଲାବେଳେ ଏହି ଟୁଙ୍ଗୀ ବିପଣୀ ଗୃହଟି ସେମାନଙ୍କ ପାଇଁ କିଛି ଉପକାରରେ ଆସୁନାହିଁ । ଯଦିଓ ଏହି ଟୁଙ୍ଗୀ ବିପଣୀ ଗୃହ ବାହାରେ ଦିନତମାମ୍ ମୂର୍ତ୍ତିସବୁ ପ୍ରଦର୍ଶିତ ହୋଇଥାଏ ତାହାର ବିକ୍ରି ଖୁବ୍ ନୈରାଶ୍ୟଜନକ ଥାଏ । ତେବେ ଖୁସିର ବିଷୟ ଦୈବାତ୍ ଏହି

ବାଟ ଦେଇ କେନ୍ଦୁଝର ଜିଲ୍ଲାକୁ ଆସୁଥିବା ପର୍ଯ୍ୟଟକମାନେ କିଛି କିଣାକିଣି କରିଥାନ୍ତି । ଏହି ଗାଁର ଶିଳ୍ପୀମାନେ ପୂର୍ବରୁ କୁମ୍ଭାର ଚକ ସାହାଯ୍ୟରେ ମାଟିର ମୂର୍ତ୍ତି କରୁଥିଲେ । ମାତ୍ର ଗତ କିଛି ବର୍ଷ ହେବ ଏମାନେ ଏହି ମୂର୍ତ୍ତିରେ ନାନା ପ୍ରକାର ଆକର୍ଷଣୀୟ ରଂଗ ବ୍ୟବହାର କରିବା ପରେ ଏହାର ଚାହିଦା ବଢିଛି । ଗତ ୧୯୯୫ ମସିହାଠାରୁ ଏହି ଗାଁର କାରିଗରମାନେ ମାଟିରେ ନାନା ପ୍ରକାର ମୂର୍ତ୍ତି ଗଢି ସେଥିରେ ଆକର୍ଷଣୀୟ ରଙ୍ଗ ଦେବାରେ ସକ୍ଷମ ହୋଇଛନ୍ତି । ଏମାନେ ନାନା ପ୍ରକାର ମୂର୍ତ୍ତି ଯଥା- ବଡ଼ବଡ଼ ଫୁଲଦାନି, ଗଣେଶ ମୂର୍ତ୍ତି, ବୁଦ୍ଧ ମୂର୍ତ୍ତି, ଶିବ, ଲକ୍ଷ୍ମୀ, ବିଷ୍ଣୁ, କୃଷ୍ଣ ଆଦି ନାନା ପ୍ରକାର ଦେବଦେବୀଙ୍କ ମୂର୍ତ୍ତି ସାଙ୍ଗକୁ ଘର ସଜେଇବା ଉପକରଣ ମଧ୍ୟ ପ୍ରସ୍ତୁତ କରିଥାନ୍ତି । ମାତ୍ର ଏହାର ଉପଯୁକ୍ତ ବିକ୍ରି ନ ହୋଇପାରିବାରୁ ଏମାନେ ନିଜ ପେଟ ପୋଷିବାକୁ ମଧ୍ୟ ଅକ୍ଷମ ହୋଇ ପଡୁଛନ୍ତି । ଯଦିଓ ଜିଲ୍ଲା ଶିଳ୍ପ କେନ୍ଦ୍ର, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର 'ଓର୍‌ମାସ୍' ଆଦି ସଂସ୍ଥା ଦ୍ୱାରା ରାଜ୍ୟ ମଧ୍ୟରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରଦର୍ଶନୀରେ ଭାଗ ନେଇଥାନ୍ତି ତାହା ସେମାନଙ୍କ ପାଇଁ ଯଥେଷ୍ଟ ନୁହେଁ । ଏହି କାରିଗରମାନେ ସରକାରଙ୍କ ପାଖରୁ କେବଳ ଗାଡି ଭଡା ରିହାତି ପାଇଥାନ୍ତି । ତେବେ ରାଜ୍ୟ ବାହାରକୁ ଯିବାକୁ ଚାହିଁଲେ ଏମାନଙ୍କୁ ସରକାର କୌଣସି ପ୍ରକାର ଆର୍ଥିକ ପ୍ରୋତ୍ସାହନ ଯୋଗେଇ ଦେଇ ନଥାଏ । ଏମାନେ ରାଜ୍ୟର କଟକ, ଭୁବନେଶ୍ୱର, ଅନୁଗୁଳ, ରାଉରକେଲା, କୋରାପୁଟ, ବାଲେଶ୍ୱର, ବାରିପଦା, କେନ୍ଦୁଝର, ଯୋଡା, ବଡ଼ବିଲ ଆଦି ବିଭିନ୍ନ



ସହରରେ ନିଜନିଜର ଜିନିଷ ପ୍ରଦର୍ଶିତ କରିଥାନ୍ତି । ଏଥିରେ ସରକାର ସେମାନଙ୍କୁ ବାଟଖର୍ଚ୍ଚ ମାଗଣାରେ ପ୍ରଦାନ କରିଥାଏ । ମାତ୍ର ଏମାନେ ପଡୋଶୀ ପଶ୍ଚିମବଙ୍ଗର କଲିକତା, ଝାଡଖଣ୍ଡର ଚାଇଁବସା, ଜାମସେଦ୍‌ପୁର, ରାଞ୍ଚି ଆଦି ସହରକୁ ଯିବାକୁ ହେଲେ ସରକାରଙ୍କ ପକ୍ଷରୁ କୌଣସି ଆର୍ଥିକ ସହାୟତା ପ୍ରଦାନ କରାଯାଇ ନଥାଏ ବୋଲି ଗାଁର ବରିଷ୍ଠ ଟେରାକୋଟା ଶିଳ୍ପୀ ଅମରେନ୍ଦ୍ର ସାହୁ ଓ ଭାଗିରଥୀ ସାହୁ ପ୍ରକାଶ କରିଛନ୍ତି । ସରକାର ଏମାନଙ୍କୁ ରାଜ୍ୟ ଭିତରେ ଯେକୌଣସି ଅଞ୍ଚଳରେ ପ୍ରଦର୍ଶନ କରିବାକୁ ହେଲେ ଯାତାୟତ ଖର୍ଚ୍ଚ ପ୍ରଦାନ କରୁଥିବାବେଳେ ରାଜ୍ୟ ବାହାରକୁ ଯିବା ପାଇଁ କିଛି ସହାୟତା ଦେଉ ନାହାନ୍ତି । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ପକ୍ଷରୁ ଏମାନଙ୍କୁ ଏକ ବଡ଼ ଏକ୍‌ଜିବିସନ୍ ହଲ୍ ଯୋଗେଇ ଦେଲେ ମୂର୍ତ୍ତିସବୁର ଭଲ ପ୍ରଦର୍ଶନ ହୋଇପାରନ୍ତା । ଏଠାକୁ ଆସୁଥିବା ଗ୍ରାହକ ଓ ପର୍ଯ୍ୟଟକମାନେ ଏହାକୁ ଦେଖି ଆକର୍ଷିତ ହେବା ସାଙ୍ଗକୁ ଏଥିରୁ କିଣାକିଣି କରନ୍ତେ ବୋଲି ଏହି ଶିଳ୍ପୀମାନେ ପ୍ରକାଶ କରିଛନ୍ତି । ବାଟହରିଚନ୍ଦନପୁରରେ ଏକ ଆକର୍ଷଣୀୟ ପ୍ରଦର୍ଶନ କେନ୍ଦ୍ର ନିର୍ମାଣ କରିବା ସହିତ ପ୍ରଶାସନ ପକ୍ଷରୁ ଏମାନଙ୍କୁ ସେରାମିକ୍ ଟ୍ରେନିଂ ପ୍ରଦାନ କରାଗଲେ ଏହି ଶିଳ୍ପ ଆହୁରି ଅଧିକ ସମୃଦ୍ଧ ହୋଇପାରନ୍ତା ବୋଲି ଶିଳ୍ପୀମାନେ ମତବ୍ୟକ୍ତ କରନ୍ତି ।

## କେନ୍ଦୁଝରର ଧାନ ଶିଳ୍ପ

ଗୋଟି ଧାନକୁ ସଜେଇ ବିଭିନ୍ନ ପ୍ରକାର କାରୁକାର୍ଯ୍ୟ କେନ୍ଦୁଝର ଜିଲ୍ଲାରେ ଦେଖିବାକୁ ମିଳୁଛି । କେନ୍ଦୁଝର ଜିଲ୍ଲାର ବରିଷ୍ଠ ଧାନ କାରିଗର ମୁନା ଦାଶଙ୍କ ଧାନ ନିର୍ମିତ ମୂର୍ତ୍ତି କେନ୍ଦୁଝର ଜିଲ୍ଲାରେ ଏକ ସ୍ୱତନ୍ତ୍ର ପରିଚୟ ହାସଲ କରିପାରିଛି । କେବଳ ମୁନା ଦାଶ ନୁହଁନ୍ତି ବରଂ ମୁନା ଦାଶଙ୍କ ଭଳି ଶହ ଶହ ଶିଳ୍ପୀ ଧାନକୁ ନେଇ ବିଭିନ୍ନ ପ୍ରକାର କାରୁକାର୍ଯ୍ୟ ପ୍ରସ୍ତୁତ କରି ନିଜର ପାରଦର୍ଶିତା ଲାଭ କରିପାରିଛନ୍ତି । ଘଟଗାଁର ତାରିଣୀ ମନ୍ଦିର ନିକଟରେ ଧାନ ନିର୍ମିତ ତାରିଣୀଙ୍କ ମୂର୍ତ୍ତି ଦେଖିଲେ ଏ ଅଞ୍ଚଳର ଧାନ ଶିଳ୍ପ କେତେ ସମୃଦ୍ଧ ତାହା ଜଣାପଡେ । ଶିଳ୍ପୀ ମୁନା ଦାଶଙ୍କ ନିଜ ଘର ଘଟଗାଁରେ ହୋଇଥିବାବେଳେ ସେ ରାଜ୍ୟର ବିଭିନ୍ନ ସ୍ଥାନରେ ଏହି ଧାନ ମୂର୍ତ୍ତି ନିର୍ମାଣ କରି ବିଭିନ୍ନ ସ୍ଥାନରୁ ଉଚ୍ଚ ପ୍ରଶଂସିତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି । ବିଶେଷକରି ଘଟଗାଁ ମା' ତାରିଣୀଙ୍କ ଚୈତ୍ର ଯାତ୍ରା ସମୟରେ ଶିଳ୍ପୀ ମୁନା ଦାଶ ପ୍ରତିବର୍ଷ ମା' ତାରିଣୀଙ୍କର ବିଶାଳ ମୂର୍ତ୍ତି ନିର୍ମାଣ କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । ତାଙ୍କ ଭଳି ଜଣେ ଗ୍ରାମାଞ୍ଚଳର ଶିଳ୍ପୀଙ୍କୁ ରାଜ୍ୟ ସରକାର ଉପଯୁକ୍ତ ପ୍ରୋତ୍ସାହନ ଯୋଗେଇ ଦେଲେ ରାଜ୍ୟ କାହିଁକି ସମଗ୍ର ଦେଶରେ ମୁନା ଦାଶ ସୁନାମ ଅର୍ଜନ କରିପାରିବେ ବୋଲି କେନ୍ଦୁଝରବାସୀ ମତ ପ୍ରକାଶ କରିଛନ୍ତି ।

# ବିଶ୍ୱ ବଜାରରେ କେନ୍ଦୁଝରର ଖଡ଼ିପଥର ମୂର୍ତ୍ତି



କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଧକୋଠାର ଖଡ଼ି ପଥର ଖୋଦେଇ କାମ ଏବେ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି । ମାତ୍ର ଦୁର୍ଭାଗ୍ୟ, ଏହି ଶିଳ୍ପକଳା ସଂପର୍କରେ ରାଜ୍ୟ କଥା ଦୂରେ ଥାଉ ଖୋଦ୍ କେନ୍ଦୁଝରର ଅଧିକାଂଶ ଲୋକ ମଧ୍ୟ ଜାଣନ୍ତି ନାହିଁ । ଆପଣ ଘଟଗାଁ ମା' ତାରିଣୀ ଦର୍ଶନରେ ଆସୁଥିଲେ ବାଟରେ ଏହି ପଥର ମୂର୍ତ୍ତି ନିର୍ମାଣ କରାଯାଉଥିବାର ଦୃଶ୍ୟ ଦେଖିବାକୁ ପାଇବେ । ପଥର ଉପରେ ନିହାଣର ଠକ୍‌ଠକ୍ ଶବ୍ଦରେ ସମଗ୍ର ଅଞ୍ଚଳରେ ଏକ ଭିନ୍ନ ବାତାବରଣ ସୃଷ୍ଟି





କରିଥାଏ । ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଧକୋଠା ଅଞ୍ଚଳରେ ପାଖାପାଖି ୩୦୦ରୁ ଊର୍ଦ୍ଧ୍ୱ ଶିଳ୍ପୀ ପରିବାର ଏହି କାମ ଉପରେ ନିର୍ଭର କରି ନିଜର ଗୁଜୁରାଣ ମେଣ୍ଟେଇଥାନ୍ତି । ଏହି ଶିଳ୍ପୀମାନେ ନିଜର ଦିନ ରାତି ଏକତ୍ର କରି ଖଡ଼ି ପଥର ଖୋଦେଇ ଶିଳ୍ପକୁ ସମୃଦ୍ଧ କରିବାରେ ସହାୟକ ହୋଇପାରିଛନ୍ତି । ଏଠାକାର ଶିଳ୍ପୀ ଓ କାରିଗରମାନେ ସ୍ଥାନୀୟ ଅଞ୍ଚଳରୁ ମିଳୁଥିବା ଖଡି ପଥରକୁ ବ୍ୟବହାର କରି ସୁନ୍ଦର ସୁନ୍ଦର ଆକର୍ଷଣୀୟ ମୂର୍ତ୍ତିମାନ ନିର୍ମାଣ କରି ପାରନ୍ତି । ଧକୋଠାର ଏହି ଖଡ଼ିପଥର ମୂର୍ତ୍ତି ରାଜ୍ୟ ତଥା ରାଜ୍ୟ ବାହାରେ ବେଶ୍ ପ୍ରସିଦ୍ଧିଲାଭ କରିପାରିଛି । ଘଟଗାଁ ତାରିଣୀ ଦର୍ଶନରେ ଆସୁଥିବା ଭକ୍ତ ଓ ପର୍ଯ୍ୟଟକମାନେ ଏଠାରୁ ମୂର୍ତ୍ତି କିଣି ନିଜନିଜ ଅଞ୍ଚଳକୁ ନେଇଥାନ୍ତି । ଘଟଗାଁ ଓ ଘସିପୁରା ମଧ୍ୟରେ ୨୧୫ ନମ୍ବର ଜାତୀୟ ରାଜପଥର ପାର୍ଶ୍ୱରେ ରହିଛି ଏହି ଧକୋଠା ଗ୍ରାମ । ଧକୋଠାରେ ଖଡି ପଥର ଶିଳ୍ପର ବିକାଶ, ପ୍ରସାର ନିମନ୍ତେ ପାଖାପାଖି ଦଶଗୋଟି ପଥର ଶିଳ୍ପୀମାନଙ୍କର ସମିତି କାର୍ଯ୍ୟ କରୁଛି । ଏଠାକାର ଶିଳ୍ପୀଙ୍କ ଦ୍ୱାରା ପଥରରେ ନିର୍ମିତ ହାତୀ, ରାଧାକୃଷ୍ଣ, ଗଣେଷ, କାର୍ତ୍ତିକେୟ, ଶିବ-ପାର୍ବତୀ, ନଟରାଜ, ବୁଦ୍ଧ, କନ୍ଦର୍ପ, ଆଦିବାସୀ ଲଳନା, ତାରିଣୀଙ୍କ ମୂର୍ତ୍ତି ସମେତ ବିଭିନ୍ନ ମହାପୁରୁଷଙ୍କ ମୂର୍ତ୍ତି, ଘରକରଣା ସାମଗ୍ରୀର ବେଶ୍ ଚାହିଦା ରହିଛି । ଅଧିକାଂଶ ଶିଳ୍ପୀ ପଥର ମୂର୍ତ୍ତି ତିଆରି କରି ସମବାୟ ସମିତି ମାଧ୍ୟମରେ ବିକ୍ରି କରିଥାନ୍ତି । ପଥରକୁ କାଟି ଏହା ଉପରେ ପେନ୍‌ସିଲରେ ବିଭିନ୍ନ ଆକୃତିର ଚିତ୍ର ଆଂକିବା ପରେ ପଥରକୁ 'ଘୁମାଦି'ରେ ମୂର୍ତ୍ତିର ଆକାର ଦିଆଯାଇଥାଏ । ଶେଷରେ ଏହାକୁ ଚିକ୍କଣ କରି ସଂପୂର୍ଣ୍ଣ ମୂର୍ତ୍ତିଟିଏ

ନିର୍ମାଣ କରାଯାଇଥାଏ । ରାଜ୍ୟ ତଥା ରାଜ୍ୟ ବାହାରେ ବଡ଼ବଡ଼ ପାର୍କ, ହୋଟେଲ୍, ଲଜ୍, ଅଡିଟୋରିୟମ୍ ଓ ମନ୍ଦିରମାନଙ୍କ ପାଇଁ ମଧ୍ୟ ଏଠାକୁ ମୂର୍ତ୍ତି ନିର୍ମାଣ ପାଇଁ ଅର୍ଡର ଆସିଥାଏ । କଟକ, ଭୁବନେଶ୍ୱର, ଦିଲ୍ଲୀ, ମୁମ୍ବାଇ, ଚେନ୍ନାଇ ଭଳି ମହାନଗରୀମାନଙ୍କୁ ଏଠାରୁ ବହୁ ପରିମାଣରେ ମୂର୍ତ୍ତି ନିର୍ମିତ ହୋଇ ଚାଲାଣ ହୋଇଥାଏ । ଏହା ବ୍ୟତୀତ ଏହି ମୂର୍ତ୍ତି ଲଣ୍ଡନ, ଆମେରିକା ଭଳି ବିଦେଶକୁ ଯାଉଥିବା କଥା ଧକୋଠାର ଶିଳ୍ପୀମାନେ ପ୍ରକାଶ କରିଛନ୍ତି । ସବୁଠୁ ଦୁର୍ଭାଗ୍ୟଜନକ ବିଷୟ, ଦେଶ ତଥା ଦେଶ ବାହାରେ ଖୁବ୍ ନାଁ କରିଥିବା ଏହି ଖଡି ପଥର ଶିଳ୍ପକୁ ଯେଉଁମାନେ ବଞ୍ଚାଇ ରଖିଛନ୍ତି, ସେମାନଙ୍କ ପେଟ ଚାଖଣ୍ଡ ପୂରଣ ହେବା ଏବେ କଷ୍ଟକର ହୋଇପଡିଛି । କଠିନ ପରିଶ୍ରମ କରିବା ସତ୍ତ୍ୱେ ଏହି ଶିଳ୍ପୀମାନଙ୍କୁ ଉପଯୁକ୍ତ ପାରିଶ୍ରମିକ ମିଳୁ ନଥିବାରୁ ଶିଳ୍ପୀମାନେ ଏହି ଶିଳ୍ପ ପ୍ରତି ବିମୁଖ ହୋଇ ପଡିଲେଣି । ଅପରପକ୍ଷେ, ଅର୍ଥାଭାବରୁ ବହୁ ପଥର ଶିଳ୍ପୀ ନିଜର ଏହି କୌଳିକ ବୃତ୍ତିକୁ ଛାଡି କାମଧନ୍ଦା ଅନ୍ୱେଷଣରେ ସୁରାଟ, ମୁମ୍ବାଇ, ଦିଲ୍ଲୀ ଚାଲି ଯାଉଛନ୍ତି ବୋଲି ଏଠାକାର ଜଣେ ଶିଳ୍ପୀ ସୁରେଶ ପଲେଇ କହନ୍ତି । ଅପରପକ୍ଷେ, ଏଠାରେ କାର୍ଯ୍ୟରତ 'ଗଣପତି ଷ୍ଟୋନ୍ କାର୍ଭିଂ ୟୁନିଟ୍'ର ମୁଖ୍ୟ ଯୁବ ଶିଳ୍ପୀ ହିମାଂଶୁ ରଂଜନ ସାହୁ ଯୁକ୍ତ ଦୁଇ ପାଠ ପଢିବା ପରେ ଏହି ଶିଳ୍ପକୁ ନିଜର ପେଶା ଭାବେ ଗ୍ରହଣ କରି ନେଇଛନ୍ତି । ମାତ୍ର, ଏଥିରେ ପେଟ ପୋଷିବା ବହୁ କଷ୍ଟକର ହୋଇ ପଡୁଛି ବୋଲି ହିମାଂଶୁ କହନ୍ତି । ସରକାରଙ୍କ ପକ୍ଷରୁ କୌଣସି ପ୍ରୋତ୍ସାହନ ମିଳୁନାହିଁ ।



କେବଳ ଯାହା ଜିଲ୍ଲା ଶିଳ୍ପ କେନ୍ଦ୍ର ପକ୍ଷରୁ ବେଳେବେଳେ ଡିଜାଇନ୍ ଡେଭ୍‌ଲପ୍‌ମେଣ୍ଟ ଟ୍ରେନିଂ ଦିଆଯାଉଛି, ନହେଲେ ଆଉ କୌଣସି ସୁବିଧା ସୁଯୋଗ ସରକାରଙ୍କ ପକ୍ଷରୁ ମିଳୁନାହିଁ ବୋଲି ହିମାଂଶୁ ଦୁଃଖର ସହ ପ୍ରକାଶ କରନ୍ତି । ଏହି ମୂର୍ତ୍ତିସବୁକୁ ନିଜ ଉଦ୍ୟମରେ ଦେଶବିଦେଶରେ ମାର୍କେଟିଂ କରାଯାଉଛି । ସରକାରଙ୍କ ପକ୍ଷରୁ ଏଥିନେଇ କୌଣସି ସହାୟତା ମିଳୁନାହିଁ ବୋଲି ହିମାଂଶୁ ଦୁଃଖର ସହ ପ୍ରକାଶ କରିଛନ୍ତି । କେନ୍ଦୁଝର ଜିଲ୍ଲାର ଯୋଡା-ବଡ଼ବିଲ୍ ଅଞ୍ଚଳରୁ ଏହି ଖଡ଼ି ପଥର ଆଣି ଏଠାରେ ମୂର୍ତ୍ତି ଖୋଦେଇ

କରାଯାଏ । ଗୋଟିଏ ମଧ୍ୟମ ଆକାରର ମୂର୍ତ୍ତି ତିଆରି କରିବାକୁ ପାଖାପାଖି ପନ୍ଦର ଦିନ ଲାଗିଯାଏ ଏବଂ ଏହି ମୂର୍ତ୍ତି ବଜାରରେ ଆଠ ଶହରୁ ହଜାରେ ଟଙ୍କା ମଧ୍ୟରେ ବିକ୍ରି ହୋଇଥାଏ ବୋଲି ହିମାଂଶୁ କହିଲାବେଳେ ତାଙ୍କର ଦୁଃଖଯନ୍ତ୍ରଣା ସ୍ପଷ୍ଟ ପଢି ହୋଇ ପାରୁଥିଲା । ଯେଉଁ ବାରଶ' ବଢେଇଙ୍କ ଲୁହ ଓ ଲହୁରେ କୋଣାର୍କ ପ୍ରତିଷ୍ଠିତ, ଆଜି ତାହା ବିଶ୍ୱଐତିହ୍ୟରେ ସ୍ଥାନ ପାଇବା ପରେ ଆମେ ସେମାନଙ୍କ ଦୁଃଖକୁ ଆମେ ଭୁଲିଯାଉ । ଠିକ୍ ସେହିଭଳି ଯେଉଁମାନଙ୍କ ହାଡ଼ଭଙ୍ଗା ଖଟଣିରେ ଏକ ବୃହତ୍ କଦାକାର ପଥରରୁ ଏକ ଅନୁପମ ମୂର୍ତ୍ତିଟିଏ ଫୁଟି ଉଠିଥାଏ, ସରକାର ସେମାନଙ୍କ ପେଟର ଦୁଃଖ ଓ ଭୋକର ଜ୍ୱାଳାକୁ ଭୁଲି ଯାଆନ୍ତି ।

## କେନ୍ଦୁଝର ପ୍ରସିଦ୍ଧ 'ଫୁଲବଡ଼ି'



ରାଜ୍ୟ କାହିଁକି ସମଗ୍ର ଦେଶରେ 'କେନ୍ଦୁଝର ଫୁଲବଡ଼ି'ର ଏକ ନିଆରା ଚାହିଦା ରହିଛି । ଫୁଲବଡ଼ି ବ୍ୟବସାୟ ଜିଲ୍ଲାର ଅନ୍ୟତମ କୁଟୀର ଶିଳ୍ପର ମାନ୍ୟତା ଲାଭ କରିପାରିଛି । କେନ୍ଦୁଝରର ଏହି ଫୁଲବଡ଼ି ହିଁ ଏଠାକାର ପରିଚୟ ଏବଂ ଏଠାକୁ କେହି ଅତିଥି, ବହିରାଗତ ଆସିଲେ ସେମାନଙ୍କୁ ଫୁଲବଡ଼ି ଉପହାରସ୍ୱରୂପ ପ୍ରଦାନ କରାଯାଇଥାଏ । ଅନ୍ୟପକ୍ଷରେ କେନ୍ଦୁଝର ଜିଲ୍ଲାର ଭଲ ବିରି ହିଁ

ଏହି ବଡ଼ିର ଉତ୍କର୍ଷତା ପାଇଁ ମୁଖ୍ୟତଃ ଦାୟୀ । ତେବେ ଦିନକୁ ଦିନ ବିରି ଓ ରାଶି ଦର ବଢୁଥିବାରୁ ଏହା ବଡ଼ି ଶିଳ୍ପ ପ୍ରତି ବିପଦ ସୃଷ୍ଟି କରିଛି । କେନ୍ଦୁଝର ଜିଲ୍ଲାରେ ବଡି ହିଁ କୁଟୀର ଶିଳ୍ପର ମାନ୍ୟତା ହାସଲ କରିଛି । ପୂର୍ବରୁ ପାରଂପରିକ ଭାବେ ପ୍ରସ୍ତୁତ କରାଯାଉଥିବାବେଳେ ବର୍ତ୍ତମାନ ଏଥିରେ ନୂତନ ଜ୍ଞାନକୌଶଳ ପ୍ରୟୋଗ କରାଯାଇ ଆଧୁନିକ ପ୍ରଣାଳୀରେ ପ୍ରସ୍ତୁତ କରାଯାଉଛି । କେନ୍ଦୁଝର ସହରର ଆଟପୁର ଓ ପୁରୁଣାବଜାରରେ ଏହି ଫୁଲ ବଡ଼ି ପ୍ରସ୍ତୁତି ଏକ କୁଟୀର ଶିଳ୍ପର ମାନ୍ୟତା ହାସଲ କରିପାରିଛି । ଏଠାରେ ଘରେ ଘରେ ମହିଳାମାନେ ଫୁଲ ବଡ଼ି ପ୍ରସ୍ତୁତ କରି ବଜାରରେ ବିକ୍ରି କରିଥାନ୍ତି । ଏହାବ୍ୟତୀତ ଜିଲ୍ଲାର ଅଧିକାଂଶ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ବଡ଼ି ତିଆରି କରି ଦେଶବିଦେଶକୁ ପଠେଇ ବେଶ୍ ଦି' ପଇସା ଅର୍ଜନ କରିପାରୁଛନ୍ତି । ବଡ଼ି ପ୍ରସ୍ତୁତି ପ୍ରତି ମହିଳାମାନଙ୍କର ଆଗ୍ରହ ବୃଦ୍ଧି ପାଉଥିବା ଯୋଗୁଁ ଜିଲ୍ଲାର ପ୍ରତି ଗ୍ରାମରେ ଏବେ ବିରିପେଶା କଳ ମଧ୍ୟ ବସିଲାଣି । ବଡ଼ି ପ୍ରସ୍ତୁତିରେ ବିଶେଷକରି କଞ୍ଚାମାଲ୍ ଭାବେ ବିରି, ରାଶି, ରସୁଣ, ଲଙ୍କା, ଅଦା ଆଦି ବ୍ୟବହାର କରାଯାଏ । କେନ୍ଦୁଝର ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ମିଳୁଥିବା କଳାବିରି, ପେଜୁଆ ବିରି, ଶାଗୁଆ ବିରି ଏହି ବଡି ପାଇଁ ବ୍ୟବହାର କରାଯାଏ । ତେବେ ବିରି, ରାଶି, ରସୁଣର ଦର ବୃଦ୍ଧି ଯୋଗୁଁ ବଡ଼ି ଦର ମଧ୍ୟ ସମମାତ୍ରାରେ ବୃଦ୍ଧି ପାଇଛି । ଗତ ୫ ବର୍ଷ ତଳେ ବଡି କିଲୋ ପ୍ରତି ୫୦ରୁ ୬୦ ଟଙ୍କାରେ ମିଳୁଥିବାବେଳେ ଏବେ ଏହା ୧୫୦ରୁ ୨୦୦ ଟଙ୍କାରେ ପହଞ୍ଚିଲାଣି । କେନ୍ଦୁଝରର ବଡ଼ି ବୁଝିଲେ ମୁଖ୍ୟତଃ ଦୁଇପ୍ରକାରର; ଫୁଲବଡ଼ି ଓ କଖାରୁ ବଡ଼ି । ବର୍ତ୍ତମାନ ଫୁଲବଡ଼ିର ବଜାର ଦର କିଲୋପ୍ରତି ୧୪୦ ଟଙ୍କା ଥିଲାବେଳେ କଖାରୁବଡ଼ିର କିଲୋ ପ୍ରତି ୧୬୦ ଟଙ୍କା ରହିଛି ।

**ଫୁଲବଡ଼ିର ପ୍ରସ୍ତୁତି ପ୍ରଣାଳୀ:** ବଡ଼ି ପ୍ରସ୍ତୁତି ହେବାର ଗୋଟିଏ ଦିନ ପୂର୍ବରୁ ବିରିକୁ ପାଣିରେ ବତୁରେଇ ଦିଆଯାଏ । ଏହାପରେ ଚୋପା ଛଡେଇ ଗ୍ରାଇଣ୍ଡିଂ କରି ଏକ ସୁନ୍ଦର ପେଷ୍ଟ୍ କରାଯାଏ । ଏହି ବିରି ପେଷ୍ଟରେ ରସୁଣ, ଲଙ୍କା, ଅଦା ମଧ୍ୟ ମିଶାଯାଇଥାଏ । ଏହି ବିରି ପେଷ୍ଟକୁ ମହିଳାମାନେ ନିଜ ହାତରେ ଫେଣାନ୍ତି । ଏହି ଫେଣେଇବା ପ୍ରକ୍ରିୟା ହେଉଛି ବଡ଼ି ପ୍ରସ୍ତୁତିର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗ । ବିରି ଫେଣା ଉପରେ ବଡ଼ିର ମୁସ୍‌ମୁସ୍ ପଣ ନିର୍ଭର କରିଥାଏ । ଫେଣେଇବା ପରେ ବଡ଼ି ପରାଯାଏ । ଏକ ସଫା କପଡା ଉପରେ ପରସ୍ତପରସ୍ତ ରାଶି ବିଛାଯାଏ ଏବଂ ଏହି ରାଶି ଉପରେ ବଡ଼ି ପରାଯାଏ । ଜିଲାପି ଛାଣିଲା ପରି କପଡାର କଣା ଦେଇ ବଡ଼ି ପରାଯାଏ । କେନ୍ଦୁଝରର ପୁରୁଣା ବଜାର, ଆଟପୁରରେ ଘରେ ଘରେ ମହିଳାମାନେ ବଡ଼ି ପାରୁଥିବାର ଦୃଶ୍ୟ ଦେଖିଲେ ଏଠାକାର ମହିଳା କିଭଳି ସ୍ୱାବଲମ୍ବୀ ସେ ସଂପର୍କରେ ଏକ ଧାରଣା ଜାତ ହୁଏ । ପ୍ରାୟ ଦୁଇ ଦିନ ଖରାରେ ଶୁଖେଇଲା ପରେ ବଡ଼ି ପ୍ରସ୍ତୁତ ହୋଇଯାଏ । ଏହାକୁ ପଲିଥିନ୍‌ରେ ପ୍ୟାକିଂ କରି ବଜାରକୁ ଛଡାଯାଇଥାଏ ।

# କେନ୍ଦୁଝର ଜିଲ୍ଲା ଫକୀରପୁରର ଟସର ଶିଳ୍ପ



ହସ୍ତତନ୍ତ (ଟସର ଶିଳ୍ପ) ପାଇଁ କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଆନନ୍ଦପୁର ଉପଖଣ୍ଡର ଫକୀରପୁର ଗ୍ରାମଟି ସମଗ୍ର ରାଜ୍ୟରେ ଏକ ବିଶେଷ ପରିଚୟ ସୃଷ୍ଟି କରିପାରିଥିଲା । ଫକୀରପୁରର ପାଟ ଶାଢୀ, ମଠା ବସ୍ତ୍ର, ପଟିଆ ଚାଦର, ବ୍ରହ୍ମକାମିନୀ ଚାଦର ସମଗ୍ର ରାଜ୍ୟ ତଥା ରାଜ୍ୟ ବାହାରେ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଥିଲା । ଏବେ ବି ଏହି ପାରଂପରିକ ବସ୍ତ୍ରର ଆଦର କମିନାହିଁ । ଫକୀରପୁର ଗ୍ରାମର ବୁଣାକାରମାନେ ବସ୍ତ୍ର ବୟନ ପାଇଁ କଞ୍ଚାମାଲ୍ ଭାବେ ଟସର ବ୍ୟବହାର କରିଥାନ୍ତି । ମାତ୍ର, କଞ୍ଚାମାଲ୍ ସ୍ୱରୂପ ଟସର ଓ ସରକାରଙ୍କ ପ୍ରୋତ୍ସାହନର ଅଭାବ କାରଣରୁ ଆଜି ଏହି ଗାଁର ବୁଣାକାରମାନଙ୍କ ଦୁର୍ଦ୍ଦଶା କହିଲେ ନସରେ । କୁଟୀର ଓ ହସ୍ତତନ୍ତ ଶିଳ୍ପର ବିକାଶ ପାଇଁ ସରକାର ନାନା ପ୍ରକାର ଯୋଜନା ପ୍ରସ୍ତୁତ କରୁଥିଲେ ମଧ୍ୟ କେନ୍ଦୁଝରର ବୟନ ଶିଳ୍ପ ଆଜି ରୁଗ୍ଣ ହୋଇଯାଇଛି । ତେବେ ଉପଯୁକ୍ତ ପ୍ରୋତ୍ସାହନ ଅଭାବରୁ ଫକୀରପୁର ଗ୍ରାମର ଅଧିକାଂଶ ବୁଣାକାର ନିଜର କୌଳିକ ବୃତ୍ତି ଛାଡି ବାହାରକୁ ଚାକିରି ବାକିରି କରିବାକୁ ଚାଲି ଯାଉଥିବା ଲକ୍ଷ୍ୟ କରାଯାଉଛି । ବ୍ୟବହାର ଅଭାବରୁ ଏହି ଗାଁରେ ଥିବା ହସ୍ତତନ୍ତ ଶିଳ୍ପ ମେସିନ୍‌ଗୁଡିକ ଏବେ ଅକାମୀ ହୋଇପଡୁଥିବା ଦେଖାଯାଉଛି । ଅତୀତରେ ଏହି ଗାଁରେ ବୁଣାକାରମାନଙ୍କୁ ନେଇ ହସ୍ତତନ୍ତ ସୋସାଇଟି ଗଠନ କରାଯାଇଥିଲା । ଏହି ସୋସାଇଟି ମାଧ୍ୟମରେ ଫକୀରପୁରରେ ଅନେକ ଶାଢି ଦୋକାନ ମଧ୍ୟ ରହିଛି । ଏଠାରେ ପ୍ରସିଦ୍ଧ ଫକୀରପୁର ପାଟ, ମଠା, ପଟିଆ ଚାଦର ବିକ୍ରି କରାଯାଇଥାଏ । ବୁଣାକାରମାନଙ୍କୁ ଉନ୍ନତମାନର କଞ୍ଚାମାଲ୍ ଯୋଗେଇବା, ଉତ୍ପାଦନ ସାମଗ୍ରୀକୁ ବଜାରରେ ବିକ୍ରି କରିବା, ବୁଣାକାରଙ୍କୁ ଆଧୁନିକ ପ୍ରଣାଳରେ ତାଲିମ୍ ପ୍ରଦାନ କରିବା ଉଦ୍ଦେଶ୍ୟରେ ୧୯୮୫ ମସିହାରେ

ରାଜ୍ୟ ସରକାରଙ୍କ ଉଦ୍ୟମରେ ଫକୀରପୁର ଗ୍ରାମରେ ଚାରୋଟି ହସ୍ତତନ୍ତ ସୋସାଇଟି ଗଠନ କରାଯାଇଥିଲା । ମାତ୍ର, ଗତ କିଛି ବର୍ଷ ଧରି ସରକାରଙ୍କ ପ୍ରୋତ୍ସାହନ ଅଭାବରୁ ଏହି ସମବାୟ ସମିତିଗୁଡିକ ଏବେ ରୁଗ୍ଣ ହୋଇପଡିଛି । ଜିଲ୍ଲାର ଢେଙ୍କୋଟର ଟସର ସୋସାଇଟି ଫକୀରପୁର ଗ୍ରାମର ବୁଣାକାରମାନଙ୍କୁ କଞ୍ଚାମାଲ୍ ଯୋଗେଇଥାଏ । ମାତ୍ର, ଏବେ ଆବଶ୍ୟକ ପରିମାଣର ଟସର ମିଳୁ ନଥିବାରୁ ଏହି ଶିଳ୍ପ ପ୍ରତି ବିପଦ ଦେଖାଦେଇଛି । ସୂଚନାଯୋଗ୍ୟ, ଆଜିକୁ ଚାରି ଶହ ବର୍ଷ ତଳେ ପଶ୍ଚିମବଙ୍ଗର ବର୍ଦ୍ଧମାନର କିଛି ବୁଣାକାର ଫକୀରପୁରରକୁ ଚାଲି ଆସି ଏଠାରେ ହସ୍ତତନ୍ତ ଶିଳ୍ପ ବୃତ୍ତି ଆରମ୍ଭ କରିଥିଲେ । ସେବେଠୁ ଫକୀରପୁରର ଏହି ଟସର ଶିଳ୍ପ ପାରଂପରିକ ଭାବେ ଚାଲି ଆସୁଛି ।

## କଣ୍ଢେଇ ନାଚ ଓ ଗୁରୁ ମାଗୁଣୀ କୁଅଁର



କେନ୍ଦୁଝରର ବାଡ଼ି କଣ୍ଢେଇ ନାଚ ଓ ଗୁରୁ ମାଗୁଣୀ କୁଅଁରଙ୍କୁ କିଏ ନ ଜାଣେ? ସମଗ୍ର ବିଶ୍ୱରେ ବିରଳ ପରଂପରାର ପ୍ରତୀକ କେନ୍ଦୁଝରର ଏହି ବାଡ଼ି କଣ୍ଢେଇ ନାଚ ପ୍ରୋତ୍ସାହନ ଅଭାବରୁ ବିଲୁପ୍ତ ହୋଇଯିବାକୁ ବସିଛି । କେବଳ ଗୁରୁ ମାଗୁଣୀ କୁଅଁରଙ୍କ ଅକ୍ଳାନ୍ତ ପରିଶ୍ରମ ଓ ନିଷ୍ଠା ଯୋଗୁଁ ଆଜି ଏହି କଣ୍ଢେଇ ନାଚ ପରଂପରା ବଞ୍ଚି ରହିଛି । ସମଗ୍ର ଓଡ଼ିଶାର ଲୋକନାଟ୍ୟ ପରଂପରାରେ କଣ୍ଢେଇ ନାଚର ଏକ ନିଆରା ଗୁରୁତ୍ୱ ରହିଛି । ସମଗ୍ର ବିଶ୍ୱରେ ହାତ କଣ୍ଢେଇ, ଛାୟା କଣ୍ଢେଇ, ବାଡ଼ି




କଣ୍ଢେଇ, ସୂତା କଣ୍ଢେଇ ଆଦି ଚାରି ପ୍ରକାରର କଣ୍ଢେଇ ନାଚ ରହିଥିବାବେଳେ କେନ୍ଦୁଝରର ବାଡ଼ି କଣ୍ଢେଇ ନାଚର ନିଆରା ଗୁରୁତ୍ୱ ରହିଛି । ଛାୟା କଣ୍ଢେଇ ରାବଣ ଛାୟା ନାମରେ ଓଡ଼ିଶାରେ ପ୍ରସିଦ୍ଧିଲାଭ କରିଛି । ଢେଙ୍କାନାଳ ଜିଲ୍ଲାର ଓଡଶ ଗ୍ରାମରେ ଏହାର ବିକାଶ ଘଟିଥିଲା । ଏଥିରେ





ମୃଗ, କୁଟ୍ରା ଓ ସମ୍ବର ଚମଡାରେ ନିର୍ମିତ କଣ୍ଢେଇ ବ୍ୟବହୃତ କରାଯାଇଥାଏ । ଖଞ୍ଜଣୀ ଓ ରାମ କାଠି ଏହି କଣ୍ଢେଇ ନୃତ୍ୟରେ ମୁଖ୍ୟ ବାଦ୍ୟଯନ୍ତ୍ର ଭାବେ ବ୍ୟବହୃତ ହୋଇଥାଏ । ଅପରପକ୍ଷେ, କେନ୍ଦୁଝରର 'ବାଡି କଣ୍ଢେଇ ନାଚ' ଓଡ଼ିଶାର କଣ୍ଢେଇ ନାଚ ପରଂପରାକୁ ଅଧିକ ସମୃଦ୍ଧ କରିପାରିଛି । କେନ୍ଦୁଝରକୁ ବାଦ୍ ଦେଲେ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷର ଅନ୍ୟ କେଉଁଠି ଏହି ଧରଣର କଣ୍ଢେଇ ନାଚ ଦେଖିବାକୁ ମିଳି ନଥାଏ । ଏଣୁ କେନ୍ଦୁଝରକୁ 'ବାଡି କଣ୍ଢେଇ ନାଚ'ର ଏନ୍ତୁଡିଶାଳ ବୋଲି କୁହାଯାଇଥାଏ ।

କେନ୍ଦୁଝରଗଡ଼ର ଲକ୍ଷ୍ମୀନାରାୟଣପୁର ସାହିର ଝରା ସଂପ୍ରଦାୟର ଲୋକେ ପରଂପରାକ୍ରମେ କଣ୍ଢେଇ ନାଚ ପ୍ରଦର୍ଶନ କରିଆସୁଥିଲେ । ସେମାନେ କାହା ପାଖରୁ ଏହି ପରଂପରା ଶିଖିଥିଲେ ତାହା ଜଣାପଡିନାହିଁ । ଭାରତ ବ୍ୟତୀତ ଏହି କଣ୍ଢେଇ ନାଚ ଋଷ୍, ଜାପାନ, ଇଣ୍ଡୋନେସିଆ ଓ ଚୀନ୍ ଭଳି ବହୁ ଦେଶରେ ପ୍ରଚଳିତ । କେନ୍ଦୁଝରର ଝରାମାନେ ଦିନବେଳା ମାଛ ଧରିବା ଓ ପାଣିରୁ ସୁନା ସଂଗ୍ରହ କରିବା ସହିତ ରାତିରେ କଣ୍ଢେଇ ନାଚ ପ୍ରଦର୍ଶନ କରି ସେମାନଙ୍କ ଜୀବିକା ନିର୍ବାହ କରିଥାନ୍ତି । ବିଭିନ୍ନ ପର୍ବପର୍ବାଣୀ ଓ ଉତ୍ସବମାନଙ୍କରେ ଝରାମାନେ କଣ୍ଢେଇ ନାଚ ପରିବେଷଣ କରିଥାନ୍ତି ।

ଅତୀତରେ କେନ୍ଦୁଝରଗଡ଼ର ଗୋପୀନାଥ ବେହେରା (ଝରା) ଓ ତାଙ୍କ ପୁତ୍ର ମକରଧ୍ୱଜ

ବେହେରା ଏହି କଣ୍ଢେଇ ନାଚ ପରିବେଷଣ କରୁଥିଲେ । କିନ୍ତୁ ମକରଧ୍ୱଜଙ୍କ ମୃତ୍ୟୁ ପରେ ଝରା ସଂପ୍ରଦାୟର କୌଣସି ବ୍ୟକ୍ତି ଏହି ପାରଂପରିକ କଳା ପ୍ରତି ଆଗ୍ରହ ପ୍ରକାଶ କରି ନଥିଲେ । ମକରଧ୍ୱଜଙ୍କ ପରେ ଏହି ବିରଳ କଣ୍ଢେଇ ନୃତ୍ୟକଳା ଲୋପ ପାଇଯିବାକୁ ବସିଥିବାବେଳେ ତାଙ୍କ ଶିଷ୍ୟ ଓ ସହଯୋଗୀ ମାଗୁଣୀ ଚରଣ କୁଅଁର ଏହାକୁ ବିଲୁପ୍ତ ଧାରାରୁ ମୁକ୍ତ କରିପାରିଛନ୍ତି । ମାଗୁଣୀ କୁଅଁର ପ୍ରକୃତରେ ଏହି କଣ୍ଢେଇ ନୃତ୍ୟକଳାକୁ ଆନ୍ତର୍ଜାତୀୟସ୍ତରରେ ପରିଚିତ କରାଇପାରିଛନ୍ତି । ସଂଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରି ମଧ୍ୟ ଶ୍ରୀ କୁଅଁର ଝରାମାନଙ୍କ ଏହି ନୃତ୍ୟକଳାକୁ ଆଦିରି ନେଇଥିଲେ । ମାଗୁଣୀ କୁଅଁର ଏହି କଣ୍ଢେଇ ନୃତ୍ୟ କଳାରେ ଅନେକ ପରୀକ୍ଷା ନିରୀକ୍ଷା କରିବା ସହ ଲୋକପ୍ରିୟ କରାଇପାରିଛନ୍ତି ।

କିଶୋର ବୟସରେ ରାମଲୀଳା ଯାତ୍ରା ଦଳରେ ମାଗୁଣୀ ଜଣେ ଦକ୍ଷ ଅଭିନେତା ଥିଲେ । ସ୍ଥାନୀୟ ବିଦ୍ୟାଳୟର ବଢେଇ ଶିକ୍ଷକ ଦାଶରଥୀ ମହାରଣାଙ୍କ କାଠ ଖୋଦେଇ ମୂର୍ତ୍ତିର ଆକର୍ଷଣ ତାଙ୍କ ଜୀବନର ଗତିପଥକୁ ବଦଳାଇ ଦେଇଥିଲା । ଏଣୁ ମାଗୁଣୀ ପିଲାଦିନୁ କାଠ ମୂର୍ତ୍ତି ଖୋଦେଇ କାମ ପ୍ରତି ଆଗ୍ରହ ପ୍ରକାଶ କରିବା ସହ ଏହି ବୃତ୍ତିକୁ ଆପଣେଇ ନେଇଥିଲେ । ମାଗୁଣୀ ସେତେବେଳେ କାଠ କଣ୍ଢେଇ ନିର୍ମାଣ କରି ଝରା କାଠ କଣ୍ଢେଇ ନୃତ୍ୟ ଗୁରୁ ମକରଧ୍ୱଜଙ୍କୁ ଯୋଗାଉଥିଲେ । ମକରଧ୍ୱଜ ପୂର୍ବରୁ ବ୍ୟବହାର କରୁଥିବା କଣ୍ଢେଇଗୁଡିକ ଅପେକ୍ଷା ମାଗୁଣି ନିର୍ମାଣ କରୁଥିବା





କଣ୍ଢେଇ ଗୁଡିକ ଅଧିକ ଆକର୍ଷଣୀୟ ହେବା ସାଙ୍ଗକୁ ଦର୍ଶକଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲା । କ୍ରମେ ମାଗୁଣୀ କାଠ କଣ୍ଢେଇ ନିର୍ମାଣ କରିବା ସାଙ୍ଗକୁ ଏହି ନୃତ୍ୟକଳା ପ୍ରତି ଆଗ୍ରହ ପ୍ରକାଶ କଲେ । ମକରଧ୍ୱଜ ବେହେରାଙ୍କଠାରୁ କଣ୍ଢେଇ ନାଚ ସଂପର୍କରେ ଜ୍ଞାନ ଆହରଣ କରି ନିଜେ ଏହି ନୃତ୍ୟକଳାରେ ପ୍ରତ୍ୟକ୍ଷ ଭାବେ ସାମିଲ୍ ହୋଇଗଲେ ।

୧୯୫୫ ମସିହାରେ ମାଗୁଣୀ ନିଜର ୫ ଜଣ ସହକର୍ମୀଙ୍କୁ ନେଇ 'ଉତ୍କଳ ବିଶ୍ୱକର୍ମା କଳାକୁଞ୍ଜ' ଗଠନ କଲେ । ପ୍ରାଥମିକ ପର୍ଯ୍ୟାୟରେ ମାଗୁଣୀ ମକରଧ୍ୱଜଙ୍କୁ ଅନୁକରଣ କରୁଥିଲେ ମଧ୍ୟ ପରବର୍ତ୍ତୀ କାଳରେ ନିଜର ପରୀକ୍ଷା ନିରୀକ୍ଷା ଓ ଦର୍ଶକମାନଙ୍କ ରୁଚିକୁ ଲକ୍ଷ୍ୟ କରି କଣ୍ଢେଇ ନାଚରେ ବ୍ୟାପକ ପରିବର୍ତ୍ତନ ଆଣିପାରିଥିଲେ । ଝରାମାନଙ୍କ ଦ୍ୱାରା ବ୍ୟବହୃତ ମଞ୍ଚର ଆକାର କ୍ଷୁଦ୍ର ଥିଲାବେଳେ ମାଗୁଣୀ ପ୍ରଥମ ଥର ପାଇଁ ମଞ୍ଚର କଳେବରକୁ ବୃଦ୍ଧି କରିଥିଲେ । ଏହା ସାଙ୍ଗକୁ ମାଗୁଣୀ ପ୍ରଥମ ଥର ପାଇଁ ମଞ୍ଚରେ ପରିବେଶ ଉପଯୋଗୀ ବିଭିନ୍ନ ଚିତ୍ର ସମ୍ବଳିତ ଆକର୍ଷଣୀୟ 'ସିନ୍'ର ବ୍ୟବହାର କରିବା ଆରମ୍ଭ କରିଥିଲେ । ଆବଶ୍ୟକ ସ୍ଥଳେ ନୀଳ ଓ କଳା ରଂଗର ପରଦା ମଧ୍ୟ ବ୍ୟବହାର କଲେ । ଦୃଶ୍ୟାନ୍ତରରେ ମଖମଲ୍ଲୀ ପରଦା ଓ ଅଙ୍କ ଶେଷରେ 'ଡ୍ରପ୍ ସିନ୍'ର ବ୍ୟବହାର ମଧ୍ୟ କଲେ । ଆଲୋକ ସଂପାତରେ ଚମତ୍କାରିତା ପ୍ରଦର୍ଶନ କରିବା ମଧ୍ୟ ମାଗୁଣୀଙ୍କ ଅନ୍ୟ ଏକ କଳାଚାତୁରୀ । ବିଭିନ୍ନ ରଂଗବେରଂଗ ପୋଷାକରେ ସଜ୍ଜିତ ପୁତ୍ତଳିକା (କଣ୍ଢେଇ)ମାନଙ୍କୁ ଅଧିକ

ଜୀବନ୍ତ ଭାବେ ଉପସ୍ଥାପନ କରିବା ପାଇଁ ସେ 'ସାଇକ୍ଲୋମା'ର ସାହାଯ୍ୟ ନେଲେ । ପୂର୍ବେ ବିଜୁଳି ନଥିବା ସ୍ଥାନରେ ପେଟ୍ରୋମାକ୍ସ ଲାଇଟ୍ ମାଧ୍ୟମରେ ଏହା ପ୍ରଦର୍ଶିତ ହେଉଥିଲା । ବାଦ୍ୟଯନ୍ତ୍ର ଭାବେ ଝରାମାନେ କୁବୁଜି ଓ ପିଟାତମ୍ବରୁ ବ୍ୟବହାର କରୁଥିବାବେଳେ ମାଗୁଣୀ ବାଦ୍ୟଯନ୍ତ୍ରରେ ଅନେକ ପରିବର୍ତ୍ତନ ଆଣିଲେ । ମାଗୁଣୀ ଏହି ନୃତ୍ୟରେ ବାଦ୍ୟଯନ୍ତ୍ର ଭାବେ ବଂଶୀ, କ୍ଲାରିଓନେଟ୍, ବେହେଲା, ହାର୍ମୋନିୟମ, ତୁବି ତବଲା ଆଦି ବ୍ୟବହାର କରି ଏହାକୁ ରୁଚିସଂପନ୍ନ କରିପାରିଥିଲେ । ଝରାମାନେ କଣ୍ଢେଇ ଚାଳନାରେ ଦକ୍ଷ ଥିଲେ ମଧ୍ୟ ସେମାନଙ୍କୁ ମୂର୍ତ୍ତି ଗଠନର କୌଶଳ ଜଣା ନଥିଲା । ସେମାନେ ସ୍ଥାନୀୟ କାରିଗରଙ୍କ ଉପରେ ନିର୍ଭର କରୁଥିଲେ । କଣ୍ଢେଇ ନିର୍ମାଣରେ ମାଗୁଣି କୁଅଁର ଦକ୍ଷ ଥିବାରୁ ସେ ନିଜର ମନ ଓ ଭାବ ମୁତାବକ କଣ୍ଢେଇ ନିର୍ମାଣ କରିପାରୁଥିଲେ । ଝରାମାନଙ୍କର କଣ୍ଢେଇଗୁଡିକର ଉଚ୍ଚତା ଅତି ବେଶିରେ ୯ ଇଞ୍ଚ ମଧ୍ୟରେ ସିମିତ ଥିଲା । ମାତ୍ର, ମାଗୁଣିଙ୍କ କଣ୍ଢେଇଗୁଡିକ ଦୁଇ ତିନି ଫୁଟ ଉଚ୍ଚତା ବିଶିଷ୍ଟ ହେଲା । ମାଗୁଣୀ ପାଖାପାଖି ୫୦୦ରୁ ଉର୍ଦ୍ଧ୍ୱ କଣ୍ଢେଇ ନିର୍ମାଣ କରି ଏହାକୁ ଅଧିକ ବ୍ୟାପ୍ତ କରିପାରିଲେ । କେବଳ ମଞ୍ଚ ସଜା, ବାଦ୍ୟଯନ୍ତ୍ର, ମୂର୍ତ୍ତି ନିର୍ମାଣ କ୍ଷେତ୍ରରେ ମାଗୁଣୀ ସିଦ୍ଧହସ୍ତ ନଥିଲେ । ବରଂ ବର୍ତ୍ତମାନର ଯୁଗକୁ ଲକ୍ଷ୍ୟ କରି ବିଷୟ ଚୟନରେ ସେ ଖୁବ୍ ମାହିର୍ ଅଟନ୍ତି । ପୂର୍ବେ ଝରମାନଙ୍କ ଦ୍ୱାରା ଅଭିନୀତ ନାଟକର କାହାଣୀ କୃଷ୍ଣ ଜନ୍ମଠାରୁ କଂସ ବଧ ମଧ୍ୟରେ ସୀମିତ ଥିଲା, ମାତ୍ର ମାଗୁଣୀ ପାରଂପରିକ ଏହି କୃଷ୍ଣଲୀଳା କାହାଣୀର ଉର୍ଦ୍ଧ୍ୱକୁ ଯାଇ ରାମାୟଣର କାହାଣୀ ଆଧାରରେ ସୀତା ବିବାହ, ସୀତାଚୋରି, ରାବଣ ବଧ, ଭାଗବତ ଓ ହରିବଂଶ ଅବଲମ୍ବନରେ କୃଷ୍ଣ ଜନ୍ମ, ନଳକୁବେର, ରଂଗସଭା, କୃଷ୍ଣ ସୁଦାମା, ବନ୍ଧୁ ମହାନ୍ତି, କର୍ଣ୍ଣବଧ, ରଘୁ ଅରକ୍ଷିତ ଆଦି ବହୁ ନାଟକ ପରିବେଷଣ କରି ବେଶ୍ ଲୋକପ୍ରିୟତା ହାସଲ କରିପାରିଲେ । ଗଣକବି ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ସହ ବିଶ୍ୱନାଥ ଖୁଣ୍ଟିଆଙ୍କ ରାମାୟଣ, ଗୋପି ବିକ୍ରମ ରାମାୟଣ, ବୈଶ୍ୟ ସଦାଶିବଙ୍କ ରାମାୟଣ, ବାଲ୍ମିକୀ ରାମାୟଣ ଆଦିର ସଂଳାପ ନିଜେ ରଚନା କରି ଦର୍ଶକମାନଙ୍କୁ କଣ୍ଢେଇ ନାଚ ପ୍ରତି ଆକର୍ଷିତ କରିପାରିଲେ । ମାଗୁଣୀଙ୍କ ସବୁଠୁ ବଡ଼ ସଫଳତା ହେଉଛି ନିଜର ସଂଳାପ ପରିବେଷଣ ଶୈଳୀ । ସେ ବେଳେବେଳେ ଗମ୍ଭୀର ସ୍ୱରରେ ସଂଳାପ ପରିବେଷଣ କରୁଥିବାବେଳେ ହଠାତ୍ ଏକ ନାରୀ ସ୍ୱରରେ ଚମତ୍କାର ଭାବେ ସଂଳାପ ପରିବେଷଣ କରିପାରୁଥିଲେ । ପୂର୍ବେ ଝରାମାନେ ପୁରୁଷ ଓ ନାରୀ ଉଭୟଙ୍କ ପାଇଁ ସମସ୍ୱରରେ ସଂଳାପ ପରିବେଷଣ କରୁଥିଲେ, ମାତ୍ର ମାଗୁଣୀ ଏକକ ଭାବେ ପୁରୁଷ ଓ ନାରୀ କଣ୍ଠରେ ସଂଳାପ ପରିବେଷଣ କରିବା ସହ ଛଅ ସାତ ପ୍ରକାର ସ୍ୱର ସୃଷ୍ଟି କରି ପାରିଲେ । ଏହା ଛଡା ସେ କୋଇଲି, ହାତୀ, ଘୋଡା, ସାପ, ବାଘ, ଭାଲୁ ଆଦି ବନ୍ୟ ପ୍ରାଣୀଙ୍କ ସ୍ୱର ମଧ୍ୟ ଅତି ସୁନ୍ଦର ଭାବେ ପ୍ରକାଶ କରିପାରିଲେ । ପୌରାଣିକ କଥାବସ୍ତୁକୁ ଆଧାର କରି କଣ୍ଢେଇ ନାଚ ପରିବେଷଣ କରୁଥିଲେ ମଧ୍ୟ ସାମାଜିକ ସମସ୍ୟା, ସାଧାରଣ ମଣିଷଙ୍କ ଜୀବନ ଶୈଳୀକୁ ନେଇ

ବହୁ ନାଟକ ସେ ପରିବେଷଣ କରିପାରିଛନ୍ତି । ବହୁକୁଟୁମ୍ବୀ ଗୃହସ୍ଥର ଦୁଃଖ, ମାଦକ ଦ୍ରବ୍ୟ ସେବନର ଅପକାରିତା, ରାଜନୈତିକ ବ୍ୟଙ୍ଗ, ଆଧୁନିକ ଶିକ୍ଷିତ ସମାଜରେ ଅବକ୍ଷୟ, ସରକାରୀ ଅଧିକାରୀ, କର୍ମଚାରୀ, ବ୍ୟବସାୟୀ ଓ ଠିକାଦାରଙ୍କ ଶୋଷଣ ମାନସିକତାକୁ ନେଇ ଅନେକ ନାଟକ ମାଗୁଣୀ ପରିବେଷଣ କରି ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଛନ୍ତି । ଏଣୁ କେନ୍ଦୁଝର ଜିଲ୍ଲା ଗୁରୁ ମାଗୁଣୀ କୁଅଁରଙ୍କ ପାଇଁ ଆଜି ସମଗ୍ର ବିଶ୍ୱରେ ଗର୍ବିତ ।

## କୃଷକ ଶିରୋମଣି କ୍ଷେତ୍ରବାସୀ ବେହେରା ଓ ତାଙ୍କ ସ୍ୱପ୍ନର 'ତୃପ୍ତି ଉଦ୍ୟାନ'



କେନ୍ଦୁଝର ଜିଲ୍ଲାର 'ତୃପ୍ତି ଉଦ୍ୟାନ' ସଂପର୍କରେ କାହାକୁ ଅଛପା ନଥିବ । ପ୍ରକୃତରେ ଏହି ଉଦ୍ୟାନଟି ସ୍ୱର୍ଗର ନନ୍ଦନକାନନ ଭଳି ମନେ ହୋଇଥାଏ । ଯେଉଁଠିକୁ ଆସିବା ପରେ ସାଧାରଣ ଲୋକଟିର ଦୃଷ୍ଟିଭଙ୍ଗୀରେ ବ୍ୟାପକ ପରିବର୍ତ୍ତନ ଘଟେ, ଚାକିରି ପଛରେ ଧାଉଁଥିବା ଯୁବକର ମୋହ ଭଙ୍ଗ ହୁଏ, କବିଟିକୁ କବିତା ଲେଖିବାକୁ ଇଛା ହୁଏ, ବେକାର ଦିଗଭ୍ରଷ୍ଟ ଯୁବକଙ୍କୁ ସୁନ୍ଦର ସ୍ୱପ୍ନଟିଏ ଦେଖିବାର ସୁଯୋଗ ସୃଷ୍ଟି ହୋଇଥାଏ, ମନରୁ ଦୁଶ୍ଚିନ୍ତା ଦୂର ହୋଇଯାଏ, ସେଭଳି ଏକ ଶାନ୍ତ ଶୀତଳ ସବୁଜିମାଭରା ସ୍ଥାନଟି ହେଉଛି କେନ୍ଦୁଝରର ତଥା ଦେଶର ଜଣେ ସଫଳ ଚାଷୀ କ୍ଷେତ୍ରବାସୀଙ୍କ ୮୫ ଏକର ପରିମିତ ଜମି ଉପରେ ସୃଷ୍ଟି ହୋଇଥିବା ସବୁଜ ସ୍ୱପ୍ନର 'ତୃପ୍ତି ଉଦ୍ୟାନ' । ମାଟିର ଭୂଇଁରେ ସୁନା ଫଳେଇପାରିଥିବା ଜଣେ ସଫଳ ଚାଷୀ ହେଉଛନ୍ତି କେନ୍ଦୁଝର ଜିଲ୍ଲାର କ୍ଷେତ୍ରବାସୀ ବେହେରା । କ୍ଷେତ୍ରବାସୀ କେବଳ କେନ୍ଦୁଝର ନୁହେଁ ସମଗ୍ର ରାଜ୍ୟବାସୀଙ୍କ ପାଇଁ ଜଣେ ରୋଲ୍ ମଡେଲ୍ ।

ଯେତେବେଳେ ଓଡ଼ିଶାର ଚାଷୀମାନେ 'ଉଦ୍ୟାନ କୃଷି' କ'ଣ ଜାଣି ନଥିଲେ, ଠିକ୍ ସେତିକିବେଳେ କେନ୍ଦୁଝରର ଉଚ୍ଚ ଶିକ୍ଷିତ ପାଠପଢୁଆ ଯୁବକ କ୍ଷେତ୍ରବାସୀ ଉଦ୍ୟାନ କୃଷି ଜଗତକୁ ପ୍ରବେଶ କରି ଏଥିରେ କିଭଳି ସଫଳତା ମିଳେ ତାହା ରାଜ୍ୟବାସୀଙ୍କୁ ଦେଖାଇଦେଲେ । ଉଦ୍ୟାନ କୃଷି ପାଇଁ ଆଜି ସେ ସମଗ୍ର ଓଡ଼ିଶାରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଉଦ୍ୟାନ କୃଷିରେ ଉନ୍ନତି ଆଣିବା ପାଇଁ ଆଜି ରାଜ୍ୟ ସରକାର ତାଙ୍କ ନିକଟରୁ ଅନେକ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଗ୍ରହଣ କରିଥାଏ । ମହାରାଷ୍ଟ୍ରର ଚାଷୀମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ଓଡ଼ିଶାରେ ଏକ କୃଷି ବିପ୍ଳବ



ଆଣିବାରେ ସମର୍ଥ ହୋଇପାରିଛନ୍ତି । କୃଷି କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ ତାଙ୍କୁ କେନ୍ଦ୍ର ସରକାରଙ୍କ ପକ୍ଷରୁ 'କୃଷକ ଶିରୋମଣି' ଉପାଧି ପ୍ରଦାନ କରାଯାଇଛି ।

୧୯୩୫ ମସିହାରେ ଏହି ସବୁଜପ୍ରେମୀ କ୍ଷେତ୍ରବାସୀ ବେହେରା କେନ୍ଦୁଝରର ଏକ ସାଧାରଣ ପରିବାରରେ ଜନ୍ମଲାଭ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ବାଣିଜ୍ୟରେ ସ୍ନାତକ ଡିଗ୍ରୀ ହାସଲ କରିବା ପରେ କ୍ଷେତ୍ରବାସୀ ଜଣେ ସଫଳ ଚାଷୀ ପାଲଟିଯିବେ ତାହା କେହି ବିଶ୍ୱାସ କରି ନଥିଲେ । କ୍ଷେତ୍ରବାସୀ ଜୀବନରେ ବହୁ ଚାକିରି ଛାଡି ଶେଷରେ କଟକରେ ଏକ ଫର୍ଣ୍ଣିଚର ଦୋକାନ କରିଥିଲେ । ଗୃହର ଆଭ୍ୟନ୍ତରୀଣ ସାଜସଜ୍ଜା *(interior design)* ରେ ନିଜର ବୃତ୍ତିଗତ ଜୀବନ ଆରମ୍ଭ କରିଥିବା କ୍ଷେତ୍ରବାସୀ ଶେଷରେ ଜଣେ ସଫଳ ଚାଷୀ ପାଲଟିଗଲେ । ଇଣ୍ଟେରିଅର ଡିଜାଇନ୍ କ୍ଷେତ୍ରରେ ବିଧାନସଭାଠାରୁ ଆରମ୍ଭ କରି ଷ୍ଟେଟ୍ ଗେଷ୍ଟ ହାଉସ୍, ରାଜ ଭବନ, ନବୀନ ନିବାସ ଏବଂ ପାରାଦୀପର ନେହେରୁ ବଙ୍ଗଳା ପର୍ଯ୍ୟନ୍ତ ସବୁଠି ତାଙ୍କର କାରୁକାର୍ଯ୍ୟପୂର୍ଣ୍ଣ କାଠ କାମର ଦକ୍ଷତା ଦେଖାଇ ପାରିଛନ୍ତି କ୍ଷେତ୍ରବାସୀ । ୧୯୬୧ ମସିହାରେ ପାରାଦୀପର ନେହେରୁ ବଙ୍ଗଳାର କାଠ ଫିଟିଂ ଓ ଫର୍ଣ୍ଣିଚର କାମ କ୍ଷେତ୍ରବାସୀ କରି ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ୍ଙ୍କ ନିକଟରୁ ଉଚ୍ଚ ପ୍ରଶଂସିତ ହୋଇପାରିଥିଲେ । ଓଡ଼ିଶାର ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ସହିତ କ୍ଷେତ୍ରବାସୀଙ୍କର ଉତ୍ତମ ସଂପର୍କ ରହିଥିଲା ।

ଓଡ଼ିଶାରେ କୃଷି ବିପ୍ଳବ ଆଣିବାରେ କ୍ଷେତ୍ରବାସୀ ଜଣେ ଅଗ୍ରଣୀ ସୂତ୍ରଧର । କୃଷି ବ୍ୟତୀତ ସମବାୟ, ଶିକ୍ଷା, ବ୍ୟାଙ୍କ ସେବା, ସମାଜସେବା କ୍ଷେତ୍ରରେ କ୍ଷେତ୍ରବାସୀଙ୍କ ଅବଦାନ

ଅବର୍ଣ୍ଣନୀୟ ।ତେବେ କୃଷି କ୍ଷେତ୍ରରେ ସେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଏମିତି ହଠାତ୍ ଏକ ଝୁଙ୍କ୍‌ରୁ ତାଙ୍କର କୃଷି ଜୀବନ ଆରଂଭ ହୋଇଥିଲା । ତାଙ୍କର କୃଷି ପ୍ରତି ଆଗ୍ରହ ଦେଖି ତତ୍କାଳୀନ କେନ୍ଦୁଝର ଜିଲ୍ଲାପାଳ ଜଗଦାନନ୍ଦ ପଣ୍ଡା ଉଦ୍ୟାନ କୃଷି ସଂପର୍କରେ ଅଧିକ ଜ୍ଞାନ ହାସଲ କରିବା ଉଦ୍ଦେଶ୍ୟରେ ୧୯୯୪ ମସିହାରେ ତାଙ୍କୁ ପ୍ରଥମଥର ପାଇଁ ରାଜ୍ୟ ବାହାରକୁ ପଠାଇଥିଲେ । ମହାରାଷ୍ଟ୍ରର *fruit culture* ସଂପର୍କରେ ସବିଶେଷ ଜ୍ଞାନ ହାସଲ କରି ସେ କେନ୍ଦୁଝରକୁ ଫେରିଥିଲେ । ସେବେଠୁ ସେ ଆଉ ପଛକୁ ଫେରି ଚାହିଁ ନାହାନ୍ତି ।

୧୯୯୫ ମସିହାରେ ପରୀକ୍ଷାମୂଳକ ଭାବେ କ୍ଷେତ୍ରବାସୀ କେନ୍ଦୁଝର ସହରଠାରୁ ଅଳ୍ପ ଦୂରରେ ଥିବା ପଞ୍ଚାବାଗି (ଘଟଗାଁ ବ୍ଲକ୍) ଗାଁରେ ପତିତ ଅବସ୍ଥାରେ ପଡି ରହିଥିବା ୮ ଏକର ଟଙ୍କର ଭୂମି ଉପରେ କିଛି ଫଳ ଗଛ ଲଗାଇବା ଆରଂଭ କଲେ । ଆଉ ଏଇଠି ହିଁ କ୍ଷେତ୍ରବାସୀ ସ୍ୱପ୍ନ ଦେଖିଥିଲେ ଏକ ସବୁଜ ପୃଥିବୀର । ବହୁ ସଂଘର୍ଷ କରି ସେ ଏଠାରେ ଆମ୍ବ ବଗିଚା ଆରମ୍ଭ କଲେ । ଏହାର ନାମ ରଖିଲେ 'ତୃପ୍ତି ଅର୍କାଡ୍' । ଇପିକଲ୍, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ନାବାର୍ଡ ଏବଂ ରାଜ୍ୟ ସରକାରଙ୍କ ଉଦ୍ୟାନ ବିଭାଗ ସହାୟତାରେ ସେ ପ୍ରଥମେ ଏଠାରେ ବିଭିନ୍ନ କିସମର ହାଇବ୍ରିଡ୍ ଆମ୍ବ ଚାରାର ବ୍ୟବସାୟିକ ଉତ୍ପାଦନ ଆରମ୍ଭ କଲେ । ବିଶ୍ୱ ବିଖ୍ୟାତ ଆମ୍ରପଲ୍ଲୀ, ମଲ୍ଲିକା, ଆଲ୍‌ଫାନ୍‌ସୋ ଆଦି ବିଭିନ୍ନ ଉନ୍ନତ କିସମର ଆମ୍ବ ଗଛରେ କ୍ରମେ ତୃପ୍ତି ଉଦ୍ୟାନ

ତୃପ୍ତି ଆମ୍ବ ଚାରା ଉଦ୍ୟାନ



ଭରପୂର ହୋଇ ଉଠିଲା । ଆମ୍ବ ବ୍ୟତୀତ ଏହି ଉଦ୍ୟାନରେ କାଗିଜି ଲେମ୍ବୁ, ଅଦା, ଲିଚୁ, ହଳଦି, ବରକୋଳି, ଅମୃତଭଣ୍ଡାର ଚାରା ରପ୍ତାନୀ କରି କ୍ଷେତ୍ରବାସୀ ରାତାରାତି ସଫଳତାର ଶୀର୍ଷକୁ ସ୍ପର୍ଶ କରିପାରିଲେ । ତୃପ୍ତି ଉଦ୍ୟାନ ମଧ୍ୟରେ ଏକ ଉନ୍ନତମାନର ନର୍ସରୀ ରହିଛି । ରାଜ୍ୟରେ ଏହି ଧରଣର ନର୍ସରୀ ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ଏଠାରୁ ଉତ୍ପାଦିତ ଫୁଲ ଓ ଫଳର ଚାରା ରାଜ୍ୟ ବାହାରକୁ ରପ୍ତାନୀ କରି ଓଡ଼ିଶା ଚାରା ରପ୍ତାନୀ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଲା । କ୍ଷେତ୍ରବାସୀଙ୍କ ସଫଳତାକୁ ଦେଖି ଏବେ ରାଜ୍ୟ ସରକାରଙ୍କ ଉଦ୍ୟାନ ବିଭାଗ ରାଜ୍ୟର ବିଭିନ୍ନ ସ୍ଥାନରେ ଚାରା ଉଦ୍ୟାନମାନ ସୃଷ୍ଟି କରିପାରିଛି । ନର୍ସରୀକୁ ଛାଡି କ୍ଷେତ୍ରବାସୀ ଏଠାରୁ ଉନ୍ନତ ମାନର ମଞ୍ଜି ଉତ୍ପାଦନ କରି ରାଜ୍ୟରେ ଅଧିକ ପରିଚିତ ହୋଇଗଲେ ।

କାଳକ୍ରମେ ପଟାବାରି ତୃପ୍ତି ଉଦ୍ୟାନ ଫଳ ଗଛରେ ଭରିଯିବା ପରେ ନିକଟରେ ଥିବା ବଛିବାରିଗାଁ (ହରିଚନ୍ଦନପୁର ବ୍ଲକ୍)ରେ ଆରମ୍ଭ କଲେ ଆଉ ଏକ ମନୋରମ ଉଦ୍ୟାନ । ଏହାର ନାମ ମଧ୍ୟ ତୃପ୍ତି ଉଦ୍ୟାନ ରଖାଗଲା । ୪୦ ଏକର ଜମି ଉପରେ ଗଢି ଉଠିଥିବା ଏହି ନୂତନ 'ତୃପ୍ତି ଉଦ୍ୟାନ'ରେ କେବଳ ବିଭିନ୍ନ କିସମର ଫୁଲ, ଫଳ ଗଛର ଚାରା ପ୍ରସ୍ତୁତ କରାଗଲା । ଏ ତୃପ୍ତି ଉଦ୍ୟାନରେ ନାନା ଜାତିର ଫୁଲ ଉତ୍ପାଦନ ମଧ୍ୟ ଆରଂଭ ହେଲା । କ୍ଷେତ୍ରବାସୀଙ୍କ ଏହି ପୁଷ୍ପ ଉଦ୍ୟାନରେ ୧୨୦ ପ୍ରକାର ଗୋଲାପ, ୩୫ ପ୍ରକାର ମନ୍ଦାର, ୨୨ ପ୍ରକାର ଗ୍ଲାଡିଓଲାସ, ୧୨ ପ୍ରକାର ଜରବେରା ଏବଂ ଅନ୍ୟାନ୍ୟ ବହୁ ପ୍ରକାରର ଫୁଲ ରହିଛି । ଏହି ଉଦ୍ୟାନରୁ ସୃଷ୍ଟି ହେଉଥିବା ଗେଣ୍ଡୁଫୁଲ ରାଜ୍ୟର ବିଭିନ୍ନ ସ୍ଥାନକୁ ବର୍ଷତମାମ୍ ଯୋଗାଣ ହୋଇଥାଏ । ଏହାବ୍ୟତୀତ କ୍ଷେତ୍ରବାସୀଙ୍କ ଏହି ଉଦ୍ୟାନ ମଧ୍ୟରେ ଏକ ଚିଲ୍ଡ୍ରେନ୍ ପାର୍କ, ପ୍ଲେ ଗ୍ରାଉଣ୍ଡ ଏବଂ ଏକ ଆର୍ଟିଫିସିଆଲ୍ ୱାଟର ଫଲ୍, ଲନ୍, କଟେଜ ଓ କୁଡିଆ ଘର ଆଦି ରହିଛି । ଶୀତ ଦିନେ ଏଠାକୁ ବହୁ ସଂଖ୍ୟାରେ ପର୍ଯ୍ୟଟକ ଆସିଥାନ୍ତି । ୧୯୯୫ ମସିହାରେ କ୍ଷେତ୍ରବାସୀ ମାତ୍ର ଆଠ ଏକର ଜମି ଉପରେ ଆରମ୍ଭ କରିଥିବା ଛୋଟ ଆମ୍ବ ଉଦ୍ୟାନଟି ଆଜି ୮୫ ଏକର ପରିମିତ ଜମି ଉପରେ ପରିବ୍ୟାପ୍ତ ହୋଇ ରାଜ୍ୟର ଏକ ମନୋରମ ଉଦ୍ୟାନର ମାନ୍ୟତା ଲାଭ କରିପାରିଛି ।

ବଛିବାରିଗାଁରେ ଥିବା 'ତୃପ୍ତି ଉଦ୍ୟାନ'ରେ ଆମ୍ବ, ଲିଚୁ, କାଜୁ, ଆତ, ପିଜୁଳି, ଡାଳିମ୍ବ, ଅଁଳା, କାଗିଜି ଲେମ୍ବୁ ସହିତ ଗୋଲାପ ଆଦି ବିଭିନ୍ନ ଫୁଲ ଫଳର ଚାରାଗଛ ପ୍ରସ୍ତୁତ କରାଯାଉଛି । 'କଲମି' ବା 'ଗ୍ରାଫ୍‌ଟିଂ' *(grafting)* ମାଧ୍ୟମରେ ନାନା କିସମର ହାଇବ୍ରିଡ୍ ଫଳ ଚାରା ସୃଷ୍ଟି କରିବାରେ 'ତୃପ୍ତି ଉଦ୍ୟାନ' ସମଗ୍ର ରାଜ୍ୟରେ ସୁନାମ ଅର୍ଜନ କରିଛି । ବଛିବାରିଗାଁ ତୃପ୍ତି ଉଦ୍ୟାନର ଅନ୍ୟତମ ଆକର୍ଷଣ ହେଉଛି ଏଠାରେ ଥିବା ଗୋଲାପ ବଗିଚା । ଏହି ଗୋଲାପ ବଗିଚାରେ ୧୨୦ ପ୍ରକାରର ଗୋଲାପ ରହିଛି । ଏହି ଉଦ୍ୟାନର ୫ ଏକର ଜମିରେ ବର୍ତ୍ତମାନ ଗୋଲାପର

ଚାରା ବା 'ବଡ଼ିଂ' କରାଯାଉଛି । ଏଠାରେ 'ବଡିଂ' *(budding)* ମାଧ୍ୟମରେ ନୂଆ ନୂଆ ରଙ୍ଗ ଓ କିସମର ଗୋଲାପ ପ୍ରଜାତି ସୃଷ୍ଟି କରାଯାଇପାରୁଛି । କଲମି ମାଧ୍ୟମରେ ଏଠାରେ ସୃଷ୍ଟି କରାଯାଉଥିବା ଆମ୍ବ, କାଜୁ, ଅଁଳା ଓ ଗୋଲାପର ଉନ୍ନତ କିସମର ଚାରା ଓଡ଼ିଶା ସମେତ ନାଗାଲାଣ୍ଡ, ତ୍ରିପୁରା, ମେଘାଳୟ, ଆସାମ, ଛତିଶଗଡ଼, ଝାଡ଼ଖଣ୍ଡ ଆଦି ବିଭିନ୍ନ ରାଜ୍ୟକୁ ଯୋଗାଣ ହୋଇଥାଏ । ଏହିସବୁ ରାଜ୍ୟ ସରକାରଙ୍କ ସମେତ ବେସରକାରୀ ସଂଗଠନମାନେ ଏଠାରୁ ଚାରା କିଣିଥାନ୍ତି । ପ୍ରତିବର୍ଷ ଏଠାରେ ପାଖାପାଖି ୪ ଲକ୍ଷ ଆମ୍ବ ଚାରା, ୩ ଲକ୍ଷ କାଜୁ ଚାରା, ୪ ଲକ୍ଷ ଗୋଲାପ ଚାରା ଓ ୨ ଲକ୍ଷ ପାଖାପାଖି ଲେମ୍ବୁ, ଅଁଳା, ଆତ, ପିଜୁଳି ଆଦି ଚାରା ସୃଷ୍ଟି କରାଯାଇଥାଏ ।

କ୍ଷେତ୍ରବାସୀଙ୍କ 'ତୃପ୍ତି ଉଦ୍ୟାନ'ର ବାର୍ଷିକ ଉତ୍ପାଦନ ଓ ଲାଭ ମଧ୍ୟ ଓଡ଼ିଶାର ଅନ୍ୟ ଚାଷୀଙ୍କ ପାଇଁ ଏକ ଉଦାହରଣ । କ୍ଷେତ୍ରବାସୀଙ୍କ କହିବା ଅନୁଯାୟୀ, ବକ୍ସିବାରିଗାଁସ୍ଥିତ 'ତୃପ୍ତି ଉଦ୍ୟାନ'ରୁ ବାର୍ଷିକ ୩ ଲକ୍ଷ ଟଙ୍କାର ଆମ୍ବ ଚାରା ବିକ୍ରି ହେଉଥିବାବେଳେ ୩ ଲକ୍ଷ ଟଙ୍କାର କାଜୁ ଚାରା, ୩ ଲକ୍ଷ ଟଙ୍କାର ଗୋଲାପ ଚାରା ଏବଂ ମୋଟାମୋଟି ୪ ଲକ୍ଷ ଟଙ୍କାର ପିଜୁଳି, ଲିଚୁ, ସପେଟା, ଲେମ୍ବୁ, ଅମୃତଭଣ୍ଡା, ସଜନା ଆଦି ଗଛର ଉନ୍ନତ କିସମର ଚାରା ବିକ୍ରି ହୋଇଥାଏ । ସେହିଭଳି ପଟାବାରିସ୍ଥିତ 'ତୃପ୍ତି ଉଦ୍ୟାନ'ରୁ ବାର୍ଷିକ ୫ ଲକ୍ଷ ଟଙ୍କାର ଆମ୍ବ, ୪ ଲକ୍ଷ ଟଙ୍କାର କାଜୁ ମଞ୍ଜି, ୫ ଲକ୍ଷ ଟଙ୍କାର ଗୋଲାପ ଫୁଲ ଏବଂ ପାଖାପାଖି ୫ ଲକ୍ଷ ଟଙ୍କାର ପିଜୁଳି, ଲିଚୁ, ସପେଟା, ଲେମ୍ବୁ, ଅମୃତଭଣ୍ଡା, ସଜନା ଛୁଇଁ ଆଦି ଫଳ ବିକ୍ରି ହୋଇଥାଏ ।

ଆଗାମୀ ଦିନରେ କ୍ଷେତ୍ରବାସୀଙ୍କର ଅନେକ ଯୋଜନା ଓ ଅନେକ ସ୍ୱପ୍ନ ରହିଛି । ରାଜ୍ୟରେ ବର୍ତ୍ତମାନ ଉନ୍ନତମାନର ମାଛ ଯାଆଁଳର ଅଭାବ ରହିଛି । ଏଣୁ 'ତୃପ୍ତି ଉଦ୍ୟାନ'ରେ ଆଗାମୀ ଦିନରେ ଉନ୍ନତମାନର ମାଛ ଯାଆଁଳ ପ୍ରସ୍ତୁତ କରାଯିବ ବୋଲି କହନ୍ତି କ୍ଷେତ୍ରବାସୀ । ଏହା ସାଙ୍ଗକୁ ନାନା କିସମର ପନିପରିବା ଚାରା ମଧ୍ୟ ସୃଷ୍ଟି କରାଯିବାକୁ ଲକ୍ଷ୍ୟ ରଖିଛନ୍ତି କ୍ଷେତ୍ରବାସୀ । କ୍ଷେତ୍ରବାସୀଙ୍କ ସହ କାନ୍ଧକୁ କାନ୍ଧ ମିଳେଇଛନ୍ତି ତାଙ୍କର ସୁଯୋଗ୍ୟ ସନ୍ତାନ ସନ୍ଦୀପ ବେହେରା (ଶ୍ରଦ୍ଧା ନାମ 'ଟିକୁ') । ଉଭୟ ବାପ ଓ ପୁଅଙ୍କ ଆଖିରେ ଏବେ ଆଖିଏ ସ୍ୱପ୍ନ ।

କୃଷି କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ କ୍ଷେତ୍ରବାସୀଙ୍କୁ କେନ୍ଦ୍ର ସରକାରଙ୍କ 'କୃଷି ମନ୍ତ୍ରଣାଳୟ' ପକ୍ଷରୁ ଗତ ୨୦୦୨ ମସିହାରେ 'କୃଷକ ଶିରୋମଣି' ଉପାଧିରେ ଭୂଷିତ କରାଯାଇଛି । ସେହିଭଳି କେନ୍ଦୁଝର ଜିଲ୍ଲା ପ୍ରଶାସନ ପକ୍ଷରୁ ତାଙ୍କୁ ଜିଲ୍ଲାର ଶ୍ରେଷ୍ଠ କୃଷକ ଭାବେ ସମ୍ମାନିତ କରାଯାଇଛି । 'ଓଡ଼ିଶା ପରିବେଶ ବିକାଶ ସମିତି' ପକ୍ଷରୁ ରାଜ୍ୟର ଶ୍ରେଷ୍ଠ ପରିବେଶବିତ୍ ଭାବେ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ଭୁବନେଶ୍ୱରସ୍ଥିତ 'ଚିନ୍ତା ଓ ଚେତନା' ପକ୍ଷରୁ ୨୦୦୧ ମସିହାରେ ତାଙ୍କୁ ଶ୍ରେଷ୍ଠ ଚାଷୀ ଭାବେ ସମ୍ବର୍ଦ୍ଧିତ କରାଯାଇଛି । ୨୦୦୧ ମସିହାରେ ଉତ୍ତର ଓଡ଼ିଶାର ଶ୍ରେଷ୍ଠ ଆମ୍ବ ଉତ୍ପାଦନକାରୀ ଭାବେ ସମ୍ବଲପୁର ଆମ୍ବ ମେଳାରେ ମଧ୍ୟ ସେ ସମ୍ବର୍ଦ୍ଧିତ । ୨୦୦୨ରେ ଶ୍ରେଷ୍ଠ

କୃଷକ ଭାବେ ଭୁବନେଶ୍ୱରସ୍ଥିତ 'କାଳୁ ନନ୍ଦ ମେମୋରିଆଲ୍ ଫାଉଣ୍ଡେସନ ଟ୍ରଷ୍ଟ' ପକ୍ଷରୁ ଶ୍ରେଷ୍ଠ ଚାଷୀ ପୁରସ୍କାର ଏବଂ କୃଷି, ଶିଳ୍ପ, ଶିକ୍ଷା, ସମାଜସେବା ଓ ସମବାୟ କ୍ଷେତ୍ରରେ ଉତ୍କର୍ଷତା ପାଇଁ 'କେନ୍ଦୁଝର ସାହିତ୍ୟ, ସଂସ୍କୃତି ଓ କଳା ପ୍ରତିଷ୍ଠାନ' ପକ୍ଷରୁ 'ସମାଜଶ୍ରୀ' ଉପାଧିପ୍ରାପ୍ତ ହୋଇଛନ୍ତି । ରାଜ୍ୟରେ କୃଷି ଓ ଉଦ୍ୟାନ କୃଷି କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ 'ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ'ର 'ଓଡ଼ିଶା ହର୍ଟିକଲ୍‌ଚରାଲ୍ ସୋସାଇଟି' ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ସେହିଭଳି ୨୦୦୪ ମସିହାରେ କୃଷିକ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ କ୍ଷେତ୍ରବାସୀଙ୍କୁ 'ରାଜୀବ ଗାନ୍ଧୀ ସଦ୍‌ଭାବନା' ପୁରସ୍କାର ମିଳିପାରିଛି । ଓଡ଼ିଆ ଦୈନିକ 'ସମାଜ' ଏବଂ ବୈଦ୍ୟୁତିକ ଗଣମାଧ୍ୟମ 'ଇ-ଟିଭି' ପକ୍ଷରୁ 'କୃଷି ଓ କୃଷକ' ସମ୍ମାନ ପ୍ରାପ୍ତ ହୋଇଛନ୍ତି କ୍ଷେତ୍ରବାସୀ । ଭାରତୀୟ ଷ୍ଟେଟ୍ ବ୍ୟାଙ୍କ, ବ୍ୟାଙ୍କ ଅଫ୍ ଇଣ୍ଡିଆ ପକ୍ଷରୁ ତାଙ୍କୁ ଶ୍ରେଷ୍ଠ ଚାଷୀ ଭାବେ ପୁରସ୍କୃତ କରାଯାଇଛି । ଉଦ୍ୟାନ କୃଷି କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣି ପାରିଥିବାରୁ ନାଗାଲାଣ୍ଡ ସରକାର ତାଙ୍କୁ ବିଶେଷ ନାଗରିକ ସମ୍ବର୍ଦ୍ଧନା ପ୍ରଦାନ କରିଛନ୍ତି । ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ଶ୍ରେଷ୍ଠ ଚାଷୀ ଭାବେ ସମ୍ବର୍ଦ୍ଧିତ କରାଯାଇଛି । 'ଓଡ଼ିଶା ସ୍ମଲ୍ ସ୍କେଲ୍ ଇଣ୍ଡଷ୍ଟ୍ରିଜ୍ ଆସୋସିଏସନ୍' ପକ୍ଷରୁ ତାଙ୍କୁ 'ଶ୍ରେଷ୍ଠ ଉଦ୍ୟୋକ୍ତା' ସମ୍ମାନ ପ୍ରଦାନ କରାଯାଇଛି ।

କ୍ଷେତ୍ରବାସୀ ଖାଲି ଜଣେ ସଫଳ ଚାଷୀର ପରିଚୟରେ ସୀମିତ ହୋଇ ରହି ନାହାନ୍ତି । ସମାଜର ବିବିଧ କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ଶିଳ୍ପ, ବାଣିଜ୍ୟ, ଶିକ୍ଷା, ସମବାୟ, ସମାଜସେବା, ବ୍ୟାଙ୍କିଙ୍ଗ୍, ଆଇନ ସେବା ଆଦି ବିବିଧ କ୍ଷେତ୍ରରେ ସେ ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି । 'ଓଡ଼ିଶା ଉଡ୍ ପ୍ରଡକ୍‌ଟସ'ର ସେଥିଲେ ପୂର୍ବତନ ପରିଚାଳନା ନିର୍ଦ୍ଦେଶକ । ସେ ବର୍ତ୍ତମାନ 'ତୃପ୍ତି ଗ୍ରୁପ୍'ର ମୁଖ୍ୟ ପରାମର୍ଶଦାତା ଅଛନ୍ତି । 'ତୃପ୍ତି ଅର୍କାଡ', 'ତୃପ୍ତି ନର୍ସରି', 'ୟୁରେକା ବେକରି', 'ତୃପ୍ତି ପବ୍ଲିଶର୍ସ ପ୍ରା.ଲିଃ.', 'ତୃପ୍ତି କ୍ୟାଟରର', 'ଟିକୁ ଡେକୋରେଟର୍ସ', 'ଟି ଭିଜନ', 'ୟାମ୍‌ହା ଶୋ'ରୁମ୍' ଆଦିର ମୁଖ୍ୟ ପରାମର୍ଶଦାତା ଭାବେ କ୍ଷେତ୍ରବାସୀ କାର୍ଯ୍ୟ କରୁଛନ୍ତି । ବର୍ତ୍ତମାନ କ୍ଷେତ୍ରବାସୀ ରାଜ୍ୟ ସରକାରଙ୍କ 'ହର୍ଟିକଲ୍‌ଚର ମିଶନ୍'ର ଜଣେ ସଦସ୍ୟ ଭାବେ କାର୍ଯ୍ୟ କରୁଛନ୍ତି । କ୍ଷେତ୍ରବାସୀଙ୍କ ଅନେକ ମୂଲ୍ୟବାନ ପରାମର୍ଶ ଗ୍ରହଣ କରି ରାଜ୍ୟ ସରକାର ଉଦ୍ୟାନ କୃଷିକୁ ବିକଶିତ କରିପାରିଛି । ସମବାୟ ଆନ୍ଦୋଳନ କ୍ଷେତ୍ରରେ କ୍ଷେତ୍ରବାସୀଙ୍କ ଉଲ୍ଲେଖନୀୟ ଅବଦାନ ଯୋଗୁଁ ତାଙ୍କୁ ସରକାର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଅବସ୍ଥାପିତ କରିଛନ୍ତି । 'ଓଡ଼ିଶା କୋ-ଅପରେଟିଭ ମାର୍କେଟିଂ ଫେଡେରେସନ୍ ଲିଃ'ର ସେଥିଲେ ପୂର୍ବତନ ନିର୍ଦ୍ଦେଶକ । 'କେନ୍ଦୁଝର ରିଜିଓନାଲ୍ କୋ-ଅପରେଟିଭ ମାର୍କେଟିଂ ସୋସାଇଟି'ର ସଭାପତି ସହିତ 'ଓଡ଼ିଶା ପଲ୍‌ଟ୍ରି କୋ-ଅପରେଟିଭ ମାର୍କେଟିଂ ଫେଡେରେସନ୍'ର ନିର୍ଦ୍ଦେଶକ ଭାବେ ସେ ସଫଳତାର ସହ କାର୍ଯ୍ୟ କରିଛନ୍ତି । ସେ କେନ୍ଦୁଝର ନିୟନ୍ତ୍ରିତ ବଜାର କମିଟିର ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରୁଛନ୍ତି ।

ଏହାବ୍ୟତୀତ ସେ ଅନ୍ୟାନ୍ୟ ବହୁ ସରକାରୀ ଓ ବେସରକାରୀ ଅନୁଷ୍ଠାନରେ ବିଭିନ୍ନ ପଦପଦବୀରେ ଅବସ୍ଥାପିତ ଅଛନ୍ତି ।

## ପଦ୍ମଶ୍ରୀ ତୁଳସୀ ମୁଣ୍ଡା ଏବଂ ତାଙ୍କ ସହଯୋଗୀ ଜହ୍ନଦେବୀ



କେନ୍ଦୁଝର ଜିଲ୍ଲାର ଝୁଂପୁରା ବ୍ଲକ୍ ଅନ୍ତର୍ଗତ କଇଁସି ଗ୍ରାମରେ ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କର ଜନ୍ମ । ସେ ଏକ ଦରିଦ୍ର ଆଦିବାସୀ କୋହ୍ଲ ପରିବାରରେ ୧୯୪୭ ମସିହା ଜୁଲାଇ ୧୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତୁଳସୀଙ୍କ ପିଲାଦିନ ବେଶ୍ ସଂଘର୍ଷମୟ ଥିଲା । ପାଠ ପଢିବା ତ ଦୂରର କଥା, ଦୁଇ ବେଳା ଦୁଇ ମୁଠା ଖାଇବା ଥିଲା ତୁଳସୀଙ୍କ ପାଇଁ ଏକ ଆହ୍ୱାନ । ପାଠଶାଠ ନ ପଢି ଏହି କୋହ୍ଲ ବାଳିକା ତୁଳସୀ ସେରେଣ୍ଡା ଖଣିରେ ଶ୍ରମିକ ଭାବେ କାମ କରୁଥିଲେ । ଖଣିରେ କାର୍ଯ୍ୟରତ ଶ୍ରମିକମାନଙ୍କ ଦୁର୍ଦ୍ଦଶା ଦେଖି ତାଙ୍କ ମନରେ ବିପ୍ଳବ ସୃଷ୍ଟି ହୋଇଥିଲା । କିଶୋର ଅବସ୍ଥାରେ ସର୍ବୋଦୟ ନେତ୍ରୀ ମାଳତୀ ଦେବୀ ଚୌଧୁରୀଙ୍କ ସଂସ୍ପର୍ଶରେ ଆସିବା ପରେ ତୁଳସୀଙ୍କ ଜୀବନର ଗତିପଥ ବଦଳି ଯାଇଥିଲା । ନବକୃଷ୍ଣ ଚୌଧୁରୀ ଏହି କୋହ୍ଲ ଝିଅଟିକୁ ନିଜ ପାଖରେ ରଖି ଶିକ୍ଷାଦୀକ୍ଷା ଦେବା ସହ ଗାନ୍ଧୀଜିଙ୍କ ରଚନାତ୍ମକ କାର୍ଯ୍ୟ ପ୍ରତି ଆଗ୍ରହ ସୃଷ୍ଟି କରାଇଥିଲେ । ଏହାପରେ ସେ ସ୍ୱର୍ଗତ ଜୟପ୍ରକାଶ ନାରାୟଣଙ୍କ ସହ କିଛି ଦିନ କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲେ । ପରେ ସେ 'ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ'ରେ ସାମିଲ୍ ହୋଇ ନାନା ପ୍ରକାର ଜନହିତକର କାମ କରିବାର ସୁଯୋଗ ପାଇଲେ । ଏହା ପରେ ସେ ଆଦିବାସୀ ମହିଳାମାନଙ୍କ ବିକାଶ ଦିଗରେ କାର୍ଯ୍ୟ କଲେ । ବଡ଼ବିଲର ଖଣି ଅଞ୍ଚଳରେ ୧୯୭୨ ମସିହାରେ ସେ ମଦ ବିରୋଧୀ ଆନ୍ଦୋଳନ ଆରମ୍ଭ କଲେ । ଆଦିବାସୀ ପିଲାଙ୍କୁ ଶିକ୍ଷିତ କରାଇବା ଉଦ୍ଦେଶ୍ୟରେ ତୁଳସୀ ମୁଣ୍ଡା ଏବଂ ତାଙ୍କର ସହ କର୍ମୀ ଜହ୍ନ ଦେବୀ ଲୋକମାନଙ୍କୁ ପ୍ରବର୍ତ୍ତାଇ

ସେରେଣ୍ଡାଠାରେ ଏକ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କଲେ । ତୁଳସୀ ମୁଣ୍ଡାଙ୍କ ଏହି ବିଦ୍ୟାଳୟରେ ବର୍ତ୍ତମାନ ୭୦୦ ପାଖାପାଖି ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି । ୧୯୮୨ ମସିହାରେ ତୁଳସୀ ମୁଣ୍ଡାଙ୍କ ଉଦ୍ୟମରେ ବଡ଼ବିଲ୍‌ସ୍ଥିତ ସେରେଣ୍ଡାଠାରେ 'ଆଦିବାସୀ ବିକାଶ ସମିତି' ନାମରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରାଯାଇଥିଲା । ଝୁମ୍ପୁରା ଓ ଯୋଡା ବ୍ଲକ୍‌ର ପ୍ରାୟ ୫୦ଟି ଗ୍ରାମରେ ଏହି ଅନୁଷ୍ଠାନ ସକ୍ରିୟ ଭାବେ କାର୍ଯ୍ୟ କଲା । ଶିକ୍ଷା, ସ୍ୱାସ୍ଥ୍ୟ, କୃଷିର ବିକାଶ ଓ ଜଙ୍ଗଲ ସୁରକ୍ଷା, ନିଯୁକ୍ତି ପ୍ରଦାନ, ନିଶାମୁକ୍ତି ଆଦି ଜନହିତକର କାର୍ଯ୍ୟ କରି ଅନୁଷ୍ଠାନଟି ସ୍ଥାନୀୟ ଅଞ୍ଚଳରେ ବେଶ୍ ଲୋକପ୍ରିୟ ହୋଇ ଉଠିଲା । ସାମାଜିକ ନ୍ୟାୟ ଓ ପ୍ରଗତିର ଅଗ୍ରଦୂତ ଭାବେ ତୁଳସୀ ମୁଣ୍ଡା ଆଦିବାସୀ ସମାଜରେ ଏକ ସ୍ମରଣୀୟ ନାମ ପାଲଟିଗଲେ । ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ । ୧୯୮୧ ମସିହାରେ ତାଙ୍କୁ ବଡ଼ବିଲ୍ ପୌରପାଳିକା ପକ୍ଷରୁ ଶ୍ରେଷ୍ଠ ସମାଜସେବୀ ସମ୍ମାନ ପ୍ରଦାନ କରାଯାଇଥିଲା । ୧୯୯୭ ମସିହାରେ ଯୋଡାସ୍ଥିତ 'ଅନନ୍ୟା ସାହିତ୍ୟ ସଂସ୍କୃତି ପରିଷଦ' ସମ୍ମାନ ପାଇବା ସହ ୧୯୯୮ ମସିହାରେ ଦିଲ୍ଲୀର 'ଭାରତୀୟ ଆଦିମ ଜାତି ସେବକ ସଂଘ' ପକ୍ଷରୁ ସମ୍ମାନିତ ହୋଇଥିଲେ । ୧୯୯୯ ମସିହାରେ ରାଜ୍ୟ ସରକାରଙ୍କଠାରୁ 'ସ୍ୱାଭିମାନ' ସମ୍ମାନ ପ୍ରାପ୍ତ ହୋଇଥିଲେ । ୨୦୦୦ ମସିହାରେ ରାଜ୍ୟ ସରକାରଙ୍କଠାରୁ 'ସାହସୀ ମହିଳା' ପୁରସ୍କାର ଲାଭ କରିଥିଲେ । ୨୦୦୧ ମସିହାରେ ରାଷ୍ଟ୍ରପତିଙ୍କ ଦ୍ୱାରା ସେ 'ପଦ୍ମଶ୍ରୀ' ପୁରସ୍କାରପ୍ରାପ୍ତ ହୋଇଥିଲେ । ୨୦୦୨ ମସିହାରେ ନାଲ୍‌କୋ ଏବଂ ପ୍ରଦ୍ୟୁମ୍ନ ବଳ ସ୍ମାରକୀ ସଂସ୍ଥା ପକ୍ଷରୁ ସମ୍ବର୍ଦ୍ଧିତ ହୋଇଥିଲେ । ୨୦୦୪ ମସିହାରେ ଡ· ରାଧାନାଥ ରଥ ସେବା ସମ୍ମାନ ଓ ଲୋହିତ ଶ୍ୱେତ ସାହସିକ ସମ୍ମାନ ପ୍ରାପ୍ତ ହୋଇଥିଲେ । ୨୦୦୬ ମସିହାରେ ଉତ୍ତର ଓଡ଼ିଶା ବିଶ୍ୱ ବିଦ୍ୟାଳୟ ପକ୍ଷରୁ 'ଆଇନ୍ ପରମ ଭୂଷଣ (ଡକ୍‌ଟର ଅଫ୍ ଲ')' ଉପାଧି ପ୍ରାପ୍ତ ହୋଇଥିଲେ । ୨୦୦୮ ମସିହାରେ 'କାଦମ୍ବିନୀ ସମ୍ମାନ' ଲାଭ କରିଥିଲେ । ୨୦୦୯ ମସିହାରେ 'ଲକ୍ଷ୍ମୀପତ୍ ସିଂଘାଣିଆ ଜାତୀୟ ନେତୃତ୍ୱ ସମ୍ମାନ' ଲାଭ କରିଥିଲେ ।

ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କର ଘନିଷ୍ଠ ସହଯୋଗୀ ଥିଲେ ଜହ୍ନ ଦେବୀ । ଜହ୍ନ ଦେବୀ ଶିଶୁମାନଙ୍କ ସେବା ପାଇଁ ନିଜର ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଗତ ୨୦୧୦ ମସିହା ଅକ୍‌ଟୋବର ମାସ ୯ ତାରିଖରେ ଜହ୍ନଦେବୀଙ୍କର ପରଲୋକ ହୋଇଯାଇଛି । ଜହ୍ନ ଦେବୀ ଥିଲେ ଶ୍ରଦ୍ଧା ଓ ମମତାର ପ୍ରତିମୂର୍ତ୍ତି । ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କ ଆଶ୍ରମର ଶିଶୁମାନେ ଜହ୍ନ ଦେବୀଙ୍କୁ ମାଆ ବୋଲି ଡାକିଥାନ୍ତି । ଦୀର୍ଘ ୪୦ ବର୍ଷ କାଳ ଧରି ଗରିବ, ଅନାଥ ପିଲାମାନଙ୍କ ସେବାରେ ତାଙ୍କ ଜୀବନ ସମର୍ପିତ ଥିଲା । ସେରେଣ୍ଡାଠାରେ ଥିବା ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କ ସେବା ଆଶ୍ରମର ଦାୟିତ୍ୱ ତୁଲାଇବା ସାଙ୍ଗକୁ ଛୋଟ ଛୋଟ ପିଲାଙ୍କ ଯତ୍ନ ନେଉଥିଲେ । ବିଭିନ୍ନ ଦୁର୍ଗମ ଅଞ୍ଚଳର ଅନୁନ୍ନତ ଗାଁକୁ ଯାଇ ଘର ଘର ବୁଲି ସେ ଲୋକମାନଙ୍କ ସହିତ ମିଶୁଥିଲେ । ସେମାନଙ୍କ ଦୁଃଖରେ ଦୁଃଖୀ ହେଉଥିଲେ । ଗରିବ ଅବହେଳିତ

ଆଦିବାସୀମାନଙ୍କୁ ସ୍ୱାସ୍ଥ୍ୟ ସଚେତନ କରାଉଥିଲେ । ମହାତ୍ମା ଗାନ୍ଧୀ, ବିନୋବା ଭାବେ, ରମାଦେବୀ, ମାଳତୀ ଦେବୀ, ଜୟପ୍ରକାଶ ନାରାୟଣଙ୍କ ଆଦର୍ଶରେ ଅନୁପ୍ରାଣିତ ଏହି ମହିୟସୀ ମହିଳା ତଥା ଆଦିବାସୀ ବିକାଶ ସମିତି ଓ ସେବାଶ୍ରମର ବଡଅପା ଦୀର୍ଘଦିନ ଧରି ନିରଳସ ସେବାକାର୍ଯ୍ୟ କରିଯାଇଛନ୍ତି । ସେ କେବଳ ଆଶ୍ରମର ଛୁଆମାନଙ୍କ ବଡଅପା ନଥିଲେ ଅଞ୍ଚଳର ଗରିବ, ଆଦିବାସୀ ଓ ଅବହେଳିତ ଲୋକମାନଙ୍କ ଅତି ପ୍ରିୟ ଥିଲେ । ୧୯୬୭ ମସିହାରେ ସ୍ୱାସ୍ଥ୍ୟସେବାର ସୁବିଧା ନଥିବାବେଳେ ସେ ଗାଁ ଗାଁର ଲୋକମାନଙ୍କ ପାଖକୁ ଯାଇ ପରାମର୍ଶ ଦେଉଥିଲେ, ସେବା କରୁଥିଲେ । ଜହ୍ନଦେବୀ ଓ ଆଶ୍ରମର ଛାତ୍ରଛାତ୍ରୀ ଓ ଶିଶୁମାନଙ୍କ ବଡଅପାଙ୍କ ପ୍ରକୃତ ନାମ ଜହ୍ନ ଗୋଛାୟତ । ସେ ଅନୁଗୁଳ ଜିଲ୍ଲା ପୁଶୁଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ବାପା ଡାଙ୍ଗି ଗୋଛାୟତ ଓ ମାଆ ଦୁଃଖି ଗୋଛାୟତଙ୍କ ଝିଅ ଥିଲେ ଜହ୍ନ । ୧୮ ବର୍ଷ ବୟସରେ ସେ ସେନାବାହିନୀର ଜଣେ ଯବାନଙ୍କୁ ବିବାହ କରିଥିଲେ । ସ୍ୱାମୀ ଅତ୍ୟଧିକ ମଦ୍ୟପାନ କରୁଥିଲେ । ପରେ ସେ ସ୍ୱାମୀଙ୍କୁ ଛାଡିବାକୁ ବାଧ୍ୟ ହେଲେ । ନିଜ ଘରକୁ ଚାଲିଆସି ଅନୁଗୁଳଠାରେ ଥିବା ଉତ୍କଳ ନବଜୀବନ ମଣ୍ଡଳରେ ସ୍ୱାସ୍ଥ୍ୟସେବା ତାଲିମ ନେଲେ । ତାଲିମ ନେଇ ସାରିବା ପରେ ଜୀବନର ପ୍ରଥମ ସମାଜ ସେବା ଓ ସ୍ୱାସ୍ଥ୍ୟସେବା କାର୍ଯ୍ୟ ବ୍ରହ୍ମପୁର ହରିଜନ ବସ୍ତିରୁ ଆରମ୍ଭ କରିଥିଲେ । ସେ ଆର୍. ଉଦୟଗିରି ଓ ବଣେଇରେ କିଛିଦିନ କାର୍ଯ୍ୟ କରିଥିଲେ । ଅନୁଗୁଳଠାରେ ତାଲିମ ନେଉଥିବା ସମୟରେ ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ପରେ କେନ୍ଦୁଝର ଜିଲ୍ଲାର ସେରେଣ୍ଡାରେ ଥିବା ପଦ୍ମଶ୍ରୀ ତୁଳସୀ ମୁଣ୍ଡାଙ୍କ ଆଦିବାସୀ ଆବାସିକ ବିଦ୍ୟାଳୟକୁ ସେବାକାର୍ଯ୍ୟ କରିବା ପାଇଁ ଆସିଥିଲେ । ଏହା ପରଠାରୁ ସେ କେନ୍ଦୁଝର ବଡ଼ବିଲସ୍ଥିତ ସେରେଣ୍ଡାର ସ୍ଥାୟୀ ବାସିନ୍ଦା ପାଲଟିଯାଇଥିଲେ । ଜହ୍ନ ଦେବୀଙ୍କ ବିୟୋଗରେ ପଦ୍ମଶ୍ରୀ ତୁଳସୀ ମୁଣ୍ଡା ନିଜର ଡାହାଣ ହାତକୁ ହରାଇଛନ୍ତି ବୋଲି କୁହନ୍ତି ।

## ପଶୁପକ୍ଷୀଙ୍କ ନିଆରା ପ୍ରେମିକ ଆନନ୍ଦପୁରର 'ଖୋକା ସାର୍' ଏବଂ ତାଙ୍କ ସ୍ୱପ୍ନର ' ମୁକ୍ତ ଚିଡ଼ିଆଖାନା'

ଆନନ୍ଦପୁରର 'ଖୋକା ସାର୍'ଙ୍କ କଥା କାହାକୁ ଅଛପା ନଥିବ । ଖୋକା ସାର୍ଙ୍କ କଥା ପଡ଼ିଲେ ପ୍ରଥମେ ମନକୁ ଆସିବ ତାଙ୍କ ସ୍ୱପ୍ନର ' ମୁକ୍ତ ଚିଡ଼ିଆଖାନା'ର ଚିତ୍ର । ଦିନ ଥିଲା ଆନନ୍ଦପୁରର ପାଟରାସାହିରେ ଥିବା ତାଙ୍କ ନିଜ ବାସ ଭବନ, ଅଗଣା ଓ ବାଡ଼ିବଗିଚାକୁ ସେ ଏଭଳି ଭାବେ ଗଢି ତୋଳିଥିଲେ, ତାହା ଏକ ମୁକ୍ତ ଚିଡ଼ିଆଖାନାର ଭ୍ରମ ସୃଷ୍ଟି କରୁଥିଲା । ଜାତିଜାତିକା ପଶୁ, ପକ୍ଷୀ, ସରୀସୃପଙ୍କ ମେଳରେ ଖୋକା ସାର୍ ବେଶ୍ ଆନନ୍ଦରେ ସମୟତକ କାଟି ଦିଅନ୍ତି । ସବୁଠୁ ବଡ଼ କଥା, ହେଉଛି ଖୋକା ସାର୍ କୌଣସି ପଶୁ, ପକ୍ଷୀକୁ ପଞ୍ଜୁରୀ କିମ୍ବା ପେଟି ଭିତରେ ଆବଦ୍ଧ



କରି ରଖୁ ନଥିଲେ । ସେଇଠି ତାଙ୍କ ମୁଣ୍ଡ ଉପରେ ବସିଥିବ ବଣି, କାନ୍ଧ ଉପରେ ଗୁଣ୍ଡୁଚିମୂଷା, ବାହୁରେ ଗୁଡେଇ ହୋଇଥିବ ବିଷଧର ସର୍ପ, ଜଂଘରେ ବିଲାତି ମୁଷା, ପାଦ ଚାଟୁଥିବ ଜଙ୍ଗଲୀ ଭାଲୁ, ଆଗରେ ପଛରେ ବୁଲୁଥିବେ ହରିଣ, ଠେକୁଆ, ମୟୂର ଆଦି ନାନା ପ୍ରକାରର ଜଙ୍ଗଲୀ ପଶୁପକ୍ଷୀ ।  ଏମିତି ଏକ ବିରଳ ଦୃଶ୍ୟ ସହିତ ଖୋକା ସାର୍ ସେ ଅଞ୍ଚଳର ସାଧାରଣ ମଣିଷଙ୍କ ଭିତରେ ଏକ ଅସାଧାରଣ ବ୍ୟକ୍ତିତ୍ୱ ପାଲଟି ଯାଇଥିବେ । ମାତ୍ର ଦୁର୍ଭାଗ୍ୟ, ପଶୁ, ପକ୍ଷୀଙ୍କୁ ଏଭଳି ପ୍ରେମ କରୁଥିବା ଜଣେ ସଚ୍ଚୋଟ ପ୍ରେମିକଙ୍କ ବିରୋଧରେ ବନ୍ୟପ୍ରାଣୀ ଆଇନ୍ ବଳରେ ମାମଲା ରୁଜୁ ହେବ, ତାହା ଭାବିଲେ ଦୁଃଖ ଲାଗେ । ଧନ୍ୟ, ଆମର ଜଙ୍ଗଲୀ ଆଇନ୍ ଓ ଧନ୍ୟ ଆମ ଦେଶ । ଯେଉଁଠି ଜଣେ ଜଣକୁ ଭଲ ପାଇଲେ ସେଥିପାଇଁ ଦଣ୍ଡ ଭୋଗିବାକୁ ପଡିଥାଏ ।

ଆନନ୍ଦପୁରର ପାଟରା ସାହିର ସୁବାସ ସିଂ ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା କରି ନିକଟରେ ଅବସର ଗ୍ରହଣ କରିଛନ୍ତି । ସୁବାସ ସିଂ ଜଣେ କୃତୀ ଶିକ୍ଷକ ଭାବେ ସମଗ୍ର କେନ୍ଦୁଝର ଜିଲ୍ଲାରେ ଏକ ନିଆରା ପରିଚୟ ସୃଷ୍ଟି କରିପାରିଛନ୍ତି । ଶିକ୍ଷକତା ପାଇଁ ସେ ୧୯୯୦ ମସିହାରେ ରାଜ୍ୟପାଳଙ୍କ ଦ୍ୱାରା ସମ୍ମାନିତ ହୋଇଥିବାବେଳେ ୧୯୯୨ ମସିହାରେ ରାଷ୍ଟ୍ରପତିଙ୍କ ଦ୍ୱାରା ପୁରସ୍କୃତ ହୋଇପାରିଛନ୍ତି । ପ୍ରକୃତି ପ୍ରେମ ଓ ପରିବେଶ ସୁରକ୍ଷା ପାଇଁ ମଧ୍ୟ ସେ ବିଭିନ୍ନ ସଂଗଠନମାନଙ୍କ

ପକ୍ଷରୁ ସମ୍ବର୍ଦ୍ଧିତ ହୋଇପାରିଛନ୍ତି । ଓଡ଼ିଶା ସରକାରଙ୍କ ପକ୍ଷରୁ ୨୦୦୬ ମସିହାରେ ସେ 'ପ୍ରକୃତି ବନ୍ଧୁ' ପୁରସ୍କାର ପ୍ରାପ୍ତ ହୋଇଛନ୍ତି । କେବଳ ଶିକ୍ଷା, ପ୍ରକୃତି ପ୍ରେମ ନୁହେଁ, ଶିଶୁ ସାହିତ୍ୟ ରଚନା କରିବାରେ ତାଙ୍କର କଲମ ମଧ୍ୟ ଥକି ପଡିନାହିଁ । ଓଡ଼ିଶାର ପ୍ରାୟ ସମସ୍ତ ଶିଶୁ ସାହିତ୍ୟ ପତ୍ରିକାରେ ଖୋକା ସାରଙ୍କ ଲେଖା ପ୍ରକାଶ ପାଇଥାଏ । ଶିଶୁ ସାହିତ୍ୟ ପାଇଁ ଖୋକା ସାର 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପକ୍ଷରୁ ବିଷୁବ ମିଳନ ଅବସରରେ 'ମୀନାବଜାର ପୁରସ୍କାର' ପାଇଛନ୍ତି । ଏହା ସହିତ ଅନ୍ୟାନ୍ୟ ବହୁ ଶିଶୁ ସାହିତ୍ୟ ଅନୁଷ୍ଠାନ ପକ୍ଷରୁ ମଧ୍ୟ ଖୋକା ସାର୍ ସମ୍ବର୍ଦ୍ଧିତ ହୋଇଛନ୍ତି । ତେବେ ଶିକ୍ଷାବିତ୍, ଶିଶୁ ସାହିତ୍ୟିକ ଭାବେ ସେ ଯେତିକି ପରିଚିତ, ତା'ଠୁ ଅଧିକ ଜଣେ 'ପଶୁ-ପକ୍ଷୀ ପ୍ରେମିକ' ଭାବେ ସ୍ଥାନୀୟ ଅଞ୍ଚଳରେ ପରିଚିତ । ସେ 'ଖୋକା ସାର୍' ଭାବେ କେନ୍ଦୁଝର ଜିଲ୍ଲା ସମେତ ସମଗ୍ର ରାଜ୍ୟରେ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଛନ୍ତି । ପୂର୍ବେ ତାଙ୍କ ଘରେ ନାନା ଜାତିର ପଶୁ, ପକ୍ଷୀ ଓ ସରୀସୃପ ରହିଥିଲେ । ମାତ୍ର, ଜଙ୍ଗଲ ବିଭାଗର କଡ଼ା ଆଇନ୍ ଓ ନୀତିନିୟମର ନାଲି ଆଖିର ଭୟରେ ଆଜି ତାଙ୍କୁ ତାଙ୍କର ନିଜ ଘରେ କୌଣସି ଜଙ୍ଗଲୀ ପଶୁପକ୍ଷୀ ରଖିବାକୁ ମନା ହୋଇଛି । ପ୍ରଶ୍ନ ଉଠେ ଚିଡ଼ିଆଖାନାରେ ବହୁ କଷ୍ଟ, ଯାତନା ଦିଆଯାଇ ପଶୁପକ୍ଷୀଙ୍କୁ ଆବଦ୍ଧ କରି ରଖା ଯାଇପାରୁଥିବାବେଳେ ସ୍ନେହ, ଶ୍ରଦ୍ଧାର ବନ୍ଧନ ମଧ୍ୟରେ ମୁକ୍ତ ଭାବେ କାହିଁକି ଖୋକା ସାର୍ଙ୍କ ସ୍ୱପ୍ନର ଚିଡ଼ିଆଖାନାରେ ରହିବେ ନାହିଁ । ସବୁଠୁ ଆଶ୍ଚର୍ଯ୍ୟର କଥା, ଖୋକା ସାର୍ କୌଣସି ପଶୁ ପକ୍ଷୀଙ୍କୁ ପଞ୍ଜୁରୀ କିମ୍ବା ଯନ୍ତାରେ ଆବଦ୍ଧ କରି ରଖି ନଥାନ୍ତି । ମୟୁର, ବଣି, ହଂସ, ଶୁଆ-ଶାରୀ, ନାନା ପ୍ରକାର ବିଦେଶୀ ପକ୍ଷୀ, ଲଭ୍ ବାର୍ଡ, ବିଦେଶୀ ଶୁଆ, ପାରା ଭଳି ନାନା ଜାତିର ପକ୍ଷୀମାନେ ଖୋକା ସାର୍ଙ୍କ ଅଗଣାରେ ଉଡି ବୁଲୁଥିବେ । କାହାରିକୁ ପଞ୍ଜୁରୀ କିମ୍ବା ଭାଡି ମଧ୍ୟରେ ରଖାଯାଇ ନଥାଏ । ସେହିଭଳି ଭାଲୁ, ଠେକୁଆ, ହରିଣ, ମାଙ୍କଡ଼, ସାପ, ଗୋଧି, ନେଉଳ, ଉଡ଼ନ୍ତା ଗୁଣ୍ଡୁଚି ମୁଷା ଭଳି ଜଙ୍ଗଲୀ ପଶୁମାନେ ଖୋକା ସାର୍ଙ୍କ ଘରେ ମୁକ୍ତ ଭାବେ ଘୁରି ବୁଲୁଥିବାର ଦେଖିଲେ ଖୋକା ସାର୍ଙ୍କ ସେହି ପଶୁ, ପକ୍ଷୀଙ୍କ ପ୍ରତି ଥିବା ସ୍ନେହ ଓ ପ୍ରେମକୁ ଆକଳନ କରି ହୁଏନାହିଁ । ଖୋକା ସାର୍ଙ୍କ ଏଭଳି ପଶୁପକ୍ଷୀଙ୍କ ପ୍ରେମ ଦେଖି ସେ ଆନନ୍ଦପୁର କାହିଁକି ସମଗ୍ର ରାଜ୍ୟ ଓ ଦେଶର ବିଭିନ୍ନ ଗଣମାଧ୍ୟମରେ ଚର୍ଚ୍ଚିତ ହେବା ପରେ ହିଁ ପ୍ରକୃତ ବିପଦ ଆରମ୍ଭ ହୋଇଯାଇଥିଲା । ଖୋକା ସାର୍ଙ୍କ ଘରେ ପଶୁପକ୍ଷୀଙ୍କ ଏଭଳି ଅବାଧ ବିଚରଣ ଦେଖି ଜଙ୍ଗଲ ବିଭାଗ ଆଉ ସହି ପାରି ନଥିଲା । ଜଙ୍ଗଲ ବିଭାଗ ତାଙ୍କ ଉପରେ ନାନା ପ୍ରକାର ଦଫା ଲଗେଇ ତାଙ୍କୁ ଜେଲ୍ ହାଜତକୁ ପଠେଇବାକୁ ଉଦ୍ୟମ କରିଥିଲେ । ମାତ୍ର, ପଶୁପକ୍ଷୀ ଓ ପ୍ରକୃତି ପ୍ରତି ଥିବା ଖୋକା ସାର୍ଙ୍କ ଏଭଳି ଅନାବିଳ ପ୍ରେମ ଆଗରେ ବିଚାରପତି ତରଳି ଯାଇଥିଲେ । ଜଙ୍ଗଲ ବିଭାଗ ପକ୍ଷରୁ ରୁଜୁ କରାଯାଇଥିବା ମାମଲାକୁ କୋର୍ଟ ଖାରଜ କରି ଦେଇଥିଲା । ବର୍ତ୍ତମାନ ଖୋକା ସାର୍ଙ୍କ ଘରେ

ପୂର୍ବ ଭଳି ଭାଲୁ, ମାଙ୍କଡ଼, ମୟୂର ଭଳି ଜଙ୍ଗଲୀ ପଶୁପକ୍ଷୀ ନଥିଲେ ମଧ୍ୟ ପଶୁପକ୍ଷୀଙ୍କ ପ୍ରତି ଥିବା ତାଙ୍କର ଅନାବିଳ ପ୍ରେମରେ ଭଟ୍ଟା ପଡିନାହିଁ । ଏବେ ବି ଖୋକା ସାର୍ ନିୟମିତ ଜଙ୍ଗଲ ଯାଇ ଘଡ଼ିଏ ପଶୁ, ପକ୍ଷୀଙ୍କୁ ଦେଖନ୍ତି ଓ ଭାବର ଆଦାନପ୍ରଦାନ କରି ଘରକୁ ଫେରନ୍ତି ।

ଖୋକା ସାର୍‌ଙ୍କ ଆଉ ଏକ ପରିଚୟ ରହିଛି । ଜଣେ ସର୍ପ ବିଶାରଦ ଭାବେ ଖୋକା ସାର୍ ସ୍ଥାନୀୟ ଅଞ୍ଚଳରେ ବେଶ୍ ପରିଚିତ । ଭୁବନେଶ୍ୱରର 'ସ୍ନେକ୍ ହେଲ୍‌ପ ଲାଇନ୍'ର ଶୁଭେନ୍ଦୁ ଭଳି ଖୋକା ସାର୍ ସମଗ୍ର କେନ୍ଦୁଝର ଜିଲ୍ଲାରେ ଜଣେ ସର୍ପ ବିଶାରଦ ଭାବେ ଜଣାଶୁଣା । କାହା ଘରେ ସାପ ପଶିଛି, କେଉଁଠି ଅଜଗର, ଅହିରାଜ ସାପ ଭୟରେ ଲୋକଙ୍କ ମଧ୍ୟରେ ଭାଳେଣି ପଡିଯାଇଛି, ସେତେବେଳେ ଖୋକା ସାର୍‌ଙ୍କୁ ଖୋଜା ପଡେ । ଖବର ପାଇବା ପରେ ଖୋକା ସାର୍ ସଙ୍ଗେସଙ୍ଗେ ସେଠାରେ ହାଜର ହୋଇ ବିଷଧର ସାପକୁ ଧରି ପୁନର୍ବାର ଜଙ୍ଗଲରେ ଛାଡି ଦେଇଥାନ୍ତି । ପଶୁପକ୍ଷୀଙ୍କ ପ୍ରତି ଥିବା ପ୍ରେମ ଓ ଭଲ ପାଇବା ଗୁଣ ଯୋଗୁଁ ଜଣେ ପରିବେଶବିତ୍ ଭାବେ ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ ହୋଇପାରିଛନ୍ତି ।

ଏ ସମସ୍ତ ପରିଚୟ ବ୍ୟତୀତ ଖୋକା ସାର୍‌ଙ୍କର ଅନ୍ୟ ଏକ ପରିଚୟ ରହିଛି । ସେ ଜଣେ ଯାଦୁକର *(magician)* ଭାବେ ସମଗ୍ର ଅଞ୍ଚଳରେ ବେଶ୍ ପରିଚିତ । ତାଙ୍କର ହାତ ସଫେଇ କୌଶଳ, ଅଲୌକିକ ଘଟଣା ଓ ଯାଦୁ ଦେଖିବାକୁ ଖୋକା ସାର୍‌ଙ୍କ ଘରେ ବହୁତ ଭିଡ ଲାଗିଥାଏ । ଏମିତିକି ଖୋକା ସାର୍ ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରି ନିଜର ଯାଦୁ ଦେଖେଇଥାନ୍ତି । ବିଶେଷକରି ଦୁର୍ଗତ, ପୀଡିତ ଓ ଅବହେଳିତ ଲୋକଙ୍କ ପାଇଁ ଖୋକା ସାର୍‌ଙ୍କ ପ୍ରାଣ କାନ୍ଦି ଉଠିଥାଏ । ବିଭିନ୍ନ ସ୍ଥାନରେ ଯାଦୁ ବିଦ୍ୟା ପ୍ରଦର୍ଶନ କରି ଏଥିରୁ ମିଳିଥିବା ଅର୍ଥ ରାଶିକୁ ସେ ଗରିବଙ୍କ ଉଦ୍ଦେଶ୍ୟରେ ଦାନ କରିଥାନ୍ତି । ମହାବାତ୍ୟା ପୀଡିତ ଓ ବନ୍ୟା ପୀଡିତଙ୍କ ଉଦ୍ଦେଶ୍ୟରେ ଖୋକା ସାର୍ ଯାଦୁ ଖେଳ ପ୍ରଦର୍ଶନ କରି ହଜାର ହଜାର ଟଙ୍କା ରୋଜଗାର କରି ସେସବୁକୁ ସେମାନଙ୍କ ଉଦ୍ଦେଶ୍ୟରେ ପ୍ରେରଣ କରିଥାନ୍ତି । ଏଣୁ ସେହି ବହୁମୁଖୀ ପ୍ରତିଭା ଓ ଦରଦି ମଣିଷ 'ଖୋକା ସାର୍'ଙ୍କୁ କୋଟି କୋଟି ପ୍ରଣାମ । କେନ୍ଦୁଝର ଜିଲ୍ଲା ଏଭଳି ଏକ ସନ୍ତାନ ଜନ୍ମ କରି ଧନ୍ୟ ହୋଇଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

## କେନ୍ଦୁଝରର ଅନ୍ୟ ଜଣେ ବରପୁତ୍ର: ଓଡ଼ିଶୀ ସଙ୍ଗୀତ ଗୁରୁ ଘନଶ୍ୟାମ ପଣ୍ଡା

ଓଡ଼ିଆ ଚଳଚ୍ଚିତ୍ର 'ଅଭିମାନ'ର ସେଇ ହୃଦୟସ୍ପର୍ଶୀ ଗୀତ 'କାହିଁ ଗଲ ବନ୍ଧୁରେ·· ରାଧାରାଣି ଝୁରି ମରେ··" ମନରେ ଗୁଣୁଗୁଣେଇଲା ବେଳେ କିଛି ସମୟ ପାଇଁ ଆମେ ଆନମନା ହୋଇଯାଉ । କିଏ ଏ ଗୀତକୁ ବୋଲିଛି ସେକଥା ଭୁଲିଯାଇଥାଉ । ଏ କାଳଜୟୀ ମନଛୁଆଁ ଗୀତର ଗାୟକ ଆଉ



କେହି ନୁହଁନ୍ତି, ସେ ହେଉଛନ୍ତି କେନ୍ଦୁଝରର ବରପୁତ୍ର ତଥା ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ କ୍ଲାସିକାଲ୍ ଓଡ଼ିଶୀ ସଙ୍ଗୀତ ସାଧକ ଗୁରୁ ଘନଶ୍ୟାମ ପଣ୍ଡା । ଆମ ସମୟର ଜଣେ ଶ୍ରେଷ୍ଠ ଓଡ଼ିଶୀ ସଙ୍ଗୀତ ବିଶାରଦ ଓ ପ୍ରଚ୍ଛଦପଟ ଗାୟକ ଭାବେ ସେ ସମଗ୍ର ଓଡ଼ିଶାରେ ପରିଚିତ । ଗୁରୁ ଘନଶ୍ୟାମ ପଣ୍ଡାଙ୍କ ପାଇଁ କେବଳ କେନ୍ଦୁଝର ଗର୍ବ କରେ ନାହିଁ ବରଂ ସମଗ୍ର ରାଜ୍ୟ ତାଙ୍କ ପାଇଁ ଗର୍ବିତ । ଗୁରୁ କେଳୁ ଚରଣ ମହାପାତ୍ର, ଗୁରୁ ପଙ୍କଜ ଚରଣ ଦାଶ, ଗୁରୁ ଦେବ ପ୍ରସାଦ ଦାଶ, ଡ· ମିନତୀ ମିଶ୍ର, ପଣ୍ଡିତ ଭୁବନେଶ୍ୱର ମିଶ୍ର, ବଂଶୀ ବାଦକ ମୋହିନୀ ମୋହନ ପଟ୍ଟନାୟକ, ମର୍ଦ୍ଦଳ ବାଦକ ବନମାଳି ମହାରଣା, ରଘୁନାଥ ପାଣିଗ୍ରାହୀ, ସଂଯୁକ୍ତା ପାଣିଗ୍ରାହୀ, ଗୁରୁ ରାମହରି ଦାଶଙ୍କ ସମସାମୟିକ ପ୍ରତିଭା ଘନଶ୍ୟାମ ପଣ୍ଡା ଓଡ଼ିଶୀ ସଂଗୀତ କ୍ଷେତ୍ରରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଓଡ଼ିଶୀ ସଙ୍ଗୀତକୁ 'ଶାସ୍ତ୍ରୀୟ ସଙ୍ଗୀତ'ର ମାନ୍ୟତା ପ୍ରଦାନ ପାଇଁ ସମଗ୍ର ଦେଶରେ ଆଜି ଯେଉଁଭଳି ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଛି, ସେହି ଆନ୍ଦୋଳନର ପ୍ରଚ୍ଛଦପଟ ନାୟକ ହେଉଛନ୍ତି ଓଡ଼ିଶୀ ସଙ୍ଗୀତ ଗୁରୁ ଘନଶ୍ୟାମ ପଣ୍ଡା । କେନ୍ଦୁଝରର ଏକ ଅଖ୍ୟାତ ପଲ୍ଲୀରେ ଜନ୍ମିଥିବା ଏହି ସଙ୍ଗୀତ ସାଧକ ଆଜି ସମଗ୍ର ଓଡ଼ିଶା କାହିଁକି ସମଗ୍ର ଦେଶର ଗର୍ବ ଓ ଗୌରବ ପାଲଟିଛନ୍ତି ।

ଗୁରୁ ଘନଶ୍ୟାମ ପଣ୍ଡାଙ୍କ ପିଲାଦିନ ବେଶ୍ ସଂଘର୍ଷମୟ ଓ ଘଟଣାବହୁଳ । କେନ୍ଦୁଝର ସହରଠାରୁ ଅନତି ଦୂରରେ ଥିବା ନେଲୁଂ ଗ୍ରାମରେ ଘନଶ୍ୟାମଙ୍କ ଜନ୍ମ । ୧୯୪୬ ମସିହା ଜୁଲାଇ ୧୦ ତାରିଖର ଏକ କ୍ଳାନ୍ତ ଅପରାହ୍ଣରେ ଶିଶୁ ଘନଶ୍ୟାମଙ୍କ କୁଆଁ ରାବ ଶୁଭିଥିଲା ନେଲୁଂ ଗ୍ରାମରେ । ଗାଁ ଚାଟଶାଳୀରୁ ଶିକ୍ଷାପ୍ରାପ୍ତ ହେବାପରେ ନିକଟସ୍ଥ ରାଜନଗର ହାଇସ୍କୁଲରେ ମେଟ୍ରିକ୍ ପର୍ଯ୍ୟନ୍ତ ଶିକ୍ଷା ପ୍ରାପ୍ତ କରିପାରିଥିଲେ । ଏହାପରେ ସେ କ'ଣ କରିବେ ଆଉ ବୁଝି ବାଟ ଦିଶି ନଥିଲା । ଜଣେ

ବ୍ରାହ୍ମଣ ଘରର ପିଲା ଭାବେ ଅତିବେଶିରେ ଯଜମାନି କରିବା କଥା । ସେହି ଲକ୍ଷ୍ୟ ନେଇ ସେ କେବଳ ଘୁରିବୁଲୁଥିଲେ । ମାତ୍ର, ଭାଗ୍ୟ କାହାକୁ କେଉଁ ଆଡକୁ ନେବ ତାହା ନିରୂପଣ କରିବ କିଏ?

ଘନଶ୍ୟାମ ହାଇସ୍କୁଲ୍ ପାଠ ଶେଷ କରି କିଛି ଦିନ ଗାଁରେ ବୁଲୁଥିଲେ ଓ ନିଜ ଦୁଇ ବଡ଼ ଭଉଣୀଙ୍କ ସହ ଗୀତ ଗାଉଥିଲେ । ଘନଶ୍ୟାମଙ୍କ ବାପା ନେଲୁଂର ମିଟୁ ପଣ୍ଡା ସେତେବେଳେ କେନ୍ଦୁଝରର ଜଣେ ପ୍ରଖ୍ୟାତ ପାଲା ଗାୟକ ଥିଲେ । ମିଟୁ ପଣ୍ଡାଙ୍କ ଦୁଇ ଝିଅ ଅହଲ୍ୟା ପଣ୍ଡା, ସ୍ୱର୍ଣ୍ଣପ୍ରଭା ପଣ୍ଡା ସେତେବେଳେ କଟକରେ ରହି ସଙ୍ଗୀତ ଶିକ୍ଷାଲାଭ କରୁଥିଲେ । ଦୁଇ ଭଉଣୀଙ୍କ ସଙ୍ଗୀତ ଶିକ୍ଷା ଦେଖି ଘନଶ୍ୟାମଙ୍କର ସଙ୍ଗୀତ ପ୍ରତି ଆଗ୍ରହ ଜନ୍ମିଥିଲା । ସେ ହାର୍‌ମୋନିୟମ ବଜେଇ ଖଣ୍ଡି ଖଣ୍ଡି ଗୀତ ଗାଇବାକୁ ଆରମ୍ଭ କଲେ । ଏତିକିବେଳେ କେନ୍ଦୁଝର ରାଜବଂଶର ସଙ୍ଗୀତ ଗୁରୁ ଯୋଗେନ୍ଦ୍ର ପତିଙ୍କ ସହ ତାଙ୍କର ଦେଖା ସାକ୍ଷାତ ହୋଇଥିଲା । ଗୁଣ ଚିହ୍ନେ ଗୁଣିଆ ଭଳି ଗୁରୁ ଯୋଗେନ୍ଦ୍ର ପତି (ଯୋଗି ପତି) ତାଙ୍କଠାରୁ ସଙ୍ଗୀତ ଶିକ୍ଷା କରିବାକୁ ଘନଶ୍ୟାମ (ଘନ)ଙ୍କୁ ଆମନ୍ତ୍ରଣ କରିଥିଲେ । ତତ୍କାଳୀନ କେନ୍ଦୁଝର ସହରର 'ପ୍ରେମଲତିକା କଳା ଭବନ'ରେ ତାଙ୍କର ସଙ୍ଗୀତ ଶିକ୍ଷା ଆରମ୍ଭ ହେଲା । ସେତେବେଳେ 'ପ୍ରେମଲତିକା କଳାଭବନ' କେନ୍ଦୁଝର ରାଜାଙ୍କର ସଙ୍ଗୀତ ଓ କଳାର ଏକ ବିନୋଦନ କେନ୍ଦ୍ର ଭାବେ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲା । ଏଣୁ ଗୁରୁ ଯୋଗେନ୍ଦ୍ର ପତି ଥିଲେ ଘନଶ୍ୟାମଙ୍କ ଆଦ୍ୟ ଗୁରୁ । ଗୁରୁ ଯୋଗି ପତିଙ୍କଠାରୁ ସଙ୍ଗୀତ ଶିକ୍ଷାଲାଭ କରିବା ପରେ ଜଣେ ଗାୟକ ଭାବେ କେନ୍ଦୁଝର ଅଞ୍ଚଳରେ ତାଙ୍କର ସୁଖ୍ୟାତି ବଢ଼ି ଯାଇଥିଲା ।

ଥରେ କେନ୍ଦୁଝର ରାଜ ପ୍ରାସାଦରେ ଏକ ରାଜ୍ୟସ୍ତରୀୟ ରାଜ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ରାଜ୍ୟ ତଥା ରାଜ୍ୟ ବାହାରୁ ପ୍ରାୟ ଶହେରୁ ଊର୍ଦ୍ଧ୍ୱ ରାଜା ନିମନ୍ତ୍ରିତ ହୋଇ ଆସିଥିଲେ । ରାଜପ୍ରାସାଦରେ ସଙ୍ଗୀତର ଆସର ଜମିଲା । ଏତିକି ବେଳେ ଗୁରୁ ଯୋଗେନ୍ଦ୍ର ପତିଙ୍କ ନିର୍ଦ୍ଦେଶକ୍ରମେ ବାଳକ ଶିଷ୍ୟ ଘନଶ୍ୟାମ ଏକ ଓଡ଼ିଶୀ ଗୀତ ଗାଇ ଉପସ୍ଥିତ ସମସ୍ତ ରାଜାମାନଙ୍କର ମନ ମୋହିଥିଲେ । ଏହା ପରେ ତତ୍କାଳୀନ କେନ୍ଦୁଝର ରାଜାଙ୍କ ଉଦ୍ୟମ କ୍ରମେ ଘନଶ୍ୟାମ 'ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ' ଦ୍ୱାରା ପରିଚାଳିତ 'ଉତ୍କଳ ସଂଗୀତ ମହାବିଦ୍ୟାଳୟ'ରେ ନାମ ଲେଖାଇ ପାରିଥିଲେ । ୧୯୭୧-୭୨ ମସିହା ବେଳକୁ ଘନଶ୍ୟାମ ବୃତ୍ତିଗତ ବିଭାଗରେ 'ସଙ୍ଗୀତାଚାର୍ଯ୍ୟ' ସଫଳତାର ସହ ଶେଷ କଲେ । ଓଡ଼ିଶୀ ସଙ୍ଗୀତରେ ସ୍ନାତକୋତ୍ତର ଉତ୍ତୀର୍ଣ୍ଣ ହେବାପରେ ଘନଶ୍ୟାମ ସେହି ସଙ୍ଗୀତ ମହାବିଦ୍ୟାଳୟରେ ହିଁ ଅଧ୍ୟାପନା ବୃତ୍ତି ଆରଂଭ କଲେ ।

ଆଦ୍ୟ ଗୁରୁ କେନ୍ଦୁଝରର ଯୋଗୀ ପତିଙ୍କଠାରୁ ସଙ୍ଗୀତ ଶିକ୍ଷା ଲାଭ କରିବା ପରେ ଘନଶ୍ୟାମଙ୍କ ଜୀବନରେ ଆଉ କିଛି ସଙ୍ଗୀତ ଗୁରୁଙ୍କ ଆବିର୍ଭାବ ଘଟିଥିଲା । ସିଂହାରୀ ଶ୍ୟାମସୁନ୍ଦର କର,

ନୃସିଂହନାଥ ଖୁଣ୍ଟିଆ, ମାର୍କଣ୍ଡେୟ ମହାପାତ୍ର, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ, ଗୋପାଳ ଚନ୍ଦ୍ର ପଣ୍ଡା ପ୍ରମୁଖ ସଙ୍ଗୀତ ଗୁରୁମାନଙ୍କଠାରୁ ଘନଶ୍ୟାମ ସଙ୍ଗୀତ ଶିକ୍ଷା ଲାଭ କରିଥିଲେ । ଏହା ପରଠାରୁ ଘନଶ୍ୟାମ ଆଉ ପଛକୁ ଫେରି ଚାହିଁବାର ସୁଯୋଗ ପାଇନାହାନ୍ତି ।

ଗୁରୁ ଘନଶ୍ୟାମ ପଣ୍ଡା ଆଜି ରାଜ୍ୟ କାହିଁକି ସମଗ୍ର ଦେଶର ଜଣେ ଆଗଧାଡ଼ିର ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ଭାବେ ପରିଚିତ । ଶାସ୍ତ୍ରୀୟ ସଙ୍ଗୀତ, ଓଡ଼ିଶୀ ଗୀତ ଗାଇ ଗୁରୁ ଘନଶ୍ୟାମ ରାଜ୍ୟ ପାଇଁ ବହୁ ଗୌରବ ହାସଲ କରିଛନ୍ତି । ତାଙ୍କର ଜୀବନବ୍ୟାପୀ ଓଡ଼ିଶୀ ସଙ୍ଗୀତ ସାଧନା ପାଇଁ ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ ହୋଇଛନ୍ତି । ଗୁରୁ ଘନଶ୍ୟାମ ପଣ୍ଡା ସମ୍ମାନଜନକ 'ଓଡ଼ିଶା ସଂଗୀତ ନାଟକ ଏକାଡେମୀ' ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ଏହାବ୍ୟତୀତ ସେ 'ମାହାରି ସମ୍ମାନ', ରାଜୀବ ଗାନ୍ଧୀ ଫାଉଣ୍ଡେସନ ପକ୍ଷରୁ 'ରାଜୀବ ଗାନ୍ଧୀ ସମ୍ମାନ' ପାଇଛନ୍ତି । ଓଡ଼ିଆ ଚଳଚ୍ଚିତ୍ର ସଂଗୀତ କ୍ଷେତ୍ରରେ କଣ୍ଠ ଦାନ ପାଇଁ ସେ ଦୁଇଦୁଇ ଥର ଶ୍ରେଷ୍ଠ ପ୍ରଚ୍ଛଦପଟ କଣ୍ଠଶିଳ୍ପୀ ଭାବେ ପୁରସ୍କୃତ ହୋଇଛନ୍ତି । ଏହାବ୍ୟତୀତ ସେ 'ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ ଫାଉଣ୍ଡେସନ' ପକ୍ଷରୁ 'ସଙ୍ଗୀତ ସରସ୍ୱତୀ' ସମ୍ମାନ ପ୍ରାପ୍ତ ହୋଇପାରିଛନ୍ତି । 'ଉତ୍କଳ ଡ୍ୟାନ୍ସ ଆଣ୍ଡ ରିସର୍ଚ୍ଚ ଏକାଡେମୀ', ନୟାଗଡ଼ର ଶରଣକୁଳସ୍ଥିତ 'ଉତ୍କଳ ଆର୍ଟ ଆଣ୍ଡ ମ୍ୟୁଜିକ୍ ସ୍କୁଲ୍' ପକ୍ଷରୁ ଗୁରୁ ଘନଶ୍ୟାମ ମଧ୍ୟ ସମ୍ବର୍ଦ୍ଧିତ ହୋଇଛନ୍ତି । ନିକଟରେ ନିଜ ମାଟି 'କେନ୍ଦୁଝର ବିକାଶ ମଞ୍ଚ' ତାଙ୍କୁ କେନ୍ଦୁଝର ଜିଲ୍ଲାର ବରପୁତ୍ର ଭାବେ ସମ୍ବର୍ଦ୍ଧିତ କରିଛି । ଓଡ଼ିଆ ଚଳଚ୍ଚିତ୍ର 'ଲକ୍ଷେ ଶିବ ପୂଜି ପାଇଚି ପୁଅ' ଏବଂ 'ଷୋଳ ଶୁକ୍ରବାର' ପାଇଁ ସେ ଦୁଇ ଦୁଇଥର ଶ୍ରେଷ୍ଠ 'ପ୍ଲେ ବ୍ୟାକ୍ ସିଙ୍ଗର' ଆୱାର୍ଡ ପାଇଛନ୍ତି ।

ଗୁରୁ ଘନଶ୍ୟାମ ବିଶେଷକରି ଜଣେ ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ହୋଇଥିଲେ ମଧ୍ୟ ୨୦ରୁ ଊର୍ଦ୍ଧ୍ୱ ଓଡ଼ିଆ ଚଳଚ୍ଚିତ୍ରରେ କଣ୍ଠଦାନ କରିଛନ୍ତି । 'ଅଭିମାନ', 'ସପନ ବଣିକ', 'ପର ଝିଅ ଘର ଭାଙ୍ଗେନା', 'ବାବୁଲା (ସାଧୁ ମେହେର ନିର୍ଦ୍ଦେଶିତ), 'ଲକ୍ଷେ ଶିବ ପୂଜି ପାଇଛି ପୁଅ', 'ଛ' ମାଣ ଆଠ ଗୁଣ୍ଠ', 'ଗୋଜ ବାୟାଣୀ', 'ଜୟଦେବ', 'ଷୋଳ ଶୁକ୍ରବାର', 'ଶାଶୁଘର ଚାଲିଯିବି' ଆଦି ଅନେକ ଓଡ଼ିଆ ଚଳଚ୍ଚିତ୍ରରେ ଘନଶ୍ୟାମଙ୍କ ମନଛୁଆଁ କଣ୍ଠର ଯାଦୁ ଓଡ଼ିଶାବାସୀଙ୍କୁ ପାଗଳ କରିଛି । ପ୍ରସିଦ୍ଧ ହିନ୍ଦୀ ଚଳଚ୍ଚିତ୍ର ନିର୍ଦ୍ଦେଶକ ବିପ୍ଳବ ଚୌଧୁରୀଙ୍କ କଳାତ୍ମକ ସିନେମା 'ୟେ କାହାନି ନେହିଁ'ରେ କଣ୍ଠଦାନ କରି ଘନଶ୍ୟାମ ଜାତୀୟ ସ୍ତରରେ ଚର୍ଚ୍ଚିତ ହୋଇପାରିଛନ୍ତି । ଏହାବ୍ୟତୀତ ଗୁରୁ ଘନଶ୍ୟାମ ପାଖାପାଖି ୮୦୦ରୁ ଊର୍ଦ୍ଧ୍ୱ ଓଡ଼ିଆ ଭଜନ, ଆଲ୍‌ବମ୍ କ୍ୟାସେଟରେ କଣ୍ଠ ଦାନ କରି ଓଡ଼ିଆ ଶ୍ରୋତାଙ୍କ ଦ୍ୱାରା ଗ୍ରହଣୀୟ ହୋଇପାରିଛନ୍ତି । ଏକ ଟେଲିଭିଜନ ଧାରାବାହିକ 'ବିଧାତାର ଖେଳ'ରେ କଣ୍ଠଦାନ କରି ଶ୍ରେଷ୍ଠ ପ୍ରଚ୍ଛଦପଟ ଗାୟକ ଭାବେ ସେ ସମ୍ବର୍ଦ୍ଧିତ ହୋଇଛନ୍ତି ।

ଓଡ଼ିଶୀ ଗୀତ ଓ ନାଚର ପ୍ରଚାର ଓ ପ୍ରସାର ପାଇଁ ଗୁରୁ ଘନଶ୍ୟାମ ନିଜ ରାଜ୍ୟ ଓ ଦେଶର ବିଭିନ୍ନ ଅଞ୍ଚଳ ସମେତ ବିଶ୍ୱର ବହୁ ଦେଶ ଭ୍ରମଣ କରିଛନ୍ତି । ସେ ଭାରତର ବିଭିନ୍ନ ରାଜ୍ୟ ସମେତ

ଯୁକ୍ତରାଷ୍ଟ୍ର ଆମେରିକା, ଋଷିଆ, ଜାପାନ୍, ଜର୍ମାନୀ, ଇଟାଲୀ, ବେଲଜିୟମ୍, ଫ୍ରାନ୍ସ, ଯୁଗୋସ୍ଲୋଭିଆ, ଗ୍ରୀସ୍, ସାଇପ୍ରସ, ହଂକଂ, ମାଲୟେସିଆ, ଅଷ୍ଟ୍ରେଲିଆ, ଇଂଲଣ୍ଡ ଆଦି ଅନେକ ଦେଶ ଭ୍ରମଣ କରିଛନ୍ତି । ସବୁଠି ଓଡ଼ିଶୀ ଗୀତ ଓ ନାଚର ପ୍ରଚାର ଓ ପ୍ରସାର ପାଇଁ ଉଦ୍ୟମ କରିଛନ୍ତି ।

ଓଡ଼ିଶୀ ସଙ୍ଗୀତ ଗୁରୁ ଘନଶ୍ୟାମ ଏବେ ବୟସର ଅପରାହ୍ନରେ ପହଞ୍ଚିଥିଲେ ମଧ୍ୟ ଓଡ଼ିଶୀ ସଙ୍ଗୀତକୁ 'ଶାସ୍ତ୍ରୀୟ ସଙ୍ଗୀତ'ର ମାନ୍ୟତା ପ୍ରଦାନ ନେଇ ନିଜର ଲଢେଇ ଜାରି ରଖିଛନ୍ତି । ଓଡ଼ିଶୀକୁ 'ଶାସ୍ତ୍ରୀୟ ସଙ୍ଗୀତ'ର ମାନ୍ୟତା ମିଳିବାକୁ ହେଲେ ଓଡ଼ିଶାରେ ବହୁ ସଂଖ୍ୟାରେ ଓଡ଼ିଶୀ କଣ୍ଠଶିଳ୍ପୀ ପ୍ରସ୍ତୁତ କରିବାକୁ ହେବ ବୋଲି କହନ୍ତି ଗୁରୁ ଘନଶ୍ୟାମ । ଏଣୁ ଭବିଷ୍ୟତରେ ସେ ଏକ ଅନୁଷ୍ଠାନ ଗଢି ସେଠାରେ ବହୁ ସଂଖ୍ୟାରେ ଯୁବକ, ଯୁବତୀଙ୍କୁ ଓଡ଼ିଶୀ ସଙ୍ଗୀତ ଶିକ୍ଷା ପ୍ରଦାନ କରିବେ ବୋଲି କହନ୍ତି ଗୁରୁ ଘନଶ୍ୟାମ । କେନ୍ଦୁଝର ମାଟିର ସନ୍ତାନ ହୋଇ ମଧ୍ୟ ସେ କେନ୍ଦୁଝର ପାଇଁ କିଛି କରି ପାରି ନଥିବାରୁ ତାଙ୍କ ମନରେ ଏକ ଅବଶୋଷ ରହିଛି । ସେ କେନ୍ଦୁଝର ଜିଲ୍ଲାରେ ଏକ 'ଓଡ଼ିଶୀ ସଙ୍ଗୀତ ଗବେଷଣା ପ୍ରତିଷ୍ଠାନ' କରିବାକୁ ମନ ବଳାଇଥିଲେ ମଧ୍ୟ ବିଭିନ୍ନ କାରଣରୁ ଏହା ସମ୍ଭବପର ହୋଇପାରୁନାହିଁ । କେନ୍ଦୁଝର ଜିଲ୍ଲା ପ୍ରଶାସନ ତାଙ୍କୁ ଉପଯୁକ୍ତ ପରିମାଣର ଜମି ଯୋଗେଇ ଦେଲେ ତାଙ୍କର ଏହି ସ୍ୱପ୍ନ ପୂରଣ ହୋଇପାରିବ ବୋଲି କହନ୍ତି ଗୁରୁ ଘନଶ୍ୟାମ । ତେବେ ତାଙ୍କର ଏହି ସ୍ୱପ୍ନ କେବେ ପୂରଣ ହେବ ତାହା ସମୟ କହିବ ।

## କେନ୍ଦୁଝର ଜିଲ୍ଲାର ସର୍ବ ପୁରାତନ ନାଟ୍ୟାନୁଷ୍ଠାନ: ଆନନ୍ଦପୁରର 'ନୃସିଂହ ନାରାୟଣ ରାସ ପାର୍ଟି'

ଆଜି କେନ୍ଦୁଝର ଜିଲ୍ଲାର ସବୁଠୁ ପ୍ରାଚୀନ ଓ ପ୍ରଥମ ନାଟ୍ୟାନୁଷ୍ଠାନ ଆନନ୍ଦପୁରର 'ନୃସିଂହ ନାରାୟଣ ରାସ ପାର୍ଟି' ନାହିଁ ସତ, ମାତ୍ର ଇତିହାସ ପୃଷ୍ଠାରେ ଛାଡିଯାଇଥିବା ପଦଚିହ୍ନ ଏବେ ବି ଉଜ୍ଜୀବିତ ରହିଛି । ଏକଦା ଆନନ୍ଦପୁରର ଏହି ନାଟ୍ୟାନୁଷ୍ଠାନ ସମଗ୍ର ରାଜ୍ୟରେ ବେଶ୍ ପ୍ରସିଦ୍ଧି ଅର୍ଜନ କରିପାରିଥିଲା । ଏଠାରୁ ଅନେକ ରାଜ୍ୟସ୍ତରୀୟ କଳାକାର ସୃଷ୍ଟି ହୋଇ ରାଜ୍ୟ ତଥା ରାଜ୍ୟ ବାହାରେ ଲୋକପ୍ରିୟତା ହାସଲ କରିପାରିଥିଲେ ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁରଠାରେ ଥିବା ଏହି ନାଟ୍ୟାନୁଷ୍ଠାନ କେନ୍ଦୁଝର ଜିଲ୍ଲାର ସର୍ବ ପ୍ରଥମ ନାଟ୍ୟାନୁଷ୍ଠାନ ଥିଲା । ୧୯୪୬ ମସିହାରେ କେନ୍ଦୁଝରର ରାଜା ବଳଭଦ୍ର ନାରାୟଣ ଭଞ୍ଜଦେଓଙ୍କ ପୁତ୍ର ନୃସିଂହ ନାରାୟଣ ଭଞ୍ଜଦେବଙ୍କ ନାମରେ ଏହି ଅନୁଷ୍ଠାନଟି ଗଢି ଉଠିଥିଲା । ସ୍ୱର୍ଗତଃ ଯୋଗେଶ୍ୱର ପାତ୍ର, ରଥି ଦାସ, ରତ୍ନାକର ତ୍ରିପାଠୀ, ଗୋବିନ୍ଦ ରାମ, କାହ୍ନୁ ଚରଣ ଚାନ୍ଦ ପ୍ରମୁଖ ଉତ୍ସାହୀ ନାଟୁଆମାନଙ୍କୁ ନେଇ ସେତେବେଳେ ଏହି ଅନୁଷ୍ଠାନଟିର ମୂଳଦୁଆ ପଡିଥିଲା । କେବଳ କେନ୍ଦୁଝର ଜିଲ୍ଲା ନୁହେଁ ବରଂ ସମଗ୍ର ରାଜ୍ୟରେ ଏହି 'ନୃସିଂହ ନାରାୟଣ ରାସ ପାର୍ଟି'

ବେଶ୍ ସୁଖ୍ୟାତି ଅର୍ଜନ କରିଥିଲା । ବିଶେଷକରି ରାମାୟଣ ଓ ମହାଭାରତ ଭଳି ପୌରାଣିକ ବିଷୟବସ୍ତୁକୁ ନେଇ ବିଭିନ୍ନ ନାଟ୍ୟାଭିନୟ ପରିବେଷଣ କରାଯାଉଥିଲା । ଜନ୍ମାଷ୍ଟମୀ, କାଳୀୟ ଦଳନ, ସୁବଳ ମିଳନ, ମାନଭଞ୍ଜନ, ମଥୁରା ବିଜୟ, ରୁକ୍ମିଣୀ ବିବାହ, ସୀତା ବିବାହ, ଲକ୍ଷ୍ମଣ ଶକ୍ତିଭେଦ, ବାଳି ବଧ ଆଦି ନାଟକ ସେତେବେଳେ ଅଧିକ ଲୋକପ୍ରିୟ ହୋଇପାରିଥିଲା । ଆନନ୍ଦପୁର ଅଞ୍ଚଳର ନାଟ୍ୟକାର ସ୍ୱର୍ଗତଃ ଶ୍ୟାମ ସୁନ୍ଦର ମିଶ୍ର, ନାରାୟଣ ମିଶ୍ର, କୈଳାସ ସିହ୍ନା ଓ ବାବାଜୀ ଚରଣ ପାଢୀଙ୍କ ଦ୍ୱାରା ରଚିତ ନାଟକମାନ ସେତେବେଳେ ଏହି ଅନୁଷ୍ଠାନ ପକ୍ଷରୁ ପରିବେଷଣ କରାଯାଉଥିଲା । ଏହି ନାଟ ଦଳର ଅଭିନେତାମାନେ ମଞ୍ଚ ଉପରେ ସଂଳାପ ସହିତ ଗୀତ ବୋଲି ନିଜର ଅଭିନୟ ପ୍ରଦର୍ଶନ କରୁଥିଲେ । ଏହାକୁ ଗୀତାଭିନୟ କୁହାଯାଉଥିଲା । ହାର୍‌ମୋନିୟମ, ତବଲା, ବିଗୁଲ୍, ବେହେଲା ଭଳି କିଛି ବାଦ୍ୟଯନ୍ତ୍ରକୁ ନେଇ ସେତେବେଳେ ଏହି ନାଟ୍ୟାନୁଷ୍ଠାନଟି ସମଗ୍ର ରାଜ୍ୟରେ ଚହଳ ପକାଇଥିଲା । କାହ୍ନୁ ଚରଣ ଚାନ୍ଦ, ରଘୁନାଥ ବେହେରା, ନାଣ୍ଟୁ ନାହାକ, ନାରାୟଣ ରଣା, ବସନ୍ତ ପାତ୍ର ପ୍ରମୁଖ ବାଦ୍ୟ ପରିବେଷଣ କରୁଥିଲେ । ଏହି ନାଟ୍ୟ ଅନୁଷ୍ଠାନର ରାମଚନ୍ଦ୍ର ମିଶ୍ର ମାଇକ୍ ଓ ତେ ଲାଇଟ୍ ପରିଚାଳନା ଦାୟିତ୍ୱରେ ଥିଲେ । ସେତେବେଳେ ରାମଚନ୍ଦ୍ର ମିଶ୍ରଙ୍କର ଏକ ଚିତ୍ରାଳୟ ଦୋକାନ ଥିଲା । ତାଙ୍କ ଦୋକାନରୁ ଡ୍ରେସିଂ, ପେଣ୍ଟିଂ ଆଦି ସମସ୍ତ ପ୍ରକାର ସାଜ ସରଞ୍ଜାମ ମିଳିପାରୁଥିଲା । ସେତେବେଳେ ପେଣ୍ଡାଲ୍ (ମଞ୍ଚ)ରେ 'ସିନ୍'ର ବ୍ୟବହାର ଆରମ୍ଭ ହୋଇପାରିଥିଲା । ଶିଳ୍ପୀ ଯୋଗେଶ୍ୱର ପାତ୍ର ନାଟକର କଥାବସ୍ତୁକୁ ନେଇ ବିଭିନ୍ନ ପ୍ରକାର 'ସିନ୍' ନିଜ ତୁଳୀରେ ଆଙ୍କୁଥିଲେ । ମଞ୍ଚ ସଜା ଦାୟିତ୍ୱଟି ସଂପୂର୍ଣ୍ଣ ଭାବେ ଶିଳ୍ପୀ ଯୋଗେଶ୍ୱର ପାତ୍ରଙ୍କର ଥିଲା ।

'ନୃସିଂହ ନାରାୟଣ ରାସ ପାର୍ଟି'ରେ ଅଭିନୟ କରୁଥିବା କଳାକାରମାନେ ଆଜି ଇହ ଧାମରେ ନାହାନ୍ତି ସତ, କିନ୍ତୁ ସେମାନଙ୍କ ଜୀବନ୍ତ ଅଭିନୟ ଆଜି ଜନମାନସରୁ ଲିଭିନାହିଁ । ଆନନ୍ଦପୁର ଅଞ୍ଚଳର ରାମଚନ୍ଦ୍ର ମଙ୍ଗଳ କଂସ ରାଜା ଭୂମିକାରେ ଅଭିନୟ କରି ସେତେବେଳେ ବେଶ୍ ଚର୍ଚ୍ଚାରେ ରହିଥିଲେ । ଅନ୍ୟ କଳାକାରଙ୍କ ମଧ୍ୟରେ ଶ୍ରୀନିବାସ ଦାଶ, ବୀରକିଶୋର ଦାଶ, ପୁରୁଷୋତ୍ତମ ମିଶ୍ର, ହାଡିବନ୍ଧୁ ହଜାରୀ, ବିଭୁତି ଭୂଷଣ ଚାନ୍ଦ, ହରିହର ସାହୁ, ରତ୍ନାକର ଖୁଣ୍ଟିଆ, ନାରାୟଣ ସା, ଦୈତାରୀ ଜେନା, ନନ୍ଦକିଶୋର ବାରିକ, ବାମନ ଚରଣ ପଣ୍ଡା ପ୍ରମୁଖ ବିଭିନ୍ନ ଭୂମିକାରେ ଅଭିନୟ କରି ନିଜର କଳା ଦକ୍ଷତା ପ୍ରତିପାଦନ କରିପାରିଥିଲେ । ଅପରପକ୍ଷେ, ହାଡ଼ିବନ୍ଧୁ ନନ୍ଦି, ପଞ୍ଚାନନ ଖୁଣ୍ଟିଆ, ଫକୀର ସାମଲ, ନାରାୟଣ ସାମଲ, ଭଗବାନ ରାମ୍, ସୁଦର୍ଶନ ସାହୁ, ଧର ସାହୁ, ପ୍ରାଣନାଥ ରଣା ପ୍ରମୁଖ ପୁରୁଷ କଳାକାରମାନେ ବିଭିନ୍ନ ପ୍ରକାର ନାରୀ ଚରିତ୍ରରେ ଅଭିନୟ କରି ସେତେବେଳେ ଚହଳ ସୃଷ୍ଟି କରିଥିଲେ । କୁହାଯାଏ, ହାଡ଼ିବନ୍ଧୁ ନନ୍ଦିଙ୍କୁ ସ୍ତ୍ରୀ ପୋଷାକ ପିନ୍ଧେଇ ସଜେଇ ଦେଲେ ସେ ଜଣେ ପୁରୁଷ ବୋଲି କେହି ଜାଣି ପାରନ୍ତିନାହିଁ । ହାଡିବନ୍ଧୁ ବିଶେଷକରି

ରାଣୀ ଭୂମିକାରେ ଅଭିନୟ କରିଥାନ୍ତି ।

'ନୃସିଂହ ନାରାୟଣ ରାସ ପାର୍ଟି' କେନ୍ଦୁଝର ଜିଲ୍ଲାର ଆନନ୍ଦପୁର, କେନ୍ଦୁଝର, ଚଂପୁଆ, ବଡ଼ବିଲ, ଚମକପୁର, ଶିମୁଳି, ଝୁଂପୁରା, ଘଟଗାଁ, ଦେଓଗାଁ, ବାର୍ହାଟିପୁରା, ଢେଙ୍କା, ଓରାଳି, ହଦଗଡ଼ ଭଳି ପ୍ରାଚୀନ ପାରଂପରିକ ମଞ୍ଚରେ ନାଟକ ପରିବେଷଣ କରି ସମଗ୍ର ଜିଲ୍ଲାରେ ଲୋକପ୍ରିୟତା ଅର୍ଜନ କରିପାରିଥିଲା । କେନ୍ଦୁଝର ଜିଲ୍ଲା ବ୍ୟତୀତ ପଡୋଶୀ ଜିଲ୍ଲା ମୟୁରଭଞ୍ଜ, ଅବିଭକ୍ତ ବାଲେଶ୍ୱର, ଅବିଭକ୍ତ କଟକ ଜିଲ୍ଲା ଏବଂ ପଡୋଶୀ ରାଜ୍ୟ ତତ୍କାଳୀନ ବିହାର ରାଜ୍ୟ (ଆଜିର ଝାଡଖଣ୍ଡ)ର ବିଭିନ୍ନ ସ୍ଥାନରେ ନାଟକ ପରିବେଷଣ କରି 'ନୃସିଂହ ନାରାୟଣ ରାସ ପାର୍ଟି' ବେଶ୍ ସୁନାମ ଅର୍ଜନ କରିଥିଲା ।

୧୯୪୬ ମସିହାରେ ଜନ୍ମ ନେଇଥିବା ଏହି ଅନୁଷ୍ଠାନଟି ୧୯୬୪ ମସିହା ପର୍ଯ୍ୟନ୍ତ ଦୀର୍ଘ ଅଠର ବର୍ଷ କାଳ ସଫଳତାର ସହ ନାଟ୍ୟାଭିନୟ କରି ସମଗ୍ର ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ଅନୁଷ୍ଠାନର ଅଧିକାଂଶ କଳାକାରଙ୍କର ବିୟୋଗ ଘଟି ସାରିଥିଲେ ମଧ୍ୟ ଆଉ କିଛି କଳାକାର ଏବେ ବି ବଞ୍ଚି ରହିଛନ୍ତି । ବାର୍ଦ୍ଧକ୍ୟର ଚରମ କଷାଘାତରେ ମଧ୍ୟ ପୁରୁଣା ଦିନର ସ୍ମୃତିକୁ ମନେ ପକାଇ ଆତ୍ମବିଭୋର ହୋଇ ପଡନ୍ତି ଏହି କଳାକାରମାନେ । ଆଜି କେବଳ ସେହି କଳାକାରମାନଙ୍କ ସ୍ମୃତି, ଗୌରବ ଓ ଗାଥାକୁ ମନେ ପକାଇ ରୋମାଞ୍ଚିତ ହେବା ସହ ସେମାନଙ୍କୁ ମଥା ନତ କରି ସଲାମ୍ କରିବାକୁ ଇଚ୍ଛା ହୁଏ ।

## ଉତ୍ତର ଓଡ଼ିଶାର ଏକମାତ୍ର ଘରୋଇ ଚାରୁ ଓ କାରୁକଳା ମହାବିଦ୍ୟାଳୟ

କଳାର ବିକାଶ ଉଦ୍ଦେଶ୍ୟରେ ରାଜ୍ୟ ତଥା ସମଗ୍ର ଉତ୍ତର ଓଡ଼ିଶାରେ ଏକମାତ୍ର ଘରୋଇ ଚାରୁ ଓ କାରୁକଳା ମହାବିଦ୍ୟାଳୟ କେନ୍ଦୁଝରଠାରେ ସ୍ଥାପନ କରାଯାଇଛି । ୨୦୦୦ ମସିହାରୁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଶ୍ୱବିଦ୍ୟାଳୟ ଅଧୀନରେ କାର୍ଯ୍ୟ କରୁଥିବା ଏହି କଳା ମହାବିଦ୍ୟାଳୟଟି ଅନେକ ସମସ୍ୟା ଦେଇ ଗତି କରୁଛି । ଏହା ସତ୍ତ୍ୱେ ଏହି ଅନୁଷ୍ଠାନଟି ଅନେକ ଚିତ୍ରଶିଳ୍ପୀ, କାରିଗର ଓ କଳାକାରଙ୍କୁ ସୃଷ୍ଟି କରିପାରିଛି । ଉକ୍ତ କଳା ମହାବିଦ୍ୟାଳୟର ନିଜସ୍ୱ ଗୃହ ନଥିବାରୁ ଏହା କେନ୍ଦୁଝର ନିୟନ୍ତ୍ରିତ ବଜାର କମିଟିର କାର୍ଯ୍ୟାଳୟର ଭଡା ଘରେ ଚାଲିଛି । ଶ୍ରୀଅରବିନ୍ଦ ଚାରୁ ଓ କାରୁକଳା ମହାବିଦ୍ୟାଳୟ ନିରବଚ୍ଛିନ୍ନ ଭାବରେ ଆଗ୍ରହୀ ଛାତ୍ରଛାତ୍ରୀଙ୍କୁ ପେଣ୍ଟିଂ, ଗ୍ରାଫିକ୍ସ, କର୍ମସିଆଲ୍ ଆର୍ଟ, ପାରଂପରିକ ସ୍ଥାପତ୍ୟ କଳାରେ ଶିକ୍ଷା ପ୍ରଦାନ କରିଆସୁଛି । ଘରୋଇ ଭାବେ ଚାଲୁଥିବା ଏହି ମହାବିଦ୍ୟାଳୟରେ ୨୦ଟି ସିଟ୍ ରହିଛି । ଏଠାରେ ୧୧ ଜଣ ଅଧ୍ୟାପକ ଓ ୬ ଜଣ କର୍ମଚାରୀଙ୍କୁ ନେଇ ମୋଟ ୧୭ ଜଣ କର୍ମଚାରୀ ଅଛନ୍ତି । ଏହି ଅନୁଷ୍ଠାନରେ ଚିତ୍ରକଳା, ମୃତ୍ତିକା କଳା, ସ୍ଥାପତ୍ୟ କଳା, ମୁଦ୍ରଣ କଳା, ମଣ୍ଡନ କଳା, ଭାରତୀୟ ଚିତ୍ରକଳା, ପାରଂପରିକ ମୂର୍ତ୍ତି କଳା ଓ କଳା ଇତିହାସ

ଆଦି ପାଠ୍ୟକ୍ରମ ରହିଛି । କେନ୍ଦୁଝରଠାରେ ଥିବା ଏହି ଅନୁଷ୍ଠାନଟିରେ କେନ୍ଦୁଝର ସମେତ ମୟୂରଭଞ୍ଜ, ଅନୁଗୁଳ, ଢେଙ୍କାନାଳ, ଦେବଗଡ, ବାଲେଶ୍ୱର ଆଦି ଜିଲ୍ଲାର ଛାତ୍ରଛାତ୍ରୀମାନେ ପାଠ ପଢିବାର ସୁଯୋଗ ପାଉଛନ୍ତି ।

## ଆକାଶବାଣୀ କେନ୍ଦୁଝର

୧୯୮୮ ମସିହା ନଭେମ୍ବର ୨୯ ତାରିଖ ଦିନ କେନ୍ଦୁଝରଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା ହୋଇଥିଲା । ଓଡ଼ିଶାର ପ୍ରଥମ ସ୍ଥାନୀୟ ବେତାର କେନ୍ଦ୍ର **(local radio station)** ଭାବେ କେନ୍ଦୁଝର ଆକାଶବାଣୀ କେନ୍ଦ୍ର ସେତେବେଳେ ଏକ ନିଆରା ପରିଚୟ ସୃଷ୍ଟି କରିପାରିଥିଲା । ଏହି କେନ୍ଦ୍ର ପ୍ରତିଷ୍ଠା ହେବାପରେ ଯୋଗାଯୋଗ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଲା । ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଗିରିଧର ଗମାଙ୍ଗଙ୍କ ଉଦ୍ୟମରେ କେନ୍ଦୁଝର ସହର ଉପକଣ୍ଠସ୍ଥ ୪୯ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଏହି କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ପ୍ରାଥମିକ ଅବସ୍ଥାରେ ଏହି କେନ୍ଦ୍ର ମାଧ୍ୟମରେ ପ୍ରତ୍ୟହ ସନ୍ଧ୍ୟା ୬ଟାରୁ ୯ଟା ମାତ୍ର ତିନି ଘଣ୍ଟା ପାଇଁ କାର୍ଯ୍ୟକ୍ରମ ପରିବେଷଣ କରାଯାଉଥିଲା । ପରବର୍ତ୍ତୀ ସମୟରେ ଓଡ଼ିଶାର ବାରିପଦା, ବଲାଂଗୀର, ବ୍ରହ୍ମପୁର, ରାଉରକେଲା, ଯୋରଣ୍ଡା, ଜୟପୁର, ଭବାନୀପାଟଣା ଓ ପୁରୀଠାରେ ସ୍ଥାନୀୟ ବେତାର କେନ୍ଦ୍ର ପ୍ରତିଷ୍ଠା ହୋଇଥିଲା । ମୋଟ ଉପରେ କହିବାକୁ ଗଲେ ଆକାଶବାଣୀ କେନ୍ଦୁଝରଟି ଓଡ଼ିଶାର ପ୍ରଥମ ଏବଂ ଭାରତର ପଞ୍ଚମ ସ୍ଥାନୀୟ ବେତାର କେନ୍ଦ୍ର ଅଟେ । ଏହାର ପ୍ରସାରଣ କ୍ଷମତା ଏକ କିଲୋୱାଟ୍ ମିଡ଼ିୟମ ୱେଭ୍ ଟ୍ରାନ୍ସମିଟର ୧୫୮୪ କିଲୋହର୍ଜ ତଥା ୧୮୯.୩ ମିଟର । କେନ୍ଦୁଝର ସଦର ମହକୁମାରୁ ୪୦ରୁ ୫୦ ବର୍ଗ କିଲୋମିଟର ପରିମିତ ପରିଧିରେ ଏହି ଆକାଶବାଣୀ କେନ୍ଦ୍ରର ସେବା ଅନୁଭୂତ ହୋଇଥାଏ । ସୂଚନା ପ୍ରସାରଣ ଓ ଯୋଗାଯୋଗ କ୍ଷେତ୍ରରେ ଏହି କେନ୍ଦ୍ରଟି ନିରବଚ୍ଛିନ୍ନ ଭାବେ ସେବା ଯୋଗେଇ ଆସୁଛି । କେନ୍ଦୁଝରର ସାଧାରଣ ଲୋକଙ୍କ ମନରେ ଆକାଶବାଣୀ କେନ୍ଦୁଝର ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରିପାରିଛି । ବର୍ତ୍ତମାନ କେନ୍ଦୁଝରର ଗ୍ରାମାଞ୍ଚଳର ଘରେ ଘରେ ଲୋକେ ରେଡିଓ ଶୁଣୁଥିବାର ଦେଖାଯାଏ । ସାଧାରଣ ଲୋକଙ୍କ ନିକଟରେ କେନ୍ଦୁଝର ଜିଲ୍ଲାର ସଂସ୍କୃତି, ଐତିହ୍ୟ, ସାମାଜିକ ଜୀବନ, ପରଂପରା ପ୍ରଚାର କରିବାରେ ଆକାଶବାଣୀ କେନ୍ଦୁଝର କେନ୍ଦ୍ରର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

## କେନ୍ଦୁଝର ଦୂରଦର୍ଶନ ପ୍ରସାରଣ କେନ୍ଦ୍ର

ଆକାଶବାଣୀ କେନ୍ଦୁଝରକୁ ଲାଗି କେନ୍ଦୁଝରଠାରେ ଏକ ଦୂରଦର୍ଶନ ରିଲେ କେନ୍ଦ୍ର ତଥା ଦୂରଦର୍ଶନ ରକ୍ଷଣାବେକ୍ଷଣ କେନ୍ଦ୍ର ରହିଛି । ଏହି କେନ୍ଦ୍ରଟି ୧୯୮୯ ମସିହା ସେପ୍ଟେମ୍ବର ମାସରୁ କାର୍ଯ୍ୟକ୍ଷମ ହୋଇପାରିଛି । ଏହା ଏକ ସ୍ୱଳ୍ପଶକ୍ତିସଂପନ୍ନ ପ୍ରକ୍ଷେପଣ କେନ୍ଦ୍ର । ଏହି କେନ୍ଦ୍ର କେନ୍ଦୁଝର ଜିଲ୍ଲାରେ




ଯୋଡା ଓ ଆନନ୍ଦପୁରଠାରେ ଥିବା ଦୁଇଟି ପ୍ରକ୍ଷେପଣ କେନ୍ଦ୍ରକୁ ରକ୍ଷଣାବେକ୍ଷଣ କରିବା ସଙ୍ଗେସଙ୍ଗେ ବାଲେଶ୍ୱର ଜିଲ୍ଲାର ବାଲେଶ୍ୱର ଓ ବାଲିଆପାଳ, ଭଦ୍ରକ ଜିଲ୍ଲାର ଭଦ୍ରକ, ସୁନ୍ଦରଗଡ ଜିଲ୍ଲାର ରାଉରକେଲା, ବଣେଇ, ଅନୁଗୁଳ ଜିଲ୍ଲାର ପାଲଲହଡା, ମୟୂରଭଞ୍ଜ ଜିଲ୍ଲାର ବାରିପଦା ପ୍ରକ୍ଷେପଣ କେନ୍ଦ୍ରର ରକ୍ଷଣାବେକ୍ଷଣ ଦାୟିତ୍ୱ ବହନ କରିଛି ।

## କେନ୍ଦୁଝର ସରକାରୀ ପ୍ରେସ୍

କେନ୍ଦୁଝର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ପରିସରରେ ରାଜ୍ୟ ସରକାରଙ୍କ ଏକ ଶାଖା ମୁଦ୍ରଣାଳୟ ଅବସ୍ଥିତ । ଏଠାରେ ସରକାରୀ ଫର୍ମ, ରସିଦ୍ ବହି, ଆନୁଷଙ୍ଗିକ ସରକାରୀ ନଥିପତ୍ର ଛପାଯାଇ ମୁଖ୍ୟତଃ କେନ୍ଦୁଝର, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସରକାରୀ କାର୍ଯ୍ୟାଳୟକୁ ଯୋଗେଇ ଦିଆଯାଇଥାଏ । ଏଠାରୁ ପ୍ରକାଶିତ ପିଅନ୍ ବୁକ୍, ବିଭିନ୍ନ ଫର୍ମ ମୁଦ୍ରଣ କରାଯାଇ କଟକସ୍ଥ ସରକାରୀ ମୁଖ୍ୟ ମୁଦ୍ରଣାଳୟକୁ ଯୋଗାଇ ଦିଆଯାଇଥାଏ ଏବଂ ଓଡ଼ିଶାର ବିଭିନ୍ନ କାର୍ଯ୍ୟାଳୟକୁ ପଠାଯାଏ । ରାଜ୍ୟ ବିଧାନସଭାର ବିବରଣୀ ମଧ୍ୟ ଏହି ପ୍ରେସ୍‌ରେ ପ୍ରକାଶିତ ହୋଇଥାଏ । କଟକସ୍ଥ ମୁଖ୍ୟ ଦପ୍ତର ମାଧ୍ୟମରେ ବିଧାନସଭାକୁ ଯୋଗେଇ ଦିଆଯାଇଥାଏ । ତେବେ ଏହି ସରକାରୀ ପ୍ରେସ୍ ଏବେ ପ୍ରାୟ ସ୍ଥାଣୁ ଅବସ୍ଥାରେ ରହିଛି । ଏଠାକାର ମେସିନ୍, ଯନ୍ତ୍ରପାତି ଅଧିକାଂଶ ଅଚଳ ହୋଇଯିବା ସହିତ କର୍ମଚାରୀ ଅବହେଳା ଯୋଗୁଁ ଏହି ପୁରାତନ ସରକାରୀ ପ୍ରେସ୍‌ଟି ବିଶେଷ ଭାବେ କାର୍ଯ୍ୟକାରୀ କରୁନାହିଁ ।

## କେନ୍ଦୁଝର ରାଜବାଟୀ ଓ ଗଡ଼ଖାଇ

କର୍ପୁର ଉଡିଯାଇଥିଲେ ବି କନା ପଡି ରହିବା ଭଳି ଆଜି କେନ୍ଦୁଝର ରାଜବାଟୀ ଇତିହାସର

ଜୁଡିଆ ଘାଟିରୁ କେନ୍ଦୁଝର ରାଜଦୁର୍ଗର ଦୃଶ୍ୟ



ମୂକସାକ୍ଷୀ ଭଳି ଜୁଡିଆ ଘାଟୀର ପାଦଦେଶରେ ଠିଆ ହୋଇ ରହିଛି । ୪୯ ନମ୍ବର ଜାତୀୟ ରାଜପଥର ଜୁଡିଆ ଘାଟୀରୁ ସମଗ୍ର କେନ୍ଦୁଝର ସହରକୁ ଦୃଷ୍ଟି ନିବଦ୍ଧ କଲେ ଦୁଇଟି ବସ୍ତୁ ସର୍ବପ୍ରଥମେ ନଜରକୁ ଆସେ: ଗୋଟିଏ ହେଉଛି କେନ୍ଦୁଝରର ବଳଦେବଜୀଉ ମନ୍ଦିର ଓ ଅନ୍ୟଟି କେନ୍ଦୁଝରର ପ୍ରାଚୀନ ରାଜବାଟୀ । କେନ୍ଦୁଝର ସହର ଉପକଣ୍ଠର ସିଦ୍ଧମଠଠାରେ ରହିଛି ଜିଲ୍ଲାର ଏହି ପୁରାତନ କାରୁକାର୍ଯ୍ୟ କେନ୍ଦୁଝର ରାଜ ଉଆସ ଓ ରାଜଦୁର୍ଗ । ଚୁଳିଆ ପାହାଡଠାରୁ ଜୁଡିଆ ପର୍ବତମାଳା ପର୍ଯ୍ୟନ୍ତ ଏହି ଐତିହାସିକ ରାଜବାଟୀ ଓ ଦୁର୍ଗଟି ଲମ୍ବିଛି । ରାଜବାଟୀର ସୁରକ୍ଷା ପାଇଁ ରହିଛି ଦୁଇଟି ଗଡ଼ଖାଇ । ଏକଦା ଶତ୍ରୁ ଆକ୍ରମଣରୁ ସୁରକ୍ଷା ଦେଉଥିବା ଗଡ଼ଖାଇ ଏବେ ଶ୍ରୀହିନ ହୋଇପଡିଛି । ରକ୍ଷଣାବେକ୍ଷଣ ଅଭାବ ଓ ଜବରଦଖଲ କାରଣରୁ ଏହାର ଅର୍ଦ୍ଧାଧିକ ଭାଗ ପୋତି ହୋଇଗଲାଣି । ସେହିପରି କେନ୍ଦୁଝରର ପ୍ରାଚୀନ ଗାଥା କହୁଥିବା ରାଜବାଟୀ ମଧ୍ୟ ଆଜି ଅବହେଳିତ । ଜିଲ୍ଲାର ଏକ ପ୍ରାଚୀନ ଐତିହ୍ୟ ଭାବେ ଏହି ରାଜ ଦୁର୍ଗ ଓ ରାଜବାଟୀକୁ ସଂରକ୍ଷିତ କରି ରଖିବାର ସମୟ ଏବେ ଉପନୀତ । ଯଦିଓ ଏହା ରାଜବଂଶର କର୍ତ୍ତୃତ୍ୱରେ ରହିଛି, ତେବେ

ଏହାର ସଂରକ୍ଷଣ ପାଇଁ ସଂସ୍କୃତି ବିଭାଗର ଗୁରୁଦାୟିତ୍ୱ ରହିଛି । କେନ୍ଦୁଝର ମହାରାଜା ଧନୁର୍ଜୟ ନାରାୟଣ ଭଂଜଦେଓ ତତ୍କାଳୀନ କେନ୍ଦୁଝର ରାଜ୍ୟରେ ୧୮୬୧ ମସିହାରୁ ୧୯୦୫ ମସିହା ପର୍ଯ୍ୟନ୍ତ ରାଜତ୍ୱ କାଳରେ ଏହି ରାଜବାଟୀ ନିର୍ମିତ ହୋଇଥିଲା । ଏହାକୁ ସୁରକ୍ଷା ଯୋଗେଇ ଦେବା ପାଇଁ ରାଜବାଟୀର ଚତୁର୍ପାର୍ଶ୍ୱରେ ଗଡ଼ଖାଇ ଖନନ କରାଯାଇଥିଲା । ପଶ୍ଚିମ ଓ ପୂର୍ବ ଭାଗରେ ଦୁଇଟି ଗଡ଼ଖାଇ ରହିଥିବାବେଳେ ଅନ୍ୟ ଦୁଇ ପାର୍ଶ୍ୱରେ ପ୍ରାକୃତିକ ପାହାଡ ରାଜବାଟୀକୁ ସୁରକ୍ଷିତ କରି ରଖିଥିଲା । ଦକ୍ଷିଣରେ ଜୁଡିଆଠାରୁ ନଳାପାଟସାହି ପର୍ଯ୍ୟନ୍ତ ଏକ ଦୀର୍ଘ ପର୍ବତମାଳା 'ଇନ୍ଦ୍ରଛତ୍ର ଡୁଡି' ରାଜବାଟୀକୁ ସୁରକ୍ଷିତ ରଖିବାରେ ପ୍ରମୁଖ ଭୂମିକା ଗ୍ରହଣ କରି ଆସୁଥିଲା । ଏହି ବିଶାଳ ପାହାଡଟି ରାଜପ୍ରାସାଦକୁ ଏକ ଜାଗ୍ରତ ପ୍ରହରୀ ଭଳି ସୁରକ୍ଷା ଯୋଗେଇ ଆସୁଥିଲା । ଏହାର ଉତ୍ତରରେ 'ଗୋପାଳବନ୍ଧ' ଓ 'ମଙ୍ଗିକଟା' ନାମରେ ଦୁଇଟି ବୃହତ୍ ପୁଷ୍କରିଣୀ ଥିଲା । ବିସ୍ତୃତ ରାଜବାଟୀର ସୁରକ୍ଷା ପାଇଁ ଦୁଇଟି ପ୍ରାଚୀର ରହିଥିଲା । ବହିଃ ପ୍ରାଚୀରରେ ୮ଟି ଗମ୍ବୁଜ ଥିଲା । ଏହି ଗମ୍ବୁଜ ନିକଟରେ ସୈନ୍ୟମାନେ ନିୟମିତ ପ୍ରହରା ଦେଉଥିଲେ । ପ୍ରାଚେରୀକୁ ଲାଗି ରହିଥିବା ଗଡ଼ଖାଇର ଗଭୀର ଜଳରେ କୁମ୍ଭୀର, ମଗର, ସାଂକୁଚ ସମେତ ବହୁ ହିଂସ୍ର ଜଳଚର ଜୀବଜନ୍ତୁ ରହିଥିଲେ । ଏହା ଫଳରେ ଶତ୍ରୁପକ୍ଷ ଏହି ଗଡ଼ଖାଇକୁ ଅତିକ୍ରମ କରି ରାଜବାଟୀରେ ପ୍ରବେଶ କରିବା ଏକ ପ୍ରକାର ଅସମ୍ଭବ ହୋଇ ପଡୁଥିଲା । ଦୁର୍ଭାଗ୍ୟ, ଏହି ଗଡ଼ଖାଇ ପୋତି ହୋଇ ଯାଉଥିବାରୁ କେନ୍ଦୁଝରର



ପ୍ରାଚୀନ ଗୌରବ ଆଜି ଲୁପ୍ତ ହେବାକୁ ବସିଛି । ରାଜାଙ୍କର ଶାସନ ବ୍ୟବସ୍ଥାକୁ ଅଧିକ ଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ ରାଜବାଟୀରେ ମହାରାଜାଙ୍କ କଚେରୀ, ସଭାସମିତି ପାଇଁ ଦରବାର ହଲ୍, ଅସ୍ତ୍ରାଗାର, ଗଡ଼ଚଣ୍ଡୀଦେବୀ, ରାଣୀହଂସପୁର, ବ୍ରତଘର ଓ ବିବାହ ମଣ୍ଡପ, ରାଜକୀୟ ସ୍ନାନାଗାର ଓ ଗୁପ୍ତଦ୍ୱାର ଆଦି ରହିଥିଲା । ରାଜପ୍ରାସାଦର ଅନେକ ଦ୍ୱାର ରହିଥିଲେ ମଧ୍ୟ, ଏହାର ମୁଖ୍ୟ ଦୁଇଟି ଦ୍ୱାରରେ ରାଜା ମହାରାଜାମାନେ ପ୍ରବେଶ ଓ ପ୍ରସ୍ଥାନ କରୁଥିଲେ । ଉତ୍ତର ଦ୍ୱାରରେ ଛତିଶା ନିଯୋଗ ରହିଥିଲାବେଳେ ଦକ୍ଷିଣ ଦ୍ୱାର ମାଟିଆବନ୍ଧ ପୋଖରୀକୁ ଖୋଲିଥିଲା । ଆବଶ୍ୟକ ପଡିଲେ ପଶ୍ଚିମ ଦ୍ୱାର ବ୍ୟବହାର ହୋଇଥାଏ । ପୂର୍ବ ଦିଗରେ ହାତିବନ୍ଧ ପୋଖରୀ ନିକଟରେ ଦଶହରାପଦା ପୂଜାସ୍ଥଳୀ ରହିଛି । ସେହିପରି ବାସୁଳି ଶାଳରେ ଅଶ୍ୱପଞ୍ଚମୀ ଦିନ ଘୋଡା ଓ ହାତୀମାନଙ୍କୁ ପୂଜା କରାଯାଉଥିଲା । ମାଟିଆବନ୍ଧ ପୋଖରୀର ନାମକରଣ ନେଇ ନାନା ପ୍ରକାର କୀମ୍ବଦନ୍ତୀ ରହିଛି । ମାଟିଆବନ୍ଧ ପୋଖରୀର ମଧ୍ୟ ଭାଗରେ ଏକ ମନ୍ଦିର ରହିଛି । ଚନ୍ଦନଯାତ୍ରା ସମୟରେ ଏଠାରେ ଶ୍ରୀଜୀଉଙ୍କ ଜଳକ୍ରୀଡା ଅନୁଷ୍ଠିତ ହୋଇଥାଏ । ରାଜବାଟୀ ମଧ୍ୟରେ ଏକ ଶିବ ମନ୍ଦିର ଓ ବହୁ ପୁରାତନ ତାରିଣୀ ମନ୍ଦିର ରହିଛି । ରାଜବାଟୀର ଅନତିଦୂରରେ ରହିଛି ପୌରାଣିକ ପର୍ଯ୍ୟଟନସ୍ଥଳୀ 'ଲକ୍ଷ୍ମୀପାଦ' , ଶ୍ରୀବଳଦେବଜୀଉଙ୍କ ମନ୍ଦିର, ସିଦ୍ଧ ମଠ, ସିଦ୍ଧକାଳୀ ପୀଠ ଓ ସିଦ୍ଧ ଜଗନ୍ନାଥ ମନ୍ଦିର । ଗଡ଼ଖାଇ ପୋତି ହୋଇପଡୁଥିବାରୁ ଏହାର ରକ୍ଷଣାବେକ୍ଷଣ କରିବାର ଆବଶ୍ୟକତା ରହିଛି ।

## ଖଲି ଚୌପଡି ଘାଟ

ବାରିଆ ଥାନାର ସିଙ୍ଗିଡି ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଫୁଲ କଅଁଳେଇ ଗ୍ରାମର ପୁଣ୍ୟତୋୟା ବୈତରଣୀ ନଦୀ ଘାଟକୁ 'ଖଲି ଚୌପଡି ଘାଟ' ବୋଲି କୁହାଯାଇଥାଏ । ଜ୍ୟୋତିପୁର ନିକଟରେ ଏହି ଘାଟ ଅବସ୍ଥିତ । ମତ୍ସ୍ୟ ଦେଶରେ ପାଣ୍ଡବମାନେ ଅଜ୍ଞାତ ବନବାସ କରିବା ପୂର୍ବରୁ ଏଠାରେ ଅନ୍ନ ପାକ କରି ପଥର ଚଟାଣ ଉପରେ ରଖି ଭୋଜନ କରିଥିବା ଦୃଷ୍ଟାନ୍ତ ଅନୁଯାୟୀ ଏହି ପଥର ଚଟାଣ ଉପରେ ଖଲି, ଚୌପଡି ଓ ଏକ ଘଟ (କଳସ)ର ଚିହ୍ନ ରହିଛି । ଏଣୁ ଲୋକେ ଏହି ନଦୀ ଘାଟକୁ 'ଖଲି ଚୌପଡି ଘାଟ' କହିଥାନ୍ତି । ଏଠାରେ ମାଟି ତଳୁ ବହୁ ଦେବଦେବୀଙ୍କ ମୂର୍ତ୍ତି ମିଳିଛି । ଏଠାରୁ ମିଳିଥିବା ଏସବୁ ମୂର୍ତ୍ତି ମଧ୍ୟରେ ଚତୁର୍ଭୁଜା ବନଦୁର୍ଗାଙ୍କ ମୂର୍ତ୍ତି ରହିଛି । ସୂଚନାଯୋଗ୍ୟ, ଆଦିପୁର ଓ ଜ୍ୟୋତିପୁର ରାଜ୍ୟଦ୍ୱୟର ଅନତି ଦୂରରେ ବୈତରଣୀ କୂଳରେ ଏହି ଘାଟଟି ଅବସ୍ଥିତ । ବିରାଟଗଡ଼ର ଭଗ୍ନାବଶେଷ, ଖିଚିଂ ମନ୍ଦିର ଓ ଏକାଦଶ ରୁଦ୍ର ମନ୍ଦିର ମଧ୍ୟ ଏହାର ନିକଟରେ ଅବସ୍ଥିତ ।

# କେନ୍ଦୁଝରର ଗର୍ବ: ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟ




ଆଦିବାସୀ ଅଧ୍ୟୁଷିତ କେନ୍ଦୁଝର ଜିଲ୍ଲାର ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟର ଏକ ସ୍ୱତନ୍ତ୍ର ପରଂପରା ରହିଛି । ଉଚ୍ଚ ଶିକ୍ଷା କ୍ଷେତ୍ରରେ ଏହି ମହାବିଦ୍ୟାଳୟଟି ବୈପ୍ଲବିକ ପରିବର୍ତ୍ତନ ଆଣିବାରେ ସକ୍ଷମ ହୋଇପାରିଛି । ଏହି ମହାବିଦ୍ୟାଳୟ ୧୯୫୭ ମସିହାରେ ପ୍ରତିଷ୍ଠା ହୋଇଥିଲା । ଏହା ପ୍ରଥମେ 'କେନ୍ଦୁଝର ବିଜ୍ଞାନ ମହାବିଦ୍ୟାଳୟ' ଭାବେ କାର୍ଯ୍ୟ କରୁଥିଲା । ପରବର୍ତ୍ତୀ ସମୟରେ ଏହି ମହାବିଦ୍ୟାଳୟରେ କଳା, ବାଣିଜ୍ୟ ଆଦି ବିଭାଗ ଖୋଲାଯାଇ ୧୯୬୨ ମସିହାରେ ଏହାକୁ ସରକାରୀ କଲେଜର ମାନ୍ୟତା ମିଳିଥିଲା । ଏବଂ ଏହାପରେ ଏହାର ନାମ 'କେନ୍ଦୁଝର କଲେଜ' ରଖାଯାଇଥିଲା । କିନ୍ତୁ ବିପ୍ଳବୀ ଧରଣୀଧର ଭୂୟାଁଙ୍କ ନାମରେ ଏହି କଲେଜର ନାମକରଣ କରିବାକୁ ଦାବି ହେବା ପରେ ୧୯୮୩-୧୯୮୪ ମସିହା ବେଳକୁ ଏହି ମହାବିଦ୍ୟାଳୟର ନାମ ଧରଣୀଧର ମହାବିଦ୍ୟାଳୟ ରଖାଗଲା । ୨୦୦୪ ମସିହାରେ ଏହା ସ୍ୱୟଂଶାସିତ ମହାବିଦ୍ୟାଳୟର ମାନ୍ୟତା ଲାଭ କରିଥିଲା । ଏହି ମହାବିଦ୍ୟାଳୟଟି ପାଇଁ କେନ୍ଦୁଝର ସମଗ୍ର ରାଜ୍ୟରେ ଗର୍ବିତ । ଏହି ମହାବିଦ୍ୟାଳୟରେ ପାଠ ପଢିବା ଛାତ୍ରଛାତ୍ରୀମାନେ ନିଜକୁ ଗର୍ବ ଅନୁଭବ କରିଥାନ୍ତି । ମାତ୍ର, ବର୍ତ୍ତମାନ ଏହି ମହାବିଦ୍ୟାଳୟଟି ତାର ପୂର୍ବ ଗୌରବକୁ ହରାଇ ବସିଛି । ଅଧ୍ୟାପକ ଅଭାବ, ଦୁର୍ବଳ ଭିତ୍ତିଭୂମି ଆଦି ନାନା ସମସ୍ୟା ଦେଇ ଗତି କରୁଛି ଜିଲ୍ଲାର ଏହି ସର୍ବ ପୁରାତନ ମହାବିଦ୍ୟାଳୟ ।

# ଡି.ଏନ୍. ହାଇସ୍କୁଲ: କେନ୍ଦୁଝରର ଗର୍ବ ଓ ଗୌରବ



୧୯୩୪ ମସିହାରେ ପ୍ରତିଷ୍ଠିତ ହୋଇଥିବା ଏହି ସ୍କୁଲ୍‌ଟି କେନ୍ଦୁଝରର ବହୁ ଐତିହାସିକ ସ୍ୱାକ୍ଷର ବହନ କରିଛି । ଏହି ସ୍କୁଲଟି ବହୁ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ତିଆରି କରି କେନ୍ଦୁଝର ଜିଲ୍ଲା ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ୧୯୩୪ ମସିହା ଜାନୁୟାରୀ ମାସରେ କେନ୍ଦୁଝରର ଶେଷ ଶାସକ ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ରାଜତ୍ୱ କାଳରେ ଏହି ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା ଲାଭ କରିଥିଲା । ସେତେବେଳେ ଏହି ସ୍କୁଲ୍‌ର ନାମ 'ଗିବ୍‌ସନ୍ ହାଇସ୍କୁଲ୍' ଥିଲା । ଗିବ୍‌ସନ୍ ସେତେବେଳେ ଇଷ୍ଟର୍ନ ଷ୍ଟେଟ୍‌ସ ଏଜେନ୍‌ସି ପାଇଁ ନିଯୁକ୍ତ ରାଜ ପ୍ରତିନିଧି ଭାବେ କାର୍ଯ୍ୟ କରୁଥିଲେ । ଗତ ୨୦୦୯ ମସିହାରେ ଏହି ସ୍କୁଲଟି ତାର 'ପ୍ଲାଟିନମ୍ ଜୁବୁଲି' ଉତ୍ସବ ପାଳନ କରିପାରିଛି । କେନ୍ଦୁଝର ଭଳି ଏକ ଗଡ଼ଜାତ ଏବଂ ଦୁର୍ଗମ ଆଦିବାସୀବହୁଳ ଅଞ୍ଚଳରେ ଆଜିକୁ ୮୦ ବର୍ଷ ତଳେ ଏଭଳି ଏକ ସ୍କୁଲ୍ ପ୍ରତିଷ୍ଠା ହେବା ଘଟଣା ପ୍ରକୃତରେ କେନ୍ଦୁଝରବାସୀଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ ।

## କେନ୍ଦୁଝର ସହରର ମନ୍ଦିରସମୂହ

କେନ୍ଦୁଝର ସହର ମଧ୍ୟରେ ବହୁ ଦେବଦେବୀଙ୍କ ମନ୍ଦିର ରହିଛି । ପ୍ରଥମେ ମହାପ୍ରଭୁ ତଥା କେନ୍ଦୁଝରର ରାଷ୍ଟ୍ରଦେବତା ବଳଦେବଜୀଉଙ୍କ ମନ୍ଦିର ସ୍ମରଣକୁ ଆସିବ । ଏହା ପରେ କେନ୍ଦୁଝରର ପୁରୁଣା



ଦୈନିକ ବଜାରରେ ଥିବା ରାଧାକୃଷ୍ଣ ମନ୍ଦିର

ବଜାରରେ ପଞ୍ଚଲିଙ୍ଗେଶ୍ୱର ମନ୍ଦିର, ଏକ୍ରାମ ବନବିହାରୀ ମନ୍ଦିର, ସିଦ୍ଧମଠର ସିଦ୍ଧକାଳୀ ମନ୍ଦିର, ସିଦ୍ଧ ଜଗନ୍ନାଥ ମନ୍ଦିର, ପୁରୁଣାବଜାରର ସିଦ୍ଧ ବଳଦେବ ମନ୍ଦିର, କେନ୍ଦୁଝର ସହରର ଦୈନିକ ବଜାରରେ ରାଧାକୃଷ୍ଣ (ରାସ) ମନ୍ଦିର ରହିଛି । ମାଇନିଂ ରୋଡ଼୍‌ରେ ପ୍ରଭୁ ଶ୍ରୀରାମଙ୍କ ଏକ ମନ୍ଦିର ରହିଛି । ରାମ ନବମୀ ଅବସରରେ ପ୍ରତିବର୍ଷ ଏଠାରେ ଶ୍ରଦ୍ଧାଳୁଙ୍କ ଭିଡ ପରିଲକ୍ଷିତ ହୋଇଥାଏ । ଏଠାରେ ଦୈନିକ ଅନ୍ନଭୋଗ ସୁଲଭ ମୂଲ୍ୟରେ ମିଳୁଥିବାରୁ କେନ୍ଦୁଝରର ଅଧିକାଂଶ ଭକ୍ତ ଏଠାରେ ଭୋଜନ କରିଥାନ୍ତି । ତେଲି ମାର୍କେଟ, ପୁରୁଣାବଜାର, ପବିତ୍ରଡିହା, ବଡ଼ଶାସନ, ମାଗୁରଗାଡିଆ, ଘୁଟୁରୁ, ମାଇନିଂ ରୋଡ଼୍, ନରଣପୁରରେ ଶିବ ମନ୍ଦିର ରହିଛି । କେନ୍ଦୁଝର ଷ୍ଟେଟ୍ ବ୍ୟାଙ୍କ ସମ୍ମୁଖରେ ବଜରଙ୍ଗବାଲି ହନୁମାନଙ୍କ ଏକ ମନ୍ଦିର ରହିଛି । କାଶୀପୁରରେ ଦେବୀ ତାରିଣୀଙ୍କ ମନ୍ଦିର ରହିଛି । କେନ୍ଦୁଝର



କେନ୍ଦୁଝର ରାଜବାଟୀ ପାର୍ଶ୍ୱରେ ଥିବା ମହାଦେବ ମୁକ୍ତେଶ୍ୱରଙ୍କ ମନ୍ଦିର

ରାଜବାଟୀ ନିକଟରେ ମୁକ୍ତେଶ୍ୱର ଶିବ ମନ୍ଦିର ରହିଛି । କେନ୍ଦୁଝରଗଡ଼ ବଡ଼ଶାସନରେ ବାଲୁଙ୍କେଶ୍ୱର ମହେଶଙ୍କ ଐତିହାସିକ ମନ୍ଦିର ରହିଛି । ଏହାସହିତ ଜେଲ୍‌ରୋଡରେ ଏକ ଖ୍ରୀଷ୍ଟିଆନ୍ ଚର୍ଚ୍ଚ ରହିଛି । କେନ୍ଦୁଝର ସହର ଉପକଣ୍ଠ ୪୯ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଆକାଶବାଣୀ କେନ୍ଦ୍ର ନିକଟରେ ଅନୁକୂଳଚନ୍ଦ୍ରଙ୍କର ଏକ ଭବ୍ୟ ମନ୍ଦିର ସହିତ ନିକଟରେ ଶିଖ୍‌ମାନଙ୍କର ଗୁରୁଦ୍ୱାର ରହିଛି । ନିହାଲ୍ ସିଂ ଛକରେ ଘାଟି ମହାଦେବଙ୍କର ଏକ ମନ୍ଦିର ରହିଛି । ପୁରୁଣାବଜାର କରଣସାହିରେ ମହାଦେବ ପିଣ୍ଡିକେଶ୍ୱର ମନ୍ଦିର ରହିଛି । ଲାବଣ୍ୟଛକରେ ରାମେଶ୍ୱରଙ୍କ ମନ୍ଦିର ରହିଛି । ସରକାରୀ ବସ୍ ଷ୍ଟାଣ୍ଡ ନିକଟରେ ମା ଦୁର୍ଗାଙ୍କର ମନ୍ଦିର ଏବଂ ମାଧପୁରରେ ଦେବୀ କାଳୀଙ୍କ ମନ୍ଦିର ଅବସ୍ଥିତ ।



ନରଣପୁରଠାରେ ଥିବା ଦେବୀ ପାର୍ବତୀ ମନ୍ଦିର

# କେନ୍ଦୁଝର ଜିଲ୍ଲାର ଶୈବପୀଠ

| ଶୈବ ପୀଠ | ସ୍ଥାନ |
|---|---|
| ବ୍ରହ୍ମେଶ୍ୱର | ଗୁପ୍ତଗଂଗା (ଗୋନାସିକା) |
| ଧବଳେଶ୍ୱର(ମୁର୍ଗା ମହାଦେବ) | ଦେଓଝର (ଦେବଝର) |
| କୁଶଳେଶ୍ୱର | ଦେଓଗାଁ |
| ଗୁପ୍ତେଶ୍ୱର | ସତୀଝର |
| ପାଟେଶ୍ୱର | ଶୁଆକାଟୀ |
| ବିଶ୍ୱେଶ୍ୱର, କପିଳେଶ୍ୱର | ବାଂଶପାଳ |
| ବାଣେଶ୍ୱର | ଯାତ୍ରା |
| ମୁକ୍ତେଶ୍ୱର | ନୟାଗଡ଼ |
| ଶିଖରେଶ୍ୱର | ଚମକପୁର |
| ରାମେଶ୍ୱର | ରାମତୀର୍ଥ (ଚଂପୁଆ) |
| ଚନ୍ଦ୍ରଶେଖର | ଚଂପୁଆ |
| କ୍ରୋସଲିଙ୍ଗ | ଜ୍ୟୋତିପୁର |
| ଶୀତଳେଶ୍ୱର, ଭୁବନେଶ୍ୱର | ରାଜନଗର |
| ଆନନ୍ଦେଶ୍ୱର | ପାଟଣା |
| ଜଳେଶ୍ୱର | ଏରେଣ୍ଡେଇ |
| ଝାଡେଶ୍ୱର | ଘସିପୁରା |
| ଆନନ୍ଦେଶ୍ୱର | ଆନନ୍ଦପୁର |
| ବଟେଶ୍ୱର | ବଞ୍ଚୋ |
| ପର୍ବତେଶ୍ୱର, ଶଙ୍କରେଶ୍ୱର | ଶିବନାରାୟଣପୁର |
| ବାଲୁଙ୍କେଶ୍ୱର | ଫକୀରପୁର, ବଡ଼ଶାସନ (କେନ୍ଦୁଝର) |
| କୁଣ୍ଡେଶ୍ୱର | ଟୁକୁଣା (ଆନନ୍ଦପୁର) |
| ସ୍ୱପ୍ନେଶ୍ୱର | ଖଡ଼ିକୁଣ୍ଡ |
| ବରେଶ୍ୱର | ଡରଭା |
| କୁଶଳେଶ୍ୱର | ପଞ୍ଚହରା |

| | |
|---|---|
| ସୁବର୍ଣ୍ଣେଶ୍ୱର, ଶଙ୍କରେଶ୍ୱର | ସୁଲଣ |
| ସିଦ୍ଧେଶ୍ୱର | ଟିଲୋ |
| ହଟକେଶ୍ୱର | ହାଟଡିହି |
| ଗଣେଶ୍ୱର | ସାଇଁକୁଳ |
| ସର୍ପେଶ୍ୱର | ଲକ୍ଷ୍ମଣପୁର |
| ଧବଳେଶ୍ୱର | ଇଷଳା |
| ଘୋରଚାନ୍ଦ ମହାଦେବ | କେନ୍ଦୁଝରଗଡ଼ |
| ନଳାମହାଦେବ | ନଳାଘାଟ (ଲକ୍ଷ୍ମୀପାଦ ନିକଟସ୍ଥ) |
| ଗୁଆମାଳି ମହେଶ | ଗୁଆବାଡି |
| ମୁକ୍ତେଶ୍ୱର ମହେଶ | କେନ୍ଦୁଝରଗଡ଼ ରାଜପ୍ରସାଦ ବଡ଼ଦ୍ୱାର |
| ମୁକ୍ତେଶ୍ୱର | ନୟାଗଡ଼, ଘଟ୍ଟଗାଁ |
| ପିଣ୍ଡିକେଶ୍ୱର | କରଣପାହି |
| ବାଲୁଙ୍କେଶ୍ୱର | ବଡ଼ଶାସନ |
| ଚନ୍ଦ୍ରଶେଖର | ବୋଦାପଳାସା |
| ଯୋଗେଶ୍ୱର | ବଣ୍ଡୁଆ (କେନ୍ଦୁଝର ସଦର) |
| ବାଞ୍ଛେଶ୍ୱର, ଗୁପ୍ତେଶ୍ୱର | ବଳଦେବଜୀଉ ମନ୍ଦିର |
| ସିଦ୍ଧ ମହାଦେବ | ସିଦ୍ଧମଠ |
| ଉଦ୍ଧରେଶ୍ୱର | ମୁଗୁପୁର |
| ଗୁପ୍ତେଶ୍ୱର | ବିରିକଳା |
| ନୀଳକଣ୍ଠେଶ୍ୱର | ଖଣ୍ଡଧାର |
| ପଞ୍ଚମହେଶ, (ପଞ୍ଚଲିଙ୍ଗେଶ୍ୱର) | କେନ୍ଦୁଝରଗଡ |
| ବାଣେଶ୍ୱର | ଡରା |
| ନୀଳକଣ୍ଠେଶ୍ୱର | ବାର୍ହାଟିପୁରା |
| କପିଳେଶ୍ୱର | ଟାଙ୍ଗରପଡ଼ିଆ |
| ଝାଡେଶ୍ୱର | ଟାଙ୍ଗରବନ୍ତଳା (ଚଂପୁଆ) |
| ରୂପେଶ୍ୱର | ରୂପାକୁଣ୍ଡ (ଚଂପୁଆ) |
| ଚନ୍ଦ୍ରଶେଖର | ଉଦୟପୁର |

| | |
|---|---|
| ବିଶ୍ୱନାଥ | ଢେଙ୍କିକୋଟ |
| ସ୍ୱପ୍ନେଶ୍ୱର | ଭାଲୁହୁଡି (ଘସିପୁରା) |
| ହରିହର | ବଡ଼ବିଲ |
| ଏକାମ୍ର ବନବିହାରୀ | ସିଦ୍ଧମଠ |
| ଧନେଶ୍ୱର | ଧାନବେଣୀ |
| କାଲାମହାଦେବ | ରାଇସୁଆଁ |
| ବେଲେଶ୍ୱର | ଲଙ୍କଲାକାଣ୍ଟି |
| ତୀର୍ଥେଶ୍ୱର, ଭୀମେଶ୍ୱର | ଭୀମକୁଣ୍ଡ |
| ସର୍ବେଶ୍ୱର | ସାହାରପଡା |
| ଘଟକେଶ୍ୱର | ଘଟଗାଁ ତାରିଣୀ ପୀଠ |
| ଆଖଣ୍ଡଳମଣି | ପଳାସପଙ୍ଗା |
| ହିତେଶ୍ୱର | ପଳାସପଙ୍ଗା ଓଡ଼ିଶା ସ୍ପଞ୍ଜ ଆଇରନ୍ |
| ଆଖଣ୍ଡଳେଶ୍ୱର, ଧନେଶ୍ୱର | ବ୍ରାହ୍ମଣୀପାଳ |
| କୁଣ୍ଡେଶ୍ୱର | କୁଣ୍ଡପିଠା |
| ଅସୁରେଶ୍ୱର | ଅସୁରଖୋଲ |
| ଧବଳେଶ୍ୱର | ଛେଲିତେଗା |
| ବ୍ରହ୍ମେଶ୍ୱର | ବୀରଗୋବିନ୍ଦପୁର |
| ଚକ୍ରେଶ୍ୱର, ଅଷ୍ଟଶମ୍ଭୁ | ଚକ୍ରତୀର୍ଥ |
| ପିଣ୍ଡିକେଶ୍ୱର | କରଣସାହି, ପୁରୁଣାବଜାର (କେନ୍ଦୁଝର) |
| ଅଗ୍ନିଶ୍ୱର | ଲକ୍ଷ୍ମୀପାଦ (କେନ୍ଦୁଝର) |
| ଧବଳେଶ୍ୱର | ଧଳେଇପାଟ (ଫକୀରପୁର) |
| ସ୍ୱପ୍ନେଶ୍ୱର | କରଣସାହି (କେନ୍ଦୁଝର) |
| କଖାରୁଶ୍ୱର | ଲକ୍ଷ୍ମୀପାଦ |
| ପଞ୍ଚଲିଂଗେଶ୍ୱର | ଗୁଣ୍ଡିଚା ମନ୍ଦିର (କେନ୍ଦୁଝର) |
| ବିଶ୍ୱେଶ୍ୱର | ବିଶ୍ୱେଶ୍ୱରପୁର ଶାସନ |
| ଘାଟିମହାଦେବ | ନିହାଲସିଂ ଛକ (କେନ୍ଦୁଝର) |
| ପିପଳେଶ୍ୱର | ଗଡ଼ସାହି (କେନ୍ଦୁଝର) |

| | |
|---|---|
| ବାବା ଆଖଣ୍ଡଳମଣି | ଧୂପଦା (କେନ୍ଦୁଝର) |
| ରାମେଶ୍ୱର | ରାମତୀର୍ଥ (ଚଂପୁଆ-ଝାଡଖଣ୍ଡ ସୀମାନ୍ତ) |
| ଝାଡେଶ୍ୱର | ଟାଙ୍ଗରବନ୍ତଳା (ଚଂପୁଆ) |
| ଭଞ୍ଜରେଶ୍ୱର | ଆନନ୍ଦପୁର |
| ଶୈଳେଶ୍ୱର | ଶୈଳଙ୍ଗ |
| ସ୍ୱପ୍ନେଶ୍ୱର | ଖଡ଼ିକୁଣ୍ଡ (ଝୁଂପୁରା) |
| ଓମ୍‌କାରେଶ୍ୱର | ଶୈଳଙ୍ଗ ହୁଡି (ଘସିପୁରା) |
| ଚନ୍ଦନେଶ୍ୱର | ବାଉଁଶଗଡ଼ (ଆନନ୍ଦପୁର) |
| ରୁପେଶ୍ୱର ମହାଦେବ | ରୂପାକୁଣ୍ଡ (ଚଂପୁଆ) |
| ଧନେଶ୍ୱର | ଧାନବେଣୀ (ହରିଚନ୍ଦନପୁର) |
| କମଳେଶ୍ୱର | କମଳାଙ୍ଗ (ତେଲକୋଇ) |
| ବ୍ରହ୍ମେଶ୍ୱର | ଖୁଣ୍ଟ ପଡା (ତେଲକୋଇ) |
| ନୀଳକଣ୍ଠେଶ୍ୱର | ତେଲକୋଇ |
| ବୁଢେଶ୍ୱର | ବିମଳା |
| ଯୋଗେଶ୍ୱର | ଜଗମୋହନପୁର |
| ଛିଖେଶ୍ୱର | ସରେଇ (ତେଲକୋଇ) |
| ଧର୍ମେଶ୍ୱର | ଧକୋଠା (ଘସିପୁରା) |
| ଘଟକେଶ୍ୱର | ମା' ତାରିଣୀ ମନ୍ଦିର (ଘଟଗାଁ) |
| ସିଦ୍ଧେଶ୍ୱର | ଠାକୁରପଡା (ହରିଚନ୍ଦନପୁର) |
| ବାଣେଶ୍ୱର | ଭଗାମୁଣ୍ଡା (ହରିଚନ୍ଦନପୁର) |
| ବାଲୁଙ୍କେଶ୍ୱର | କାଳିଆହତା(ତେଲକୋଇ) |
| ସିଦ୍ଧେଶ୍ୱର | ବିରିପାଳ(ତେଲକୋଇ) |
| ସିଦ୍ଧେଶ୍ୱର | ସିରିଗିଡା (ତେଲକୋଇ) |
| ବାଣେଶ୍ୱର | ବେଣାମୁଣ୍ଡା (ତେଲକୋଇ) |
| ସିଦ୍ଧେଶ୍ୱର (ଗୁମ୍ଫା) | ଭାଲୁଦରି (ତେଲକୋଇ) |
| ବିଶ୍ୱେଶ୍ୱର | ନେଲୁଂ (କେନ୍ଦୁଝର) |
| ହରିହରେଶ୍ୱର | ମାଧପୁର (କେନ୍ଦୁଝର) |

| | |
|---|---|
| ଆଖଣ୍ଡଳମଣି | ଧୂପଦା (କେନ୍ଦୁଝର) |
| ଘଡ଼ଘଡ଼ି ମହେଶ (କପିଳେଶ୍ୱର) | ନରଣପୁର |
| ସ୍ୱପ୍ନେଶ୍ୱର | ରାଙ୍କି (କେନ୍ଦୁଝର) |
| ଆଖଣ୍ଡଳମଣି, ଚନ୍ଦ୍ରଚୂଡ ମହେଶ | ଚିଲିଦା (ପାଟଣା) |
| ନୀଳମଣିଶ୍ୱର | ବାରିଗାଁ (ଘଟଗାଁ) |
| ଚନ୍ଦ୍ରଶେଖର | ଅଳଡି (ଘସିପୁରା) |
| ରାମେଶ୍ୱର | ଲାବଣ୍ୟଛକ (କେନ୍ଦୁଝର) |
| ବ୍ରହ୍ମେଶ୍ୱର | ବୀରଗୋବିନ୍ଦପୁର |
| ଟିକେଶ୍ୱର | ଟିକିରା |
| ସର୍ପେଶ୍ୱର | କେଡାଙ୍ଗ (ଢେଙ୍କିକୋଟ) |
| ବ୍ରହ୍ମେଶ୍ୱର | ଭୋଳବେଡ଼ା (ଘଟଗାଁ) |
| କଟରେଶ୍ୱର | କଟରାବେଡା |
| ସ୍ୱପ୍ନେଶ୍ୱର | ପିପିଳିଆ (ଘଟଗାଁ) |
| ବାଣେଶ୍ୱର | ବାଙ୍କପାଟୁଳି (ଘଟଗାଁ) |
| ବେଲେଶ୍ୱର | ଲଙ୍ଗଳକଣ୍ଟି |
| ଉତ୍ତରେଶ୍ୱର | ଆନନ୍ଦପୁର |
| ବାଲୁଙ୍କେଶ୍ୱର | ଫକୀରପୁର (ଆନନ୍ଦପୁର) |
| କପିଳେଶ୍ୱର | ପଞ୍ଚୁପଲ୍ଲୀ (ଆନନ୍ଦପୁର) |
| ପିଣ୍ଡିକେଶ୍ୱର | ବାଲିବରେଇ (ଆନନ୍ଦପୁର) |
| ବାଞ୍ଛେଶ୍ୱର | ଲୁଣହାର (ଆନନ୍ଦପୁର) |
| କପିଳେଶ୍ୱର | ମଠ (ଆନନ୍ଦପୁର) |
| ଶ୍ରୀହାବଳେଶ୍ୱର ମହେଶ | ହାବଳେଶ୍ୱର |
| ଶ୍ରୀବକ୍ରେଶ୍ୱର | ପୁରୁଣାବାନ୍ଧଗୋଡା (ଆନନ୍ଦପୁର) |
| ଶଙ୍କରେଶ୍ୱର | ଖଂଖଣା (ଆନନ୍ଦପୁର) |
| ହଟକେଶ୍ୱର | ଝାଡ଼କୁଣ୍ଡି, ହାଟଡିହି |
| ପଦ୍ମେଶ୍ୱର | ଅଂଗାରୁଆ |
| ମହେଶ୍ୱର | ରାମକୃଷ୍ଣପୁର |

| | |
|---|---|
| ବଟେଶ୍ୱର | ବଞ୍ଜୋ |
| ସୁବର୍ଣ୍ଣେଶ୍ୱର | ସୁଲଣ |
| ଗଙ୍ଗେଶ୍ୱର | ସାଇଁକୁଳ |
| ଶିଖରେଶ୍ୱର, ବାଲୁଙ୍କେଶ୍ୱର | ଶିବନାରାୟଣପୁର (ଆନନ୍ଦପୁର) |
| ପର୍ବତେଶ୍ୱର | ବଡ଼ରଂପାସ |
| ରାମେଶ୍ୱର | ନୂଆରଂପାସ |
| ଆନନ୍ଦେଶ୍ୱର, ବଟେଶ୍ୱର | ଆନନ୍ଦପୁର |
| ଆଖଣ୍ଡଳମଣି | ବଡ଼ଦାଣ୍ଡ (ଆନନ୍ଦପୁର) |
| ସର୍ବେଶ୍ୱର | ସାହାରପଡା |
| ଧବଳେଶ୍ୱର | କଣିଙ୍ଗା (ଝୁଂପୁରା) |
| ପଞ୍ଚେଶ୍ୱର | ଝୁଂପୁରା |
| ଝାଡେଶ୍ୱର | ଭୀମପୁର (ଝୁଂପୁରା) |
| ହଟକେଶ୍ୱର | ଖୁଦପଣି (ଝୁଂପୁରା) |
| ଭୋଳାନାଥ | ବଡ଼ଡୁମୁରିଆ (ଝୁଂପୁରା) |
| ସିଦ୍ଧେଶ୍ୱର | ରାଣୀପୁର (ଝୁଂପୁରା) |
| ବିଶ୍ୱେଶ୍ୱର | ବାରିଆ (ଝୁଂପୁରା) |
| ଧବଳେଶ୍ୱର | ବାରଖଣ୍ଡିଆ (ଝୁଂପୁରା) |
| ଲକ୍ଷେଶ୍ୱର | ଶିରିକୁଆଁ (ଝୁଂପୁରା) |
| ବିଶ୍ୱନାଥ | ଭୂଇଁପୁର (ଝୁଂପୁରା) |
| ଜଟେଶ୍ୱର | ବଳିଡା (ଯୋଡା) |
| ପରମେଶ୍ୱର | ଭଣ୍ଡାରିତିହା (ଘସିପୁରା) |
| ମୁକ୍ତେଶ୍ୱର ମହେଶ | ରାଜବାଟୀ (ପୁରୁଣାବଜାର) |
| ପିଣ୍ଡିକେଶ୍ୱର | କରଣସାହି (ପୁରୁଣାବଜାର) |
| ବିଶ୍ୱେଶ୍ୱର | ବିଶ୍ୱେଶ୍ୱରପୁରଶାସନ (କେନ୍ଦୁଝର) |
| ପାତାଳେଶ୍ୱର | ବଳଦେବଜୀଉ ମନ୍ଦିର |
| ଘାଟି ମହାଦେବ | ନିହାଲସିଂହକ (କେନ୍ଦୁଝର) |
| ବାଲୁଙ୍କେଶ୍ୱର | ବଡ଼ଶାସନ (କେନ୍ଦୁଝର) |

| | |
|---|---|
| ପିପିଳେଶ୍ୱର | ଗଡ଼ସାହି (କେନ୍ଦୁଝର) |
| ବାବା ଆଖଣ୍ଡଳମଣି | ଧୂପଦା (କେନ୍ଦୁଝର) |
| ସ୍ୱପ୍ନେଶ୍ୱର | କଟିଲୋପଣି (ଖଡ଼ିକୁଣ୍ଡ, ଝୁଂପୁରା) |
| ସ୍ୱପ୍ନେଶ୍ୱର | କୁମଡ଼ (କୋଳିମାଟି, ଭାଲୁହୁଡି) |

## କେନ୍ଦୁଝର ଜିଲ୍ଲାର ଦେବୀ/ଶକ୍ତି ପୀଠ

| ଦେବୀ ପୀଠ | ସ୍ଥାନ |
|---|---|
| ତାରିଣୀ | ଘଟଗାଁ |
| ସିଦ୍ଧକାଳୀ | ସିଦ୍ଧମଠ |
| ଗଡ଼ତାରିଣୀ | କେନ୍ଦୁଝର ରାଜବାଟୀ |
| ବରାହୀ | ବଞ୍ଜୋ |
| ଚର୍ଚ୍ଚିକା | କେନ୍ଦୁଝରଗଡ଼ |
| ଚତୁର୍ଭୁଜା ପାର୍ବତୀ | ଗୋନାସିକା |
| ଗିରିରାଜେଶ୍ୱରୀ | କିରିବୁରୁଘାଟି |
| ପାର୍ବତୀ | ପାଟେଶ୍ୱର |
| ପାର୍ବତୀ | ଘଡ଼ଘଡି ପୀଠ (ନରଣପୁର) |
| ବାଶୁଳି | କେନ୍ଦୁଝରଗଡ |
| ମୂଷାଖୋରୀ | ପାଟଣା |
| ବାଶୁଳି | ଚମକପୁର, ଜ୍ୟୋତିପୁର |
| ଦୁଆରଶୁଣି | ରାଜପ୍ରାସାଦର ମୁଖ୍ୟଦ୍ୱାର |
| ଦୁଆରଶୁଣି | ନୟାଗଡ |
| ଗଡ଼ଚଣ୍ଡୀ | ନୟାଗଡ |
| ମହାପାଟ | ହୁଣ୍ଡା, କୁଆଁର, ଶୁଆକାଟୀ |
| ରଙ୍ଗାପାଟ | କରଣସାହି, ଗଡ଼ସାହି, ଆଟୋପୁର |
| ରଙ୍ଗାପାଟ | ପଣ୍ଡାପଡା (ଘଟଗାଁ) |
| ଦାନ୍ତୁଆଣି | ଷଗଡ଼ପଟା (ହରିଚନ୍ଦନପୁର) |

| | |
|---|---|
| ବ୍ରାହ୍ମଣୀଦେବୀ | ଆନନ୍ଦପୁର |
| ବଉଳାଶୁଣି | ବଉଳା |
| ହିଙ୍ଗୁଳା | ତେଲକୋଇ |
| ଚର୍ଚ୍ଚିକା | ରେଙ୍କୁଟି (କାଳିଆହତା) |
| ଚାଉଖାଇ | ଖୁଣ୍ଟ ପତା (ତେଲକୋଇ) |
| ତାରିଣୀ | ଉରିଆ (ତେଲକୋଇ) |
| ସୁନାପୋଷି | ରୁପାକୁଣ୍ଡ (ଚଂପୁଆ) |
| ଗୋଜବାୟାଣୀ | କାଳିମା (ତେଲକୋଇ) |
| ନାଗପାଟ | ହାଲପୁଟି (ତେଲକୋଇ) |
| ଗଡ଼ଚଣ୍ଡୀ | ବଉଳା |
| ଗଡ଼ଚଣ୍ଡୀ | ଉଦୟପୁର |
| ଅନ୍ଧାରୀ | ରାଜନଗର, ବୀରଗୋବିନ୍ଦପୁର |
| ଦଣ୍ଡଦେବୀ | କେନ୍ଦୁଝରଗଡ଼ ରାଜପ୍ରାସାଦ |
| ଦ୍ରୌପଦୀ | ବଡ଼ବିଲ (ସାହାରପଡା) |
| ସୁଭଦ୍ରା | ତରୁଆଁ |
| ତାରିଣୀ | କାଶୀପୁର (କେନ୍ଦୁଝରଗଡ଼) |
| ପିଳେହିପେଟୀ ଠାକୁରାଣୀ | ନନ୍ଦପୁର କପିଳମୁନି ଚଟାଣ |
| ପତରସଉରୁଣୀ | ଗୋହିରା (ଘସିପୁରା) |
| ଚାଉଖାଇ | ଭଗାମୁଣ୍ଡା (ହରିଚନ୍ଦନପୁର) |
| ଗଡ଼ଭୁଜା | ଫୁଲକଅଁଳେଇ |
| ସାବିତ୍ରୀ | ଡିଣ୍ଡା (ତୁରୁମୁଙ୍ଗା) |
| ଚର୍ଚ୍ଚିକା | ରେଙ୍କୁଟି (କାଳିଆହତା) |
| ଦ୍ରୌପଦୀ | ବଡ଼ବିଲ (ସାହାରପଡା) |
| ବଜ୍ରଗୁଣା, କଣ୍ଟେଇବୀରା, ଘଟିମହାପାଟ | ତରମାକାନ୍ତ |
| ପାଦଖାଇ | ଫକୀରପୁର (ଆନନ୍ଦପୁର) |
| ମା' ପାଟ ବାସୁଳି | ଅସନପାଟ (ଝୁଂପୁରା) |
| ମା' ବରକୋଟି | ବାଉଁଶଗଡ଼ (ଆନନ୍ଦପୁର) |

| | |
|---|---|
| ମା' କୁଟେଇଶୁଣି, କେନ୍ଦେଇଶୁଣି | ହୁଣ୍ଡ |
| ନୂଆ ଠାକୁରାଣୀ, ସମଲେଇ ଠାକୁରାଣୀ | ହୁଣ୍ଡ |
| ଦୁଆରଶୁଣୀ, ବାଉଁଶତଳିଆ, ରଂଗାପାଟ | ହୁଣ୍ଡ |
| ଗାଁଶିରି, ବିଷ୍ଣୁପାଟ, ସାରୁପାଟ | ହୁଣ୍ଡ |
| ମୁଟୁରି ଠାକୁରାଣୀ | ହୁଣ୍ଡ |
| ବଢିରିମୂଳିଆ, ବଡାମ୍ ଠାକୁରାଣୀ | ହୁଣ୍ଡ |
| କଟା ମୁଣ୍ଡିଆ ଠାକୁରାଣୀ | ହୁଣ୍ଡ |

## ନିଆରା ପରଂପରା: କେଶଦୂରାପାଳର ବଳଦ ଶୋଭାଯାତ୍ରା

ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ଘସିପୁରା ବ୍ଲକ୍ କେଶଦୂରାପାଳର ବଳଦ ଶୋଭାଯାତ୍ରା କେନ୍ଦୁଝର ଜିଲ୍ଲା ସମେତ ସମଗ୍ର ରାଜ୍ୟରେ ଏକ ନିଆରା ପରଂପରା ସୃଷ୍ଟି କରିଛି । ପ୍ରତିବର୍ଷ କେଶଦୂରାପାଳ ଗ୍ରାମରେ ଦଶହରା ଦିନ ଏହି ବଳଦ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥାଏ । ବଳଦମାନଙ୍କୁ ସୁସଜ୍ଜିତ କରାଯାଇ ଗ୍ରାମଦେବୀ ମା' ମଙ୍ଗଳାଙ୍କ ନିକଟରେ ପୂଜାର୍ଚ୍ଚନା କରାଯିବା ପରେ ଗ୍ରାମ ପଡିଆରେ ଏକତ୍ରିତ କରାଯାଏ । ୨୦ରୁ ଊର୍ଦ୍ଧ୍ୱ ସୁସଜ୍ଜିତ ବଳଦ ଶୋଭାଯାତ୍ରା ମାଧ୍ୟମରେ ଗ୍ରାମ ପରିକ୍ରମା କରିଥାନ୍ତି । ଏହି ନିଆରା ପରଂପରା ବହୁ ପ୍ରାଚୀନ ଏବଂ ଶହେ ବର୍ଷ ଧରି ଚାଲି ଆସୁଛି ବୋଲି ଗ୍ରାମବାସୀ କହନ୍ତି । ପୂର୍ବକାଳରେ ଓଡ଼ିଆ ପୁଅ ବାଣିଜ୍ୟ କାରବାର ଉଦ୍ଦେଶ୍ୟରେ ଜଳପଥରେ ବୋଇତ ଯୋଗେ ଯେଉଳି ଜାଭା, ସୁମାତ୍ରା ଯାତ୍ରା କରୁଥିଲେ ଠିକ୍ ସେହିଭଳି ସ୍ଥଳପଥରେ ଦୁର୍ଗମ ଅଞ୍ଚଳକୁ ଯାତ୍ରା କରିବା ପାଇଁ ବଳଦ ଓ ଶଗଡର ସହାୟତା ନିଆଯାଉଥିଲା । ପୂର୍ବରୁ 'ପିଠିଆ ବଳଦ' (ଯେଉଁ ବଳଦ ପିଠିରେ ସାମଗ୍ରୀ ଲଦି ଦୂରସ୍ଥାନକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରାଯାଇଥାଏ) ସହାୟତାରେ ଧାନ, ଚାଉଳ, ସୋରିଷ, କୋଳଥ, ବିରି ଆଦି କୃଷି ଉତ୍ପାଦିତ ସାମଗ୍ରୀ ଧରି ବୈଷ୍ୟ ସଂପ୍ରଦାୟର ଲୋକେ ଗାଁ ଗାଁ ବୁଲି ବଣିଜ କରୁଥିଲେ । ଏଣୁ ଏହି ପୁରୁଣା ପରଂପରାକୁ ମନେ ରଖିବା ପାଇଁ ଏଭଳି ବଳଦ ଶୋଭାଯାତ୍ରାର ଆୟୋଜନ କରାଯାଉଛି ବୋଲି ଗ୍ରାମବାସୀ କହନ୍ତି । ବର୍ତ୍ତମାନ କେନ୍ଦୁଝର ଜିଲ୍ଲାରେ କୃଷି ଓ ଚାଷକାମ ବିଶେଷ ଭାବେ ଲୁପ୍ତ ହେବାକୁ ବସିଲାଣି । ଗାଈଗୋରୁଙ୍କ ଚରିବା ପାଇଁ ଚାରଣ ଭୂମିର ଘୋର ଅଭାବ ପରିଲକ୍ଷିତ ହେଲାଣି । ଏହିସବୁ କାରଣରୁ ଗୃହପାଳିତ ପଶୁଙ୍କ ସଂଖ୍ୟା ମଧ୍ୟ ଯଥେଷ୍ଟ ହ୍ରାସ ପାଇଲାଣି । ବର୍ତ୍ତମାନ ଚାଷ କାର୍ଯ୍ୟରେ ମେସିନ୍‌ର ବହୁଳ ପ୍ରୟୋଗ ଫଳରେ ଏକଦା ମଣିଷ ପାଇଁ ବହୁ ଉପକାରୀ ଥିବା ବଳଦର ଆବଶ୍ୟକତା ମଣିଷ ଆଉ ଅନୁଭବ କରୁନି । ଏଣୁ ବଳଦମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଏହି ଶୋଭାଯାତ୍ରାର ଆୟୋଜନ କରାଯାଇ ଆସୁଛି । କେଶଦୂରାପାଳ

ଗ୍ରାମ ବ୍ୟତୀତ ମଙ୍ଗଳପୁର, ତରିମୂଳ, ଦରଡିପାଳ, ଖାଲପାଳ ଆଦି ଅଞ୍ଚଳରେ ମଧ୍ୟ ବଳଦ ଶୋଭାଯାତ୍ରାର ଆୟୋଜନ କରାଯାଇଥାଏ । ପ୍ରତିବର୍ଷ ଦଶହରା ବେଳକୁ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଗ୍ରାମମାନଙ୍କରେ ଏହି ବଳଦ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥାଏ । ବଳଦଙ୍କୁ ଗାଧୁଆପାଧୁଆ କରି ପାଞ୍ଜୁ, ପଲାଣ, ଶିଙ୍ଗରେ ମୟୂରପୁଚ୍ଛ ବାନ୍ଧି ଏହି ଶୋଭାଯାତ୍ରା ସ୍ଥଳକୁ ନିଆଯାଏ । ମା' ମଙ୍ଗଳା ପୀଠରେ ପୂଜାର୍ଚ୍ଚନା କରି ଶୋଭାଯାତ୍ରାରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏକତ୍ରିତ କରାଯାଏ । ଏହାକୁ ଦେଖିବାକୁ ହଜାରହଜାର ସଂଖ୍ୟାରେ ଦର୍ଶକଙ୍କ ଭିଡ଼ ଜମିଥାଏ ।

## ଖଣିଜ ସଂପଦ ଲୋପ ପାଇଗଲା ପରେ କ'ଣ ହେବ କେନ୍ଦୁଝରର ଚିତ୍ର?



ଯେଉଁ ଖଣିଜ ପଦାର୍ଥକୁ ନେଇ କେନ୍ଦୁଝର ପୂର୍ଣ୍ଣଗର୍ଭା, ଦିନେ ସମୟ ଆସିବ ତାହା ଶେଷ ହୋଇଯିବ ଏବଂ କେନ୍ଦୁଝର ହୋଇଯିବ ଶୂନ୍ୟଗର୍ଭା । ଲୁହା ପଥର ଖଣିକୁ ନେଇ କେନ୍ଦୁଝର ଆଜି ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି । କେନ୍ଦୁଝରରେ ଗଚ୍ଛିତ ଥିବା ମୂଲ୍ୟବାନ୍ ଲୁହାପଥରର ଲୋଭରେ ବିଶ୍ୱର ବଡ଼ବଡ଼ ଶିଳ୍ପପତିମାନେ ଓଡ଼ିଶା ଆସିବାକୁ ମନ ବଳେଇଛନ୍ତି । ପୋସ୍କୋ, ମିତ୍ତଲ, ବେଦାନ୍ତ (ଷ୍ଟେରଲାଇଟ୍), ଉତ୍ତମ ଗାଲ୍‌ଭାଠାରୁ ଆରମ୍ଭ କରି ଆହୁରି ଶହଶହ ଛୋଟବଡ଼ କଂପାନୀ କେନ୍ଦୁଝରର ଲୁହାପଥର ଉପରେ ଦୃଷ୍ଟି ନିକ୍ଷେପ କରିଛନ୍ତି । କେନ୍ଦୁଝରରେ ଶିଳ୍ପର ବିକାଶ ପାଇଁ ସେମାନେ ସ୍ୱପ୍ନ ଓ ସଂଭାବନାର ମଞ୍ଜି ବୁଣି ଚାଲିଛନ୍ତି । ଅପରପକ୍ଷେ, ଏମାନଙ୍କ ବହୁ ପୂର୍ବରୁ କେନ୍ଦୁଝରଠାରେ

ଓଏମ୍‌ସି, ଟାଟା, ବିର୍ଲା, ଜିନ୍ଦଲ, ଓଡ଼ିଶା ଷ୍ଟଞ୍ଜ, ରୁଙ୍ଗ୍‌ଟା ମାଇନ୍‌ସ, ଆର୍ଯ୍ୟ ଷ୍ଟୀଲ୍‌, କଳିଙ୍ଗ ଷ୍ଟୀଲ୍‌, ଏମ୍‌ଏସ୍‌ପି, ଏନ୍‌.କେ ଭୋଜାନି, ଗ୍ରାଓ୍ୱାଲ୍ ଆସୋସିଏଟ୍‌ସ, କ୍ରାର୍କସ ଇଣ୍ଡିଆ, ବ୍ରାଣ୍ଡ ଆଲଏଜ୍ ଭଳି ଅନେକ ଛୋଟବଡ କଂପାନୀ ଲୁହାପଥର ଶିଳ୍ପ ପ୍ରତିଷ୍ଠା କରି ସଫଳତା ହାସଲ କରି ସାରିଛନ୍ତି । ଏଠାରେ ଗଚ୍ଛିତ ଥିବା ଲୁହାପଥର ଖଣିକୁ ନେଇ ଶିଳ୍ପ କାରଖାନା ଗଢି ଉଠିଛି । ମାତ୍ର କେନ୍ଦୁଝରରେ ଯେଭଳି ବିକାଶ ହେବା କଥା ତାହା ହୋଇପାରିଛିକି? ଏହା ସମୀକ୍ଷାସାପେକ୍ଷ । ଆଜି କେନ୍ଦୁଝରର ରାସ୍ତା ଉପରେ ଗୋଟିଏ ଦିନରେ ୩୦ ହଜାରରୁ ଅଧିକ ଲୁହାପଥର ବୋଝେଇ ଟ୍ରକ୍ ଗଡ଼ିଥାଏ । କେନ୍ଦୁଝର ଜିଲ୍ଲାର ଖଣି ମଧ୍ୟରୁ ଲୁହାପଥର ଶାଗମାଛ ଦରରେ ବିଦେଶକୁ ଲୁଟ୍ ହୁଏ ।

ଶିଳ୍ପାୟନ ନାଁରେ କେନ୍ଦୁଝରରେ ସମାନ୍ତରାଳ ଭାବେ ଗଢି ଉଠିଛି ଦୁଇଟି ଗୋଷ୍ଠୀ; ଗୋଟିଏ ପୁଞ୍ଜିପତି, ଶିଳ୍ପପତିଙ୍କ ଗୋଷ୍ଠୀ ଓ ଆଉ ଗୋଟିଏ ଦିନମଜୁରୀଆ ଖଟିଖିଆଙ୍କ ଗୋଷ୍ଠୀ । ଏଠାରେ ଧନୀ ଦିନକୁ ଦିନ ଅଧିକ ଧନୀ ହେଉଥିବାବେଳେ ଗରିବ ଆହୁରି ଗରିବ ହୋଇ ଚାଲୁଛି । ଅର୍ଥନୈତିକ ଓ ସାମାଜିକ ବୈଷମ୍ୟ ଏଠାରେ ଉତ୍କଟ ହେବାରେ ଲାଗିଛି । ବିଶ୍ୱର ସର୍ବବୃହତ୍ତ କର୍ପୋରେଟ୍ ହାଉସ୍ ଓ ଶିଳ୍ପସଂସ୍ଥାମାନଙ୍କ ଗହଳି ଭିତରେ ହଜି ଯାଇଛି ଆଦିମ ଅଧିବାସୀ ଜୁଆଙ୍ଗ, ଭୂୟାଁ, ବାଥୁଡି, ମୁଣ୍ଡା, ସାନ୍ତାଳଙ୍କ ଭଳି ଆଦିମ ଜନଜାତିଙ୍କ ଭାଗ୍ୟ । କଳକାରଖାନାର ଧୂଆଁରେ ମଳିନ ପଡିଯାଇଛି କେନ୍ଦୁଝରର ଶୀତୁଆ କାକରଭିଜା ସକାଳ । ପାଶ୍ଚାତ୍ୟ ଶୈଳୀର କ୍ଲବ୍, ହୋଟେଲ୍‌ମାନଙ୍କରୁ ଶୁଭୁଥିବା ପପ୍ ସଂଗୀତର କୋଳାହଳ ଭିତରେ ଆଉ ଶୁଭୁନି ଜୁଆଙ୍ଗର 'ମଣ୍ଡ ଘରୁ' ଚାଙ୍ଗୁର ମଧୁର ମୂର୍ଚ୍ଛନା । ଆଜି ଯେଉଁ ଲୁହାପଥରକୁ ନେଇ ସମସ୍ତେ ମୋହଗ୍ରସ୍ତ ଓ ମତୁଆଲା, ଆସନ୍ତାକାଲି ଏହା ଶେଷ ହୋଇଗଲେ କ'ଣ ହେବ କେନ୍ଦୁଝରର ଅବସ୍ଥା ତାହା କେବେ କେହି ଚିନ୍ତା କରି ନାହାନ୍ତି । ଯେବେ ଏହି ପ୍ରାଚୁର୍ଯ୍ୟଭରା କେନ୍ଦୁଝରରୁ ଲୁହାପଥରତକ ଶେଷ ହୋଇଯିବ ସେବେ ଏହାର ଅବସ୍ଥା କିଭଳି ଦୟନୀୟ ହୋଇଥିବ, ଭାବିଲା ବେଳକୁ ଦେହ ଶୀତେଇ ଉଠେ ଓ ମନ ଭାରାକ୍ରାନ୍ତ ହୋଇଯାଏ । ଯେଉଁ ଲୁହା ପଥରକୁ ନେଇ କେନ୍ଦୁଝର ଆଜି ବିଧାନସଭାରୁ ବେଜିଂ, ଭୁବନେଶ୍ୱରରୁ ଦିଲ୍ଲୀ, ଯୋଡା-ବଡ଼ବିଲ୍‌ରୁ ଟୋକିଓ ପର୍ଯ୍ୟନ୍ତ ବିଶ୍ୱର କୋଣ ଅନୁକୋଣରେ ଚର୍ଚ୍ଚିତ, ଦିନେ ସେହି ଲୁହାପଥର ସବୁ ଶେଷ ହୋଇଯାଇଥିବ; ଏହା ଭାବିଲା ବେଳକୁ ମନରେ ଦୁଃଖ ଜାତ ହୁଏ । ଦିନ ଆସିବ, କେନ୍ଦୁଝର ପାଲଟି ଯାଇଥିବ ଶୁଷ୍କ ମରୁଭୂମି । ଏହି ବାସ୍ତବ ଓ ସତ୍ୟକୁ ସାମ୍ନା କଲାବେଳେ ଛାତି ଭିତରଟା କୋରି ହୋଇଯାଏ ଓ ଆଖି ଓଦା ହୋଇଯାଏ । କେନ୍ଦୁଝର ଜିଲ୍ଲାରେ ଭାରତବର୍ଷର ସର୍ବାଧିକ ପରିମାଣର ଓ ଉଚ୍ଚ ଗୁଣର ଲୁହା ପଥର ଗଚ୍ଛିତ ହୋଇ ରହିଛି ।

ଜିଲ୍ଲାର ଠାକୁରାଣୀ, ବଲାଣି, ବାଂଶପାଣି, ଖଣ୍ଡବନ୍ଧ, ଯୋଡା, ସିଦ୍ଧମଠ, କାସିଆ-ବରପଦା, ଜିଲିଙ୍ଗ- ଲଙ୍ଗଲଟା, ଉଜାଙ୍ଗ, ମାଲାଙ୍ଗଟୋଲି, ଗନ୍ଧମାର୍ଦ୍ଦନ, ଦୈତାରୀ, ଖଣ୍ଡାଧାର ଆଦି ଅଞ୍ଚଳରେ

ପ୍ରଚୁର ପରିମାଣରେ ଉନ୍ନତ ମାନର ଲୁହା ପଥର ଗଚ୍ଛିତ ରହିଛି । ଦିନେ ଏହି ସବୁଜ ସୁନ୍ଦର କେନ୍ଦୁଝରର ଆଦିମ ଅଧିବାସୀ ଲୁହା ପଥର କ'ଣ ଜାଣି ନଥିଲେ । ଆଉ ଯେବେଠୁ ଏହାର ସନ୍ଧାନ ମିଳିଗଲା,ସେବେଠୁ କେନ୍ଦୁଝରକୁ ପଶି ଆସିଲା ଅଶାନ୍ତି ଓ ଦୁଃଖର କଳାବାଦଲ । ଆରମ୍ଭ ହେଲା ପାହାଡର ଛାତି ଚିରି, ଲୁହାପଥର ଖୋଳାର ପର୍ବ । ଏବେ କେନ୍ଦୁଝର ଜିଲ୍ଲାରେ ଯେଉଁ ହାରରେ ଲୁହାପଥର ଉତ୍ତୋଳନ ଚାଲିଛି ଅତି ବେଶିରେ ଆଉ ବର୍ଷ ୩୦ଟାରେ ସବୁ ଖତମ୍ ହୋଇଯିବ; ଏହା ନିଃସନ୍ଦେହ ।

ସମଗ୍ର ଓଡ଼ିଶାରେ ଗଚ୍ଛିତ ଥିବା ଲୁହାପଥର ପରିମାଣର ଶତକଡା ୮୨ ପ୍ରତିଶତ କେବଳ କେନ୍ଦୁଝର ଜିଲ୍ଲାରେ ଗଚ୍ଛିତ ରହିଛି । ୧୯୯୦ ଦଶକ ବେଳକୁ କେନ୍ଦୁଝର ଜିଲ୍ଲାରେ ୨୫୮୦ ନିୟୁତ ଟନ୍ ଲୁହାପଥର ଗଚ୍ଛିତ ଥିଲାବେଳେ ୨୦୦୨-୦୩ ମସିହା ବେଳକୁ ତାହା ହ୍ରାସ ପାଇ ୨୩୦୦ ନିୟୁତ୍ ଟନ୍‌କୁ ପହଞ୍ଚିଥିଲା । ମାତ୍ର ଆଜି ଏହାର ପରିମାଣ ଉଦ୍‌ବେଗଜନକ ଭାବେ ହ୍ରାସ ପାଇବାରେ ଲାଗିଛି । ସରକାରୀ ଭାବେ କାଗଜକଲମରେ ଲୁହାପଥର ଉତ୍ତୋଳନ ଓ ପରିବହନର ଯେଉଁ ଚିତ୍ର ଦର୍ଶାଯାଉଛି, ବାସ୍ତବ ଚିତ୍ର ତାହାଠୁ ବେଶ୍ ଭିନ୍ନ । ଖଣି ମାଲିକମାନେ ଯେଉଁ ପରିମାଣରେ ଖଣି ଲିଜ୍ ନେଇଥାନ୍ତି ପ୍ରକୃତରେ ତାହାଠୁ ଅଧିକ ପରିମାଣର ବେନିୟମ ଭାବେ ଖଣି ଖୋଳିଥାନ୍ତି । ଆଉ ଏଇଠୁ ହିଁ ଖଣି ଚୋରିର ମୂଳଦୁଆ ପଡିବା ଆରମ୍ଭ କରିଥାଏ । ଏହାକୁ ଭିତ୍ତି କରି ଟ୍ରାନ୍‌ସପୋର୍ଟିଂ, ଲୋଡିଂ, ଅନ୍-ଲୋଡିଂ, ରେଲ୍‌ୱେ ସାଇଡିଂ ସବୁଠି ଚାଲେ ଲୁଟ୍ ଓ ଡକାୟତି ।

ଆଜିର ଦିନରେ କେନ୍ଦୁଝର ଜିଲ୍ଲାରେ ୫୧ ଜଣ ଖଣି ମାଲିକଙ୍କର ମୋଟ ୧୦୮ଟି ଛୋଟବଡ଼ ଖଣି ରହିଛି । ଏହା ସାଙ୍ଗକୁ ଜିଲ୍ଲାରେ ୩୦୦ରୁ ଉର୍ଦ୍ଧ୍ୱ କ୍ରସର ରହିଛି । ପ୍ରତିଦିନ କେନ୍ଦୁଝରର ଛାତି ଉପରେ ଚଢି ଚାଲି ଯାଆନ୍ତି କୋଡିଏ ହଜାରରୁ ଉର୍ଦ୍ଧ୍ୱ ଲୁହାପଥର ବୋଝେଇ ବିଶାଳ ବିଶାଳ ଟ୍ରକ୍ । ବଡ଼ବଡ଼ କଂପାନୀମାନେ କେନ୍ଦୁଝରରୁ ଲୁହାପଥର ବୋହି ନେବାରେ ସର୍ବଦା ବ୍ୟସ୍ତ ଥାଆନ୍ତି । ପ୍ରତିଦିନ ମଧ୍ୟ ଲୁହାପଥର ଖଣି ଓ ଏହାକୁ ଭିତ୍ତିକରି ଶିଳ୍ପ କାରଖାନା ଗଢି ଉଠିବାର ପ୍ରକ୍ରିୟା ଜାରି ରହିଥାଏ । ସରକାର କଂପାନୀମାନଙ୍କ ସହ ସ୍ୱାକ୍ଷର କରନ୍ତି 'ଏମ୍‌ଓୟୁ' ପରେ 'ଏମ୍‌ଓୟୁ' । ଲୁହା ପଥର ଲୋଭରେ ଦେଶର ବଡବଡ କଂପାନୀମାନେ କେନ୍ଦୁଝରରେ ସାମୟିକ କଲୋନୀ ପ୍ରତିଷ୍ଠା କରି ଏଠାରୁ ଲୁହାପଥର ଲୁଟି ନେବାର ଯୋଜନା କରନ୍ତି ।

ଅନ୍ତର୍ଜାତୀୟ ବଜାରରେ ଲୁହାପଥରର ଚାହିଦା ଅଧିକ ରହିଛି । ଚୀନ୍, ଜାପାନ୍ ଭଳି ଚତୁର ଦେଶମାନେ ଆଖି ବୁଜି ଓଡ଼ିଆମାନଙ୍କୁ ଅଳ୍ପ କିଛି ଟଙ୍କାର ଲୋଭ ଦେଖାଇ କେନ୍ଦୁଝର ଜିଲ୍ଲାରୁ ଲୁହାପଥର ଲୁଟି ନେବାରେ ବ୍ୟସ୍ତ ଅଛନ୍ତି । ଦିନ ଆସିବ କେନ୍ଦୁଝରରେ ଥିବା ପ୍ରକୃତିର ଦାନ ଓ ଭଗବାନଙ୍କ ସୃଷ୍ଟି ଲୁହାପଥରର ପାହାଡସବୁ ଧ୍ୱଂସ ପାଇଯାଇଥିବ ଏବଂ କେନ୍ଦୁଝରରୁ ବୁହା ହୋଇ ଯାଇଥିବା ଲୁହାପଥରରେ ଚୀନ୍, ଜାପାନ୍‌ରେ କୃତ୍ରିମ ପାହାଡସବୁ ଗଢି ଉଠିଥିବ । ଗତ କିଛି ବର୍ଷ

ଧରି ଖଣି ମାଲିକମାନେ ନିୟମ୍ କାନୁନ୍ ନ ମାନି ଆଖି ବୁଜି ଖଣି ଖୋଲି ଚାଲିଛନ୍ତି । ଅଧିକାଂଶ କଂପାନୀ ନିୟମ ଉଲ୍ଲଂଘନ କରି ବେନିୟମ ଭାବେ ଲୁହାପଥର ଉତ୍ତୋଳନ କରୁଛନ୍ତି । ଇଣ୍ଡିଆନ୍ ବ୍ୟୁରୋ ଅଫ୍ ମାଇନ୍‌ସ (ଆଇବିଏମ୍)ର ନୀତିନିୟମ ପୂରାପୂରି ଉଲ୍ଲଂଘନ ଚାଲିଛି । ବ୍ୟାପକ ପରିମାଣରେ ଚୋରାରେ ଖଣି ଉତ୍ତୋଳନ ଚାଲିଛି । ତେବେ ନିକଟରେ ଏସବୁର ଧରପଗଡ ହେବାପରେ ଏବେ ପରିସ୍ଥିତିରେ ସାମାନ୍ୟ ଉନ୍ନତି ପରିଲକ୍ଷିତ ହୋଇଛି । ମାତ୍ର ଚୋରିକୁ ସଂପୂର୍ଣ୍ଣ ରୋକାଯାଇ ପାରିନାହିଁ । ଏବେବି ଖଣି ଅଞ୍ଚଳରେ ଚୋରି ଚାଲିଛି ।

କେନ୍ଦ୍ର ସରକାରଙ୍କ ଜଙ୍ଗଲ ଓ ପରିବେଶ ମନ୍ତ୍ରାଳୟ ଖଣିର ପାରିପାର୍ଶ୍ୱିକ ସ୍ଥିତି ଓ ପ୍ରଦୂଷଣ ନିୟମାବଳୀକୁ ଭିତ୍ତିକରି ଉତ୍ତୋଳନର ସୀମା ନିର୍ଦ୍ଧାରଣ କରିଥାନ୍ତି । କିନ୍ତୁ ଅତ୍ୟଧିକ ଲୋଭ ଓ ଲାଭର ଆଶାରେ ଖଣି ମାଲିକମାନେ ନିଜ ନିର୍ଦ୍ଧାରିତ ସୀମାକୁ ଅତିକ୍ରମ କରି ଅଧିକ ପରିମାଣରେ ବେନିୟମ ଭାବେ ଲୁହା ପଥର ଖୋଳି ଚାଲିଛନ୍ତି । ଯେଉଁ ଯେଉଁ କଂପାନୀ ଓ ଖଣିମାଲିକମାନେ ଖଣି ଲିଜ୍ ନେଇଛନ୍ତି ସେମାନେ ଅତି ବେଶିରେ ଆଉ ୩୦ ବର୍ଷ ପର୍ଯ୍ୟନ୍ତ ଖଣିଜ ପଦାର୍ଥ ଉତ୍ତୋଳନ କରିବା ପରେ ଏସବୁ ଶେଷ ହୋଇଯିବା ଏକ ପ୍ରକାର ନିଶ୍ଚିତ । ଖଣି ଉତ୍ତୋଳନ ସାଙ୍ଗକୁ କେନ୍ଦୁଝର ଜିଲ୍ଲାରେ ଜଙ୍ଗଲ କ୍ଷୟ ମଧ୍ୟ ବ୍ୟାପକ ଭାବେ ବୃଦ୍ଧି ପାଇବାରେ ଲାଗିଛି । ୨୦୦୭ ମସିହା ସୁଦ୍ଧା କେନ୍ଦୁଝରରେ ମାତ୍ର ୩୦୯୭ ବର୍ଗ କିଲୋମିଟର ଜଙ୍ଗଲ ଥିବା ବନ ବିଭାଗର ସର୍ଭେ ରିପୋର୍ଟ କହୁଛି । ଦିନ ଥିଲା କେନ୍ଦୁଝର ଜିଲ୍ଲା ୫ ହଜାରରୁ ଊର୍ଦ୍ଧ୍ୱ ବର୍ଗ କିଲୋମିଟର ବ୍ୟାପୀ ଘଞ୍ଚ ପାହାଡ, ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ବାସ୍ତବରେ ଆଜିର ଦିନରେ କେନ୍ଦୁଝର ଜିଲ୍ଲାରେ ଜଙ୍ଗଲର ପରିମାଣ ବେଶ୍ ନିରୁତ୍ସାହଜନକ । ଖଣି ଖୋଳାହେବା ସାଙ୍ଗକୁ ଅନୁରୂପ ଜଙ୍ଗଲ ମଧ୍ୟ କ୍ଷୟ ହେବାରେ ଲାଗିଛି । ଦିନ ଆସିବ କେନ୍ଦୁଝରରେ ଆଉ ନଥିବ ଜଙ୍ଗଲ କି ଖଣି । କେନ୍ଦୁଝର ପାଲଟି ଯାଇଥିବ ମରୁଭୂମି । ଖଣି ମାଲିକ ଓ କେନ୍ଦୁଝରରେ ଆସ୍ଥାନ ଜମେଇଥିବା ବଡ଼ବଡ଼ କଂପାନୀମାନେ କେନ୍ଦୁଝରରେଏକ ଶୁଷ୍କ ଟାଙ୍ଗରା ଭୂଇଁକୁ ଛାଡିଦେଇ ନିଜନିଜର ଘରକୁ ବାହୁଡିଯିବେ । ଲୁହାପଥର ସରିଗଲେ ଖଣିରେ କାମ କରୁଥିବା ଶ୍ରମିକ ଓ କର୍ମଚାରୀମାନେ ହାତ ବାନ୍ଧି ବସିବା ସାଙ୍ଗକୁ କଂପାନୀମାନେ କଞ୍ଚାମାଲ୍ ନ ପାଇ ସେମାନଙ୍କ ଫାଟକରେ ତାଲା ପକେଇଦେବେ । ବିଗତ ଗୋଟିଏ ଦଶନ୍ଧି ଧରି କେନ୍ଦୁଝର ଜିଲ୍ଲାରୁ ଯେଉ ହାରରେ ଲୁହାପଥର, ମାଙ୍ଗାନିଜ୍ ଓ କ୍ରୋମାଇଟ୍ ଆଦି ଖଣିଜ ପଦାର୍ଥର ଉତ୍ତୋଳନ ଚାଲିଛି ଅତି ବେଶିରେ ଆଉ ୩୦ ବର୍ଷ ମଧ୍ୟରେ ଶେଷ ହୋଇଯିବ । ସେତେବେଳକୁ ଦୁଃଖିନୀ କେନ୍ଦୁଝରର ଚିତ୍ର କିଭଳି ହୋଇଥିବ ତାହା କଳ୍ପନା କରି ହେବକି?

## ସବୁ ଥାଇ କେନ୍ଦୁଝର ଗରିବ

ଲୁହା ପଥରକୁ ନେଇ କେନ୍ଦୁଝର ଜିଲ୍ଲା ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି । ଖଣିଜ ସଂପଦରେ ଭରା କେନ୍ଦୁଝର ଜିଲ୍ଲାକୁ ପ୍ରକୃତି ମଧ୍ୟ କେଉଁଥିରେ ଅଭାବ କରିନି । ଏହି ଜିଲ୍ଲାର ମାଟି ତଳେ ପ୍ରଚୁର ପରିମାଣର ଲୁହାପଥର, ମାଙ୍ଗାନିଜ୍, ଡୋଲାମାଇଟ୍, କ୍ରୋମାଇଟ୍, ସୁନା, ପ୍ଲାଟିନମ୍ ଭଳି ଖଣିଜ ପଦାର୍ଥ ଗଚ୍ଛିତ ହୋଇଥିବା ସହ ଜିଲ୍ଲା ଶିଳ୍ପ, କାରଖାନା ମଧ୍ୟ ସମୃଦ୍ଧ ହୋଇଛି । ଏହି ଜିଲ୍ଲାରେ ଏବେ ଟାଟା, ବିର୍ଲା, ଜିନ୍ଦଲ ଭଳି ବିଶ୍ୱସ୍ତରୀୟ କଂପାନୀମାନେ ବେଶ୍ ବ୍ୟାବସାୟିକ ସଫଳତା ହାସଲ କରି ସାରିଲେଣି । ଏବେଏବେ ଆର୍ସେଲର ମିତ୍ତଲ, ଉତ୍ତମ ଗାଲ୍ଭା, ବେଦାନ୍ତ (ଷ୍ଟେରଲାଇଟ୍) ଭଳି କଂପାନୀମାନେ ଏଠାରେ ପୁଞ୍ଜି ଖଟେଇବା ପ୍ରକ୍ରିୟା ଆରମ୍ଭ କରିଛନ୍ତି । ଜିଲ୍ଲାରେ ବହୁ ଗୁରୁତ୍ୱପୂର୍ଣ୍ଣ ଚିରସ୍ରୋତା ନଦୀ, ନାଳ, ପାହାଡ ପର୍ବତ, ଝରଣା, ଜଙ୍ଗଲ ସଂପଦ ରହିଛି । ବୈତରଣୀ, କାନ୍‌ଝାରୀ, ଅରଡେଇ, ସୀତା, କୁକୁରକଟା, କୁଶେଇ, ମୁଷଳ, ସମାକୋଇ, ମାଛକାନ୍ଦଣା, କାରୋ, ସାଳନ୍ଦୀ, ରେମାଳ, ହନୁମନ୍ତିଆ ଭଳି ଚିରସ୍ରୋତା ନଦୀ ରହିଥିବାବେଳେ ମାଙ୍କଡ଼ନଚା, ଗନ୍ଧମାର୍ଦ୍ଦନ, ଗୋନାସିକା, ଖଜାରୁ, ଠାକୁରାଣୀ, ଖଣ୍ଡାଧାର, ରଙ୍ଗା, ଟମକା ଭଳି ଉଚ୍ଚତମ ଗିରିଶୃଙ୍ଗ ରହିଛି । ଏଗୁଡିକ ଜିଲ୍ଲା ପାଇଁ ଭଗବାନଙ୍କ ଆଶିର୍ବାଦ ଭଳି । ସେହିଭଳି ଜିଲ୍ଲାରେ ଦେଓଗାଁ କୁଶଳେଶ୍ୱର ଶୈବପୀଠ, ଘଟଗାଁ ମା' ତାରିଣୀଙ୍କ ପୀଠସ୍ଥଳୀ, ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ପବିତ୍ର ଗୋନାସିକା, ଦେଓଝରର ମୁର୍ଗା ମହାଦେବ, ସୀତାବିଞ୍ଜ, ବଡ଼ଘାଗରା, ସାନଘାଗରା ଜଳପ୍ରପାତ, ଖଣ୍ଡାଧାରା ଜଳପ୍ରପାତ, ହାଣ୍ଡିଭଙ୍ଗା ଜଳପ୍ରପାତ, ଭୀମକୁଣ୍ଡ, ଗୁଣ୍ଡିଚାଘାଗି ଭଳି ଅନେକ ପର୍ଯ୍ୟଟନ ସ୍ଥଳ ରହିଛି । ଏହାକୁ ନେଇ ଜିଲ୍ଲା ଯେତିକି ମାତ୍ରାରେ ରାଜସ୍ୱ ହାସଲ କରିବା କଥା ତାହା ହୋଇପାରୁନାହିଁ ।

କେନ୍ଦୁଝର ଜିଲ୍ଲାର ଦୈତାରୀ, ଠାକୁରାଣୀ, ବଲାଣୀ, ଯୋଡା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାସିଆ-ବରପଦା, କିଲିଙ୍ଗ୍-ଲଙ୍ଗଲଟା, ଜଜାଙ୍ଗ, ମାଲାଙ୍ଗଟୋଲି, ଗନ୍ଧମାର୍ଦ୍ଦନ, ଖଣ୍ଡାଧାର ଆଦି ପାହାଡରେ ବହୁ ପରିମାଣରେ ଉଚ୍ଚମାନର ଲୁହାପଥର ଗଚ୍ଛିତ ରହିଛି । ୧୯୯୦ ଦଶକ ବେଳକୁ ସମଗ୍ର ଓଡ଼ିଶାରେ ୩୧୨୦ ନିୟୁତ୍ ଟନ୍ ଲୁହା ପଥର ଗଚ୍ଛିତ ଥିଲାବେଳେ କେବଳ କେନ୍ଦୁଝର ଜିଲ୍ଲାରେ ୨୫୮୦ ନିୟୁତ୍ ଟନ୍ ଅର୍ଥାତ୍ ଓଡ଼ିଶାର ଶତକଡା ୮୨ ପ୍ରତିଶତ ଲୁହା ପଥର କେନ୍ଦୁଝର ଜିଲ୍ଲାରେ ଗଚ୍ଛିତ ଥିଲା । ସେହିଭଳି ଜିଲ୍ଲାର ରୋଇଡା, ଗୁରୁଡା, ସିଦ୍ଧମଠ, ଯୋଡା, ହରମଠ, ଗୁଆଲି ଆଦି ଅଞ୍ଚଳରେ ୨୮.୪ ନିୟୁତ୍ ଟନ୍ ମାଙ୍ଗାନିଜ୍ ମଧ୍ୟ ଗଚ୍ଛିତ ଥିଲା । ଏହା ସମଗ୍ର ଓଡ଼ିଶାର ୫୮ ପ୍ରତିଶତ ଥିଲା । କେନ୍ଦୁଝର ଜିଲ୍ଲାର ନୂଆସାହି ବଉଳାଠାରେ ପ୍ରାୟ ୪ ନିୟୁତ୍ ଟନ୍ ଉଚ୍ଚ ମାନର କ୍ରୋମିୟମ ପଥର ଗଚ୍ଛିତ ରହିଛି । ସେହିଭଳି କେନ୍ଦୁଝରଗଡଠାରୁ ମାତ୍ର ୩ କିଲୋମିଟର

ଦୂରରେ କୁଅଁରଠାରେ ଢୋଲକଟା ପାହାଡରେ ବକ୍ସାଇଟ୍ ଗଚ୍ଛିତ ରହିଥିବାର ସର୍ଭେ ହୋଇଛି । ଏଠାରେ ହାରାହାରି ୧୦ ନିୟୁତ୍ ଟନ୍ ଉଚ୍ଚମାନର ବକ୍ସାଇଟ୍ ଗଚ୍ଛିତ ଥିବା ଅଟକଳ କରାଯାଇଛି । କେନ୍ଦୁଝର ଜିଲ୍ଲାର ପିଠାଗୋଳାଠାରୁ ନାରଦପୁର ପର୍ଯ୍ୟନ୍ତ ହାରାହାରି ୫୦ କିଲୋମିଟର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ମଦରଙ୍ଗାଯୋଡି, ମାଛକାନ୍ଦଣା, ଡାଳିମପୁର ଅଞ୍ଚଳରେ ପାଇରୋଫିଲାଇଟ୍ ଖଣିଜ ପଦାର୍ଥ ଗଚ୍ଛିତ ରହିଛି । ଏହି ପଥର ରବର, ରଙ୍ଗ, ବସ୍ତ୍ର ଶିଳ୍ପ, ସାବୁନ୍ ଓ କାଗଜ ଶିଳ୍ପରେ ବ୍ୟବହୃତ ହୋଇଥାଏ । ୮·୬ ନିୟୁତ୍ ଟନ୍ ପାଇରୋଫିଲାଇଟ୍ ପଥର କେନ୍ଦୁଝର ଜିଲ୍ଲାରେ ଗଚ୍ଛିତ ରହିଛି । ବରପଦା, ବୋରାଙ୍ଗ, ପାହାଡପୁର, ପର୍ସଲା ଅଞ୍ଚଳରେ ପର୍ଯ୍ୟାପ୍ତ ପରିମାଣର କ୍ୱାର୍ଜ, କ୍ୱାର୍ଜାଇଟ୍ ଗଚ୍ଛିତ ରହିଛି । ଏହି କ୍ୱାର୍ଜରେ ଶତକଡା ୯୦ ପ୍ରତିଶତରୁ ଅଧିକ ସିଲିକା ରହିଥିବାରୁ ଏହା ବେଶ୍ ଉଚ୍ଚ ମାନର । ଆନନ୍ଦପୁର ସବ୍ ଡିଭିଜନର ଧ'କୋଠ, ଡାଳିମପୁର ଏବଂ କେନ୍ଦୁଝର ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ପ୍ରଚୁର ମାତ୍ରାରେ ଖଡି ପଥର ଗଚ୍ଛିତ ରହିଛି । କେନ୍ଦୁଝର ନୂଆସାହିଠାରେ ହାରାହାରି ୩ ନିୟୁତ୍ ଟନ୍ ଭାନାଡିୟମ୍ ମିଶ୍ରିତ ମାଗ୍ନେଟାଇଟ୍ ପଥର ଗଚ୍ଛିତ ରହିଛି । ସେହିଭଳି ତେଲକୋଇ ବ୍ଲକ୍‌ର ସଲେଇକେନା ଓ କରଡାଙ୍ଗି ଏବଂ ବାଂଶପାଳ ବ୍ଲକ୍‌ର ଜଳଡିହା, ଗୋପପୁରର ବିସ୍ତୃତ ଅଞ୍ଚଳ ସୁନା ଖଣି ପାଇଁ ସମଗ୍ର ରାଜ୍ୟରେ ପରିଚିତ । ପ୍ରାଥମିକ ପରୀକ୍ଷା ଦ୍ୱାରା ଏହି ଅଞ୍ଚଳର ସୁନାର ମାନ ଟନ୍ ପ୍ରତି ୦·୧ରୁ ୨·୦ ଗ୍ରାମ୍ ଥିବାର ଜଣାପଡିଛି । ଭଦ୍ରାସାହି ନିକଟରେ ଥିବା କାଶିଆ ଅଞ୍ଚଳରେ ଡୋଲାମାଇଟ୍ ଖଣି ଅବସ୍ଥିତ । ଡୋଲାମାଇଟ୍ ଇସ୍ପାତ ଶିଳ୍ପରେ ବ୍ୟବହୃତ ହୋଇଥାଏ । ଏହା ସାଙ୍ଗକୁ କେନ୍ଦୁଝର ଜିଲ୍ଲାରେ ଗ୍ରାନାଇଟ୍, ମାର୍ବଲ ଭଳି ଡେକୋରେଟିଭ୍ ଷ୍ଟୋନ୍ ମଧ୍ୟ ପ୍ରଚୁର ମାତ୍ରାରେ ଗଚ୍ଛିତ ରହିଛି । କେନ୍ଦୁଝର ଜିଲ୍ଲାରେ ଏତେସବୁ ଖଣିଜ ସଂପଦ ଗଚ୍ଛିତ ଥିବା ସତ୍ତ୍ୱେ ଏହି ଜିଲ୍ଲା ଆଜି ରାଜ୍ୟରେ ଏକ ପ୍ରମୁଖ ଗରିବ ଜିଲ୍ଲା ଭାବେ ଦୁର୍ନାମ ଅର୍ଜନ କରିପାରିଛି ।

ସେହିଭଳି କେନ୍ଦୁଝର ଜିଲ୍ଲାରେ ଭରି ରହିଛି ନାନା ପ୍ରକାର ପ୍ରାକୃତିକ ଜଙ୍ଗଲ ସଂପଦ । ୨୦୦୭ ମସିହା ବେଳକୁ କେନ୍ଦୁଝରରେ ମୋଟ ୩୦୯୭ ବର୍ଗ କିଲୋମିଟର ଜଙ୍ଗଲ ଥିବା ବନ ବିଭାଗ ସୂତ୍ରରୁ ଜଣାପଡିଛି । ପୂର୍ବରୁ ଏହାର ପରିମାଣ ପ୍ରାୟ ଏହାର ଦୁଇ ଗୁଣରୁ ଊର୍ଦ୍ଧ୍ୱ ଥିଲା । କେନ୍ଦୁଝର ଜିଲ୍ଲାର ମୋଟ ଜମିର ଶତକଡା ୩୭·୩ କେବଳ ଜଙ୍ଗଲ ସଂପଦ । ଜିଲ୍ଲାର ଜଙ୍ଗଲ ଅଞ୍ଚଳରେ ବହୁ ପରିମାଣରେ ଶିଶୁ, ଶାଳ, ଶାଗୁଆନ୍, କୁସୁମ, ଅସନ, ଅର୍ଜୁନ ଆଦି ବହୁମୂଲ୍ୟ ବୃକ୍ଷ ରହିଥିବାବେଳେ ଜଙ୍ଗଲରୁ ପ୍ରଚୁର ପରିମାଣରେ ଜାଳେଣୀ କାଠ ଓ ଲଘୁ ବନଜାତ ଦ୍ରବ୍ୟ ତେନ୍ତୁଳି, ଲାଖ, ଝୁଣା, ମହୁ, ମହୁଲ, ଶିଆଳି ପତ୍ର, ଶାଳ ପତ୍ର, ଅଁଳା, ବାହାଡା, ହରିଡା, କେନ୍ଦୁ ପତ୍ର, ବେଣା ଚେର, ଛତୁ, ଶାଳ ମଞ୍ଜି, କୁସୁମ ମଞ୍ଜି, ଚାର ମଞ୍ଜି, କରଞ୍ଜ ଦାନ୍ତକାଠି, କରଞ୍ଜ ମଞ୍ଜି ମଧ୍ୟ ମିଳିଥାଏ । ଏହିସବୁ ପ୍ରାକୃତିକ ଜଙ୍ଗଲଜାତ ସଂପଦ ଏଠାରେ ବିପୁଳ ପରିମାଣରେ ମହଜୁଦ୍ ଥିବା

ସତ୍ତ୍ୱେ ଏଠାକାର ଲୋକେ ଗରିବ ! ଏହା ହିଁ ଦୁର୍ଭାଗ୍ୟଜନକ । ଏହା ସାଙ୍ଗକୁ ଏ ଅଞ୍ଚଳରେ ଧାନ, ମାଣ୍ଡିଆ, ମକା, ଶୋରିଷ, ରାଶି, ଗହମ ଭଳି ଚାଷ ମଧ୍ୟ ହୋଇଥାଏ । ତେବେ ଚାଷରେ ସବୁବେଳେ ସମସ୍ୟା ଲାଗି ରହୁଥିବାରୁ ଚାଷୀମାନେ ଚାଷ ପ୍ରତି ବୀତସ୍ପୃହ ହୋଇ ପଡିଲେଣି । ସବୁଠୁ ବଡ଼ କଥା ହେଉଛି, ଏଠାକାର ପର୍ଯ୍ୟାପ୍ତ ମାନବ ସମ୍ବଳ । ଜୁଆଙ୍ଗ, ଭୂୟାଁ, ବାଥୁଡି, ମୁଣ୍ଡାଙ୍କ ଭଳି ଆଦିବାସୀ ସଂପ୍ରଦାୟର ମାନବ ସମ୍ବଳ ଥାଇ ମଧ୍ୟ କେନ୍ଦୁଝର ଆଜି ଅବହେଳିତ ହୋଇ ରହିଛି । କେନ୍ଦୁଝର ଜିଲ୍ଲା ଦେଇ ଦୁଇଦୁଇଟି ଜାତୀୟ ରାଜପଥ ଅତିକ୍ରମ କରିଥିବାବେଳେ ଏଠାରେ ଦୈନିକ ୩୦ ହଜାରରୁ ଊର୍ଦ୍ଧ୍ୱ ଯାନବାହନ ଚଳାଚଳ କରିଥାଏ । ଦୁଇ ଦୁଇଟି ଜାତୀୟ ରାଜପଥ ଥାଇ ସୁଦ୍ଧା କେନ୍ଦୁଝରର କି ବିକାଶ ହୋଇପାରିଛି? ଏହା ସାଙ୍ଗକୁ ଆଦିବାସୀଙ୍କ ବିକାଶ ପାଇଁ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା, ଜୁଆଙ୍ଗମାନଙ୍କ ବିକାଶ ପାଇଁ ଜୁଆଙ୍ଗ ଉନ୍ନୟନ ସଂସ୍ଥା, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଭଳି ସରକାରୀ ସଂସ୍ଥା ଥାଇ ମଧ୍ୟ ଜିଲ୍ଲାର ସାମଗ୍ରିକ ବିକାଶ ସମ୍ଭବପର ହୋଇପାରିନି । ଏହା ହିଁ ଚିନ୍ତାର କାରଣ ।

ସରକାରୀ ରିପୋର୍ଟ ଅନୁସାରେ କେନ୍ଦୁଝର ଜିଲ୍ଲାରେ ଶତକଡା ୭୬ ପ୍ରତିଶତ ଲୋକେ ଏବେ ବି ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଛନ୍ତି । ମାତ୍ର ପ୍ରକୃତ ଚିତ୍ର ଭିନ୍ନ । କେନ୍ଦୁଝର ଜିଲ୍ଲାର ଜଙ୍ଗଲ ଓ ପାହାଡିଆ ଇଲାକାରେ ବସବାସ କରୁଥିବା ସମସ୍ତ ଆଦିବାସୀ ଗରିବ ଶ୍ରେଣୀର । କେନ୍ଦୁଝର ଜିଲ୍ଲାରେ ଶତକଡା ୯୦ ପ୍ରତିଶତ ଲୋକେ ଆଦିବାସୀ ଓ ହରିଜନ ଶ୍ରେଣୀର ଏବଂ ଜଙ୍ଗଲରେ ବସବାସ କରୁଥିବା ଗରିବ ଲୋକେ । ଜିଲ୍ଲାରେ ଅର୍ଥ ଓ ସମ୍ବଳର ଅଭାବ ନଥିଲେ ମଧ୍ୟ ଦାରିଦ୍ର୍ୟ ଉତ୍କଟ ରୂପ ଧାରଣ କରିଛି । ଆଦିବାସୀ ଅଞ୍ଚଳରେ ଶିଶୁମାନେ ଉଚିତ୍ ଖାଦ୍ୟ ନ ପାଇ ପୁଷ୍ଟିହୀନତାର ଶିକାର ହୁଅନ୍ତି । କେନ୍ଦୁଝର ଜିଲ୍ଲାରେ ମୋଟ ୨,୧୦,୬୭୩ ଶିଶୁଙ୍କମଧ୍ୟରୁ ୧,୨୭,୩୭୮ ଶିଶୁ ପୁଷ୍ଟିହୀନତାର ଶିକାର ହୁଅନ୍ତି ବୋଲି ସରକାରୀ ରିପୋର୍ଟ କହେ । (୨୦୧୦ ମସିହାର ରିପୋର୍ଟ)

ପ୍ରତିବର୍ଷ ଜିଲ୍ଲାରେ ଶତକଡା ୬୦ ପ୍ରତିଶତ ଶିଶୁ ପୁଷ୍ଟିହୀନତାର ଶିକାର ହୁଅନ୍ତି । ରାଜ୍ୟର ଶିଶୁ ମୃତ୍ୟୁହାର ୬୯ ଥିଲାବେଳେ ଜିଲ୍ଲାରେ ଶିଶୁ ମୃତ୍ୟୁହାର ୪୨.୧୧ ରହିଛି ଏବଂ ରାଜ୍ୟର ମାତୃମୃତ୍ୟୁହାର ୩୦୩ ଥିଲାବେଳେ ଜିଲ୍ଲାର ଏହି ସଂଖ୍ୟା ହେଉଛି ୧୫୭ । ଜିଲ୍ଲାରେ ସ୍ୱାସ୍ଥ୍ୟ ଅବସ୍ଥା ଉଦ୍‌ବେଗଜନକ ଥିଲାବେଳେ ଶିକ୍ଷା ଅବସ୍ଥା ମଧ୍ୟ ତଦ୍ରୂପ । ଜିଲ୍ଲାର ୬-୧୪ ବର୍ଷ ବୟସ ମଧ୍ୟରେ ମୋଟ ପିଲା ସଂଖ୍ୟା ୩,୩୦,୬୦୯ ଥିଲାବେଳେ ୨୧,୦୦୨ ପିଲା ସ୍କୁଲ୍ ବାହାରେ ଥିବା କଥା ସରକାରୀ ରିପୋର୍ଟ କହୁଛି । ମାତ୍ର ଏହି ରିପୋର୍ଟ ଭ୍ରମାତ୍ମକ ମନେହୁଏ । ଆଜି ବି ଜୁଆଙ୍ଗ, ଭୂୟାଁ, ବାଥୁଡି, ସାଉଁତି, ସାନ୍ତାଳ ବସ୍ତିମାନଙ୍କରେ ପିଲାମାନେ ସ୍କୁଲକୁ ଆସିବାକୁ ସକ୍ଷମ ହୋଇପାରିନାହାନ୍ତି । ଜିଲ୍ଲାର ଗମନାଗମନ ବ୍ୟବସ୍ଥା କଥା ନ କହିବା ଭଲ । ଆଜିର ଦିନରେ

କୌଣସି ଜୁଆଙ୍ଗ, ପାଉଡି ଭୂୟାଁ ଗାଁକୁ ପାଦଚଲା ରାସ୍ତାଟିଏ ମଧ୍ୟ ନାହିଁ ।

ଖଣି, ଶିଳ୍ପ, ରେଳ, ରାଜରାସ୍ତା, ପର୍ଯ୍ୟଟନ କ୍ଷେତ୍ରରୁ କେନ୍ଦୁଝର ଜିଲ୍ଲା ରାଜ୍ୟକୁ ସର୍ବାଧିକ ରାଜସ୍ୱ ଦେଉଥିବାବେଳେ ଆଜି ପର୍ଯ୍ୟନ୍ତ ଜିଲ୍ଲାରେ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଭଳି ମୌଳିକ ଆବଶ୍ୟକତା ପୂରଣ ହୋଇପାରିନି । ସବୁଠୁ ବଡ଼ କଥା ହେଉଛି କେନ୍ଦୁଝର ଜିଲ୍ଲାରେ ଧନ ଓ ଧନୀ ବ୍ୟକ୍ତିଙ୍କ ସଂଖ୍ୟାରେ ଅଭାବ ନାହିଁ । ଗତ ନିର୍ବାଚନ ବେଳେ କେନ୍ଦୁଝରର ଅନେକ ରାଜନୈତିକ ନେତା ସତ୍ୟପାଠ ମାଧ୍ୟମରେ ପ୍ରଦାନ କରିଥିବା ନିଜନିଜର ସଂପତ୍ତି ତାଲିକାର ଚିତ୍ର ଦେଖିଲା ପରେ ଜିଲ୍ଲାରେ କେଉଁଭଳି ହାଇପ୍ରୋଫାଇଲ୍ ରାଜନେତା ଅଛନ୍ତି ତାହା ଜଣାପଡେ । ମାତ୍ର ଏହି ଜିଲ୍ଲାରେ ଜୁଆଙ୍ଗ, ଭୂୟାଁ, ବାଥୁଡି, ସାଉଁଟି ଆଦିବାସୀମାନେ ଦୁଇ ବେଳା ଦୁଇମୁଠା ଭଲକରି ଖାଇବାକୁ ନ ପାଇ ଅନାହାରରେ ରହୁଥିବା ଚିତ୍ର ମଧ୍ୟ ହୃଦୟବିଦାରକ । ଜିଲ୍ଲାରେ ଧନୀ ଓ ଶିଳ୍ପପତିଙ୍କ ଚିତ୍ର ଭଳି ଦାରିଦ୍ର୍ୟର ଚିତ୍ର ମଧ୍ୟ ସ୍ପର୍ଶକାତର । ଏଭଳି ଏକ ବିରୋଧାଭାଷର ଚିତ୍ର କେବଳ କେନ୍ଦୁଝର ଜିଲ୍ଲାରେ ହିଁ ଦେଖିବାକୁ ମିଳିଥାଏ ।

## ଜୁଆଙ୍ଗ ଜନଜାତି ଓ ସେମାନଙ୍କ ଖାଦ୍ୟ ପରଂପରା

**ଜୁଆଙ୍ଗଙ୍କ ପାରଂପରିକ ଖାଦ୍ୟ: ଜାଇ ବା ନାଲିଜଡା**



ଜୁଆଙ୍ଗମାନେ ହେଉଛନ୍ତି ପୃଥିବୀର ଅନ୍ୟତମ ପ୍ରାଚୀନ ଆଦିମ ଅଧିବାସୀ *(Primitive Tribal Group)* ଏବଂ ଏମାନେ କେନ୍ଦୁଝରର ବୈତରଣୀ ନଦୀର ଉପତ୍ୟକା ଗୋନାସିକା ଅଞ୍ଚଳରେ ଦେଖା ଯାଆନ୍ତି । ପରବର୍ତୀ ସମୟରେ ଏମାନେ ଢେଙ୍କାନାଳ ଜିଲ୍ଲାକୁ ସ୍ଥାନାନ୍ତରିତ ହୋଇପାରିଛନ୍ତି ।


କାଈ ବା ନାଲିଉଦା

ମାତ୍ର, ଏମାନଙ୍କ ଭାଗ୍ୟ ଦୁଇ ହଜାର ବର୍ଷ ତଳେ ଯାହା ଥିଲା ଦୁଇଶହ ବର୍ଷ ତଳେ ମଧ୍ୟ ଠିକ୍ ସେୟା ଥିଲା । ଆଉ ଆଜି ମଧ୍ୟ ସେମାନଙ୍କ ଅବସ୍ଥାରେ କୌଣସି ପରିବର୍ତ୍ତନ ସମ୍ଭବପର ହୋଇପାରିନାହିଁ ।

ଦୁଇ ଟଙ୍କାରେ କିଲେ ଚାଉଳ ଯୋଗେଇ ଦେଇ ସରକାର ଭାବନ୍ତି କ୍ଷୁଧାମୁକ୍ତି ପାଇଁ ଆମେ

ରଂଗୀନ୍ ଛତୁ




**ଜୁଆଙ୍ଗଙ୍କ ପାରଂପରିକ ଖାଦ୍ୟ: କଲେଇ ବା ଝଡିପୋକ**

ସବୁକିଛି କରିଦେଲୁ । ମାତ୍ର ଏହି ଦୁଇ ଟଙ୍କିଆ ଚାଉଳ କେନ୍ଦୁଝର ଜିଲ୍ଲାର ଦୁର୍ଗମ ଅଞ୍ଚଳରେ ବସବାସ କରୁଥିବା ଆଦିମ ଅଧିବାସୀ ଜୁଆଙ୍ଗମାନଙ୍କ ପାଖରେ ପହଞ୍ଚି ପାରେକି ନାହିଁ ତାହାର ହିସାବ ସରକାର କିମ୍ବା ପ୍ରଶାସନ ନିକଟରେ ନଥାଏ । ଅନେକ କ୍ଷେତ୍ରରେ ସରକାରଙ୍କ ଏହି ଦୁଇ ଟଙ୍କିଆ ଚାଉଳ ଧନୀ, ସାଉକାର ଲୋକଙ୍କ ଗୋଦାମ୍‌ରେ ଥାକ ମରାଯାଇଥାଏ, ତାକୁ କୀଟପତଙ୍ଗ ଖାଇ କ୍ଷୁଧା ମେଣ୍ଟେଇ ଥାନ୍ତି, ମାତ୍ର ଜୁଆଙ୍ଗମାନଙ୍କ ଭଳି ଭୋକିଲା ଆଦିବାସୀଙ୍କ ପେଟ ପୂରେନା । ଆଜି ବି କେନ୍ଦୁଝର ଜିଲ୍ଲାର ଦୁର୍ଗମ ପାହାଡ, ଜଙ୍ଗଲରେ ଅନେକ ଜୁଆଙ୍ଗ ଭୋକ ଉପାସରେ କାଳ କାଟନ୍ତି । ଖାଇବାକୁ ଦି' ମୁଠା ଭଲକରି ପାଆନ୍ତି ନାହିଁ ।

ଜୁଆଙ୍ଗମାନେ ବଣ ଜଙ୍ଗଲରୁ ସଂଗ୍ରହ କରି ଚେରମୂଳ, ପୋକଜୋକ, କୀଟପତଙ୍ଗ, ଶୁଖିଲା ମାଂସ, କାଇ (ନାଲି ଜଉ), କଲେଇ (ଝଡ଼ିପୋକ), ଉଇ ଭଳି ଖାଦ୍ୟ ଖାଇ ନିଜର କ୍ଷୁଧା ମେଣ୍ଟେଇ ଥାନ୍ତି । ଏହା ସାଙ୍ଗକୁ ଜୁଆଙ୍ଗମାନେ ବଣଜଙ୍ଗଲରୁ ମିଳୁଥିବା ଆମ୍ବ, ପଣସ, କେନ୍ଦୁ,



ଜାମୁକୋଳି, ମାଟିଆଳୁ, ପିତାଳୁ (ପିତାକନ୍ଦ), କନ୍ଦମୂଳ ଆଦି ଫଳମୂଳ ଉପରେ ନିର୍ଭର କରିଥାନ୍ତି । ଦୁର୍ଗମ ପାହାଡ ଉପରେ ରହୁଥିବା ଏହି ଜୁଆଙ୍ଗମାନେ କୀଟପତଙ୍ଗ, ସରୀସୃପ, ବନ୍ୟଜନ୍ତୁଙ୍କ ମାଂସ ଖାଇ ନିଜର କ୍ଷୁଧା ମେଣ୍ଟାଇ ଥାନ୍ତି ।

ବର୍ଷା ଦିନେ ଜୁଆଙ୍ଗମାନେ ଖାଦ୍ୟ ପାଇଁ ନାନା ହଇରାଣ ହରକତ ହୋଇଥାନ୍ତି । ବର୍ଷା ଦିନେ



ବଣସାରୁ


ଜଙ୍ଗଲି ଓଲୁଅ ଓ ହରିଡା

କିଛି ଖାଦ୍ୟ ନ ମିଳିବାରୁ ଜଙ୍ଗଲୀ ଛତୁ, ଅନେକ ପ୍ରକାର ବିଷାକ୍ତ ଫଳମୂଳ, ଘରେ ସାଇତି ରଖିଥିବା ଫଙ୍ଗସଯୁକ୍ତ ଶୁଖିଲା ମାଂସ ଆଦି ଜୁଆଙ୍ଗର ପେଟ ଚାଖଣ୍ଡକ ପୂରଣ କରିଥାଏ । ଜୁଆଙ୍ଗମାନେ ଯେତେ ପ୍ରକାର କୀଟକୁ ଖାଦ୍ୟ ଭାବେ ବ୍ୟବହାର କରନ୍ତି ସେମାନଙ୍କ ମଧ୍ୟରେ କାଈ, କଲେଇ, ଉଈ ହେଉଛି ସବୁଠୁ ପ୍ରିୟତମ । କାଈ ଅର୍ଥାତ୍ ନାଲି ଜଡା ଓ କଲେଇ ଅର୍ଥାତ୍ ଝଡିପୋକ, ଉଈକୁ ସେମାନେ ନାନା ପ୍ରକାର ଆଇଟମ୍ ବନେଇ ଖାଇଥାନ୍ତି । ଜଙ୍ଗଲୀ ଗଛମାନଙ୍କରେ କାଈମାନେ ନିଜର ଲାଳ ସହାୟତାରେ ପତ୍ରକୁ ପତ୍ର ଯୋଡି ବସା କରିଥାନ୍ତି ଏବଂ ସେଥିରେ ସେମାନେ ହଜାର ହଜାର ସଂଖ୍ୟାରେ ଅଣ୍ଡା ଦେଇଥାନ୍ତି । ଏହି ଅଣ୍ଡାକୁ ଜୁଆଙ୍ଗମାନେ କାଈଭାତ ବୋଲି କହିଥାନ୍ତି । ଜୁଆଙ୍ଗମାନେ କାଈଅଣ୍ଡା ବା କାଈଭାତ ଖାଇବାକୁ ସବୁଠୁ ଭଲ ପାଇଥାନ୍ତି । ସେମାନେ ଜଙ୍ଗଲରୁ ଗଛଗଛ ବୁଲି କାଈବସାକୁ ଠାବ କରିବା ପରେ କାଈଅଣ୍ଡାକୁ ସଂଗ୍ରହ କରିଥାନ୍ତି । ଜୁଆଙ୍ଗମାନେ ଉଭୟ କାଈ ଓ କାଈର ଅଣ୍ଡାକୁ ସଂଗ୍ରହ କରି ସେମାନଙ୍କୁ ହାତରେ ଦଳି ଏକ ପେଷ୍ଟ ପ୍ରସ୍ତୁତ କରନ୍ତି । ଅଣ୍ଡା ଓ ମୃତ କାଈ ସହ ରସୁଣ, କଞ୍ଚାଲଙ୍କା, ଲୁଣ ପକେଇ ଶିଳରେ ବାଟି ଦିଅନ୍ତି । ଏହା ସାମାନ୍ୟ ଖଟା ଲାଗିଥାଏ ଏବଂ ଜୁଆଙ୍ଗମାନେ ଏହାକୁ ପ୍ରିୟ ଚାଖଣା ଭାବେ ବ୍ୟବହାର କରିଥାନ୍ତି । ଜୁଆଙ୍ଗମାନେ ମହୁଲି, ହାଣ୍ଡିଆ ସାଙ୍ଗରେ ଏହି କାଈ ଚଟଣୀକୁ ବ୍ୟବହାର କରିଥାନ୍ତି । ଅପରପକ୍ଷେ, ଏହି କାଈ ଚଟଣୀରେ ବହୁ ପ୍ରକାର ଔଷଧୀୟ ଗୁଣ ରହିଥିବା କଥା ଜୁଆଙ୍ଗମାନଙ୍କର ବିଶ୍ୱାସ





ରହିଛି । ଏହାକୁ ଖାଇଲେ ପେଟ ଗୋଳମାଳ ଭଲ ହୋଇଯିବା ସାଙ୍ଗକୁ ମୁଣ୍ଡବିନ୍ଧା, ଆଣ୍ଠୁଗଣ୍ଠି ରୋଗ ମଧ୍ୟ ଭଲ ହୋଇଯାଏ ବୋଲି ଜୁଆଙ୍ଗମାନେ ବିଶ୍ୱାସ କରନ୍ତି । ଏହା ସହିତ ଜୁଆଙ୍ଗମାନେ ବଣଜଙ୍ଗଲ ମଧ୍ୟରେ ଥିବା ଉଈ ହୁଙ୍କାକୁ ଠାବ କରି ଏହାକୁ ଭାଙ୍ଗି ସେଥିରୁ ଉଈ ସଂଗ୍ରହ କରନ୍ତି । ବର୍ଷା ଦିନେ ଝଡିପୋକ ବା କଲେଇ ମଧ୍ୟ ସଂଗ୍ରହ କରି ଖାଦ୍ୟ ଭାବେ ବ୍ୟବହାର କରିଥାନ୍ତି । ଅନେକ ଜୁଆଙ୍ଗ ଏହି ଉଈ ଓ ଝଡିପୋକକୁ କଞ୍ଚା ବାଟି ଖାଉଥିବାବେଳେ ଅନେକ ଏହାକୁ ଶୁଖେଇ ପିଠା କରି କିମ୍ବା ଭାଜି କରି ଖାଇଥାନ୍ତି । କିଛି ଜୁଆଙ୍ଗ ମହିଳାମାନେ କାଇ ଅଣ୍ଡା, ଉଈ, କିଲେଇ ସଂଗ୍ରହ କରିବା ପରେ ନିକଟସ୍ଥ ବଜାରକୁ ବିକ୍ରି କରିବାକୁ ଆଣିଥାନ୍ତି । ଶାଳ ପତ୍ରରେ ଏହାକୁ ଭାଗଭାଗ କରି ବିକ୍ରି କରିଥାନ୍ତି । ଆଜି ବି ଜୁଆଙ୍ଗମାନେ ବନ୍ୟ ଜୀବଜନ୍ତୁଙ୍କୁ ମାରି ତାହାର ମାଂସକୁ ଶୁଖେଇ ବର୍ଷା ଦିନ ପାଇଁ ସାଇତି ରଖିଥାନ୍ତି ।

ସାଧାରଣତଃ ବର୍ଷା ଦିନେ ଖାଦ୍ୟର ଅଭାବ ଅନୁଭୂତ ହୋଇଥାଏ । ଏହି ସମୟରେ ଜୁଆଙ୍ଗମାନେ ଏହି ଶୁଖିଲା ମାଉଁସକୁ ଭାତିର ବାହାର କରି ଖାଇଥାନ୍ତି । ଅନେକ ସମୟରେ ଏହି ଶୁଖିଲା ମାଂସରେ ବର୍ଷା ଦିନେ ଫଙ୍ଗସ୍ ସଂକ୍ରମିତ ହୋଇଯାଇଥିବାରୁ ତାହା ବିଷାକ୍ତ ହୋଇଯାଇଥାଏ । ଏହାକୁ ଖାଇ ଜୁଆଙ୍ଗମାନେ ନାନା ପ୍ରକାର ରୋଗର ଶିକାର ହୋଇଥାନ୍ତି । ଅନେକ ସମୟରେ ଜୁଆଙ୍ଗମାନେ ମରି ଯାଆନ୍ତି । ମାତ୍ର ଜୁଆଙ୍ଗମାନେ ବିଷାକ୍ତ ମାଂସ ଖାଇ ମରିବା ଖବର ବାହାରକୁ ଆସିପାରେନା ।

ଶୀତ ଦିନ ଆସିଲେ ଜୁଆଙ୍ଗମାନେ କୋଡି, କୋଦାଳ, ଶାବଳ ଧରି ଜଙ୍ଗଲରେ ବୁଲୁଥାନ୍ତି । ଜଙ୍ଗଲରେ ମାଟି ଭିତରେ ଥିବା ନାନା ପ୍ରକାର ଚେରମୂଳ, ଆଳୁ, ପିତାଳୁ, କନ୍ଦକୁ ଖୋଳି ଜୁଆଙ୍ଗମାନେ ଘରକୁ ନେଇଥାନ୍ତି । ବିଶେଷକରି ଶୀତଦିନେ ମାଟିତଳେ ଥିବା ନାନା ପ୍ରକାର ମୂଳ, ଚେର ଉପରେ ଜୁଆଙ୍ଗମାନେ ନିର୍ଭର କରିଥାନ୍ତି । ଜୁଆଙ୍ଗମାନେ ଜଙ୍ଗଲରୁ ସଂଗ୍ରହ କରିଥିବା ନାନା ପ୍ରକାର ଆଳୁ, କନ୍ଦମୂଳକୁ ସିଝେଇ ଖାଇଥାନ୍ତି । ଜଙ୍ଗଲରୁ ଏକ ପ୍ରକାର ପିତା ଆଳୁ ମିଳିଥାଏ । ଜୁଆଙ୍ଗମାନେ ଏହାକୁ ମାଟି ତଳୁ ଖୋଳି ତାକୁ ଭଲ ଭାବେ ପାଣିରେ ଧୋଇ ଚୂଲିରେ ଘଣ୍ଟା ଘଣ୍ଟା ଧରି ସିଝେଇ ଥାନ୍ତି । ଚୂଲିରେ ଏହି ପିତା ଆଳୁକୁ ସିଝେଇବା ପରେ ଏଥିରୁ ପିତା ପାଣିତକ ବାହାରକୁ ବାହାର କରି ଦିଅନ୍ତି । ଏହା ପରେ ଏଥିରୁ ପିତା ଅଂଶ କମିଯାଇଥାଏ ଏବଂ ଏହା ପରେ ସିଝା ପିତା ଆଳୁକୁ ଚକଟି ବେଲାଏ ବେଲାଏ ପେଟ ପୂରିବା ପର୍ଯ୍ୟନ୍ତ ଖାଆନ୍ତି ।

ଜୁଆଙ୍ଗମାନେ ନଦୀ, ଝରଣାରୁ ମାଛ ଧରି ଏହାକୁ ଖାଦ୍ୟ ଭାବେ ଖାଇଥାନ୍ତି । ଜୁଆଙ୍ଗମାନେ ଏକ ପ୍ରକାର ପିତା ଗଛର ଛେଲିକୁ ଚୂଲିରେ ସିଝେଇ ଏହାର ପିତା ପାଣିକୁ ନଦୀରେ ଫିଙ୍ଗି ଦିଅନ୍ତି । ଏହି ପିତା ପାଣି ଏତେ ଉତ୍କଟ ହୋଇଥାଏ ଏଥିରେ ମାଛସବୁ ମରି ଯାଆନ୍ତି କିମ୍ବା ଚେତାଶୂନ୍ୟ ହୋଇ ପାଣିରେ ଭାସନ୍ତି । ଏହାପରେ ଜୁଆଙ୍ଗମାନେ ଏହି ମଲା ମାଛକୁ ପାଣିରୁ ସଂଗ୍ରହ କରି ଏହାକୁ ସିଝେଇ କିମ୍ବା ପୋଡି ଖାଇଥାନ୍ତି । ଏବେଏବେ ଜୁଆଙ୍ଗମାନେ ଚାଉଳ ଖାଇବା ଶିଖିଲେଣି । ମାତ୍ର ଏହା ସେମାନଙ୍କ ନିକଟରେ ନ ପହଞ୍ଚିପାରିବାରୁ ସେମାନେ ପୁଣି ସେହି ଚେରମୂଳ, ପିତାଳୁ, ପୋକଜୋକ ଉପରେ ନିର୍ଭର କରିଥାନ୍ତି ।

## ବଦଳି ଯାଇଛି ଜୁଆଙ୍ଗ 'ମଣ୍ଡଘର'ର ଚିତ୍ର



ଶିଳ୍ପାୟନ ଯୋଗୁଁ କେନ୍ଦୁଝରର ଯାହା କିଛି ଲାଭକ୍ଷତି ହେଉ କି ନ ହେଉ ଆଦିବାସୀ ଜନଜୀବନ ବିଶେଷ ଭାବେ ପ୍ରଭାବିତ ହୋଇଛି । ଦିନ ଥିଲା ସବୁଜସୁନ୍ଦର କେନ୍ଦୁଝର କେବଳ ଏହି ଆଦିବାସୀଙ୍କର ହିଁ ଆଦିଭୂମି ଥିଲା । କେନ୍ଦୁଝର କହିଲେ ଏଠାକାର ଶାନ୍ତଶୀତଳ ସବୁଜିମା, ଆଦିବାସୀ ଜନଜବନକୁ ହିଁ ବୁଝାଯାଉଥିଲା । ମାତ୍ର ଆଜି ତାହା ବିପର୍ଯ୍ୟସ୍ତ । ଶିଳ୍ପାୟନର ପ୍ରଭାବରେ କେନ୍ଦୁଝର ଜିଲ୍ଲାର ଆଦିମ ଜନଜାତି ଜୁଆଙ୍ଗ, ଭୂୟାଁ, ବାଥୁଡି, ମୁଣ୍ଡା, ସାନ୍ତାଳଙ୍କ ଜୀବନଶୈଳୀରେ ଅନେକ ପରିବର୍ତ୍ତନ ପରିଲକ୍ଷିତ ହୋଇଛି । ଖଣିଜ ସଂପଦ ପାଇଁ ନିୟମିତ ପାହାଡରେ ବିସ୍ଫୋରଣ ସାଙ୍ଗକୁ ଖଣି ଖୋଳା ଯୋଗୁଁ ଆଦିବାସୀମାନେ କ୍ରମେ ଜଙ୍ଗଲରୁ ଦୂରେଇ ଯାଇଛନ୍ତି । ତଥାକଥିତ ଆଧୁନିକତାର ଛାପରେ ଆଦିବାସୀମାନେ ନିଜର ପ୍ରାଚୀନ ପରଂପରାକୁ ଭୁଲି ଯାଇଛନ୍ତି ।

ଦିନ ଥିଲା ଯେତେବେଳେ ରାସ୍ତା ଉପରେ ବାଘ, ଭାଲୁ କିମ୍ବା ହାତୀ ଭଳି ଜଙ୍ଗଲୀ ଜୀବଜନ୍ତୁଙ୍କୁ ଦେଖିବାକୁ ମିଳୁଥିଲା ଆଜି ସେମାନଙ୍କ ସ୍ଥାନ ଦଖଲ କରିଛନ୍ତି ହଜାର ହଜାର ସଂଖ୍ୟାରେ ଲୁହାପଥର ବୋଝେଇ ଟ୍ରକ୍ । ରାସ୍ତା ଉପରେ ଶହଶହ ସଂଖ୍ୟାରେ ଲୁହାପଥର ବୋଝେଇ ଟ୍ରକ୍, କଳକାରଖାନାର ଧୂଆଁରେ ମଳିନ ପଡିଯାଇଛି କେନ୍ଦୁଝରର ଶୀତୁଆ କାକରଭିଜା ସକାଳ । ଆଧୁନିକ ଓ ପାଶ୍ଚାତ୍ୟ ଶୈଳୀର କ୍ଲବ୍, ହୋଟେଲ୍‌ମାନଙ୍କରେ ଶୁଭୁଥିବା ପପ୍ ସଂଗୀତର କୋଳାହଳ ଭିତରେ ଆଉ ଶୁଭୁନି ଜୁଆଙ୍ଗର 'ମଣ୍ଡ ଘରୁ' ଚାଙ୍ଗୁର ମଧୁର ମୂର୍ଚ୍ଛନା । ମୋଟ ଉପରେ ଶିଳ୍ପାୟନ ଯୋଗୁଁ କେନ୍ଦୁଝର ଜିଲ୍ଲାର ଆଦିବାସୀ ଜୀବନଶୈଳୀ ବିଶେଷ ଭାବେ ପ୍ରଭାବିତ ହୋଇଛି, ଏହା ସତ୍ୟ । ଦେଶର ସର୍ବ



ପ୍ରାଚୀନତମ ଜନଜାତି କୁହାଯାଉଥିବା ଜୁଆଙ୍ଗମାନେ ନିଜର ପରଂପରାକୁ ଭୁଲିଯାଇ ଏକ ଲକ୍ଷ୍ୟହୀନ ପଥରେ ଆଗେଇ ଚାଲିଛନ୍ତି । ତଥାକଥିତ ବିକାଶ ଓ ଆଧୁନିକତା ନାମରେ ସେମାନଙ୍କ ପରଂପରା ଓ ସଂସ୍କୃତିକୁ କବର ଦିଆ ଚାଲିଛି ।

ଜୁଆଙ୍ଗର ସାମାଜିକ ଓ ଗୋଷ୍ଠୀ ଜୀବନରେ 'ମଣ୍ଡଘର'ର ଏକ ବିଶେଷ ଭୂମିକା ରହିଥାଏ । ମଣ୍ଡଘରକୁ ଅନ୍ୟ ଅର୍ଥରେ କଚେରୀ ଘର ବୋଲି ବୁଝାଯାଇଥାଏ । ଏଠାରେ ଜୁଆଙ୍ଗମାନଙ୍କର ସମସ୍ତ ପ୍ରକାର ନ୍ୟାୟନିଶାପ ହୋଇଥାଏ । ଅପରପକ୍ଷେ, ଏହି ମଣ୍ଡଘରେ ହିଁ ପ୍ରତି ସନ୍ଧ୍ୟାରେ ଜୁଆଙ୍ଗ ଯୁବକ, ଯୁବତୀମାନେ ଏକତ୍ରିତ ହୋଇଥାନ୍ତି । ଚାଙ୍ଗୁ ବାଦ୍ୟର ତାଳେତାଳେ ଜୁଆଙ୍ଗ ସେଲାନ୍ (ଯୁବତୀ) କଙ୍ଗେର (ଯୁବକ)ମାନେ ଝୁମି ଉଠିଥାନ୍ତି । 'ମଣ୍ଡଘର'ଟିରେ ଜୁଆଙ୍ଗମାନେ ଏକତ୍ରିତ ହୋଇ ସେମାନଙ୍କର ବିଭିନ୍ନ ସମସ୍ୟା ଉପସ୍ଥାପନ କରିଥାନ୍ତି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରି ଜୀବନକୁ ଉପଭୋଗ କରିଥାନ୍ତି ।

ଆଜିର ଦିନରେ ଜୁଆଙ୍ଗର 'ମଣ୍ଡଘର'ର ଚିତ୍ର ସଂପୂର୍ଣ୍ଣ ବଦଳି ଯାଇଛି । ଅତି ପ୍ରାଚୀନ କାଳରୁ ଜୁଆଙ୍ଗମାନେ ନିଆଁକୁ ସାଇତି ରଖିବାର ପରଂପରାକୁ ବଜାୟ ରଖିଆସୁଥିଲେ । ମଣ୍ଡଘରେ ଜୁଆଙ୍ଗମାନେ ନିୟମିତ କାଠ ଜାଳି ନିଆଁକୁ ସାଇତି ରଖିବାର ପରଂପରା କାହିଁ କେଉଁ କାଳରୁ ଚଳି ଆସିଛି । ମାତ୍ର ଆଜି ଅନେକ ମଣ୍ଡଘରେ ଏହି ନିଆଁ ନିୟମିତ ଜଳୁ ନଥିବାର ଦେଖାଗଲାଣି । ଆଧୁନିକତା ନାଁରେ ଜୁଆଙ୍ଗମାନେ କିଛି ମାତ୍ରାରେ ନିଜର ପରଂପରା ପ୍ରତି ବିମୁଖ ହେବା ଦୁର୍ଭାଗ୍ୟଜନକ ।

ଜୁଆଙ୍ଗମାନେ ଗୋଟିଏ କାଠଗଣ୍ଡିରେ ଅଗ୍ନି ସଂଯୋଗ କରି ନିଆଁକୁ ସବୁଦିନ ପାଇଁ ସାଇତି ରଖନ୍ତି । କାଠ ଗଣ୍ଡିଟି ସଂପୂର୍ଣ୍ଣ ଜଳିଗଲେ ସେଥିରେ ପୁଣି ଏକ କାଠ ଗଣ୍ଡିକୁ ପକେଇ ନିଆଁକୁ ସଞ୍ଚିତ କରି ରଖାଯାଇଥାଏ । କେବଳ ମଣ୍ଡଘରଟିର ମଝିରେ କି ଦିନ କି ରାତି ସବୁବେଳେ କାଠଗଣ୍ଡିରେ ଅଗ୍ନି ସଂଯୋଗ ହୋଇ ରହିଥାଏ । ପୂର୍ବେ ଜୁଆଙ୍ଗମାନେ ମଣ୍ଡଘରର ମଝି ଚଟାଣରେ ଜଳୁଥିବା ନିଆଁ ଚାରିପାର୍ଶ୍ୱରେ ଘେରି ବସୁଥିଲେ ଏବଂ ଶୀତଦିନେ ନିଆଁ ପୁଆଁଉଥିଲେ । ଏଇଠି ବସି ଜୁଆଙ୍ଗ ମୁଖିଆ ଗାଁର ହାନିଲାଭ, ନ୍ୟାୟ ନିଶାପ କରୁଥିଲେ । ଏହି ଧୂନିର ନିଆଁରୁ ଗାଁର ଅନ୍ୟ ଜୁଆଙ୍ଗଙ୍କ ଘରେ ଚୁଲି ଜଳୁଥିଲା । ଜୁଆଙ୍ଗମାନେ ମଣ୍ଡଘରେ ନିୟମିତ ଜଳୁଥିବା ଏହି ନିଆଁକୁ ମଧ୍ୟ ପୂଜା କରୁଥିଲେ । ମଣ୍ଡଘରେ ଜଳୁଥିବା କାଠର ପାଉଁଶକୁ ସଂଗ୍ରହ କରି ସେମାନେ ପୋଡୁ ଚାଷରେ ବ୍ୟବହାର ମଧ୍ୟ କରୁଥିଲେ । ମାତ୍ର ଆଜି ସେଥିରେ ଅନେକ ପରିବର୍ତ୍ତନ ସମ୍ଭବ ହେଲାଣି । ଜୁଆଙ୍ଗମାନଙ୍କର ପାରଂପରିକ ଗାଁ ମୁଖିଆଙ୍କ ସ୍ଥାନରେ ଓ୍ୱାର୍ଡମେମ୍ବରମାନେ ଗାଁର ଭଲମନ୍ଦ ବୁଝିଲେଣି । ପୂର୍ବେ ନ୍ୟାୟନିଶାପ ପାଇଁ ଆଦୌ ଥାନା, ହାଜତକୁ ଯାଉ ନଥିବା ଜୁଆଙ୍ଗମାନେ ଏବେଏବେ ଥାନା, କୋର୍ଟ, କଚେରୀକୁ ଗଲେଣି । ଏବେ ଏହି 'ମଣ୍ଡଘର' ଜୁଆଙ୍ଗମାନଙ୍କୁ ଉଚିତ୍

ନ୍ୟାୟ ପ୍ରଦାନ କରିପାରିବ ବୋଲି ଯେ ବିଶ୍ୱାସ ତୁଟିଗଲାଣି । ପୂର୍ବେ ମଣ୍ଡଘରଟିରେ ଗାଁର ସମସ୍ତ ଯୁବକ ରାତିରେ ଏକତ୍ରିତ ଶୟନ କରୁଥିଲେ । ମାତ୍ର ଆଜିର ଦିନରେ ଅନେକ ଯୁବକ ନିଜନିଜର ଘରେ ରାତ୍ରିଯାପନ କରୁଛନ୍ତି ।

ସାଧାରଣତଃ ଜୁଆଙ୍ଗ ଗାଁର ଠିକ୍ ମଧ୍ୟ ଭାଗରେ ମଣ୍ଡଘରଟିର ଅବସ୍ଥିତ । ଏହା ଏକ ବିଶାଳ ଓ ଖୋଲା ମୁକୁଳା ଘର । ଏହାର ଚାରି ଦିଗ ଖୋଲା ଥାଏ ଏବଂଘରର ମଝି ଚଟାଣରେ ନିୟମିତ କାଠ ଗଣ୍ଡିରେ ନିଆଁ ଜଳୁଥାଏ । ମଣ୍ଡଘରେ ଜଳୁଥିବା କାଠଗଣ୍ଡିରଏଭଳି ଦୃଶ୍ୟ ଅନ୍ୟ କୌଣସି ଜନଜାତିଙ୍କ କ୍ଷେତ୍ରରେ ଦେଖିବାକୁ ମିଳି ନଥାଏ । ଘରଟିରେ ପଛପଟରେ ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର, କୃଷି ଓ ଶିକାର ଉପକରଣ ଝୁଲିଥାଏ । ଅନ୍ୟ ଏକ ପାର୍ଶ୍ୱରେ ଗାଁରେ ଅମଳ ହୋଇଥିବା ଧାନ, ବିରି, ମାଣ୍ଡିଆ, ବାଜରା, ମକା ଆଦି ଶସ୍ୟ ମହଜୁଦ୍ ହୋଇ ରହିଥାଏ । କେବେକେମିତି ବହିରାଗତ ଅତିଥି ଗାଁକୁ ଆସିଲେ ସେମାନଙ୍କୁ ଏହି ମଣ୍ଡଘରେ ହିଁ ଆଶ୍ରୟ ଦିଆଯାଇଥାଏ । ଜୁଆଙ୍ଗମାନେ ବେଶ୍ ଅତିଥିପ୍ରିୟ ଏବଂ ମଣ୍ଡଘରେ ହିଁ ଅତିଥିଙ୍କର ସମସ୍ତ ପ୍ରକାର ସତ୍କାର କରାଯାଇଥାଏ ।

ଜୁଆଙ୍ଗମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନକୁ ସର୍ବାଧିକ ପ୍ରଭାବିତ କରୁଥିବା ଏହି ମଣ୍ଡଘରଟି ସବୁ ଦିଗରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗାଁରେ ପର୍ବପର୍ବାଣି ପାଳନ ନେଇ ଏଠାରେ ପ୍ରସ୍ତୁତି ବୈଠକ ବସିଥାଏ । ଗାଁରେ ଚାଷବାସ ନେଇ ଜୁଆଙ୍ଗ ମୁଖିଆ ମଣ୍ଡଘରେ ସମସ୍ତ ଜୁଆଙ୍ଗ ଭାଇମାନଙ୍କ ସହ ଆଲୋଚନା କରିଥାନ୍ତି । ଏହା ସାଙ୍ଗକୁ ଗାଁର ଯୁବକ,ଯୁବତୀମାନେ ନାଚଗୀତର ଆସର ଜମେଇବା ପାଇଁ ପ୍ରତି ସନ୍ଧ୍ୟାରେ ମଣ୍ଡଘରେ ହିଁ ଏକତ୍ରିତ ହୋଇଥାନ୍ତି । ମଣ୍ଡଘରକୁ ଅନ୍ୟ ଅର୍ଥରେ ଜୁଆଙ୍ଗ ଯୁବକ, ଯୁବତୀଙ୍କ ନାଚ ଓ ଗୀତ ସ୍କୁଲ୍ ଭାବେ ଧରାଯାଇଥାଏ । ଗାଁର ଜୁଆଙ୍ଗମାନଙ୍କ ମଧ୍ୟରେ ଭାଇଚାରା ବଜାୟ ରଖିବାରେ ମଣ୍ଡଘର ହିଁ ପ୍ରମୁଖ ଭୂମିକା ତୁଲେଇଥାଏ । ଆଜିର ତଥାକଥିତ ଆଧୁନିକତା ନାଁରେ ଜୁଆଙ୍ଗମାନଙ୍କ ଗୋଷ୍ଠୀଗତ ଜୀବନକୁ ସମୃଦ୍ଧ କରିଥିବା ଏହି ମଣ୍ଡଘରର ଚିତ୍ର ବେଶ କରୁଣ ହୋଇଯାଇଛି ।

## ଜୁଆଙ୍ଗଙ୍କ 'ହାଣ୍ଡିଆ ହାଟ'

ଆପଣ କେବେ କେନ୍ଦୁଝର ଜିଲ୍ଲାର ଜୁଆଙ୍ଗ ଅଞ୍ଚଳକୁ ବୁଲିଗଲେ ରାସ୍ତା ପାର୍ଶ୍ୱରେ ମହିଳା ଓ ପୁରୁଷମାନେ ବଡ଼ବଡ଼ ସିଲ୍‌ଭର ଡେକ୍‌ଚି, ଗରାରେ ହାଣ୍ଡିଆ ଧରି ବିକ୍ରି କରୁଥିବାର ଦେଖିଥିବେ । ବଣ ଜଙ୍ଗଲଘେରା ଜୁଆଙ୍ଗ ବସ୍ତି ମୁଣ୍ଡରେ ବସେ 'ହାଣ୍ଡିଆ' ହାଟ । ହାଣ୍ଡିଆ ହାଟରେ କେବଳ ହାଣ୍ଡିଆ ବିକ୍ରି ନ ହୋଇ ବରଂ ଅନ୍ୟାନ୍ୟ ସାମଗ୍ରୀ ମଧ୍ୟ ବିକ୍ରି ହୋଇଥାଏ । ତେବେ ହାଣ୍ଡିଆ ହିଁ ଜୁଆଙ୍ଗମାନଙ୍କୁ ହାଟ ପର୍ଯ୍ୟନ୍ତ ଟାଣି ଆଣିଥାଏ । ହାଣ୍ଡିଆ ପାନ କରି ଜୁଆଙ୍ଗମାନେ ନିଜନିଜ ଭିତରେ ଥିବା ସୁଖଦୁଃଖକୁ ପରସ୍ପର ମଧ୍ୟରେ ବାଣ୍ଟିଥାନ୍ତି । ଆଦିବାସୀବହୁଳ କେନ୍ଦୁଝର ଜିଲ୍ଲାର



ବିଭିନ୍ନ ଉପାନ୍ତ ଅଞ୍ଚଳ ଓ ଦୂରଦୂରାନ୍ତରୁ ଆସୁଥିବା ଲୋକଙ୍କ ପାଇଁ ଏହି ହାଣ୍ଡିଆ ହାଟଟି ମିଳିତ ହେବାର ଏକ ମାଧ୍ୟମ ସୃଷ୍ଟି କରିଥାଏ ।

ଦିନତମାମ୍ ହାଡଭଙ୍ଗା ଖଟଣି ପରେ ସଞ୍ଜ ବେଳକୁ ହାଣ୍ଡିଆ ହାଟରେ ପହଞ୍ଚି ଜୁଆଙ୍ଗମାନେ ହାଣ୍ଡିଆ ପିଇ ପ୍ରକୃତିକୁ ବେଶ୍ ଉପଭୋଗ କରିଥାନ୍ତି । ସପ୍ତାହର ଏକ ନିର୍ଦ୍ଦିଷ୍ଟ ଦିନ ଜୁଆଙ୍ଗମାନେ ଏହି ହାଟରେ ଏକତ୍ରିତ ହୋଇ କିଣାବିକା କରିବା ସାଙ୍ଗକୁ ଢୋଲେ ଢୋଲେ ହାଣ୍ଡିଆ ପିଇ ସଞ୍ଜକୁ ନିଜନିଜର ଘରକୁ ଫେରନ୍ତି । ଆଉ ଦଳଦଳ ହୋଇ ଜୁଆଙ୍ଗଙ୍କ ଏହି ହାଟ ଫେରନ୍ତି ଦୃଶ୍ୟ ହିଁ ଅତି ଚମତ୍କାର । ଜୁଆଙ୍ଗମାନେ ପରସ୍ପରର କାନ୍ଧରେ ହାତକୁ ଛନ୍ଦି ଗୀତ ଗାଇଗାଇ ହାଣ୍ଡିଆ ନିଶାରେ ଘରକୁ ଫେରୁଥିବାର ଦୃଶ୍ୟ ସତରେ ଅବର୍ଣ୍ଣନୀୟ । ସବୁ କିଛି ଦୁଃଖ ଯନ୍ତ୍ରଣାକୁ ଭୁଲିଯାଇ କେବଳ ପ୍ରକୃତି ଉଦ୍ଦେଶ୍ୟରେ ଗୀତ ଗାଇ ନାଚିନାଚି ଜୁଆଙ୍ଗମାନେ ସମୟତକ କାଟି ଦିଅନ୍ତି ।

ଜୁଆଙ୍ଗମାନଙ୍କ ହାଣ୍ଡିଆ ଏକ ପ୍ରାକୃତିକ ପାନୀୟ । ଏହା ସେମାନଙ୍କର ପାରଂପରିକ ପାନୀୟ ମଧ୍ୟ । ସେମାନଙ୍କ ହାଣ୍ଡିଆରେ ନଥାଏ ବ୍ୟାଟେରୀ ଗୁଣ୍ଡ କିମ୍ବା ୟୁରିଆ ସାର ଭଳି ବିଷାକ୍ତ ପଦାର୍ଥ । ପ୍ରାକୃତିକ ଉପାୟରେ ପ୍ରସ୍ତୁତ କରାଯାଉଥିବା ହାଣ୍ଡିଆ ଜୁଆଙ୍ଗମାନଙ୍କ ଶରୀରକୁ ପୁଷ୍ଟ ରଖିବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ହାଣ୍ଡିଆ ପ୍ରସ୍ତୁତି ପାଇଁ ଜୁଆଙ୍ଗମାନେ ଏକ ବିଶେଷ ଧରଣର ଅରୁଆ ଖୁଦ ଚାଉଳକୁ ବ୍ୟବହାର କରିଥାନ୍ତି । ଭାତ ରାନ୍ଧିବା ପରେ ଏହି

ଭାତକୁ ପ୍ରଥମେ ଖରାରେ ଶୁଖାଇ ଦିଆଯାଏ । ଗୋଟିଏ ଦୁଇଟି ଖରା ଖାଇବା ପରେ ଏହି ଭାତ ଅଳ୍ପ ଶୁଖିଯାଏ ଏବଂ ଏହି ଅଳ୍ପ ଶୁଖିଲା ଭାତକୁ ଏକ ମାଟି ହାଣ୍ଡିରେ ପୂରେଇ ଢାଙ୍କୁଣୀ ଦ୍ୱାରା ଘୋଡେଇ ଗୋଟିଏ ସପ୍ତାହ ରଖାଯାଏ । ହାଣ୍ଡି ଭିତରେ ଘୋଡେଇ ରଖିବା ଦ୍ୱାରା ଉତ୍ତାପ ସୃଷ୍ଟି ହୋଇ ଓ ବ୍ୟାକ୍‌ଟେରିଆ ଅଣୁଜୀବଙ୍କ ପ୍ରଭାବରେ ଭାତ ପଚିବାକୁ ଆରମ୍ଭ କରିଥାଏ । ଭାତ ପଚି ତଳକୁ ପାଣି ଜମିଯାଏ ଓ ଉପରକୁ ପଚା ଭାତ ରହିଥାଏ । ତଳକୁ ଯେଉଁ ପାଣି ରହିଥାଏ, ଏହାକୁ 'ରସି'କହନ୍ତି । ଏହି ରସି ହିଁ ବେଶି ନିଶା କରେଇଥାଏ । ଏହି ହାଣ୍ଡିଆରେ ଜୁଆଙ୍ଗମାନେ ଜଙ୍ଗଲୀ ଗଛର ଚେର ଓ ପତ୍ରକୁ ବାଟି ପ୍ରସ୍ତୁତ କରିଥିବା ଔଷଧୀୟ ଗୁଳି 'ମଳିକା' ମିଶେଇଥାନ୍ତି ।

ଜୁଆଙ୍ଗ ମହିଳାମାନେ ବଡ଼ବଡ଼ ସିଲ୍‌ଭର ହାଣ୍ଡିରେ ହାଣ୍ଡିହାଣ୍ଡି ହାଣ୍ଡିଆ ବିକ୍ରି କରିବାକୁ ହାଟକୁ ଆଣିଥାନ୍ତି । ଅନ୍ୟ ସଂପ୍ରଦାୟର ଆଦିବାସୀ ମହିଳାମାନେ ମଧ୍ୟ ହାଟରେ ହାଣ୍ଡିଆ ବିକ୍ରି କରିଥାନ୍ତି । ହାଟରେ ଖାଲି ହାଣ୍ଡିଆ ବିକ୍ରି ହେଉ ନଥାଏ, ଏହା ସାଙ୍ଗକୁ ବିଭିନ୍ନ ପ୍ରକାର ଗରମାଗରମ ଚାଖଣା ମଧ୍ୟ ବିକ୍ରି ହୋଇଥାଏ । ବିଶେଷକରି ମହିଳା ଓ ଯୁବତୀମାନେ ହାଣ୍ଡିଆ ବିକ୍ରି କରୁଥିବାବେଳେ ଏହି ହାଣ୍ଡିଆ ଦୋକାନକୁ ଲାଗି ଚାଖଣା ଦୋକାନ ମଧ୍ୟ ପଡିଥାଏ । ଚାଖଣା ଦୋକାନରେ ଉଈ, କାଇଠାରୁ ଆରମ୍ଭ କରି ସୋଲାଭଜା, ମଟର ଭଜା, ବୁଟ ସିଝା, ବରା, ପକୁଡି, ପିଆଜି, ଚେନାଚୁର ଆଦି ନାନା ପ୍ରକାର ଛଣାଛଣି ଜିନିଷ ମିଳିଥାଏ । ଜୁଆଙ୍ଗମାନେ ଡଣ୍ଡି ପର୍ଯ୍ୟନ୍ତ ହାଟରୁ ହାଣ୍ଡିଆ



ପିଇ ଘରକୁ ଫେରୁଥିଲେ ମଧ୍ୟ ଆଜିର ତଥାକଥିତ ସଭ୍ୟ ଶିକ୍ଷିତ ମଣିଷ ଭଳି କୌଣସି ସ୍ଥାନରେ ବର୍ବର କାଣ୍ଡ ଘଟାଇ ନଥାନ୍ତି ।

ଜୁଆଙ୍ଗଙ୍କ ହାଣ୍ଡିଆ ହାଟ ସହିତ ସାଧାରଣ ହାଟ ମଧ୍ୟ ବସିଥାଏ । ସପ୍ତାହରେ ଥରେ ବସୁଥିବା ଏହି ହାଟରେ ଜୁଆଙ୍ଗମାନେ ଏକତ୍ରିତ ହୋଇ କିଣାବିକା କରିବା ସାଙ୍ଗକୁ ଭାବର ଆଦାନପ୍ରଦାନ ମଧ୍ୟ କରିବାର ସୁଯୋଗ ଲାଭ କରିଥାନ୍ତି । ଏହି ଅବସରରେ ହାଟରେ ମଧ୍ୟ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କ ମଧ୍ୟରେ ମନ ଦିଆନିଆ ଚାଲେ ଏବଂ ଏହି ହାଟରେ ହିଁ ଯୁବକ ଯୁବତୀ ପରସ୍ପରକୁ ଜୀବନ ସାଥୀ ଭାବେ ବାଛି ନେଇଥାନ୍ତି । ପୁଅ ଝିଅଙ୍କ ମନ ମିଳିବା ପରେ ପାରଂପରିକ ପଦ୍ଧତିରେ ବିବାହ ସଂପନ୍ନ ହୋଇଥାଏ । ଗୋଟିଏ ପଟେ ହାଣ୍ଡିଆ ହାଟ ବସିଥିବାବେଳେ ଅନ୍ୟ ପଟେ ସାଧାରଣ ହାଟ ବସିଥାଏ । ଏହି ହାଟରେ ନାନା ପ୍ରକାର ମନୋହରି ସାମଗ୍ରୀ, ପନିପରିବା, ଶୁଖୁଆ, ଲୁଣ, ଲଙ୍କା, ହଳଦି ଓ ଜଙ୍ଗଲୀ ଫଳ ଆଦି କିଣାବିକା ହୋଇଥାଏ । ଏହା ସାଙ୍ଗକୁ ହାଟକୁ ଲାଗି କୁକୁଡା ଲଢେଇ ପ୍ରତିଯୋଗିତାର ଆୟୋଜନ ହୋଇଥାଏ । ଏହି ପ୍ରତିଯୋଗିତାରେ ଜୁଆଙ୍ଗମାନେ ଅଂଶଗ୍ରହଣ କରି ମନ ଭରି ଉପଭୋଗ କରିଥାନ୍ତି ।

ପୂର୍ବ କାଳର ଜୁଆଙ୍ଗ ହାଟ ଓ ଆଜିର ହାଟ ମଧ୍ୟରେ ବହୁ ପ୍ରଭେଦ ଲକ୍ଷ୍ୟ କରାଗଲାଣି । ଆଜି ଏହି ହାଟରେ ବାହାରିଆ ଲୋକମାନେ ପଶି ହାଟ ସଂସ୍କୃତିକୁ କଳୁଷିତ କରିଦେଲେଣି । ଏବେ ଆଉ ଜୁଆଙ୍ଗଙ୍କ ହାଟରେ ଭାବର ଆଦାନପ୍ରଦାନ ବିଶେଷ ଭାବେ ଅନୁଭବ କରିହେଉନି, କେବଳ ଯାହା କିଣାବିକା କାର୍ଯ୍ୟଟି ସଂପାଦନ ହେଉଛି । ଆଧୁନିକତାର ଛାପରେ ଜୁଆଙ୍ଗଙ୍କ ଏହି ହାଟ ସଂସ୍କୃତି ଧୀରେଧୀରେ ବିଲୋପ ପାଇଗଲାଣି । ଜିଲ୍ଲାର ଅନ୍ୟ ହାଟମାନଙ୍କ ତୁଳନାରେ ଜୁଆଙ୍ଗମାନଙ୍କ ହାଟ ଟିକେ ନିଆରା । ବିଶେଷକରି ବାଂଶପାଳ, ହରିଚନ୍ଦନପୁର ଓ ତେଲକୋଇ ବ୍ଲକ୍‌ର ଜୁଆଙ୍ଗ ଅଞ୍ଚଳରେ ଏହି ସାପ୍ତାହୀକ ହାଟମାନ ବସିଥାଏ । ଏହି ହାଟରେ ବିଶେଷକରି ଜଙ୍ଗଲଜାତ ଦ୍ରବ୍ୟ ବିଶେଷ ଭାବେ କିଣାବିକା ହୋଇଥାଏ । ଖମ୍ବଆଳୁ, ପିଟାଆଳୁ, ବଇଙ୍ଗା, ଅଁଳା, ବାହାଡା, ମହୁଲ, କେନ୍ଦୁ, ଚାହାର, ଖଜୁରୀ, ତେନ୍ତୁଳି, ହରିଡା, ଟୋଲା, ରାଶି, କୁସୁମ, ସୋରିଷ, ବିରି, ଶାଳ ମଞ୍ଜି, ଲାଖ, ପାଳୁଅ, ଝୁଣା, ମହୁ, ବହୁ ପ୍ରକାର ଜଙ୍ଗଲଜାତ ଔଷଧୀୟ ଚେରମୂଳି, ହାଡପେଟା କୁସୁମ, କରଞ୍ଜ, ଟୋଲା ତେଲ, ନଦୀ ନାଳରୁ ଧରା ଯାଇଥିବା ଚୁନା ମାଛ, ଆମ୍ବଷଢା, କୋଳିଗୁଣ୍ଡ, କୀଟପତଙ୍ଗ ଯଥା: ଉଇ, କାଇ, ପନିପରିବା ଯଥା: ଜୁଡଙ୍ଗ, କଖାରୁ, କାକୁଡି ଆଦି ଜୁଆଙ୍ଗ ହାଟରେ ଉପଲବ୍ଧ ହୋଇଥାଏ । ଏବେଏବେ ଜୁଆଙ୍ଗ ହାଟରେ ଶସ୍ତା ଶାଢି, ପିଲାଙ୍କ ପୋଷାକ, ଚାଇନିଜ୍ ଟର୍ଚ୍ଚ, ଲଣ୍ଠନ, ତେଲ, ଲୁଣ, ହଳଦି, ଚାଉଳ ଆଦି ବିକ୍ରି ହେଲାଣି ।

# ବର୍ଷା ଦିନିଆ ଖାଦ୍ୟ: ଜୁଆଙ୍ଗଙ୍କ ଗୋଟି ପଣସ ପୋଡ଼ା



ଆଷାଢ ମାସର ଧୁ ଧୁ ଖରାରେ ୪୯ନମ୍ବର ଜାତୀୟ ରାଜପଥ ଦେଇ ଗୋନାସିକାରେ ପହଞ୍ଚିଲାବେଳକୁ ପ୍ରାୟ ଖରାବେଳ । ଗୋନାସିକାରୁ କଦଳିବାଡି ଜୁଆଙ୍ଗ ଗାଁ ଆଡେ ଗଲାବେଳେ ହଠାତ୍ ଆମ ନଜରରେ ପଡିଲା ଏକ ବିଶାଳକାୟ ନିଆଁ ହୁଳାକୁ ସଂଖ୍ୟାଧିକ ଲୋକେ ଘେରି ବସିଥିବାର । ଏକ ଛୋଟ ପାହାଡର ପାଦଦେଶରେ ନିଆଁ ହୁତୁହୁତୁ ହୋଇ ଜଳିବା ସହିତ ଏତେ ସଂଖ୍ୟାରେ ଲୋକ ଜମିଥିବାର ଦେଖି ମନରେ ସନ୍ଦେହ ହେଲା । ସେଠାରେ କୌଣସି ଶବ ଦାହ କରାଯାଉଛି କି ବୋଲି ମନକୁ ଆସିଲା । ମାତ୍ର, ତାହା ଥିଲା ଜୁଆଙ୍ଗଙ୍କ 'ପଣସ ପୋଡା' ପର୍ବ । ଗୁଣ୍ଡ ହୋଇଥିବା ଲୋକଙ୍କ ନିକଟକୁ ଯାଇ ଦେଖିଲାବେଳକୁ ଏକ ବିରାଟ ଭାଟିରେ କାଠ ଗଣ୍ଡିମାନ ଉପରକୁ ଉପର ଖଞ୍ଜା ହୋଇ ନିଆଁ ହୁତୁହୁତୁ ହୋଇ ଜଳୁଥିବାର ଜାଣିଲୁ । ନିଆଁ ଚାରିପାଖେ ବେଢି ବସିଥାନ୍ତି ପାଖାପାଖି ଶହେରୁ ଉର୍ଦ୍ଧ୍ୱ ଜୁଆଙ୍ଗ ବୁଢା, ବୁଢି, ଯୁବକ ଓ ଯୁବତୀ ଏବଂ ଛୋଟଛୋଟ ପିଲାମାନେ ବି । ଘଟଣା କ'ଣ ବୁଝୁବୁଝୁ ଜଣାପଡିଲା ଜୁଆଙ୍ଗମାନଙ୍କର 'ପଣସ ପୋଡା' ଚାଲିଛି । ଗୋଟିଏ ଭାଡ଼ି କାଠ ନିଆଁରେ ପାଖାପାଖି ପଚାଶରୁ ଉର୍ଦ୍ଧ୍ୱ ବଡ଼ ଓ ଛୋଟ ଗୋଟା ପଣସ ପୋଡା ଚାଲିଛି । ଗୋନାସିକାର ରାହାସ ଜୁଆଙ୍ଗଙ୍କ କହିବା ଅନୁଯାୟୀ, ବର୍ଷା ଦିନେ ଖାଦ୍ୟଶସ୍ୟର ଅଭାବ କାରଣରୁ ପଣସ ହିଁ ଜୁଆଙ୍ଗଙ୍କ ପ୍ରମୁଖ ଖାଦ୍ୟ ପାଲଟିଥାଏ । ପଣସରୁ ବିଭିନ୍ନ ପ୍ରକାର ଆଇଟମ୍ ବନେଇ

ଜୁଆଙ୍ଗମାନେ ନିଜର ପେଟ ଚାଖଣ୍ଡକ ପୂରଣ କରିଥାନ୍ତି । ଉଭୟ ପାଚିଲା ଓ କଞ୍ଚା ପଣସକୁ କାଠ ଉପରେ ଲଦି ନିଆଁ ଲଗେଇ ପୋଡାଯାଏ । ଏହି ପଣସ ପୋଡା କାର୍ଯ୍ୟକ୍ରମକୁ ପାଖାପାଖି ଗୋଟିଏ ଦିନ ଲାଗିଥାଏ ବୋଲି ରାହାସ ଜୁଆଙ୍ଗ ଆମକୁ କହିଥିଲେ । ଭୋରୁ ଭୋରୁ ଗାଁର ଜୁଆଙ୍ଗମାନେ ଏକାଠି ହୋଇ ପାଖ ହୁଡି ନିକଟକୁ ଆସନ୍ତି । ହୁଡିର ପାଦଦେଶରେ ଗାଁଟାଯାକର ଜୁଆଙ୍ଗମାନେ ସଂଗ୍ରହକରିଥିବା କାଠର ଏକ ଭାଟି ନିର୍ମାଣ କରନ୍ତି ଏବଂ ସେଥିରେ ଗୋଟି ପଣସକୁ ଗୋଟିଏ ପରେ ଗୋଟିଏ ଇଟା ଭାଟି ଭଳି ଖଞ୍ଜି ଚାଲନ୍ତି । ଏହି ଭାଟି ନିର୍ମାଣ କରିବାକୁ ଜୁଆଙ୍ଗମାନଙ୍କୁ ପାଖାପାଖି ଚାରି ଘଣ୍ଟାରୁ ଅଧିକ ସମୟ ଲାଗିଥାଏ । ଭାଟିରୁ ନିଆଁ ଲିଭିଲାବେଳକୁ ପୂରା ମଧ୍ୟାହ୍ନ ହୋଇଯାଇଥାଏ । ନିଆଁ ଲିଭିଲାପରେ କାଠ ଭାଟିରୁ ପୋଡା ପଣସସବୁକୁ କାଢି ଆଣି ଧାରୁଆ ଅସ୍ତ୍ର, ଛୁରୀ, କଟୁରୀରେ କାଟି ଗଡ଼ଗଡ଼ କରନ୍ତି । ପଣସର ଖୋସା ପୋଡିଗଲା ପରେ ସେଥିରୁ ଏକ ମିଠା ବାସ୍ନା ବାହାରୁଥାଏ । ଜୁଆଙ୍ଗମାନେ ବଡ଼ବଡ଼ ପତ୍ରରେ ଏହି ଖୋସାକୁ ଭାଗଭାଗ କରି ଏକତ୍ର ପଙ୍‌କ୍ତି ଭୋଜନରେ ବସି ଯାଆନ୍ତି । ଆଉ କିଛି ପଣସର ପୋଡା ମଞ୍ଜିକୁ ମଧ୍ୟ ଖାଆନ୍ତି । ନିକଟସ୍ଥ ଝରଣାରେ ସ୍ନାନ ସାରି ଜୁଆଙ୍ଗମାନେ ସେହି ହୁଡି ପାଦଦେଶରେ ଏକ 'ପଣସ ଭୋଜି'ର ଆୟୋଜନ କରିଥାନ୍ତି । ଜୁଆଙ୍ଗମାନେ ପେଟପୂରା ପଣସ ପୋଡା ଖାଇବା ପରେ ସଞ୍ଜ ବେଳକୁ ନିଜନିଜର ଗାଁକୁ ଫେରନ୍ତି । ଯୁବକ, ଯୁବତୀମାନେ ହାଣ୍ଡିଆ ପିଇ ମାତାଲ୍ ହୋଇ ଉଠନ୍ତି । ଗାଁର ମଜାଙ୍ଗ୍ ବା ମଣ୍ଡଘରେ ସମସ୍ତେ ଏକତ୍ରିତ ହୁଅନ୍ତି । ମଣ୍ଡଘରେ କାଠର ଏକ ଧୂନି ଅଖଣ୍ଡ ଦୀପ ଭଳି ଜଳୁଥାଏ । ଧୂନି ଚାରିକଡେ ଜୁଆଙ୍ଗ ଯୁବକମାନେ ଚାଙ୍ଗୁ ଧରି ସଜିଲ୍ ହେଲାବେଳକୁ ଯୁବତୀମାନଙ୍କ ପାଦ ଅଥୟ ହୋଇ ସାରିଥାଏ । ଜମେ ଜୁଆଙ୍ଗ ଯୁବକ, ଯୁବତୀମାନଙ୍କର ଆସର । ଚାଙ୍ଗୁ ବାଦ୍ୟର ତାଳେତାଳେ ଯୁବତୀମାନେ ଥକି ପଡିବା ପର୍ଯ୍ୟନ୍ତ ନାଚିନାଚି ନିଜକୁ ହଜେଇ ଦିଅନ୍ତି । ଜ୍ୟେଷ୍ଠ ଓ ଆଷାଢ ଦୁଇ ମାସ ଧରି ଜୁଆଙ୍ଗମାନେ କେବଳ ପଣସ ପଛରେ ପଡି ଯାଆନ୍ତି । ଏହି ସମୟରେ କିଛି ଜଙ୍ଗଲୀ ଛତୁ ଓ ପଣସ ହିଁ ଜୁଆଙ୍ଗମାନଙ୍କର ଭୋକ ମେଣ୍ଟେଇ ଥାଏ । ଏବେଏବେ ସରକାରଙ୍କ ଦୁଇ ଟଙ୍କିଆ ଚାଉଳ କିଛି କିଛି ଜୁଆଙ୍ଗ ଗାଁରେ ପହଞ୍ଚୁଥିବାରୁ ଜୁଆଙ୍ଗମାନେ ଭାତ ସହିତ ପଣସ ମଞ୍ଜି ତରକାରୀ, ଗୋଟି ପଣସ ପୋଡା, ପୋଡା ଖୋସା ଓ ମଞ୍ଜି, ଜଙ୍ଗଲୀ ଛତୁ ତର୍କାରୀ ଖାଆନ୍ତି । ଏହାକୁ ଛାଡିଲେ ବର୍ଷା ଦିନେ ଜୁଆଙ୍ଗମାନେ ଅନ୍ୟ କୌଣସି ଖାଦ୍ୟ, ପନିପରିବା ମଧ୍ୟ ପାଇ ନଥାନ୍ତି । ଅପରପକ୍ଷେ, ପଣସ ଋତୁ ଶେଷ ହୋଇଆସିଲେ ମକା ପାଲଟିଯାଏ ଜୁଆଙ୍ଗମାନଙ୍କ ଖାଦ୍ୟ । ମକା ପୋଡଠାରୁ ଆରମ୍ଭ କରି ମକା ପିଠା, ମକା ତରକାରୀ ଆଦି ଜୁଆଙ୍ଗମାନଙ୍କ ପ୍ରିୟ ଖାଦ୍ୟ ପାଲଟିଥାଏ । ତେବେ ଜୁଆଙ୍ଗମାନଙ୍କ ଗୋଟି ପଣସ ପୋଡା ସେମାନଙ୍କ ଗୋଷ୍ଠୀଗତ ଜୀବନକୁ ବେଶ୍ ପ୍ରଭାବିତ କରିଥାଏ । ପଣସ ପୋଡା କାର୍ଯ୍ୟକ୍ରମଟିକୁ କୌଣସି ଜୁଆଙ୍ଗ ବ୍ୟକ୍ତିଗତ ଭାବେ ନ କରି ବରଂ

ଗାଁର ସମସ୍ତ ଜୁଆଙ୍ଗ ମିଳିତ ଭାବେ ସଂପାଦନ କରିଥାନ୍ତି । ପାଖାପାଖି ଦୁଇରୁ ତିନି ମାସ ଧରି ଜୁଆଙ୍ଗମାନେ ପଣସ ପୋଡି ଖାଇଥାନ୍ତି । ସପ୍ତାହକୁ ଦୁଇରୁ ତିନି ଥର ଏହି ପଣସ ପୋଡା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । କେନ୍ଦୁଝର ଜିଲ୍ଲାର ପାହାଡିଆ ଅଞ୍ଚଳରେ ଆଶାତୀତ ପଣସ ଗଛ ଥିବାରୁ ଏଠାରେ ପଣସର ପ୍ରାବଲ୍ୟ ଲକ୍ଷ୍ୟ କରାଯାଏ । ବିଶେଷକରି ଜୁଆଙ୍ଗ, ଭୂୟାଁ, ବାଥୁଡି, ସାଉଁତି ପ୍ରମୁଖ ଆଦିମ ଅଧିବାସୀ ବସବାସ କରୁଥିବା ଅଞ୍ଚଳରେ ପ୍ରଚୁର ମାତ୍ରାରେ ପଣସ ଗଛ ଦେଖିବାକୁ ମିଳିଥାଏ । ଏଣୁ ପଣସ ହିଁ ଜୁଆଙ୍ଗଙ୍କ ସମେତ ଅନ୍ୟ ଆଦିବାସୀଙ୍କର ଅନ୍ୟ ଏକ ପ୍ରିୟ ଫଳ ଓ ଖାଦ୍ୟର ମାନ୍ୟତା ହାସଲ କରିଥାଏ ।

## ଯୋଡା-ବଡ଼ବିଲ ଶିଳ୍ପାଞ୍ଚଳରେ ବିପର୍ଯ୍ୟସ୍ତ 'ହଟିଂ ଲାଇଫ୍'



ସାଧାରଣତଃ ଶିଳ୍ପାଞ୍ଚଳଗୁଡିକରେ ଗଢି ଉଠିଥିବା ଶ୍ରମିକମାନଙ୍କ ବସ୍ତିକୁ ହିଁ 'ହଟିଂ' ବୁଝାଯାଇଥାଏ । କେନ୍ଦୁଝର ଜିଲ୍ଲାର ଯୋଡା-ବଡ଼ବିଲ ଶିଳ୍ପାଞ୍ଚଳରେ ଏଭଳି ଶହଶହ 'ହଟିଂ' ରହିଛି । ଦାରିଦ୍ର୍ୟ, ଶିକ୍ଷା ଓ ସଚେତନତା ଅଭାବ କାରଣରୁ 'ହଟିଂ'ଗୁଡିକରେ ବସବାସ କରୁଥିବା ଶ୍ରମିକମାନଙ୍କର ଜୀବନଶୈଳୀ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳିତ । ପ୍ରତିମୁହୂର୍ତ୍ତରେ ଚୋରି, ଡକାୟତି, ହଣାକଟା, ଧର୍ଷଣ, ବ୍ୟଭିଚାରର ଆଶଙ୍କା ଓ ମାତାଲ୍ ଲୋକଙ୍କ ଜୁଲମ 'ହଟିଂ' ବାସିନ୍ଦାମାନଙ୍କୁ ଏକପ୍ରକାର ଅଣନିଶ୍ବାସୀ କରି ଦେଇଛି । 'ହଟିଂ'ଗୁଡିକର ଅଶାନ୍ତିକର ପରିବେଶ ଓ ବିପର୍ଯ୍ୟସ୍ତ ଜୀବନଶୈଳୀ ହିଁ ଚିନ୍ତାଜନକ ।

ଯୋଡା-ବଡ଼ବିଲ ଅଞ୍ଚଳରେ ଥିବା ଅଧିକାଂଶ 'ହଟିଂ'ମାନଙ୍କୁ ବିଜୁଳି ନଥାଏ, ପାଣି ନଥାଏ କି ରାସ୍ତାଘାଟର ସୁବିଧା ନଥାଏ । 'ହଟିଂ'ର ପିଲାମାନେ ପାଠ ପଢିବା ପାଇଁ ସ୍କୁଲଟିଏ ବି ନଥାଏ । 'ହଟିଂ'ଗୁଡିକରେ ଶ୍ରମିକମାନେ ଯେଉଁଠି ଖାଆନ୍ତି, ଶୁଅନ୍ତି, ବସନ୍ତି, ସେଇଠି ଘୁଷୁରୀମାନେ ମଳତ୍ୟାଗ କରନ୍ତି ଏବଂ ସେଇଠି ବି ଗଦା ହୋଇଥାଏ ସହର ଓ କଳକାରଖାନାରୁ ନିର୍ଗତ ବର୍ଜ୍ୟବସ୍ତୁ, ଡ୍ରେନ୍, ଦୋକାନ, ହୋଟେଲ୍‌ରୁ ନିର୍ଗତ ପଚାଶଢା ଗଦାଗଦା ଆବର୍ଜନା । ଯୋଡା-ବଡ଼ବିଲ ଅଞ୍ଚଳର ସମସ୍ତ ଲୁହାଖଣିମାନଙ୍କରୁ ନିର୍ଗତ ଲୁହାଗୁଣ୍ଡମିଶା ଲାଲ୍ ପାଣି, କାରଖାନାର ବର୍ଜ୍ୟବସ୍ତୁ, ସହରାଞ୍ଚଳରୁ ନିର୍ଗତ ପଚା, ଦୁର୍ଗନ୍ଧ ଡ୍ରେନ୍ ପାଣି ଯେଉଁ ନଳା ଦେଇ ପ୍ରବାହିତ ହେଉଥାଏ, ସେହି ନଳାର ପାଣିକୁ ହିଁ ଏ ଅଞ୍ଚଳରେ ଥିବା 'ହଟିଂ'ଗୁଡିକର ବାସିନ୍ଦାମାନେ ଗାଧୋଇବାଠାରୁ ଆରମ୍ଭ କରି ପାନୀୟ ଜଳ, ରନ୍ଧନ ଓ ଅନ୍ୟାନ୍ୟ ସମସ୍ତ ପ୍ରକାର ଘରୋଇ ବ୍ୟବହାର କରିଥାନ୍ତି ।

ଆପଣ ଯଦି କେବେ ନୟାଗଡ, କାଳିମାଟି, ବାମେବାରୀ, ଜୁରୁଡି ରାସ୍ତା ଦେଇ ଯୋଡା ଯାଉଥା'ନ୍ତି, ତେବେ ଜୁରୁଡି ନିକଟରେ ଥିବା 'ହଟିଂ'ଗୁଡିକର ଶ୍ରମିକମାନେ ପୂତିଗନ୍ଧମୟ ଦଲ୍‌କି ନଳାରେ ଗାଧୋଉଥିବାର ଚିତ୍ର ନିଶ୍ଚୟ ଦେଖିପାରିବେ । ଜୁରୁଡିର ହଟିଂଗୁଡିକରେ ଶ୍ରମିକମାନେ କିଭଳି ବଞ୍ଚୁଛନ୍ତି ତାହା ସେହି ଚିତ୍ରରୁ ଆପଣ ଜାଣିପାରିବେ । ସବୁଠୁ ବଡ଼ କଥା ହେଉଛି, ଗତ କିଛି ବର୍ଷ ତଳେ ସେହି ଦଲ୍‌କି ନଳାରେ ଏସେଲ୍ ମାଇନିଂ ପକ୍ଷରୁ ଏକ ଗାଧୁଆ ଘାଟ ନିର୍ମାଣ



କରାଯାଇଛି । ତେବେ ସେହି ଅପରିଚ୍ଛନ୍ନ ଓ ପୂତିଗନ୍ଧମୟ ଗାଧୁଆ ଘାଟକୁ ଆମର ତଥାକଥିତ ସଭ୍ୟ ମଣିଷମାନେ କେବେ ଥରେ ଯାଇ ଦେଖିଆସିବା ଉଚିତ୍ ।

ଜୁରୁଡି ରାସ୍ତା ପାର୍ଶ୍ୱରେ ଗଢି ଉଠିଥିବା 'ହଟିଂ'ମାନଙ୍କ ଦେଇ କାଳିମାଟି, ବାମେବାରୀ, ଯୋଡା, ସିଲିଯୋଡା, ଜଜାଙ୍ଗ, ଜଲହରି, ନୟାଗଡ ଆଦି ଖଣିମାନଙ୍କରୁ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଲୁହାପଥର ବୋଝେଇ ଟ୍ରକ୍ ଚଳାଚଳ କରିଥାଏ । ଦୈନିକ ହଜାର ହଜାର ଟ୍ରକ୍ ଜୁରୁଡି ରାସ୍ତା (ମରଣଯନ୍ତା)ର ଛାତି ଉପରେ ତଥା ଶ୍ରମିକମାନେ ବସବାସ କରୁଥିବା 'ହଟିଂ'ମାନଙ୍କ ଆକାଶରେ ଧୂଳି, ଧୂଆଁ ଉଡେଇ ମାତିଯାଆନ୍ତି । ଏହି 'ହଟିଂ'ମାନଙ୍କର ଚତୁର୍ପାର୍ଶ୍ୱରେ ଏତେ ମୋଟାର ଧୂଳି ଓ ଧୂଆଁର ବଳୟ ଘେରି ରହିଥାଏ, ଜଣେ ଲୋକ ଆଉ ଜଣେ ଲୋକଙ୍କୁ ଦେଖିବାକୁ ସମର୍ଥ ହୋଇ ନଥାଏ ।

ସବୁଠୁ ଦୁର୍ବିସହ ହୋଇ ଉଠେ ଏଠାରେ ଜଳ ସଂକଟ । ପ୍ରତିବର୍ଷ ଖରାଦିନେ ଏଠାରେ ଜଳ ସମସ୍ୟା ଉଗ୍ରରୂପ ଧାରଣ କରିଥାଏ । ଏହି 'ହଟିଂ'ମାନଙ୍କ ନିକଟରେ ଯେଉଁସବୁ ଛୋଟଛୋଟ ନଳା ବହିଯାଇଥାଏ ସେଗୁଡିକ ଖରାଦିନେ ଶୁଖିଯାଇଥାଏ । ବିଶେଷକରି ସହର ଓ କାରଖାନାମାନଙ୍କରୁ ନିର୍ଗତ ବର୍ଜ୍ୟବସ୍ତୁ ଏହି ନଳା ଦେଇ ପ୍ରବାହିତ ହେଉଥିବାରୁ 'ହଟିଂ'ବାସିନ୍ଦା ଏହି ଦୂଷିତ ଜଳକୁ ବ୍ୟବହାର କରି ନାନା ପ୍ରକାର ରୋଗର ଶିକାର ହୋଇଥାନ୍ତି । ପ୍ରତିବର୍ଷ ଅଧିକାଂଶ 'ହଟିଂ'ରେ ଝାଡାବାନ୍ତି ବ୍ୟାପିବା ଏବଂ ଏଥିରେ ବହୁ ସଂଖ୍ୟାରେ ମୃତ୍ୟୁବରଣ କରିବା ଏକ ସାଧାରଣ ଘଟଣା ହୋଇଥାଏ । ଏହା ସାଙ୍ଗକୁ 'ହଟିଂ'ର ପିଲାମାନଙ୍କଠାରୁ ଯୁବକ, ଯୁବତୀ ଓ ବୃଦ୍ଧବୃଦ୍ଧାଙ୍କୁ ଚର୍ମ ଓ ନାନା ପ୍ରକାର ପେଟ ରୋଗ ହେବା ମଧ୍ୟ ଅନ୍ୟ ଏକ ସାଧାରଣ ଘଟଣା । ଏହା ଗଲା 'ହଟିଂ'ମାନଙ୍କରେ ପରିବେଶ ଓ ପ୍ରଦୂଷଣଜନିତ ସମସ୍ୟା । ମାତ୍ର, 'ହଟିଂ'ଗୁଡିକରେ ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳିତ ସାମାଜିକ ଜୀବନ ହିଁ ଅସଲ ଚିନ୍ତାର କାରଣ ।

ଜୁରୁଡିର ଏକ 'ହଟିଂ'ରେ ଜଣେ ପାଞ୍ଚ ବର୍ଷର ନାବାଳିକାକୁ କିଛି ମଦ୍ୟପ ଯୁବକ ଧର୍ଷଣ କରି ଅମାନୁଷିକ ଭାବେ ହତ୍ୟା କରିବା ଘଟଣା ହେଉ କି ଭାଣିଜୀକୁ ମାମୁର ବଳାତ୍କାର କିମ୍ବା ବଡ଼ବିଲ୍‌ର ସାଧୁସିଂ ମୁଣ୍ଡା ହଟିଂର ଜଣେ ମଦ୍ୟପ ସ୍ୱାମୀର ଉତ୍ପାତରେ ତାଙ୍କ ପତ୍ନୀଙ୍କ ଆତ୍ମହତ୍ୟା କିମ୍ବା ଡବ୍ଲ୍ୟୁ ହଟିଂର ନିଶାସକ୍ତ ସ୍ୱାମୀ ଚରିତ୍ର ସନ୍ଦେହରେ ନିଜ ପତ୍ନୀକୁ ଗୁଳି କରି ହତ୍ୟା କରିବା ଘଟଣା 'ହଟିଂ'ଗୁଡିକରେ ବିଶୃଙ୍ଖଳିତ ଜୀବନଶୈଳୀର ଗୋଟିଏ ଗୋଟିଏ ଉଦାହରଣ । ଏମିତି ଅନେକ ଅବ୍ୟକ୍ତ ଅଭିଯୋଗ ପ୍ରତିମୁହୂର୍ତ୍ତରେ ସ୍ଥାନୀୟ ପୁଲିସ ନିକଟରେ ପହଞ୍ଚିଥାଏ । ଏହାଛଡା 'ହଟିଂ'ମାନଙ୍କରେ ଚୋରି, ଡକାୟତି, ଧର୍ଷଣ, ହତ୍ୟା, ଆତ୍ମହତ୍ୟା ସାଧାରଣ ଘଟଣାରେ ପରିଣତ ହୋଇଛି । ଅପରପକ୍ଷେ, 'ହଟିଂ'ଗୁଡିକ ଯାବତୀୟ ପ୍ରକାର ନିଶା ଯଥା- ମଦ, ଗଞ୍ଜେଇ, ଚରସ, ହେରୋଇନ୍ ଭଳି ମାରାତ୍ମକ ଡ୍ରଗ୍‌ସ କାରବାରର ପେଣ୍ଠସ୍ଥଳୀ ପାଲଟିଛି । ଏହି ଶ୍ରମିକମାନଙ୍କୁ

ନିକଟସ୍ଥ ଖଣିଖାଦାନ, କଳକାରଖାନା କିମ୍ବା ରେଲ୍‌ୱେ ସାଇଡିଂମାନଙ୍କରେ ନିୟମିତ କାମ ମିଳିଲେ ଭଲ, ନ ମିଳିଲେ ବିପଦ । କାମ ନ ମିଳିଲେ 'ହଟିଂ'ଗୁଡ଼ିକର ବେକାର ଯୁବକ ଓ ବୟସ୍କ ଲୋକମାନେ ମଦ ପିଇ ନାନା ପ୍ରକାର ଅସାମାଜିକ କାଣ୍ଡ ଘଟାଇ ବସନ୍ତି । ଶିକ୍ଷା ଓ ସଚେତନତାର ଅଭାବ, ଆର୍ଥିକ ଅନଟନ ଓ ବେପରୁଆ ଜୀବନଶୈଳୀ 'ହଟିଂ'ବାସିନ୍ଦାଙ୍କ ପାଇଁ କାଳ ପାଲଟିଛି ।

ବଲାଣୀ ରେଲ୍‌ୱେ ସାଇଡିଂର ପାର୍ଶ୍ୱରେ ଗଢ଼ି ଉଠିଛି ଏକ ଆଦିବାସୀ ଶ୍ରମିକ ବସ୍ତି, ଯାହାର ନାଁ 'ଡବ୍‌ଲ୍ୟୁ ହଟିଂ' । ଏହି 'ହଟିଂ'ରେ ରହୁଥିବା ଶ୍ରମିକ, ଆଦିବାସୀମାନଙ୍କ ବିପର୍ଯ୍ୟସ୍ତ ଜୀବନଶୈଳୀ ଓ ଅଭାବ, ଅସୁବିଧା ହିଁ ପ୍ରକୃତରେ ଚିନ୍ତାଜନକ । ସେଦିନ ଥାଏ ରବିବାରର ଏକ କ୍ଳାନ୍ତ ଅପରାହ୍ନ । ସୂର୍ଯ୍ୟ ବୁଡ଼ିଯିବା ପୂର୍ବରୁ ଆମେ 'ଡବ୍‌ଲ୍ୟୁ ହଟିଂ'ରେ ପହଞ୍ଚି ସାରିଥିଲୁ । ଦିନସାରା ପରିଶ୍ରମ କରି 'ହଟିଂ'ର ଶ୍ରମିକ ଓ ମହିଳା, ଯୁବକ, ଯୁବତୀମାନେ ଏକ ପଚା ଦୁର୍ଗନ୍ଧ ନଳାରେ ସାବୁନ୍ ମାରି ଗାଧୋଉଥିବାର ଦେଖିଲୁ । କିଛି ଶ୍ରମିକ ମଦ ପିଇ ମାତାଲ୍ ଅବସ୍ଥାରେ ନିଜନିଜ ଘର ସାମ୍ନା ଅଗଣାରେ ଶୋଇ ଘୁଙ୍ଗୁଡ଼ି ମାରୁଥାନ୍ତି । ଛୋଟଛୋଟ ପେଟୁଆ ଶିଂଘାଣୀ ନାକିଆ ପିଲାମାନେ ମଧ୍ୟ ସେହି ପଚା ନଳା ପାଣିରେ ବୁଡ଼ିବୁଡ଼ି ଆଖି ନାଲି ପକେଇ ଦେଇଥାନ୍ତି । ଯୁବତୀ ଓ ମହିଳାମାନେ ପଚା, ଦୁର୍ଗନ୍ଧ ଓ କଳା ଓ ଲାଲ୍ ରଙ୍ଗର ଗୋଳି ପାଣିରେ ତଥାପି ସାବୁନ୍ ଲଗେଇ ନିଜର ଲୁହାଗୁଣ୍ଡବୋଳା ଦେହକୁ ସଫା କରିବାରେ ବ୍ୟସ୍ତ ଥା'ନ୍ତି । ଏହି 'ହଟି'ଟିରେ ନଳକୂପଟିଏ ନଥିବାରୁ ଏହି ନଳାର ପାଣିକୁ ଏମାନେ ପାନୀୟ ଜଳ ଭାବେ ବ୍ୟବହାର କରିଥାନ୍ତି ।

ଡବ୍‌ଲ୍ୟୁ 'ହଟିଂ'ଟିରେ ପାଖାପାଖି ୩୦୦ ପରିବାରର ଦେଢ଼ ହଜାରରୁ ଅଧିକ ଶ୍ରମିକ ବାସ କରନ୍ତି । 'ହଟିଂ'ର ଖୁବ୍ ନିକଟରେ ରହିଛି ବଲାଣୀସ୍ଥିତ 'ସେଲ୍' (ଷ୍ଟୀଲ୍ ଅଥରିଟି ଅଫ୍ ଇଣ୍ଡିଆ ଲିଃ)ର ଖଣିଖାଦାନ, ଷ୍ଟୀଲ୍ ପ୍ଲାଣ୍ଟ ଓ ସେଲ୍ କର୍ମଚାରୀଙ୍କ ଚାକଚକ୍ୟ କଲୋନୀ ଓ ରଙ୍ଗାରଙ୍ଗ 'ସେଲ୍' ଟାଉନସିପ୍ । ମାତ୍ର, 'ସେଲ୍' ଷ୍ଟୀଲ୍ ପ୍ଲାଣ୍ଟକୁ ଲାଗି ରହିଥିବା ଏହି 'ହଟିଂ'ର ଶ୍ରମିକମାନେ ଖୁବ୍ ଦୟନୀୟ ଭାବେ ବଞ୍ଚନ୍ତି । ବର୍ଷକୁ ଦୁଇ ମାସ ବି କାମ ପାଆନ୍ତି ନାହିଁ । ଦାରିଦ୍ର୍ୟ 'ହଟିଂ'ବାସିନ୍ଦାମାନଙ୍କୁ ଦୁର୍ବିସହ କରିଦେଇଛି । 'ସେଲ୍'ର ପାନ୍‌ପୋଷ ନଳାରୁ ଦୁର୍ଗନ୍ଧ ମଇଳା ପାଣି, ଖାଦାନରୁ ଲୁହାଗୁଣ୍ଡ ମିଶା ଲାଲ୍ ପାଣି, କାରଖାନାରୁ ନିର୍ଗତ ବିଷାକ୍ତ ବର୍ଜ୍ୟବସ୍ତୁ, ବଲାଣୀ ସହରାଞ୍ଚଳର ଡ୍ରେନ୍‌ର ମଇଳା ପାଣି ଏହି 'ହଟିଂ' ଦେଇ ବହିଯାଇଥିବା ନଳାରେ ମିଶିଥାଏ ଏବଂ 'ହଟିଂ'ର ଶ୍ରମିକମାନେ ଏହି ଦୁର୍ଗନ୍ଧ ନଳାରେ ଗାଧୁଆପାଧୁଆଠାରୁ ଆରମ୍ଭ କରି ପିଇବା ପାଣି, ରୋଷେଇ ଆଦି ସମସ୍ତ ପ୍ରକାର ଘରୋଇ ବ୍ୟବହାର କରିଥାନ୍ତି । ସବୁଠୁ ବଡ଼ କଥା ହେଉଛି, ଖରାଦିନେ 'ସେଲ୍' ପକ୍ଷରୁ ଟ୍ୟାଙ୍କର ଯୋଗେ ଶ୍ରମିକ ବସ୍ତିମାନଙ୍କରେ ପାନୀୟ ଜଳ ଯୋଗେଇ ଦେବାର ବ୍ୟବସ୍ଥା ଥିଲେ ମଧ୍ୟ ଏହି 'ହଟିଂ'ର ବାସିନ୍ଦାମାନେ ଏହି ସୁବିଧା ପାଇ ପାରନ୍ତି ନାହିଁ । ଏଠାରେ ଥିବା 'ସେଲ୍'ର ଖଣିଖାଦାନ କିମ୍ବା ପ୍ଲାଣ୍ଟରେ ଦିନେ ମଧ୍ୟ ହଟିଂର ଶ୍ରମିକମାନଙ୍କୁ କାମ ମିଳି ନଥାଏ ।

# ପାଣିରୁ ସୁନା ଛାଣୁଥିବା କେନ୍ଦୁଝର ଜିଲ୍ଲାର ବିରଳ 'ଝରା' ଜାତି



କେନ୍ଦୁଝର ଜିଲ୍ଲାର ତେଲକୋଇ, ହରିଚନ୍ଦନପୁର ଓ ବାଂଶପାଳ ଅଞ୍ଚଳରେ ଏକ ନିଆରା ସଂପ୍ରଦାୟର ଲୋକେ ବସବାସ କରନ୍ତି । ଏମାନଙ୍କୁ 'ଝରା' ବୋଲି କୁହାଯାଇଥାଏ । ଚଳନ୍ତା ପାଣିରୁ ସୁନା ଛାଣିବା ହେଉଛି ଏମାନଙ୍କର କୌଳିକ ବୃତ୍ତି । ପାଖଆଖ ଦେଇ ବହି ଯାଉଥିବା ନଦୀନାଳମାନଙ୍କରୁ ଏମାନେ କାହିଁ କେଉଁ ଅନାଦି କାଳରୁ ପୁରୁଷ ପୁରୁଷ ଧରି ସୁନା ଝରେଇବା କାମ କରି ଆସୁଛନ୍ତି । ପାଣିରୁ ସୁନା ଛାଣୁଥିବା ଏହି ଜାତିର ଦୁର୍ଦ୍ଦଶା ଦେଖିଲେ ଆଖିକୁ ବିଶ୍ୱାସ କରିହୁଏନି । ଏମାନଙ୍କଠାରୁ ଶସ୍ତାରେ ସୁନା କିଣି ନେଇ ସ୍ଥାନୀୟ ଅଞ୍ଚଳର ବଣିଆ ଜାତି କୋଟିପତି ପାଲଟୁଥିବାବେଳେ ଏମାନଙ୍କ ଭାଗ୍ୟ ସେହି ଅନ୍ଧକାର ମଧ୍ୟରେ ଅଟକି ଯାଇଛି । ସବୁଠୁ ଦୁର୍ଭାଗ୍ୟ, ଏମାନଙ୍କ ଅନ୍ୟ ଜାତିଭାଇମାନେ ତଫସିଲଭୁକ୍ତ ଜାତି କିମ୍ବା ଜନଜାତି ଶ୍ରେଣୀ ଅନ୍ତର୍ଭୁକ୍ତ ହୋଇଥିବାବେଳେ କୌଣସି କାରଣରୁ ସରକାର ଏମାନଙ୍କୁ ତଫସିଲଭୁକ୍ତ ଜାତି କିମ୍ବା ଉପଜାତିର ତାଲିକାଭୁକ୍ତ କରି ପାରି ନାହାନ୍ତି । ଏମାନେ ସାଧାରଣତଃ ଆଦିବାସୀ, ହରିଜନ ସଂପ୍ରଦାୟର ହୋଇଥିବାବେଳେ ସରକାରୀ ନଥିରେ ଏମାନଙ୍କୁ ସାଧାରଣବର୍ଗ ଭାବେ ସୂଚେଇ ଦିଆଯାଇଛି । ସେଥିନେଇ ମଧ୍ୟ ମାମଲା କୋର୍ଟକଚେରୀରେ ଗଡ଼ୁଛି । କିନ୍ତୁ, ଏମାନଙ୍କର କି ଯାଉଛି?

କାଗଜପତ୍ରରେ ଏମାନଙ୍କୁ ସାଧାରଣ ବର୍ଗର କରି ଦିଆଯାଇଥିବାରୁ ଏମାନେ ସରକାରଙ୍କ କୌଣସି ବିକାଶମୂଳକ କାର୍ଯ୍ୟକ୍ରମର ସୁବିଧା ନେଇପାରୁ ନାହାନ୍ତି । ଏହି 'ଝରା' ଜାତିର ଲୋକମାନଙ୍କର ସାଙ୍ଗିଆ ଧୀବର, ପେଣ୍ଡେଇ, ଦେହୁରୀ, ବେହେରା, ପାତ୍ର ହୋଇଥିବାବେଳେ ଏମାନେ ସାଧାରଣ ବର୍ଗର । ସାଧାରଣତଃ, କେନ୍ଦୁଝର ଜିଲ୍ଲାରେ ଧୀବର, ପେଣ୍ଡେଇ, ଦେହୁରୀ, ବେହେରା, ପାତ୍ର ସାଙ୍ଗିଆ ଧାରୀମାନେ ଆଦିବାସୀ କିମ୍ବା ହରିଜନ ଶ୍ରେଣୀର ହୋଇଥାନ୍ତି, ମାତ୍ର ଏହି 'ଝରା' ଜାତିର ଲୋକେ ଏହି ସାଙ୍ଗିଆ ଧାରଣ କରିଥିବା ସତ୍ତ୍ୱେ ଏମାନେ ସାଧାରଣ ବର୍ଗ ଅନ୍ତର୍ଭୁକ୍ତ । ଏହା ହିଁ ଆଶ୍ଚର୍ଯ୍ୟ ।

କେନ୍ଦୁଝର ଜିଲ୍ଲାର ତେଲକୋଇ, ବାଂଶପାଳ ଓ ହରିଚନ୍ଦନପୁର ବ୍ଲକ୍‌ର ଦୁର୍ଗମ ପାହାଡିଆ ଜଙ୍ଗଲ ଅଞ୍ଚଳରେ ଏହି 'ଝରା' ଜାତିର ଲୋକେ ବସବାସ କରନ୍ତି । ଖରାଦିନିଆ ଏକ ଅପରାହ୍ଣରେ ଆମେ ବାଂଶପାଳ ବ୍ଲକ୍‌ର ଗୋବିନ୍ଦପୁର ଗାଁରେ ପହଞ୍ଚିଲାବେଳକୁ ଗାଁଟି ଥାଏ ଶୁନ୍‌ଶାନ୍ । କାରଣ ବୁଝୁବୁଝୁ ଜଣାପଡିଲା, ଗାଁର ସବୁ ଲୋକ ଗାଁ ପାଖ ଦେଇ ବହି ଯାଇଥିବା ମାଙ୍କଡା ନଈକୁ ଯାଇଛନ୍ତି । ଏହି ଗାଁଟିରେ ପାଖାପାଖି ୫୦ ପରିବାର 'ଝରା' ସଂପ୍ରଦାୟର ଲୋକେ ବାସ କରନ୍ତି । ଗାଁ ନିକଟ ଦେଇ ବହି ଯାଇଛି ମାଙ୍କଡା ଓ କଖାରୁଆ ଭଳି ଦୁଇଟି ପାହାଡିଆ ନଈ । ଏହି ପାହାଡିଆ ନଈ ଦୁଇଟିର ଜଳ ସ୍ରୋତ ପ୍ରଖର । ଆମେ ଗାଁରେ ପହଞ୍ଚିଲାବେଳକୁ ପାଖାପାଖି





କୋଡିଏରୁ ଉର୍ଦ୍ଧ୍ୱ ପୁରୁଷ ଓ ମହିଳା ନଈ ମଧ୍ୟରେ ପଶି କ'ଣ କରୁଥିବାର ଦେଖିଲୁ । ଏମାନେ ସମ୍ଭବତଃ ନଦୀରୁ ମାଛ ଧରୁଥାଇ ପାରନ୍ତି ବୋଲି ପ୍ରଥମେ ଆମର ଧାରଣ ହୋଇଥିଲା, ମାତ୍ର ପରେପରେ ଆମର ସେଇ ଧାରଣା ଭୂଲ୍ ପ୍ରମାଣିତ ହୋଇଥିଲା । ବୁଝୁବୁଝୁ ଜଣାପଡିଲା, ଏମାନେ ପ୍ରତ୍ୟୟ ନଦୀରୁ ସୁନା ସଂଗ୍ରହ କରିଥାନ୍ତି । ସେମାନଙ୍କ ଭାଷାରେ ବୁଝିଲେ, ମାଙ୍ଗଡା ନଈରେ ଝରମାନେ ସୁନା ଝରାଇବା କାମ କରୁଥିଲେ । ଧାଡିଧାଡି ହୋଇ ପୁରୁଷ ଓ ମହିଳାମାନେ ନଈ ବାଲିରୁ ଏହି ସୁନା ଝରେଇବା କାମରେ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଲାଗି ପଡିଥାନ୍ତି । ସେମାନଙ୍କର ଏହି ସୁନା ଝରେଇବା କାମଟି ନିହାତି ଭାବେ ଆମକୁ ଅତି ବିଚିତ୍ର ଭଳି ମନେହେଲା । ପ୍ରଥମେ ବିଶ୍ୱାସ କରିହେଲାନି । କିଛି ସମୟ ଅପେକ୍ଷା କରିବା ପରେ, ନଈ ବାଲିରୁ ସୁନା ମିଳେ ବୋଲି ପ୍ରକୃତରେ ଏକ ବିଶ୍ୱାସ ସୃଷ୍ଟି ହେଲା । ସେମାନଙ୍କ ଫଳାରେ ସୁନାର ଗୁଣ୍ଡସବୁ ଝଲମଲ କରି ଉଠୁଥିବାର ଦୃଶ୍ୟ ଦେଖିବା ପରେ ପ୍ରକୃତରେ ଦୁନିଆରେ ଏଭଳି ଏକ ଚମତ୍କାର କାମ ରହିଛି ବୋଲି ହୃଦବୋଧ ହେଲା ।

ଝରାମାନେ ସୁନା ସଂଗ୍ରହ ପାଇଁ ମୁଖ୍ୟତଃ ତିନୋଟି ସରଞ୍ଜାମର ବ୍ୟବହାର କରିଥା'ନ୍ତି । କାଠ ନିର୍ମିତ ଏକ ବଡ଼ ଆକାରର କଡ଼େଇ ଯାହାକୁ **ଫଳା** କହନ୍ତି, କାଠ ନିର୍ମିତ ଏକ ଛୋଟ କାଙ୍ଗୁଲା ଭଳି ଯାହାକୁ **କିଝାରୀ** କୁହାଯାଏ । ଏହା ସାଙ୍ଗକୁ ଲୁହାରେ ନିର୍ମିତ ଏକ ଛୋଟ କାଙ୍ଗୁଆ

ଭଳି ଯନ୍ତ୍ରକୁ ଝରାମାନେ **ରୁତୁଣୀ** ବୋଲି କହିଥାନ୍ତି । ଏହି ତିନୋଟି ସରଞ୍ଜାମ ସାହାଯ୍ୟରେ ଝରାମାନେ ବଂଶାନୁକ୍ରମିକ ଭାବେ ନଦୀ, ପାହାଡ ଓ ଅନ୍ୟାନ୍ୟ ଛୋଟବଡ ଜଳ ଉତ୍ସମାନଙ୍କରୁ ସୁନା ଝରା କାମ କରି ଆସୁଛନ୍ତି । ଜଣେ ଝରା ଲୋକଟିଏ ପାଙ୍ଗରେ ଫଳା, ନିଝାରୀ ଓ ରୁତୁଣୀ ଧରି ନଈ, ପାହାଡ ଆଡିକି ଚାଲିଗଲାମାନେ ବୁଝିବ ସେମାନେ ସୁନା ସଂଗ୍ରହ କାମକୁ ବାହାରିଲେ ।

କେନ୍ଦୁଝର ଜିଲ୍ଲା ଏକ ଖଣିଜ ସଂପଦଭରା ଜିଲ୍ଲା ଭାବେ ସମଗ୍ର ଭାରତବର୍ଷରେ ଜଣାଶୁଣା । ଏ ଜିଲ୍ଲାର ମାଟି ଗର୍ଭରେ ଲୁହା, କ୍ରୋମାଇଟ୍, ବକ୍ସାଇଟ୍, ମାଙ୍ଗାନିଜ୍, ଅଭ୍ର, ଡୋଲାମାଇଟ୍ ଏବଂ ସୁନା ଭଳି ବହୁ ମୂଲ୍ୟବାନ୍ ଖଣିଜ ସଂପଦ ଭରି ରହିଛି । ଜିଲ୍ଲାର ତେଲକୋଇ, ବାଂଶପାଳ, ହରିଚନ୍ଦନପୁର ଅଞ୍ଚଳରେ ସୁନା ଖଣି ଥିବାର ମଧ୍ୟ ସର୍ଭେ ରିପୋର୍ଟରୁ ଜଣାପଡିଛି । ଏଠାରେ ଥିବା ପାହାଡ ଓ ନଦୀ ଗର୍ଭରେ ପର୍ଯ୍ୟାପ୍ତ ମାତ୍ରାରେ ସୁନା ଗଛିତ ହୋଇ ରହିଛି । ପାହାଡିଆ ଅଞ୍ଚଳରେ ମଧ୍ୟ ସୁନା ମିଳୁଥିବାର ଏହି ଲୋକଙ୍କଠାରୁ ଜଣାପଡିଥିଲା । ଅନେକ ସମୟରେ ନଈର ପାଣି ସୁଅରେ ସୁନାର ଗୁଣ୍ଡସବୁ ଭାସି ଯାଇଥାଏ । ତେବେ ନଦୀ ଗର୍ଭରେ ଥିବା ବାଲି, କାଦୁଅକୁ ଏମାନେ ରୁତୁଣୀ ସାହାଯ୍ୟରେ ଖୋଳି ଫଳା ମଧ୍ୟରେ ସଂଗ୍ରହ କରନ୍ତି । ଫଳାରେ ପୂରେଇ ଏହି ସୁନା ମିଶା ବାଲିକାଦୁଅକୁ ପାଣି ସାହାଯ୍ୟରେ ଏପରି ସତର୍କତାର ସହ ଚହଲାନ୍ତି (ଝରାନ୍ତି), କିଛି ସମୟ ପରେ ସେଥିରୁ ବୁନ୍ଦାବୁନ୍ଦା ହୋଇ ସୁନାର କଣିକାମାନ ଚହଟି ଉଠିଥାଏ । ମାତ୍ର, ଏହି ପ୍ରକ୍ରିୟାଟି ବହୁ କଷ୍ଟଦାୟକ ଓ ଶ୍ରମସାପେକ୍ଷ । ଦିନ ସାରା ପରିଶ୍ରମ କରି ଝରାଟିଏ ମାତ୍ର ଧାନେ କିମ୍ବା ଦୁଇ ଧାନ ସୁନାର କଣିକା ସଂଗ୍ରହ କରିଥାଏ, ଯାହାର ବଜାର ମୂଲ୍ୟ ୪୦୦ରୁ ୬୦୦ ଟଙ୍କା । ମାତ୍ର, ଏଠାକାର ବଣିଆମାନେ ଗୋଟିଏ ଧାନ ସୁନା ମାତ୍ର ୫୦ରୁ ୧୦୦ ଟଙ୍କା ଦେଇ ଏହି ଝରାମାନଙ୍କଠାରୁ ସଂଗ୍ରହ କରି ନେଇଥାନ୍ତି । ଝୁଂପୁରା ଅଞ୍ଚଳର ମୁସଲମାନ୍ ବଣିଆମାନେ ଏହି ଝରାମାନଙ୍କଠାରୁ ଶାଗମାଛ ଦରରେ ସୁନା କିଣି ନେଇ ସେମାନେ କୋଟିପତି ପାଲଟିଥିବାବେଳେ ପାହାଡ ଜଙ୍ଗଲରେ ପଡି ରହିଥିବା ଝରାମାନେ ଯେଉଁ ଗରିବକୁ ସେହି ଗରିବ ହୋଇ ରହିଯାଇଛନ୍ତି ।

ଗୋବିନ୍ଦପୁର ଗାଁର ବଳରାମ ଧୀବର, ଇନ୍ଦୁ ଧୀବର, ସୁଶୀଳା ଧୀବର, କୋକିଳା ଧୀବରଙ୍କ କହିବା ଅନୁସାରେ, ଅତି ବେଶିରେ ଦିନକୁ ସେମାନେ ଦୁଇ ତିନି ଧାନ ପର୍ଯ୍ୟନ୍ତ ସୁନା ସଂଗ୍ରହ କରିପାରନ୍ତି । ଦିନେ ଦିନେ କିଛି ମିଳେନା, ପୁଣି କେବେ କେବେ ଦଶ ଧାନ ପର୍ଯ୍ୟନ୍ତ ଜଣେ ଝରା ସୁନା ସଂଗ୍ରହ କରିଥାନ୍ତି । ଏହା ଏକ ଅନିଶ୍ଚିତ ପ୍ରକ୍ରିୟା । ସବୁଠୁ ବଡ଼ ଦୁଃଖର କଥା ହେଉଛି, ଏହି ଝରାମାନେ ଦିନକୁ ଯାହା କିଛି ରୋଜଗାର କରନ୍ତି, ତାହାକୁ ନିଶାପାଣିରେ ଉଡେଇ ଦିଅନ୍ତି । ମାତ୍ର, କିଛି ଝରା ଏହି ସୁନା ସଂଗ୍ରହ କରି କିଛି ଉନ୍ନତି ସାଧନ କରିପାରିଛନ୍ତି । ଗାଁର ଜଣେ ଝରା ଲୋକ ବଳରାମ ଧୀବର ସୁନା ଝରେଇ କିଛି ଜମି କିଣିପାରିଛନ୍ତି ବୋଲି କହିଲା ବେଳେ ଆମକୁ ଖୁସି ଲାଗିଥିଲା ।

ଝରାମାନେ ସାଧାରଣତଃ, ନିକଟସ୍ଥ ପାହାଡ ଉପରକୁ ଯାଇ ପଥରକୁ ଗୁଣ୍ଡ କରି ସେହି ଗୁଣ୍ଡ ପଥରକୁ ପାଣିରେ ଝରେଇ ସୁନା ସଂଗ୍ରହ କରିଥାନ୍ତି । ଏହା ସହିତ ନଦୀ, ନାଳର ପାଣିରୁ ସୁନା ଝରେଇବା କାମ ଏମାନଙ୍କ ପାଇଁ ଅପେକ୍ଷାକୃତ ସହଜ ହୋଇଥାଏ । ସେମାନେ ସାଧାରଣତଃ, ଡଷ୍ଟ୍ (ଗୁଣ୍ଡ) ଆକାରରେ ସୁନା ପାଇଥାନ୍ତି । ଏହାକୁ ନିଆଁରେ ପୋଡି ଛୋଟଛୋଟ ଗୁଳା ସୋରିଷ ଦାନା ଆକାରରେ ଗୁଳି କରି ଧାନ ବା ରତି ଆକାରରେ ବଣିଆମାନଙ୍କୁ ବିକ୍ରି କରିଥାନ୍ତି । ବଣିଆମାନେ ଏମାନଙ୍କୁ ଶୋଷଣ କରିଥାନ୍ତି ବୋଲି ସାଧାରଣ ଅଭିଯୋଗ ହୋଇଥାଏ । ସୁନା ଝରେଇ ଦୈନିକ ହାରାହାରି ୧୦୦ରୁ ୩୦୦ ଟଙ୍କା ପର୍ଯ୍ୟନ୍ତ ରୋଜଗାର ହୋଇଥାଏ ବୋଲି ଗାଁର ବସନ୍ତ ଧୀବର ଓ ରଜନୀ ଧୀବର ଆମକୁ କହିଥିଲେ । ମାତ୍ର, ଏହି ଟଙ୍କା କୁ ସେମାନେ ନିଶା ପାଣିରେ ଉଡେଇ ଦେଉଥିବା କଥାକୁ ସେମାନେ ସ୍ୱୀକାର କରିଥିଲେ । ନଚେତ୍ ପାଣିରୁ ସୁନା ଛାଣୁଥିବା ଏହି ସ୍ୱର୍ଣ୍ଣଲକ୍ଷ୍ମୀ, ବିଶ୍ୱକର୍ମାମାନେ ଆଜି ଗରିବ ଥାନ୍ତେ ନା କ'ଣ? ଏହା ହିଁ ଦୁର୍ଭାଗ୍ୟଜନକ । ଅପରପକ୍ଷେ, ଏମାନେ ପାରଂପରିକ ଉପାୟରେ ସୁନା ସଂଗ୍ରହ କରୁଥିବାରୁ ଏଥିନେଇ ଆହୁରି ଅଧିକ ଜ୍ଞାନକୌଶଳର ଆବଶ୍ୟକତା ରହିଛି । ସରକାର ହୁଅନ୍ତୁ ବା ପ୍ରଶାସନ, ଏମାନଙ୍କ ପାଇଁ ଆଧୁନିକ ଜ୍ଞାନକୌଶଳର ସୁବିଧା କରିବା ସାଙ୍ଗକୁ ଏ ଦିଗରେ ଅଧିକ ପ୍ରୋତ୍ସାହନ ଯୋଗେଇ ଦେଇ ପାରିଲେ ପାଣି ମୁହଁରେ ଭାସି ଯାଉଥିବା ସୁନାକୁ ଏମାନେ ଆହୁରି ଅଧିକ ମାତ୍ରାରେ ସଂଗ୍ରହ କରିପାରନ୍ତେ ।

## ପ୍ରାକୃତିକ ସଂପଦର ପ୍ରାଚୁର୍ଯ୍ୟ କେନ୍ଦୁଝର ପାଇଁ 'ଆଶିର୍ବାଦ' ନା 'ଅଭିଶାପ'?

ଶାନ୍ତ ସବୁଜ ବନାନୀ, ରାଶିରାଶି ପାହାଡ, ଶୀତୁଆ କୁହୁଡି ଘେରା ସକାଳ, ବିସ୍ତୃତ ସୋରିଷ କିଆରି, ସବୁଜ ଧାନକ୍ଷେତ, ଘଞ୍ଚ ଶାଳ ବଣର ଛାତି ଚିରି ଲମ୍ବି ଯାଇଥିବା ବଣୁଆ ଅଣଓସାରିଆ ପିଚୁ ରାସ୍ତା, ଉଠାଣି-ଗଡ଼ାଣି ଦେଇ ଲମ୍ବି ଯାଇଥିବା ପାହାଡିଆ ଘାଟି ରାସ୍ତା, ବଲାଣୀ-କିରିବୁରୁର ଶୀତ, କାଂଜିପାଣି ଘାଟିର ବରଫପାତ, ଯୋଡା-ବଡ଼ବିଲ୍‌ର ଘଞ୍ଚ ପାହାଡ, ଜଙ୍ଗଲ ଓ ଝରଣା ଆଜି ସ୍ୱପ୍ନ ପାଲଟିଛି । କୋଉ ପୁରୁଣାକାଳିଆ କେନ୍ଦୁଝରିଆ ବୁଢାଟିଏ ସ୍ୱପ୍ନରେ ଭାବି ନଥିବ ଏଭଳି ମନଲୋଭା ପ୍ରାକୃତିକ ଶୋଭାରାଜିରେ ଭରା କେନ୍ଦୁଝର ଜିଲ୍ଲା ଦିନେ ମରୁଭୂମି ପାଲଟିବ?

ପଚାଶ ବର୍ଷ ତଳର ଯୋଡା-ବଡ଼ବିଲ୍ ଏବଂ ଆଜିର ଯୋଡା-ବଡବିଲ ମଧ୍ୟରେ ସୃଷ୍ଟି ହୋଇଛି ଆକାଶ ପାତାଳ ଫରକ । ପୁରୁଣା ଲୋକଙ୍କ କହିବା ଅନୁସାରେ, ବାଘ ଭୟରେ ଦିନବେଳା ଯୋଡାରୁ ଭଦ୍ରାସାହି ଦେଇ ବଡ଼ବିଲ୍‌କୁ ଯାଇ ହୁଏନା । ଆଉ କେବେ ଭଦ୍ରାସାହି-ରାଜାମୁଣ୍ଡା ଭାୟା କାଶିଆ, ଗୁଆଲି, କୋଇଡା ଦେଇ ଯାଇଥିବା ଏବେକାର ୨୧୫ ନମ୍ବର ଜାତୀୟ ରାଜପଥ

ଉପରେ କେବେ ଥରେ ନିରୋଳାରେ (ଟ୍ରକ୍ ଜାମ୍ ନଥିବାବେଳେ) ବୁଲି ଆସିଲେ ପଚାଶ ବର୍ଷ ତଳେ ଏହି ଶାଳ ଜଙ୍ଗଲ, ପାହାଡ ଘେରା ରାସ୍ତାଟି କେତେ ଶାନ୍ତ ଶୀତଳ ଓ ପ୍ରାକୃତିକ ଶୋଭାରେ ଭରପୂର ଥିବ ତାହା ଅନୁମାନ କରିହୁଏ । ଆଜି ଏସବୁ ସ୍ୱପ୍ନ ପାଲଟିଛି ।

ବଡ଼ବିଲ ନିକଟସ୍ଥ କାଶିଆ ପାହାଡ ଓ ଜିଲିଂ-ଲଙ୍ଗଲଟା ପାହାଡର ଘଞ୍ଚ ସବୁଜ ଶାଳ ଜଙ୍ଗଲ ଘେରା ମନୋରମ ପରିବେଶ ଏକଦା କେନ୍ଦୁଝର ଜିଲ୍ଲାର ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳ ଥିଲା । ମାତ୍ର, ଆଜି ଏହି ଦୁଇଟି ପ୍ରାକୃତିକ ଶୋଭାଭରା ପାହାଡ ଇତିହାସ ପାଲଟିଛି । ଏପେଲ୍ ମାଇନିଂର ପାହାଡଭଙ୍ଗା ଅସୁର ସଦୃଶ କ୍ରସର୍‌ର ପାକୁଳିରେ ଆଜି କାଶିଆ-ବରପଦା ଓ ଜିଲିଂ-ଲଙ୍ଗଲଟା ପାହାଡ ପୁରା ହଜମ ହୋଇଯାଇଛି । କେନ୍ଦୁଝର ଜିଲ୍ଲାରୁ ହଜି ଯାଇଥିବା ଏହି ଦୁଇଟି ପାହାଡକୁ କେବଳ ଉଦାହରଣ ଭାବେ ନିଆଯାଇପାରେ । ମାତ୍ର, କେନ୍ଦୁଝର ଜିଲ୍ଲାର ଅନେକ ଆକର୍ଷଣୀୟ ପାହାଡ ଓ ଝରଣା ଲୁହା ଖଣିରେ ଲୀନ ହେବାକୁ ବସିଛି ।

କେନ୍ଦୁଝର ଜିଲ୍ଲାର ଟୋପାଡିହି, ଗୁଆଲି, ଦଳପାହାଡ, କୋହ୍ଲ ରୋଇଡା, ଠାକୁରାଣୀ ପାହାଡ, ଟଣ୍ଡୋ, ସିଲିଯୋଡା, ମୁର୍ଗା ପାହାଡ, ବଳଦା-ପଳାସା, ସେରେଣ୍ଡା, କଟାସାହି, ଯୋଡାର ଦେଓଝର, କଟାମାଟି, ବଉଳା ପାହାଡ, ଦୈତାରୀ, ଉର୍ମୁଣ୍ଡା, କୁଣ୍ଡୁରୁପାଣି, ବାମେବାରୀ, ଚମକପୁର, ଗୁରୁବେଡା, ବାଂଶପାଣି, ଗନ୍ଧମାର୍ଦ୍ଦନ, ଇଞ୍ଜାନିଝରନ୍, ରୁଡୁକେଲା, ଲହଣ୍ଡା, ଖୁଣ୍ଟପାଣି, ରାଇକା କଳାପର୍ବତ, ମାଙ୍କଡ଼ନଚା, ଖଜାରୁ, ଖଣ୍ଡାଧାର, ରଙ୍ଗା, ଟମ୍‌କା, ବଲାଣୀ, ଯୋଡା, ଖଣ୍ଡବନ୍ଧ, ସିଦ୍ଧମଠ, କାସିଆ-ବରପଦା, ଜିଲିଙ୍ଗ୍-ଲଙ୍ଗଲଟା, ଜଜାଙ୍ଗ, ମାଲାଂଟୋଲି ଭଳି ଅନେକ ପ୍ରାକୃତିକ ଶୋଭାଭରା ବଣ ପାହାଡପୂର୍ଣ୍ଣ ଇଲାକା ଆଜି କାଳର କରାଳ ଗର୍ଭରେ ହଜି ଯିବାକୁ ବସିଛି । ଏସବୁ ଘଞ୍ଚ ବଣ ପାହାଡିଆ ଇଲାକା ଆଜି ମରୁଭୂମି ପାଲଟିଛି । ଏହସବୁ ପାହାଡରେ ବସିଛି ବିରାଟ ବିରାଟ କ୍ରସର୍ ଓ ନିୟମିତ ଭଙ୍ଗା ଚାଲିଛି ପାହାଡର ଛାତି ।

ଦିନେ ଏଠାରେ ଅନେକ ପାହାଡିଆ ଝରଣା ପ୍ରବାହିତ ହେଉଥିଲା । ମାତ୍ର, ଖଣି ଖୋଳାଳିମାନେ ଆଖିବୁଜା ଖଣି ଖୋଳି ଏସବୁ ପାହାଡ, ଝରଣାକୁ ବିଲୁପ୍ତ କରି ଦେଇଛନ୍ତି । ପଚାଶ ବର୍ଷ ତଳେ କେନ୍ଦୁଝର ସଦର ମହକୁମାରୁ ଯୋଡା-ବଡ଼ବିଲ୍‌କୁ ଘଞ୍ଚ ଅରଣ୍ୟ ଓ ପାହାଡ ଅତିକ୍ରମ କରି ପହଞ୍ଚିବା କାଠିକର ପାଠ ଭଳି ଲାଗୁଥିଲା । ଯୋଡା-ବଡ଼ବିଲ ଜଙ୍ଗଲ ଓ ହିଂସ୍ରଜନ୍ତୁ ପୂର୍ଣ୍ଣ ଇଲାକାକୁ କେହି ପ୍ରାୟ ଯିବାକୁ ପସନ୍ଦ କରୁ ନଥିଲେ ବୋଲି କେନ୍ଦୁଝରର ପୁରଣାକାଳିଆ ଲୋକମାନେ କହନ୍ତି । ମାତ୍ର, ସେଦିନର ହିଂସ୍ରଜନ୍ତୁ, ପାହାଡ, ଜଙ୍ଗଲପୂର୍ଣ୍ଣ ଯୋଡା-ବଡ଼ବିଲ୍ ଆଜି ମାଳମାଳ ଶିଳ୍ପକାରଖାନା ଓ ଅତ୍ୟାଧୁନିକ ମେସିନ୍, ଟ୍ରକ୍, ଯାନବାହନର ଜଙ୍ଗଲରେ ପରିଣତ ହୋଇଛି । ଯୋଡା-ବଡ଼ବିଲ୍‌ରେ ଗୋଟିଏ ଜଙ୍ଗଲୀ ଗଛ କି ମୁଣ୍ଡିଆ ପାହାଡଟିଏ ଦେଖିବା ସ୍ୱପ୍ନ ହୋଇଯାଇଛି । ଅନେକ ପାହାଡ

ଦର ଭଙ୍ଗା ଅବସ୍ଥାରେ ମୁଣ୍ଡ ଟେକି ତଥାପି ଠିଆ ହୋଇଛନ୍ତି ଏବଂ ସେମାନଙ୍କ କାଳ କେବେ ପୂରିବ ତାହାକୁ ଅପେକ୍ଷା କରିଛନ୍ତି ।

ଅତୀତରେ ଶ୍ରମିକମାନେ ହାତରେ ପାହାଡ ଭାଙ୍ଗି ବର୍ଷବର୍ଷ ଧରି ଯେତିକି ଲୁହାପଥର ସଂଗ୍ରହ କରୁଥିଲେ ଆଜି ମାତ୍ର ଅଧ ଘଣ୍ଟାରେ ତାହାଠୁ ଢେର୍ ଅଧିକ ପରିମାଣରେ ଲୁହାପଥର ଖୋଳାଯାଇ ପାରୁଛି । ଆଧୁନିକ ମେସିନ୍, ଉନ୍ନତ ଯନ୍ତ୍ରପାତି ଓ ଜ୍ଞାନକୌଶଳ ପ୍ରୟୋଗ କରି ଖଣି ମାଲିକମାନେ ରାତାରାତି ପାହାଡକୁ ଖୋଳି ଗୁଣ୍ଡ କରି ଦେଉଛନ୍ତି । ପରିସ୍ଥିତି ଏମିତି ହୋଇଛି, ଦୁଇ ଦିନ ତଳେ ଦେଖିଥିବା ସବୁଜ ସୁନ୍ଦର ମନଲୋଭା ପାହାଡ ଗୋଟିଏ ସପ୍ତାହ ପରେ ଦେଖିବାକୁ ମିଳୁନି । ଏ ତ' ଗଲା ପାହାଡ, ପର୍ବତ ଓ ଜଙ୍ଗଲର କଥା । ମାତ୍ର,ବ୍ୟାପକ ଖଣି ଖନନ ଓ ଦ୍ରୁତ ଶିଳ୍ପାୟନ କାରଣରୁ କେନ୍ଦୁଝର ଜିଲ୍ଲାର ଅନେକ ଜଳ ଉତ୍ସ, ନଦୀ, ନାଳ, ଝରଣାର ଅବସ୍ଥା ମଧ୍ୟ ଅନୁରୂପ ହୋଇଛି ।

ବ୍ୟାପକ ଖଣି ଖନନ ଓ ଦ୍ରୁତ ଶିଳ୍ପାୟନ କାରଣରୁ ଜିଲ୍ଲାର ଅନେକ ଚିରସ୍ରୋତା ନଦୀ ପୋତି ହୋଇଗଲେଣି । ଏହି କାରଣରୁ ଜିଲ୍ଲାର ପ୍ରମୁଖ ନଦୀ ପୁଣ୍ୟତୋୟା ବୈତରଣୀର ଅବସ୍ଥା ଏବେ ସଂକଟାପନ୍ନ ହୋଇପଡିଛି । ସେହିଭଳି ଅନ୍ୟାନ୍ୟ ନଦୀ ଯଥା- କାନ୍‌ଝାରୀ, ଅରଡେଇ, ସୀତା, କୁକୁରକଟା, କୁଶେଇ, ମୁଷଳ, ସମାକୋଇ, ମାଛକାନ୍ଦଣା, କାରୋ, ସାଳନ୍ଦୀ, ରେମାଳ, ହନୁମନ୍ତିଆ ଭଳି ଚିରସ୍ରୋତା ନଦୀ ମଧ୍ୟ ସମୟ ସ୍ରୋତରେ ହଜିଯିବାକୁ ବସିଲେଣି । ଅପରପକ୍ଷେ, ମୃତ୍ୟୁପ୍ରାୟ ଏସବୁ ନଦୀମାନଙ୍କରୁ ପାଣି ଶୋଷି ନେବାକୁ ଅନେକ ଶିଳ୍ପ କାରଖାନା ଏବେ ଅଣ୍ଟା ଭିଡି ବାହାରି ପଡିଲେଣି ।

ପ୍ରଚୁର ମାତ୍ରାରେ ଲୁହାପଥର ଗଚ୍ଛିତ ଥିବାରୁ ଏବେଏବେ ଖଣ୍ଡାଧାର ଓ ହାଣ୍ଡିଭଙ୍ଗା ଭଳି ଜଳପ୍ରପାତ ପ୍ରତି ବିପଦ ସୃଷ୍ଟି ହୋଇଛି । ଏହା ସହିତ ଦ୍ରୁତ ଶିଳ୍ପାୟନ ଓ ଖଣି ଖନନ ଯୋଗୁଁ କେନ୍ଦୁଝର ଜିଲ୍ଲାର ପର୍ଯ୍ୟଟନ ଶିଳ୍ପ ମଧ୍ୟ ପ୍ରଭାବିତ ହୋଇଛି । ଘଟଗାଁ ମା' ତାରିଣୀଙ୍କ ପୀଠକୁ ଛାଡି ଦେଲେ ଜିଲ୍ଲାର ଅନ୍ୟାନ୍ୟ ପ୍ରାକୃତିକ ପର୍ଯ୍ୟଟନସ୍ଥଳ ଯଥା- ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ପବିତ୍ର ଗୋନାସିକା, ଦେଓଝରର ମୁର୍ଗା ମହାଦେବ, ସୀତାବିଞ୍ଜି , ବଡ଼ଘାଗରା, ସାନଘାଗରା ଜଳପ୍ରପାତ, ଭୀମକୁଣ୍ଡ, ଗୁଣ୍ଡିଚାଘାଗି, ବଲାଣୀ-କିରିବୁରୁ, କାଶିଆ, କଳାପାହାଡ, ଜିଲିଂ-ଲଙ୍ଗଲଟା, ଦେିତାରୀ, ଠାକୁରାଣୀ, ବଲାଣୀ, ଯୋଡା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାସିଆ-ବରପଦା, ଜଜାଙ୍ଗ, ମାଲାଂଟୋଲି, ଗନ୍ଧମାର୍ଦ୍ଦନ, ଖଣ୍ଡାଧାର ଭଳି ପର୍ଯ୍ୟଟନ ସ୍ଥଳକୁ ବେଶି ସଂଖ୍ୟାରେ ପର୍ଯ୍ୟଟକମାନେ ଆସୁ ନାହାନ୍ତି । ଖଣି ଅଞ୍ଚଳରେ ବୃଦ୍ଧି ପାଉଥିବା ପ୍ରଦୂଷଣ, ଟ୍ରାଫିକ୍ ଜାମ୍, ଅପରାଧପ୍ରବଣତା ପାଇଁ ପର୍ଯ୍ୟଟକମାନେ ଏଠାକୁ ଆସିବାକୁ ମନ ବଳାଉ ନାହାନ୍ତି ।

ଏହି ଜିଲ୍ଲାର ମାଟି ତଳେ ପ୍ରଚୁର ପରିମାଣର ଲୁହାପଥର, ମାଙ୍ଗାନିଜ୍, ଡୋଲାମାଇଟ୍, କ୍ରୋମାଇଟ୍ ଭଳି ଖଣିଜ ପଦାର୍ଥ ଗଚ୍ଛିତ ହୋଇଥିବାରୁ ଏହା ଆଶିର୍ବାଦ ବଦଳରେ ଅଭିଶାପ

ପାଲଟିଛି । ବ୍ୟାପକ ଖଣି ଖନନ କାରଣରୁ କେନ୍ଦୁଝର ଜିଲ୍ଲା ଜଙ୍ଗଲଶୂନ୍ୟ ହେବାକୁ ବସିଛି । ଜିଲ୍ଲାର ଜଙ୍ଗଲ ଅଞ୍ଚଳରେ ଆଜି ଶିଶୁ, ଶାଳ, ଶାଗୁଆନ୍, କୁସୁମ, ଅସନ, ଅର୍ଜୁନ ଆଦି ବହୁମୂଲ୍ୟ ବୃକ୍ଷ ଏବଂ ଲଘୁ ବନଜାତ ଦ୍ରବ୍ୟ ତେନ୍ତୁଳି, ଲାଖ, ଝୁଣା, ମହୁ, ମହୁଲ, ଶିଆଳି ପତ୍ର, ଶାଳ ପତ୍ର, ଅଁଳା, ବାହାଡା, ହରିଡା, କେନ୍ଦୁ ପତ୍ର, ବେଣା ଚେର, ଛତୁ, ଶାଳ ମଞ୍ଜି, କୁସୁମ ମଞ୍ଜି, ଚାର ମଞ୍ଜି, କରଞ୍ଜ ଦାନ୍ତକାଠି, କରଞ୍ଜ ମଞ୍ଜି ସ୍ୱପ୍ନ ପାଲଟିଛି । ଖଣି ଖନନ ଓ ଶିଳ୍ପାୟନ କାରଣରୁ ଏ ଅଞ୍ଚଳରୁ ଧାନ, ମାଣ୍ଡିଆ, ମକା, ଶୋରିଷ, ରାଶି, ଗହମ ଭଳି ପାରଂପରିକ ଚାଷ ଧ୍ୱଂସ ପାଇଯିବା ସହିତ ଜୁଆଙ୍ଗ, ଭୂୟାଁ, ବାଥୁଡି, ମୁଣ୍ଡା, କୋହ୍ଲ, ସାନ୍ତାଳଙ୍କ ଭଳି ଆଦିମ ଜନଜାତି ମଧ୍ୟ ପ୍ରଭାବିତ ହୋଇଛନ୍ତି ।

ବ୍ୟାପକ ମାତ୍ରାରେ ଖଣି ଖନନ ଓ ଶିଳ୍ପାୟନ ଫଳରେ ଯୋଡା-ବଡ଼ବିଲ୍ ଅଞ୍ଚଳର ପରିବେଶ ବିପର୍ଯ୍ୟସ୍ତ ହୋଇପଡିଛି । ଆଜି ଯୋଡା-ବଡ଼ବିଲ୍ ସହର ଏସିଆ ମହାଦେଶର ୨୦ଟି ଅତି ପ୍ରଦୂଷିତ ସହର ମଧ୍ୟରେ ଶୀର୍ଷରେ ରହିଛି । ଯୋଡା-ବଡ଼ବିଲ୍‌ର ଶ୍ରମିକ ବସ୍ତି ଅଞ୍ଚଳରେ ଜୀବନଯାତ୍ରା ବିପନ୍ନ ହୋଇ ପଡିଛି । ଏ ଅଞ୍ଚଳରେ ପ୍ରଦୂଷଣର ମାତ୍ରା ଏତେ ଉତ୍କଟ ତାହା ବର୍ଣ୍ଣନା କରି ହେବନି । ରିପୋର୍ଟ ଅନୁଯାୟୀ, ସମଗ୍ର ରାଜ୍ୟରେ ୩୧୨୦ ନିୟୁତ ଟନ୍ ଲୁହାପଥର ଗଛିତ ଥିବାବେଳେ କେବଳ କେନ୍ଦୁଝର ଜିଲ୍ଲାରେ ୨୩୭୧ ମିଲିୟନ୍ ଟନ୍ ଲୁହାପଥର ଗଛିତ ଅଛି । ସେହିଭଳି କେନ୍ଦୁଝର ଜିଲ୍ଲାରେ ୨୮·୪୭୦ ମିଲିୟନ୍ ଟନ୍ ମାଙ୍ଗାନିଜ୍, ୨୪·୪୦ ମିଲିୟନ୍ ଟନ୍ କ୍ରୋମାଇଟ୍, ୧୦ ମିଲିୟନ୍ ଟନ୍ ଚାଇନା କ୍ଲେ, ୧୪·୧୦ ମିଲିୟନ୍ ଟନ୍ କ୍ୱାର୍ଜ, ୭·୯୦ ମିଲିୟନ୍ ଟନ୍ ନିକେଲ୍, ୧·୨୦ ମିଲିୟନ୍ ଟନ୍ ଭାନାଡିୟମ୍ ଓ କିଛି ମାତ୍ରାରେ ସୁନା ମଧ୍ୟ ଗଚ୍ଛିତ ରହିଛି । ଆଉ ଏସବୁ ପ୍ରାକୃତିକ ସମ୍ପଦ ହିଁ କେନ୍ଦୁଝର ପାଇଁ ଆଶିର୍ବାଦ ବଦଳରେ ଅଭିଶାପର କାରଣ ପାଲଟିଛି । ଏହାକୁ ନେଇ ଆରମ୍ଭ ହୋଇଛି ଚୋରି, ଲୁଟ୍ ଓ ଶୋଷଣ । ୨୦୦୯ ମସିହା ପର୍ଯ୍ୟନ୍ତ କେନ୍ଦୁଝର ଜିଲ୍ଲାରେ ୧୧୯ଟି ଖଣି କାର୍ଯ୍ୟକ୍ଷମ ଥିଲା, ମାତ୍ର ସୌଭାଗ୍ୟବଶତଃ ଆଇନ୍ କାନୁନ୍ କଡ଼ାକଡ଼ି କରାଯିବାରୁ ଆଜି ଅନେକ ଖଣି ବନ୍ଦ ହୋଇଯାଇଛି । ୨୦୦୪ ମସିହାରେ ବିଶ୍ୱ ବଜାରରେ ଖଣିଜ ପଥରର ଚାହିଦା ବୃଦ୍ଧି ପାଇବା ଫଳରେ କେନ୍ଦୁଝରର ବଣ,ପାହାଡକୁ ଖୋଳି ଲୁଟ୍ କରିବାକୁ ଏକ ପ୍ରତିଯୋଗିତା ଆରମ୍ଭ ହୋଇ ଯାଇଥିଲା । ଆଉ ଏହି ଲୁଟ୍ ଓ ଶୋଷଣ ପ୍ରକ୍ରିୟା ୨୦୦୯ ମସିହାର ଶେଷ ଭାଗ ପର୍ଯ୍ୟନ୍ତ ଜାରି ରହିଥିଲା । ସେହି ସମୟ ମଧ୍ୟରେ ଖଣିମାଲିକଙ୍କଠାରୁ ଆରମ୍ଭ କରି ଟ୍ରାନ୍ସପୋର୍ଟର, ଏକ୍ସପୋର୍ଟର, ଟ୍ରକ୍ ମାଲିକ, କ୍ରସର ମାଲିକ, ଖଣିମାଫିଆ, ଚୋରା ବେପାରୀ, ପ୍ରାଶାସନିକ ଅଧିକାରୀ, ଗଣମାଧ୍ୟମ ପ୍ରତିନିଧିଙ୍କ ପର୍ଯ୍ୟନ୍ତ ସମସ୍ତେ ମାଲାମାଲ୍ ହୋଇପାରିଛନ୍ତି । ମାତ୍ର, ସମସ୍ତେ କେନ୍ଦୁଝରକୁ ଲୁଟ୍ କରିଛନ୍ତି, ଏହା ସ୍ୱୀକାର୍ଯ୍ୟ ।

# କେନ୍ଦୁଝର ଜିଲ୍ଲାର ଖଣିଜ ସଂପଦ

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଓ ସଦର ଉପକଣ୍ଠର ବିସ୍ତୀର୍ଣ୍ଣ ଅଞ୍ଚଳ ସମତଳ ହୋଇଥିଲେ ହେଁ ଏହାର ପଶ୍ଚିମ ଅଞ୍ଚଳ ଘଞ୍ଚ ଜଙ୍ଗଲ, ପାହାଡ ପରିପୂର୍ଣ୍ଣ । ଜିଲ୍ଲାର ଉଚ୍ଚତମ ପର୍ବତମାନଙ୍କ ମଧ୍ୟରେ ଗନ୍ଧମାର୍ଦ୍ଦନ (୧୦୭୨ ମିଟର), ମାଙ୍କଡ଼ନଚା (୧୧୧୭ ମିଟର), ଗୋନାସିକା (୯୮୧ ମିଟର) ଏବଂ ଠାକୁରାଣୀ (୯୧୮ ମିଟର) ଆଦି ପର୍ବତର ନାମ ଉଲ୍ଲେଖଯୋଗ୍ୟ । ଜିଲ୍ଲାର ହାରାହାରି ସର୍ବୋଚ୍ଚ ତାପମାତ୍ରା ୪୦ ଡିଗ୍ରୀ ସେଣ୍ଟିଗ୍ରେଡ୍ ହୋଇଥିବାବେଳେ ସର୍ବନିମ୍ନ ତାପମାତ୍ରା ୧୩ ଡିଗ୍ରୀ ସେଣ୍ଟିଗ୍ରେଡ । ଜିଲ୍ଲାର ହାରାହାରି ବାର୍ଷିକ ବୃଷ୍ଟିପାତ ୧୫୩୪.୫ ମିଲିମିଟର । ଏହି ଜିଲ୍ଲାର ସର୍ବପୁରାତନ ରୂପାନ୍ତରିତ ଶିଳା (୩୨୦୦ ନିୟୁତ ବର୍ଷ) ଚଂପୁଆ ଅଞ୍ଚଳରେ ଦେଖିବାକୁ ମିଳେ । ଏହାଛଡା ଗ୍ରାନାଇଟ୍ ଭଳି ଆଗ୍ନେୟ ଶିଳା ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ପରିବ୍ୟାପ୍ତ । କାଳକ୍ରମେ ରାସାୟନିକ ପ୍ରକ୍ରିୟା ଓ ଅନ୍ୟାନ୍ୟ ପ୍ରାକୃତିକ ପ୍ରଭାବରେ ଯଥାକ୍ରମେ ଲୁହା ଓ ଅନ୍ୟାନ୍ୟ ଖଣିଜ ଦ୍ରବ୍ୟ ଏବଂ କୋହ୍ଲାନ୍ ସମୟର ସ୍ତରୀଭୂତ ପ୍ରସ୍ତରଗୁଡିକ ସୃଷ୍ଟି ହୋଇଛି । ସୌରତାପ ଓ ବୃଷ୍ଟିପାତର ପ୍ରଭାବରେ ଶିଳାର ଅବକ୍ଷୟ ଘଟି ମାଙ୍କଡା ପଥର ଓ ବିଭିନ୍ନ ପ୍ରକାର ମୃତ୍ତିକାର ସୃଷ୍ଟି ହୋଇଛି । କେନ୍ଦୁଝର ଜିଲ୍ଲାର ଖଣିଜ ପଦାର୍ଥର ଅନୁସନ୍ଧାନ, ବିକାଶ, ସଂରକ୍ଷଣ ଓ ରାଜସ୍ୱ ଆୟ ପାଇଁ କେନ୍ଦୁଝର ସଦର ମହକୁମାରେ ଭୂ-ତତ୍ତ୍ୱ ଯୁଗ୍ମ ନିର୍ଦ୍ଦେଶକ ଓ ଖଣି ଅଧିକାରୀଙ୍କ କାର୍ଯ୍ୟାଳୟ ଏବଂ

---

ଲୁହାପଥର (ଫାଇନ୍ସ)



ଯୋଡାଠାରେ ଖଣି ଉପ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ ରହିଛି । ଏହି ଜିଲ୍ଲାର ମାଟି ତଳେ ଲୁହାପଥର, ମାଂଗାନିଜ୍ ଓ କ୍ରୋମାଇଟ୍ ବ୍ୟତୀତ ପାଇରୋଫିଲାଇଟ୍, ସୋପ୍ ଷ୍ଟୋନ୍, କ୍ୱାର୍ଜ, କ୍ୱାର୍ଜାଇଟ, ବକ୍ସାଇଟ୍, ଭାନାଡିୟମ, ନିକେଲ, କୋବାଲ୍ଟ, ଚିନାମାଟି, ଡୋଲାମାଇଟ୍, ଚୂନପଥର, ସୁନା, ପ୍ଲାଟିନମ୍, ଗ୍ରାନାଇଟ୍, ମାଗ୍ନେସାଇଟ୍, ସର୍ପେଣ୍ଟିନାଇଟ୍ ଭଳି ଖଣିଜ ପଦାର୍ଥ ଗଚ୍ଛିତ ରହିଛି ।

**ଲୁହାପଥର:** ସମଗ୍ର ଓଡ଼ିଶାରେ ମୋଟ ୩,୧୨୦ ନିୟୁତ ଟନ୍ ଲୁହାପଥର ଗଚ୍ଛିତ ଥିବାବେଳେ କେବଳ କେନ୍ଦୁଝର ଜିଲ୍ଲାରେ ୨,୩୭୧ ନିୟୁତ୍ ଟନ୍ (୮୨ ପ୍ରତିଶତ) ଗଚ୍ଛିତ ରହିଛି । ସମଗ୍ର ଭାରତରେ ଏହି ଲୌହକ୍ଷେତ୍ର ସର୍ବବୃହତ୍ କ୍ଷେତ୍ର ଭାବେ ବିବେଚିତ ହୋଇଥାଏ । ଜିଲ୍ଲାର ବଡ଼ବିଲ ଉପତ୍ୟକାର ପ୍ରାୟ ୫୩ ବର୍ଗ କିଲୋମିଟର ଅଞ୍ଚଳରେ ଲୁହାପଥର ବିସ୍ତୃତ ହୋଇ ରହିଛି । ସିଂହଭୂମ୍-କେନ୍ଦୁଝର-ବଣେଇ ଲୌହଅୟସ୍କ ବେଲ୍ଟ ଏହି ଅଞ୍ଚଳ ଦେଇ ଅତିକ୍ରମ କରିଛି । ଓଡ଼ିଶା-ଝାଡଖଣ୍ଡର ପ୍ରାୟ ୬୦ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ଲୌହଅୟସ୍କ ବେଲ୍ଟର ପ୍ରାୟ ୧୪.୫ କିଲୋମିଟର କେନ୍ଦୁଝର ଜିଲ୍ଲା ମଧ୍ୟରେ ରହିଛି । କେନ୍ଦୁଝର ଜିଲ୍ଲାର ଠାକୁରାଣୀ, ବଲାଣି, ଯୋଡା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାଣ୍ଡିଅ-ବରପଦା, ଜିଲିଂ ଲଙ୍ଗଲଟା, ଉଡାଙ୍ଗ, ମାଲାଂଟୋଲି, ମାଙ୍ଗଡ଼ନଚା, ଗନ୍ଧମାର୍ଦ୍ଦନ ଓ ଦୈତାରୀଠାରେ ଉଚ୍ଚମାନର ଲୁହାପଥର ଗଚ୍ଛିତ ରହିଛି ।

**ମାଙ୍ଗାନିଜ ପଥର:** କେନ୍ଦୁଝର ଜିଲ୍ଲାରେ ମୋଟ ୨୮.୪ ନିୟୁତ ଟନ୍ ମାଙ୍ଗାନିଜ ପଥର



ମାଙ୍ଗାନିଜ୍ ଖଣିଜ ପଥର

ଗଚ୍ଛିତ ଥିବାର ଭୂ-ତତ୍ତ୍ୱ ବିଭାଗ ସୂତ୍ରରୁ ଜଣାପଡିଛି । ଏହା ସମଗ୍ର ଓଡ଼ିଶାର ମୋଟ ଗଛିତ ସଂପଦର ପ୍ରାୟ ୫୮ ଭାଗ ଅଟେ । ଏହି ଖଣିଜ ପଥର କେନ୍ଦୁଝର ଜିଲ୍ଲାର ଗୁରୁଡା, ରୋଇଡା, ସିଦ୍ଧମଠ, ଯୋଡା, ହରମଠ, ଗୁଆଲି, ବାମେବାରୀ ଆଦି ସ୍ଥାନରେ ଗଛିତ ରହିଛି ।

**କ୍ରୋମିୟମ୍ ପଥର:** କେନ୍ଦୁଝର ଜିଲ୍ଲାରେ ମୋଟ ୮·୨ ନିୟୁତ ଟନ୍ ଉଚ୍ଚମାନର କ୍ରୋମିୟମ ପଥର ଗଛିତ ରହିଛି । ଏହି ଜିଲ୍ଲାର ହାଟଡିହି ବ୍ଲକ୍ ଅନ୍ତର୍ଗତ ନୂଆସାହି, ବଉଳାଠାରେ କ୍ରୋମିୟମ୍ ପଥର ସର୍ବାଧିକ ପରିମାଣରେ ଗଚ୍ଛିତ ରହିଛି ।

**ବକ୍ସାଇଟ୍:** କେନ୍ଦୁଝର ଜିଲ୍ଲାରେ ହାରାହାରି ୧୦ ନିୟୁତ ଟନ୍ ଆଲୁମିନିୟମ ପଥର ବା ବକ୍ସାଇଟ୍ ଓର୍ ଗଛିତ ଅଛି । କେନ୍ଦୁଝରଗଡ଼ଠାରୁ ୩ କିଲୋମିଟର ଦୂର ୬ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଅବସ୍ଥିତ କୁଅଁରର ଢୋଲକଟା ପାହାଡ (ବାଂଶପାଳ ବ୍ଲକ୍)ରେ ଆଲୁମିନିୟମ୍ ଗଛିତ ଥିବାର ୧୯୭୪-୭୫ ମସିହାରେ ହୋଇଥିବା ସର୍ଭେରୁ ଜଣାପଡିଛି ।

**ପାଇରୋଫିଲାଇଟ:** କେନ୍ଦୁଝର ଜିଲ୍ଲାରେ ପ୍ରାୟ ୯୦ କିଲୋମିଟର ଦୈର୍ଘ୍ୟବିଶିଷ୍ଟ ଅଞ୍ଚଳରେ ବିପୁଳ ପରିମାଣରେ ପାଇରୋଫିଲାଇଟ୍ ଖଣିଜ ପଦାର୍ଥ ଗଚ୍ଛିତ ରହିଛି । ଏହି କ୍ଷେତ୍ର ଦକ୍ଷିଣରେ ରେବଣା-ପଳାସପାଳଠାରୁ ଆରମ୍ଭ ହୋଇ ଉତ୍ତର ଦିଗରେ ରିମୁଳି-ଯୋଡା ପର୍ଯ୍ୟନ୍ତ ପରିବ୍ୟାପ୍ତ ।କେନ୍ଦୁଝର ଜିଲ୍ଲାର ମଦରଂଗାଯୋଡି, ନିତିଗୋଠା, ରୋଡୁଆଁ, ରଂପାକୋଟ, ଆମଯୋର, ଉକ୍‌ଚାବେଡା, ଧୋବାକୁଚୁଡା, ବଳଭଦ୍ରପୁର, ବାଲିଆଡିହି, ମାଛକାନ୍ଦଣା, ତାଳିମପୁର, ବୁରିଆଡିହି, ସିଦ୍ଧମଠ, ସରସକୋଷି, ବଲିଆଣିପୋଷି ଏବଂ ରେବଣା-ପଳାସପାଳ ଆଦି ସ୍ଥାନରେ ଏହି ପଥର ଗଛିତ ରହିଛି । ଏହି ପଥର ରବର, ରଂଗ, ବସ୍ତ୍ର ଶିଳ୍ପ, ସାବୁନ୍ ଓ କାଗଜ ଶିଳ୍ପରେ ବ୍ୟବହୃତ ହୋଇଥାଏ । ଜିଲ୍ଲାରେ ମୋଟ ୮·୬ ନିୟୁତ ଟନ୍ ପାଇରୋଫିଲାଇଟ୍ ଗଛିତ ଥିବାର ଜଣାଯାଏ ।

**କ୍ୱାର୍ଜ:** କେନ୍ଦୁଝର ଜିଲ୍ଲାର ନର୍ଦ୍ଧା-ବଡ଼ବିଲ, ଗୋଲାଗାଡିଆ, ବରପଦା, ବୋରାଙ୍ଗ, ପାହାଡପୁର ଓ ପର୍ସଲା ଅଞ୍ଚଳରେ ଶତକଡା ୯୦ ଭାଗରୁ ଉଚ୍ଚ ମାନର ସିଲିକା ଏହି କ୍ୱାର୍ଜ ପଥରରେ ଥିବା କଥା ପ୍ରାଥମିକ ଅନୁସନ୍ଧାନରୁ ଜଣାପଡିଛି । ଏହା କାଚ, ଲୌହ ଓ ଇସ୍ପାତ ଉତ୍ପାଦନରେ ସହାୟକ ହୋଇଥାଏ ।

**ଖଡ଼ିପଥର (ସୋପ୍ ଷ୍ଟୋନ୍):** ଏହା କେନ୍ଦୁଝରଗଡ଼ର ଦକ୍ଷିଣ ଓ ପଶ୍ଚିମ ଦିଗରେ ରହିଥିବା ପାହାଡର ଉତ୍ତର ପାର୍ଶ୍ୱ ପାଦଦେଶରେ ମିଳେ । ଏହା ବ୍ୟତୀତ ଜିଲ୍ଲାର ଧକୋଠା, ତାଳିମପୁର, ଫୁଲଝର ଏବଂ ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ଏହି ପଥର ଗଛିତ ଅଛି । ମୂର୍ତ୍ତି ଓ ଘରୋଇ ବ୍ୟବହାର୍ଯ୍ୟ ଜିନିଷର ତିଆରି ବ୍ୟତୀତ ଏହା ରବର ଓ କାଗଜ ଶିଳ୍ପରେ ବ୍ୟବହୃତ ହୋଇଥାଏ ।

**ଭାନାଡିୟମ୍:** କେନ୍ଦୁଝର ଜିଲ୍ଲାର ନୂଆସାହିଠାରେ ହାରାହାରି ୩ ନିୟୁତ ଟନ୍ ଭାନାଡିୟମ୍ ମିଶ୍ରିତ ମାଗ୍ନେଟାଇଟ୍ ପଥର ଥିବାର ସର୍ଭେରୁ ଜଣାପଡିଛି । ଏହା କୋଇଲା ବିଶୋଧନ ଏବଂ ଭାନାଡିୟମ୍ ଧାତୁ ନିଷ୍କାସନ ପାଇଁ ବ୍ୟବହୃତ ହୋଇଥାଏ ।

**ସୁନା:** ତେଲକୋଇ ବ୍ଲକ୍‌ର ପଲେଇକେନା, କରଦାଙ୍ଗି ଏବଂ ବାଂଶପାଳ ବ୍ଲକର ଜଳତିଆ-ଗୋପୁର, ଗଜିପୁର, ଶଙ୍କରାଖୋଲରେ ସୁନା ଗଛିତ ଥିବାର ସର୍ଭେରୁ ଜଣାପଡିଛି । ଏହି ଅଞ୍ଚଳରେ ସୁନାର ପରିମାଣ ଟନ୍ ପ୍ରତି ୦·୧ରୁ ୨·୦ ଗ୍ରାମ୍ ରହିଥିବା କଥା ପ୍ରାଥମିକ ପରୀକ୍ଷାରୁ ଜଣାପଡିଛି । ତେବେ ଖଣି ଓ ଭୂ-ତତ୍ତ୍ୱ ନିର୍ଦ୍ଦେଶାଳୟ ପକ୍ଷରୁ ତେଲକୋଇ ଓ ବାଂଶପାଳ ଅଞ୍ଚଳରେ ସୁନାର ଉପସ୍ଥିତ ନେଇ ସର୍ଭେ ଓ ଅନୁସନ୍ଧାନ ଚାଲୁ ରହିଛି ।

**ଚୂନ ପଥର ଓ ଡୋଲାମାଇଟ୍:** କେନ୍ଦୁଝର ଜିଲ୍ଲାର କୋଇଡା-ନୂଆମୁଣ୍ଡି, ଭଦ୍ରାସାହି ନିକଟସ୍ଥ କାଶିଆ ଅଞ୍ଚଳରେ ୧୫୦ ମିଟର ଲମ୍ବ ବିଶିଷ୍ଟ ଡୋଲାମାଇଟ୍ ଓ ଚୂନପଥର ଖଣି ଅବସ୍ଥିତ । ଡୋଲାମାଇଟ୍ ଇସ୍ପାତ ଉତ୍ପାଦନରେ ବ୍ୟବହୃତ ହୋଇଥାଏ ।

**ଡେକୋରେଟିଭ୍ ଷ୍ଟୋନ୍:** କେନ୍ଦୁଝର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବହୁ ପରିମାଣରେ ଡେକୋରିଟିଭ୍ ଷ୍ଟୋନ୍ ମିଳିଥାଏ । ବିଶେଷକରି ତେଲକୋଇ ବ୍ଲକ୍‌ର କାଳିଆହତା ଓ ଢେଙ୍କାନାଳ ଜିଲ୍ଲାର ସୀମାନ୍ତବର୍ତୀ ଇଲାକାରେ ବହୁ ମାତ୍ରାରେ ଏହି ଷ୍ଟୋନ୍ ମିଳିଥାଏ । ଏହା ବ୍ୟତୀତ ବୈତରଣୀ ନଦୀ ପଠାରେ ଏହି ପ୍ରକାର ପଥର ବେଶି ମାତ୍ରାରେ ମିଳିଥାଏ ।

**ପ୍ଲାଟିନମ୍:** କେନ୍ଦୁଝର ଜିଲ୍ଲାରେ ୧୮·୭ ନିୟୁତ ଟନ୍ ପ୍ଲାଟିନମ୍ ଗଛିତ ରହିଛି । ଜିଲ୍ଲାର ହାଟଡିହି ବ୍ଲକ୍‌ର ବଉଳା-ନୂଆସାହି ଅଞ୍ଚଳର କ୍ଷାରୀୟରୁ ଅତି କ୍ଷାରୀୟ ଶିଳାରେ କ୍ରୋମାଇଟ୍ ଖଣିଜ ସମେତ ବହୁ ପରିମାଣର ପ୍ଲାଟିନମ୍ ଧାତୁ ରହିଥିବା ଜଣାପଡିଛି ।

**ଗ୍ରାନାଇଟ୍:** କେନ୍ଦୁଝର ଜିଲ୍ଲାରେ ପ୍ରାୟ ୧୯ ନିୟୁତ ଘନମିଟର ପରିମାଣର କଳାମୁଗୁନି (ଗ୍ରାନାଇଟ) ପଥର ରହିଛି । ଜିଲ୍ଲାରେ ବିଭିନ୍ନ ରଂଗର ଗ୍ରାନାଇଟ୍ ଯଥା- କଳା, କୃଷ୍ଣ-ସବୁଜ, ଧୂସର, ଧଳା ରଂଗର ଗ୍ରାନାଇଟ୍ ପଥର ଦେଖିବାକୁ ମିଳେ । ଜିଲ୍ଲାର ସଜନାପାଳ, ସାନ୍ତରାଗାଡିଆ, ସପଙ୍ଗଦା, ଚୁରଡିଆ, ବୀରକେରା, ଚଂପାଝର, କଇପୁର, ନଇଗଡ, ଢେଙ୍କିକୋଟ, ପିପିଳିଆ, ପାଟଣା, ନୁପୁରିପଷି, ରାଇବଣ, ତାବରଚୁଆ, ଚଂପୁଆ ଆଦି ଅଞ୍ଚଳରେ ଗ୍ରାନାଇଟ୍ ପଥର ମିଳେ ।

**ନିକେଲ:** କେନ୍ଦୁଝର ଜିଲ୍ଲାରେ ବଉଳା-ନୂଆସାହି ଅଞ୍ଚଳରେ ଥିବା ଅଲ୍‌ଟ୍ରାମ୍ୟାଫିକ୍ ଶିଳା ମଧ୍ୟରେ ଶତକଡା ୦·୪ ଭାଗ ନିକେଲ୍ ରହିଥିବା ଜଣାପଡିଛି ।

**କୋବାଲ୍‌ଟ:** କେନ୍ଦୁଝର ଜିଲ୍ଲାରେ ବଉଳା-ନୂଆସାହି ଅଞ୍ଚଳରେ ଥିବା ଅଲ୍‌ଟ୍ରାମ୍ୟାଫିକ୍ ଶିଳା ମଧ୍ୟରେ ଶତକଡା ୦·୧ ଭାଗ କୋବାଲ୍‌ଟ ରହିଥିବା ଜଣାପଡିଛି ।

**କାଞ୍ଚନ ବାଲୁକା:** କେନ୍ଦୁଝର ଜିଲ୍ଲାର ବଂଗାମ୍ ଅଞ୍ଚଳରେ ରହିଥିବା କୋହ୍ଲାନ୍ ଶିଳା ବର୍ଗର ବାଲୁକା ପଥରରେ କାଞ୍ଚନ ବାଲୁକା ରହିଛି । ଏହା କାଚ ଶିଳ୍ପରେ ବ୍ୟବହୃତ ହୋଇଥାଏ ।

**ଚିନାମାଟି:** କେନ୍ଦୁଝର ଜିଲ୍ଲାରେ ବହୁ ପରିମାଣରେ ଚିନାମାଟି (କେଓଲିନ୍) ଗଚ୍ଛିତ ରହିଛି । କେନ୍ଦୁଝରଗଡ଼ର ପଶ୍ଚିମ ଦିଗରେ ପ୍ରାୟ ୧୦.୬ କିଲୋମିଟର ଦୂରରେ ଡୋଲେରାଇଟ ଶିଳା ପାହାଡର ପାଦଦେଶର ଦୁଇଟି ସ୍ଥାନରେ ପ୍ରାୟ ୦.୧୭ ନିୟୁତ ଟନ୍ ପରିମାଣର ଚିନାମାଟି ଗଚ୍ଛିତ ରହିଛି । ସେହିଭଳି ଜିଲ୍ଲାର ତାରିଣୀପୋଖରୀ ଓ ଅମୁଆପତା, ମୁରୁଆ, ଡେଙ୍ଗୁରାଠାରେ ଚିନାମାଟି ରହିଥିବା ଜଣାପଡିଛି ।

**ଗେରୁ:** କେନ୍ଦୁଝର ଜିଲ୍ଲାର କୋଦକୋରା ଓ ସିରିଆବାହାଳଠାରେ ହଳଦିଆ ଓ ମାଟିଆ ରଙ୍ଗର ଗେରୁ ମିଳେ । ସ୍ଥାନୀୟ ଅଧିବାସୀମାନେ ଏହାକୁ ନିଜ ଘରର କାନ୍ଥରେ ଲେପ ଦେଇଥାନ୍ତି ।

**ସର୍ପେଣ୍ଟିନାଇଟ୍:** କେନ୍ଦୁଝର ଜିଲ୍ଲାର ବଉଳା-ନୂଆସାହି ଅଞ୍ଚଳରେ ସର୍ପେଣ୍ଟିନାଇଟ୍ ପଥର ଗଚ୍ଛିତ ରହିଛି । ଜିଲ୍ଲାରୁ ବାର୍ଷିକ ପ୍ରାୟ ୬,୦୦୦ ମେଟ୍ରିକ୍ ଟନ୍ ସର୍ପେଣ୍ଟିନାଇଟ୍ ପଥର ଉତ୍ପାଦନ କରାଯାଇଥାଏ ।

**ମାଗ୍ନେସାଇଟ୍:** କେନ୍ଦୁଝର ଜିଲ୍ଲାର ବଉଳା-ନୂଆସାହି ଅଞ୍ଚଳରେ ମାଗ୍ନେସାଇଟ୍ ଖଣିଜ ପଦାର୍ଥ ଗଚ୍ଛିତ ରହିଛି ।

## କେନ୍ଦୁଝର: କେଉଁଠି କେଉଁ ଖଣିଜ ଦ୍ରବ୍ୟ ମିଳେ

**ଲୁହା ପଥର:** ବଲାଣି, ଯୋଡା, ବାଂଶପାଣି, ଖଣ୍ଡବନ୍ଧ, ସିଦ୍ଧମଠ, କାଶିଆ-ବରପଦା, ଠାକୁରାଣୀ, ଜିଲ୍ଲିଂ-ଲଙ୍ଗଲଟା, ଜଜାଙ୍ଗ, ମାଲାଂଟୋଲି, ଗନ୍ଧମାର୍ଦ୍ଦନ, ଦୈତାରୀ, ମାଙ୍କଡ଼ନଚା,

**ମାଙ୍ଗାନିଜ୍:** ଗୁରୁଦା, ରୋଇଡା, ସିଦ୍ଧମଠ, ଯୋଡା, ହରମଠ, ଗୁଆଲି, ଜାମଦା, ଭଦ୍ରାସାହି, ନାଲଦା, ଚୋରାମାଲ୍ଦା, ଦୁବୁନା, ବାମେବାରୀ, ବଡ଼ବିଲ, ପିଲିଯୋରା, କାଳିମାଟି, ଇଂଗାନିଝରଣ, କଳାପର୍ବତ, ଠାକୁରାଣୀ, କାଦତିହି

**ବକ୍ସାଇଟ୍:** କୁଅଁର ନିକଟସ୍ଥ ଢୋଲକଟା ପାହାଡ

**କ୍ରୋମିୟମ୍:** ବଉଳା ନୂଆସାହି

**ଚୂନା:** ତେଲକୋଇ ବ୍ଲକ୍‌ର ପଲେଇକେନା, କରଦାଙ୍ଗି ଏବଂ ବାଂଶପାଳ ବ୍ଲକର ଜଳତିଆ-ଗୋପପୁର, ଗଜିପୁର, ଶଙ୍କରାଖୋଲ

**ଡୋଲାମାଇଟ୍:** କାଶିଆ-ଭଦ୍ରାସାହି

**ପାଇରୋ ଫିଲାଇଟ୍:** ମଦରଂଗାଯୋଡି, ନିତିଗୋଠା, ରୋଡୁଆଁ, ରଂପାକୋଟ, ଆମଯୋର, ଉଦ୍ଗାବେଡା, ଧୋବାକୁଚୁଡା, ବଳଭଦ୍ରପୁର, ବାଲିଆତିହି, ମାଛକାନ୍ଦଣା, ତାଳିମପୁର, ବୁରିଆତିହି,

ସିଦ୍ଧମଠ, ସରସକୋଷି, ବଲିଆଣିପୋଷି ଏବଂ ରେବଣା-ପଳାସପାଳ

**କ୍ୱାର୍ଜ:** ନର୍ଦ୍ଧା-ବଡ଼ବିଲ, ଗୋଲାଗାଡିଆ, ବରପଦା, ବୋରାଙ୍ଗ, ପାହାଡପୁର ଓ ପର୍ସଳା

**ଭାନାଡିୟମ୍:** କେନ୍ଦୁଝର, ନୂଆସାହି

**ଖଡିପଥର:** ଏହା କେନ୍ଦୁଝରଗଡ଼ର ଦକ୍ଷିଣ ଓ ପଶ୍ଚିମ ଦିଗରେ ରହିଥିବା ପାହାଡର ଉତ୍ତର ପାର୍ଶ୍ୱ ପାଦଦେଶରେ ମିଳେ । ଏହା ବ୍ୟତୀତ ଜିଲ୍ଲାର ଧକୋଠା, ତାଳିମପୁର, ଫୁଲଝର ଏବଂ ସଦର ସବ୍ ଡିଭିଜନର ପିଠାଗୋଳା ଅଞ୍ଚଳରେ ଏହି ପଥର ଗଚ୍ଛିତ ଅଛି ।

## କେନ୍ଦୁଝର ଜିଲ୍ଲାର ସାହିତ୍ୟ ଅନୁଷ୍ଠାନ

୦୧· ବଳଭଦ୍ର ସାହିତ୍ୟ ସଂସଦ, କେନ୍ଦୁଝରଗଡ଼ (ସ୍ୱାଧୀନତା ପୂର୍ବ ସମୟର)

୦୨· କେନ୍ଦୁଝର ସାହିତ୍ୟ ସଂସଦ, କେନ୍ଦୁଝର

୦୩· ଯୁବ ସାହିତ୍ୟ ସଂସଦ, କେନ୍ଦୁଝର

୦୪· ମିଳନୀ ସାହିତ୍ୟ ସଂସଦ, କେନ୍ଦୁଝର

୦୫· ସବୁଜିମା ସାହିତ୍ୟ ସଂସଦ, ଘସିପୁରା

୦୬· ବଉଳା ସାହିତ୍ୟ ସଂସଦ, ଆନନ୍ଦପୁର

୦୭· ପ୍ରତିଧ୍ୱନି ସାହିତ୍ୟ ସଂସଦ, କେଶଦୂରାପାଳ

୦୮· ଉପାନ୍ତ ସାହିତ୍ୟ ସଂସଦ, କିରିବୁରୁ

୦୯· ପ୍ରତିଶ୍ରୁତି ସାହିତ୍ୟ ସଂସଦ, ଚଂପୁଆ

୧୦· ସାଂସ୍କୃତିକି ସାହିତ୍ୟ ସଂସଦ, କେନ୍ଦୁଝର

୧୧· ସଂଯୋଗୀ ସାହିତ୍ୟ ସଂସଦ, କୁଣ୍ଡାପିଠା, ଘଟଗାଁ

୧୨· ସୃଜନୀ ସାହିତ୍ୟ ସଂସଦ, ତେଲକୋଇ

୧୩· ଶୁଭଶ୍ରୀ ସାହିତ୍ୟ ସଂସଦ, ତୁରୁମୁଙ୍ଗା

୧୪· ସନ୍ଥେଭଞ୍ଜ ସାହିତ୍ୟ ସଂସଦ, ପଳାସପଙ୍ଗା

୧୫· ଫୁଲଚନ୍ଦନ ପ୍ରକାଶନୀ, କେନ୍ଦୁଝର

୧୬· କାକଳୀ ପ୍ରକାଶନି, କେନ୍ଦୁଝର

୧୭· ଜୀବନ ସାହିତ୍ୟ ମଞ୍ଚ, କେନ୍ଦୁଝର

୧୮· ତାରିଣୀ ସାହିତ୍ୟ ସଂସଦ, ଘଟଗାଁ

୧୯· କେନ୍ଦୁଝର ସାହିତ୍ୟ ସଂସ୍କୃତି ପରିଷଦ, କେନ୍ଦୁଝର

୨୦· ଶାଳନ୍ଦୀ ପ୍ରକାଶନୀ, କେନ୍ଦୁଝର

୨୧· ଜିଲ୍ଲାସ୍ତରୀୟ ଶିଶୁ ସାହିତ୍ୟ ସଂସଦ, କେନ୍ଦୁଝର
୨୨· ଅରୁଣ ତରୁଣ, କେନ୍ଦୁଝର
୨୩· କୁଶଳେଶ୍ୱର ସାହିତ୍ୟ ସଂସଦ, ଦେଓଗାଁ
୨୪· ସିଂହନାଦ ପ୍ରକାଶନୀ, ଶାଳପଡା
୨୫· ରଥୀସାରଥୀ ପ୍ରକାଶନୀ, ଶାଳପଡା
୨୬· ଧ୍ରୁବ କଳା ପରିଷଦ, ତେଲକୋଇ
୨୭· କାଳିଦାସ ସାହିତ୍ୟ ସଂସଦ, କେନ୍ଦୁଝର
୨୮· ସମ୍ଭାବନା ସାହିତ୍ୟ ସଂସଦ, ସାଇଁକୁଳ
୨୯· ସୂର୍ଯ୍ୟସ୍ନାତା ସାହିତ୍ୟ ସଂସଦ, ଶୁଆକାଟୀ
୩୦· ସଞ୍ଜୀବନି ସାହିତ୍ୟ ସଂସଦ, ଭଣ୍ଡା
୩୧· ପ୍ରଜ୍ଞାଶ୍ରୀ ସାଂସ୍କୃତିକ ପରିଷଦ, ଆନନ୍ଦପୁର
୩୨· ସତ୍ୟମ୍ ସାହିତ୍ୟ ସଂସଦ, ଘୋଡା
୩୩· ଚିନ୍ତା ଓ ଚେତନା, କେନ୍ଦୁଝର
୩୪· ସମନ୍ୱୟ ସାଂସ୍କୃତିକ ପରିଷଦ, ଚଂପୁଆ
୩୫· ପଲ୍ଲୀଶ୍ରୀ ସାହିତ୍ୟ ସଂସଦ, ପର୍ସଳା, ଝୁଂପୁରା
୩୬· ଅନ୍ୱେଷା ସାହିତ୍ୟ ସଂସଦ, ସାଇଁକୁଳ, କେନ୍ଦୁଝର
୩୭· ସର୍ବେଶ୍ୱର ସାହିତ୍ୟ ସଂସଦ, ସାହାରପଡା, କେନ୍ଦୁଝର
୩୮· ଫକୀରପୁର ସାହିତ୍ୟ ସଂସଦ, ଫକୀରପୁର, ଆନନ୍ଦପୁର
୩୯· ଆନନ୍ଦପୁର ସାହିତ୍ୟ ସଂସଦ, ଆନନ୍ଦପୁର
୪୦· ସବୁଜିମା ସାହିତ୍ୟ ସଂସଦ, ଆନନ୍ଦପୁର
୪୧· ନିଶିପ୍ରଦୀପ ସାହିତ୍ୟ ସଂସଦ, ସାଇଁକୁଳ
୪୨· ଶେଫାଳି ସାହିତ୍ୟ ସଂସଦ, ହାଟଡିହି
୪୩· ଅନ୍ୟ ଏକ ବୈତରଣୀ ସାହିତ୍ୟ ସଂସଦ, ଫକୀରପୁର
୪୪· କେନ୍ଦୁଝର ପାଠକ ସଂସଦ, ମାଇନିଂ ରୋଡ୍, କେନ୍ଦୁଝର
୪୫· ସମୃଦ୍ଧ ଓଡ଼ିଆ ଭାଷା ଗବେଷଣା ପ୍ରତିଷ୍ଠାନ, ହାଟଡିହି
୪୬· ବଡ଼ବିଲ ସାହିତ୍ୟ ସଂସଦ, ବଡ଼ବିଲ
୪୭· ଅନନ୍ୟା ସାହିତ୍ୟ ସଂସ୍କୃତି ପରିଷଦ, ଘୋଡା
୪୮· ବଲାଣି ସାହିତ୍ୟ ସଂସଦ, ବଲାଣି

୪୯· ଆମ ତୁଳସୀ ସାହିତ୍ୟ ସଂସ୍କୃତି ପରିଷଦ, ବାରିଆ, ଝୁଂପୁରା

୫୦· ସୃଜନୀ ସାହିତ୍ୟ ସଂସଦ, ତେଲକୋଇ

୫୧· ପ୍ରଜ୍ଞା ସାହିତ୍ୟ ସଂସଦ, ସ୍ୱାମ୍ ପାଟଣା

୫୨· ଆନନ୍ଦପୁର ଲେଖକ ସମବାୟ ସମିତି, ଆନନ୍ଦପୁର (ସରକାରୀ)

୫୩· କେନ୍ଦୁଝର ସାହିତ୍ୟ ସଂସ୍କୃତି କଳା ପ୍ରତିଷ୍ଠାନ, କେନ୍ଦୁଝର

## କେନ୍ଦୁଝର ଜିଲ୍ଲାରୁ ପ୍ରକାଶିତ ପତ୍ରପତ୍ରିକା

| ପତ୍ରିକାର ନାମ | ସ୍ଥାନ | ସଂପାଦକ/ଅନୁଷ୍ଠାନ |
|---|---|---|
| ୦୧· ବୈତରଣୀ | କେନ୍ଦୁଝର | ବିମ୍ବାଧର ମିଶ୍ର |
| ୦୨· ଖବର ଟବର | କେନ୍ଦୁଝର | ନୃସିଂହନାଥ ସିଂହ |
| ୦୩· କେନ୍ଦୁଝର ଟାଇମ୍ସ | କେନ୍ଦୁଝର | ନିରଞ୍ଜନ ନାୟକ |
| ୦୪· ବିଲୁଆ ବିଚାର | ବଡ଼ବିଲ | ବିପିନ ବିହାରୀ ଦାସ |
| ୦୫· କେନ୍ଦୁଝର କଥା | ଷଡଙ୍ଗ | ଶ୍ରୀନିବାସ ଖଣ୍ଡେଇ |
| ୦୬· ଆଦିବାସୀ | କେନ୍ଦୁଝର | ପେରୁ ଭୌମିକ |
| ୦୭· ବାର୍ତ୍ତାଝର | କେନ୍ଦୁଝର | ସଦାନନ୍ଦ ବେଜ୍ |
| ୦୮· ମିଳନୀ ବନବୀଣା | କେନ୍ଦୁଝର | ମିଳନୀ ସାହିତ୍ୟସଂସଦ ମୁଖପତ୍ର |
| ୦୯· ସାଳନ୍ଦୀ | କେନ୍ଦୁଝର | ନିରଞ୍ଜନ ନାୟକ |
| ୧୦· ଜ୍ୟୋତିପ୍ରଭା | କେନ୍ଦୁଝର | ପ୍ରାଣବଲ୍ଲଭ ନାୟକ |
| ୧୧· କାକଳି | ମଣ୍ଡୁଆ | ଦେବାଶୀଷ ଚକ୍ରବର୍ତ୍ତୀ |
| ୧୨· ଯୁଗଯାତ୍ରୀ | କେନ୍ଦୁଝର | ସ୍ୱର୍ଣ୍ଣପ୍ରଭା ପାଠାଗାର ମୁଖପତ୍ର |
| ୧୩· ସାହିତ୍ୟ ଆକାଶର ନିଳଜହ୍ନ | ଓରାଳି | ନୃସିଂହ ନାଥ ସିଂହ |
| ୧୪· ରସଛନ୍ଦା | କେନ୍ଦୁଝର | ବସନ୍ତ ମଲ୍ଲିକ |
| ୧୫· ରଥୀସାରଥୀ | ଶାଳପଡା | ଯଦୁନାଥ ଜେନା |
| ୧୬· ସିଂହନାଦ | ଶାଳପଡା | ଶ୍ରୀକାନ୍ତ ଦାସ |
| ୧୭· ସନ୍ଥେଭଞ୍ଜ | ପଳାସପଂଗା | ବେଣୁଧର ସାହୁ |
| ୧୮· ମେଘଶୈଳ | ମେଘାତୁବୁରୁ | ଚିନ୍ତାମଣି ମହାଳିକ (କିରିବୁରୁ) |
| ୧୯· ତାଳଧ୍ୱଜ | କେନ୍ଦୁଝର | ବଳଦେବଜୀଉ ମନ୍ଦିର, ଜ୍ଞାନ ମଣ୍ଡଳର ମୁଖପତ୍ର |

| | | |
|---|---|---|
| ୨୦· ଫୁଲ | କେନ୍ଦୁଝର | ନୃସିଂହ ପ୍ରସାଦ ମହାନ୍ତି |
| ୨୧· ସ୍ୱର୍ଣ୍ଣରେଣୁ | ତେଲକୋଇ | ଡ· ବନଜ କୁମାର ବିଶ୍ୱାଳ |
| ୨୨· ଚିନ୍ମୟୀ | ଘସିପୁରା | ପ୍ରଫୁଲ ଚକ୍ର |
| ୨୩· ପିନାକୀ | କେନ୍ଦୁଝର | ଧ୍ରୁବ ଚରଣ ରଣା |
| ୨୪· ବଉଳା | ହାଟଡିହି | ଶୁକଦେବ ମଲ୍ଲିକ |
| ୨୫· ଗୌରବ | କେନ୍ଦୁଝର | ଉମେଶ ଚନ୍ଦ୍ର ସାହୁ |
| ୨୬· ଫୁଲଚନ୍ଦନ | କେନ୍ଦୁଝର | ନୃସିଂହ ପ୍ରସାଦ ମହାନ୍ତି |
| ୨୭· ଭାରିଭଲ | କେଶଦୂରାପାଳ | ମଙ୍ଗଳୁ ଚରଣ ପୃଷ୍ଟି |
| ୨୮· ଶିଶୁ ବିକାଶ | କେନ୍ଦୁଝର | ପ୍ରାଣବଲ୍ଲଭ ନାୟକ |
| ୨୯· ସୁନାଚଢ଼େଇ | କେନ୍ଦୁଝର | ଶରତ ଚନ୍ଦ୍ର ଜେନା |
| ୩୦· ବିନ୍ଦୁ | ମାଟ୍‌କାମ୍‌ବେଡା | ରାସେଶ୍ୱର ମହାନ୍ତ |
| ୩୧· ଓଡ଼ିଆପୁଅ | କେନ୍ଦୁଝର | ମନୋଜ କୁମାର ଦାସ |
| ୩୨· ନବ କାକଳି | ହଦଗଡ଼ | ଡ· ସୁରେନ୍ଦ୍ର ନାଥ ତ୍ରିପାଠୀ |
| ୩୩· କାଇଁଚମାଳି | କେନ୍ଦୁଝର | କରୁଣାକର ବାରିକ |
| ୩୪· କାଉଁରିଚାନ୍ଦ | କେନ୍ଦୁଝର | ଅର୍ଜୁନ ପ୍ରସାଦ ନନ୍ଦ |
| ୩୫· ବୈତରଣୀ | ଭୁବନେଶ୍ୱର | 'କେନ୍ଦୁଝର ବିକାଶମଞ୍ଚ' ମୁଖପତ୍ର |
| ୩୬· ବନଶ୍ରୀ | ସାହାରପଡା | 'ସର୍ବେଶ୍ୱର ସାହିତ୍ୟ ସଂସଦ'ର ମୁଖପତ୍ର |
| ୩୭· ଅନ୍ୱେଷଣ | ସାଇଁକୁଳ | ଅନ୍ୱେଷା ସାହିତ୍ୟ ସଂସଦର ବାର୍ଷିକ ମୁଖପତ୍ର |
| ୩୮· ସତୀର୍ଥ | କେନ୍ଦୁଝର | 'କେନ୍ଦୁଝର ପାଠକ ସଂସଦ'ର ମୁଖପତ୍ର |
| ୩୯· ମହାମାୟା | କେନ୍ଦୁଝର | 'ରାବଣ ପୋଡି ମହୋତ୍ସବ'ର ମୁଖପତ୍ର |
| ୪୦· ମହକ | ହାଟଡିହି | 'ଶେଫାଳି ସାହିତ୍ୟ ସଂସଦ'ର ମୁଖପତ୍ର |
| ୪୧· ଆନନ୍ଦ | ଆନନ୍ଦପୁର | 'ଆନନ୍ଦପୁର ସାହିତ୍ୟ ସଂସଦ'ର ମୁଖପତ୍ର |

| | | |
|---|---|---|
| ୪୨· ବର୍ଣ୍ଣବିଭା | ହାଟଡିହି | 'ଓଡ଼ିଆ ଭାଷା ଗବେଷଣା ପ୍ରତିଷ୍ଠାନ'ର ମୁଖପତ୍ର |
| ୪୩· ନିଜସ୍ୱ | ବଡ଼ବିଲ | 'ବଡ଼ବିଲ ସାହିତ୍ୟ ସଂସଦ'ର ମୁଖପତ୍ର |
| ୪୪· ଉପତ୍ୟକା | ଯୋଡା | 'ଅନନ୍ୟା ସାହିତ୍ୟ ସଂସ୍କୃତି ପରିଷଦ'ର ମୁଖପତ୍ର |
| ୪୫· ଲେଖନୀ | ଚଂପୁଆ | 'ସମନ୍ୱୟ ସାଂସ୍କୃତିକ ପରିଷଦ'ର ମୁଖପତ୍ର |
| ୪୬· ଶୈଳଜା | ବଲାଣି | 'ବଲାଣି ସାହିତ୍ୟ ସଂସଦ'ର ମୁଖପତ୍ର |
| ୪୭· ଅଭିଳାଷ | ଭଣ୍ଡା | 'ସଂଜୀବନି ସାହିତ୍ୟ ସଂସଦ'ର ମୁଖପତ୍ର |
| ୪୮· ଆମଲେଖା | ବାରିଆ (ଝୁଂପୁରା) | 'ଆମ ତୁଳସୀ ସାହିତ୍ୟ ସଂସ୍କୃତିପରିଷଦ'ର ମୁଖପତ୍ର |
| ୪୯· ପ୍ରଜ୍ଞାଶ୍ରୀ | ଆନନ୍ଦପୁର | 'ପ୍ରଜ୍ଞାଶ୍ରୀ ସାଂସ୍କୃତିକ ପରିଷଦ'ର ମୁଖପତ୍ର |
| ୫୦· ପ୍ରଜ୍ଞା | ସ୍ୱାମ୍ ପାଟଣା | 'ପ୍ରଜ୍ଞା ସାହିତ୍ୟ ସଂସଦ'ର ମୁଖପତ୍ର |
| ୫୧· ଯୋଗଜନ୍ମା | ଚଂପୁଆ | ରଘୁନାଥ ମହାନ୍ତ |
| ୫୨· ପଲ୍ଲବ | (ମହେଶ୍ୱରପୁର)ଚଂପୁଆ | ଭାସ୍କରଚନ୍ଦ୍ର ମହାକୁଡ |
| ୫୩· ଖଣ୍ଡାଧାର | ଭଣ୍ଡା | ଅର୍ଜୁନ ଚରଣ ମହାନ୍ତ |
| ୫୪· ତ୍ରିରଙ୍ଗା (ଶିଶୁ ପତ୍ରିକା) | ଚଂପୁଆ | ତ୍ରିନାଥ ମହାନ୍ତ |

# କେନ୍ଦୁଝର ଜିଲ୍ଲାର ସାଂସ୍କୃତିକ ଅନୁଷ୍ଠାନ

## କେନ୍ଦୁଝର ସଦର ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| ଫ୍ରେଣ୍ଡ୍ସ କ୍ଲବ୍ | କେନ୍ଦୁଝରଗଡ଼ |

| | |
|---|---|
| ସହଦପୁର ଶାନ୍ତି ଯୁବକ ସଂଘ | ସହଦପୁର |
| ଅନନ୍ତ ଆଶ୍ରମ ଯୁବକ ସଂଘ | ମୁକୁନା |
| ରାଙ୍ଗୀ ଭାଗବତ ଟୁଙ୍ଗୀ | ରାଙ୍ଗୀ |
| କିଶୋର ଯୁବକ ସଂଘ | ରାଙ୍ଗୀ |
| ଜ୍ଞାନମଣ୍ଡଳ (ବଳଦେବଜୀଉ ମନ୍ଦିର) | ପୁରୁଣା ବଜାର |
| କେନ୍ଦୁଝର ନାଗରିକ ମଞ୍ଚ | କେନ୍ଦୁଝରଗଡ଼ |
| ମହାଲକ୍ଷ୍ମୀ ଯୁବକ ସଂଘ | ପଦ୍ମପୁର |
| କେନ୍ଦୁଝର ଯୁବକ ସଂଘ | ଆଟପୁର |
| ଜୟଶ୍ରୀ ମାଟିଆ କ୍ଲବ୍ | ଶିରିଶିପାଳ |
| ଲକ୍ଷ୍ମୀପଡ଼ ଯୁବକ ସଂଘ | ଡେରାଣ୍ଟି |
| ଜୟନ୍ତୀ କଲ୍‌ଚରାଲ୍ କ୍ଲବ୍ | ଡିମିରିମୁଣ୍ଡା |
| ମୈଦାନ୍‌କେଲ୍ ଯୁବକ ସଂଘ | ମୈଦାନ୍‌କେଲ୍ |
| ରୋଟାରୀ କ୍ଲବ୍ | କେନ୍ଦୁଝରଗଡ଼ |
| ମନୋଜମଞ୍ଜରୀ ଶିଶୁଭବନ | କେନ୍ଦୁଝରଗଡ଼ |
| ଧଳିଆପାଟ ଯୁବକ ସଂଘ | ତାଳିମପୁର |
| ନାରୀ ସମାଜ ଶିକ୍ଷାକେନ୍ଦ୍ର | କେନ୍ଦୁଝରଗଡ଼ |
| ରୋଟାରୀ ଭିଲେଜ୍ | ଝାରବେଲ୍‌ଦା |
| ସତସଙ୍ଗ ସେବା ସୋସାଇଟି | ଠାକୁରପାଟଣା |
| ଓଡ଼ିଶା ଗ୍ରାମ ବିକାଶ ପରିଷଦ | ମାଇନିଂ ରୋଡ୍, କେନ୍ଦୁଝର |
| ଜୟନ୍ତ କ୍ଲବ୍ | କେନ୍ଦୁପତା |
| ମଡ଼ର୍ନ ୟୁଥ୍ କ୍ଲବ୍ | ଶଙ୍କରପୁର |
| ବୈତରଣୀ ସାମାଜିକ ସାଂସ୍କୃତିକ ଅନୁଷ୍ଠାନ | ଜାମୁହାଟ |
| ଆଇଡିଆଲ୍ ଡେଭଲପ୍‌ମେଣ୍ଟ ଏଜେନ୍‌ସି | ବନାଯୋଡି |
| ଅଲେଖ ମହିମା କ୍ଲବ୍ | ରାଇସୁଆଁ |
| କେନ୍ଦୁଝର ଡିଷ୍ଟ୍ ଏକ୍ସ ସର୍ଭିସେସ୍ ଲିଗ | ଆଟପୁର |
| ଜୟକୃଷ୍ଣ ଯୁବକ କ୍ଲବ୍ | କାନପଶି |
| ଗୋପବନ୍ଧୁ ଯୁବକ ସଂଘ | କଇଁଷି |

| | |
|---|---|
| ଉଗାବଳିଆ କ୍ଲବ୍ | ମୁରୁସୁଆଁ |
| ରାଇସୁଆଁ ୟୁଥ୍ କ୍ଲବ୍ | ରାଇସୁଆଁ |
| ଉଗାବଳିଆ କ୍ଲବ୍ | ନୂଆଗାଁ |
| ନବଜୀବନ ଯୁବକ ସଂଘ | କାଉଁରିକଳା |
| ଜାଗ୍ରତ | ମାଧପୁର |
| ଯୁବ ଜ୍ୟୋତି କ୍ଲବ୍ | ରାଇକଳା |
| କଲେକ୍ଟୋରେଟ୍ କଲ୍‌ଚରାଲ୍ କ୍ଲବ୍ | କେନ୍ଦୁଝରଗଡ଼ |
| ପ୍ରେମଲତିକା କଳାଭବନ | କେନ୍ଦୁଝର |
| ଘୁଙ୍ଗୁର କ୍ଲବ୍ | ପୁରୁଣା ବଜାର, କେନ୍ଦୁଝର |
| ଫ୍ରେଣ୍ଡ୍‌ସ ଆଣ୍ଡ ଫ୍ରେଣ୍ଡସିପ୍ | କେନ୍ଦୁଝର |
| କାସାଣ୍ଡ୍ରା ସାଂସ୍କୃତିକ ପରିଷଦ | କେନ୍ଦୁଝର |

## ପାଟଣା ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ବିଶେଇପାଟ ଯୁବକ ସଂଘ | ନୂଆଗାଁ |
| ଶାନ୍ତିଦୂତ କ୍ଲବ୍ | କୋଠଗଡ଼ |
| ଜନତା କଲ୍‌ଚରାଲ୍ କ୍ଲବ୍ | ଡୁରୁମୁଙ୍ଗା |
| ରାଧାକୃଷ୍ଣ ୟୁଥ୍ କ୍ଲବ୍ | ମାଧପୁର |
| ନନ୍ଦିଘୋଷ ଯୁବକ ସଂଘ | ଗୁଜୁରିସାହି |
| ବିଶ୍ୱାମିତ୍ର କ୍ଲବ୍ | ଏରେଣ୍ଡେଇ |
| କର୍ମସାହି ପ୍ରଗତି କ୍ଲବ୍ | ବାଉଁଶୁଳି |
| ମା' ମଙ୍ଗଳା ଯୁବକ ସଂଘ | ବେଗନାଖମଣ |
| ବୁଢେଇଶୁଣୀ ୟୁଥ୍ କ୍ଲବ୍ | ତଣ୍ଡୋ |
| ବୀଣାପାଣି କ୍ଲବ୍ | ରାଇକଳା |
| ଜନତା କ୍ଲବ୍ | ମୁରୁସୁଆଁ |
| ଯୁଗଜ୍ୟୋତି କ୍ଲବ୍ | କେଟାଙ୍ଗ |
| କ୍ଲବ୍; ଦି ୟୁନିୟନ୍ | ଭୁଲୁଡା |

| | |
|---|---|
| ଭାରତ କ୍ଲବ୍ | ଏରେଣ୍ଡେଇ |
| ଜ୍ଞାନୋଦୟ କ୍ଲବ୍ | ଷଡଙ୍ଗବାହାଳି |
| ପଟେଲ୍ ଯୁବକ ସଂଘ | ମିରିଗିଖୋଜି |
| ଜୀବନଦୀପ କ୍ଲବ୍ | ଗୋଡିପୋଖରୀ |
| ଲକ୍ଷ୍ମୀ ନାରାୟଣ କ୍ଲବ୍ | ବାଲିଆପଶି |
| ମୁକ୍ତିତୀର୍ଥ କ୍ଲବ୍ | ସ୍ୱାମ୍ପାଟଣା |
| ପାର୍ଠ | ଡିମିରିଡିହା |

## ସାହାରପଡା ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| ମା' ଅନ୍ଧାରୀ କ୍ଲବ୍ | ଉଦୟପୁର |
| ମା' ଅମ୍ବିକା ଯୁବକ ସଂଘ | ଲୁଙ୍ଗା |
| ବିଶେୟୀପାଟ ଯୁବକ ସଂଘ | ବେଗୁନାପଶି |
| ଦିଲ୍‌ଦାର କ୍ଲବ୍ | ଛତରପାଣି |
| ବିଶେୟୀପାଟ ଯୁବକ ସଂଘ | ଡେଣ୍ଡରା |
| କର୍ଣ୍ଣେଲ୍ ଯୁବକ ସଂଘ | ବେଗୁନା |
| ତ୍ରିଶକ୍ତି ଯୁବକ ସଂଘ | ତଳପଡା |
| ଜୟଦୁର୍ଗା ଯୁବକ ସଂଘ | ବାଇକାଲ୍ |
| ମହ୍ଲାରପଡା ଯୁବକ ସଂଘ | ମହ୍ଲାରପଡା |
| ବାଗ୍‌ଡି ଯୁବକ ସଂଘ | ବରବେଡା |
| ଦିଗପୋଷି ଯୁବକ ସଂଘ | ଦିଗପୋଷି |
| ସୁନାମୁଖୀ ନେହେରୁ ଯୁବକ ସଂଘ | ମାଛଗଡ଼ |
| ସୁନାମୁଖୀ ନେହେରୁ ସଂଘ | ପୁରୁଣାସାହି |
| ପଲ୍ଲୀଶ୍ରୀ ଯୁବକ ସଂଘ | ପୁରୁଣାପାଣି |
| କଳିଙ୍ଗ ଯୁବକ ସଂଘ | ଭଣ୍ଡାରିବିଲା |
| ତାରିଣୀ ଯୁବକ ସଂଘ | ଖିଆଳିଯୋଡା |
| ପଲ୍ଲିବିକାଶ ଯୁବକ ସଂଘ | ବେଲପରେଇ |
| ଗଜପତି ଯୁବକ ସଂଘ | ଖୁଣ୍ଟାପିଙ୍ଗୁ |

| | |
|---|---|
| ମା' ସୁନାମୁଖୀ ୟୁଥ୍ ଆସୋସିଏସନ୍ | କାଟୁପଡା |
| ଶିବଶକ୍ତି ଆଦିବାସୀ | ଦମୁଡା |
| ମା' ଦୁର୍ଗା ଯୁବକ ସଂଘ | କାପୁଣ୍ଡି |
| ଜନସେବା ଯୁବକ ସଂଘ | କୁଦାବେଡା |
| ବିଶ୍ୱଶାନ୍ତି ଯୁବକ ସଂଘ | ଦଳପଡା |
| ନେତାଜୀ ଯୁବକ ସଂଘ | ଲକ୍ଷ୍ମୀପଶି |
| ଜଗାବଳିଆ ୟୁଥ୍ କ୍ଲବ୍ | ରାଇତିହା |
| ଜଳେଶ୍ୱର ଯୁବକ ସଂଘ | ଧାନବେଣୀ |
| ଜଗାବଳିଆ ଯୁବକ ସଂଘ | ପଧାନପଡା |
| ଗ୍ରାମ୍ୟ ଗୋଷ୍ଠୀ ଉନ୍ନୟନ କେନ୍ଦ୍ର | ଦାନୁଆପାଟଣା |
| ଟିଆରଡିଏସ୍ଏସ୍ଓ | ଜନଡ୍ରି |
| ନବ ସଂଗଠନ | ବାଉଁଶୁଳି |
| ଉତ୍କଳ ଜନମଙ୍ଗଳ ସେବା କେନ୍ଦ୍ର | ମେଦିନିପୁର |

## ଘଟଗାଁ ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ବୀଣାପାଣି ଯୁବକ ସଂଘ | ବୀଣାଝରି |
| ମା' ତାରିଣୀ କ୍ଲବ୍ | କୁଣ୍ଡାପିଠା |
| ପାରିଜାତ କ୍ଲବ୍ | ଢେଙ୍କିକୋଟ |
| ବିକାଶ ନିକେତନ | ଢେଙ୍କିକୋଟ |
| ମା' ତାରିଣୀ କ୍ଲବ୍ | ଡେଙ୍କିକୋଟ |
| ତାରିଣୀ କ୍ଲବ୍ | ବାରିକସାହି (ଗଦାଧରପୁର) |
| ଅର୍ଦ୍ଧନାରୀ କ୍ଲବ୍ | ମନଡା |
| ଅରଣ୍ୟଫୁଲ ୟୁଥ୍ କ୍ଲବ୍ | ନାକଝରି |
| ସତ୍ୟନାରାୟଣ କ୍ଲବ୍ | ପତିଲୋ |
| ପ୍ରଗତି କ୍ଲବ୍ | ନାଲବିଲା |
| ବିଜୟକେତନ କଲ୍‌ଚରାଲ୍ କ୍ଲବ୍ | ଏମ୍.କେ.ପାଟଣା |

| | |
|---|---|
| ଜନକଲ୍ୟାଣ କ୍ଲବ୍ | ବାଟହରିଚନ୍ଦନପୁର |
| ବନଦୁର୍ଗା କ୍ଲବ୍ | ମେଲାଣ |
| ଇଣ୍ଡିଆ ଡେଭଲପ୍‌ମେଣ୍ଟ ପ୍ରୋଜେକ୍ଟ | ମେଲାଣ |
| ମା' ବୀଣାପାଣି କ୍ଲବ୍ | ମହୁଲଗାଡିଆ |
| ଆଜାଦ୍ ହିନ୍ଦ କ୍ଲବ୍ | ମହୁଲଗାଡିଆ |
| ପିଙ୍କ ଷ୍ଟାର୍ କ୍ଲବ୍ | ଗଦାଧରପୁର |
| ବନଶ୍ରୀ ଆଦିବାସୀ ଅପେରା ଏବଂ ପାଠାଗାର | ଫୁଲପହଡି |
| ସ୍ୱପ୍ନସାଗର କ୍ଲବ୍ | ତରା |
| ଲକ୍ଷ୍ମୀନାରାୟଣ କ୍ଲବ୍ | ଗୋବରବେଡା |
| ଜନଚେତନା ପରିଷଦ | ଦେଓବନ୍ଧ |
| ଶୋଭନୀୟ ଶିକ୍ଷାଶ୍ରମ | ଘଟଗାଁ |
| ଆନାର୍ତେ ଫାଉଣ୍ଡେସନ୍ | ଘଟଗାଁ |

## ହରିଚନ୍ଦନପୁର ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ମହାବଳୀ ନେତାଜୀ କ୍ଲବ୍ | ମହାଯୋଡି |
| ନୃସିଂହ ନାରାୟଣ ଯୁବକ ସଂଘ | ଜାମୁଯୋଡି |
| ରାଧାକୃଷ୍ଣ ଯୁବକ ସଂଘ | ତମ୍ବାହରା |
| ଧାଙ୍ଗରଡିହା ନେହେରୁ ଯୁବକ ସଂଘ | ଭାଙ୍ଗଡ଼ପଡା |
| ଶମ୍ଭୁନାଥ ଯୁବକ ସଂଘ | ଶାଙ୍ଖିମାଣ୍ଡ୍ରା |
| ଆଦିବାସୀ ବି·ବି·ଆର୍· କ୍ଲବ୍ | ବଣିଟାଙ୍ଗର |
| ଫରୱାର୍ଡ କ୍ଲବ୍ | ଜାମୁଯୋଡି |
| କେ·ଆଇ·ଆର୍·ଡି·ଟି·ଆଇ | ହରିଚନ୍ଦନପୁର |
| ଚାନ୍‌ସେଲର ଯୁବକ ସଂଘ | ବିଲା |
| ଡାଇମଣ୍ଡ କ୍ଲବ୍ | ପିଟାପିଟି |
| ଫାଇଭ୍ ଷ୍ଟାର କ୍ଲବ୍ | କଣ୍ଟାପଡା |
| ମହାବୀର ନେତାଜୀ କ୍ଲବ୍ | ଅଁଳାଯୋଡି |

| | |
|---|---|
| ବାପୁଜୀ ଯୁବକ ସଂଘ | ଧୂତିଆମ୍ବ |
| ରୟାଲ୍ କ୍ଲବ୍ | କାଳିମାଟି |

## ତେଲକୋଇ ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| ଜନକଲ୍ୟାଣ ଯୁବକ ସଂଘ | ତିମିରିମୁଣ୍ଡା |
| ଯୁବ ଜୀବନ ଯୁବକ ସଂଘ | ପଣ୍ଡାପୋଷି |
| ଗୋପବନ୍ଧୁ ଯୁବକ ସଂଘ | ବନବିହାରୀପୁର |
| ଜୟଶ୍ରୀଜ୍ୟୋତି ଯୁବକ ସଂଘ | ଭୀମକାଣ୍ଡ |
| ରାଜଲକ୍ଷ୍ମୀ ଯୁବକ ସଂଘ | ସାନନାଳି |
| ମା' ତାରିଣୀ ଯୁବକ ସଂଘ | ସଲେଇକେନା |
| ଯୁବଜ୍ୟୋତି କ୍ଲବ୍ | ଭୀମକାଣ୍ଡ |
| ବନବାସୀ ବିଶ୍ୱ ସଂଗଠନ | ଜଗମୋହନପୁର |
| ରମାଦେବୀ ଗ୍ରାମ୍ୟ ଉନ୍ନୟନ ସଂସ୍ଥା | ବନବିହାରୀପୁର |
| ଜୟଦୁର୍ଗା ଯୁବକ ସଂଘ | ବେଣାମୁଣ୍ଡା |
| ଜନକଲ୍ୟାଣ ଯୁବକ ସଂଘ | ଗୋପୀନାଥପୁର |
| ଭି·ଓ·ଆର୍·ଡି | ତେଲକୋଇ |
| ଦିବ୍ୟଭାରତୀ କ୍ଲବ୍ | ଭାଲିଆତାଳ |
| ବାପୁଜୀ ଆଶ୍ରମ ବିନୋଦନ କେନ୍ଦ୍ର | ଶିବନାରାୟଣପୁରଗୋଡା |
| ଅମରଜ୍ୟୋତି ଯୁବକ ସଂଘ | ଆକୁଳ |
| ପଲ୍ଲୀଜ୍ୟୋତି କ୍ଲବ୍ | ତିମିରିଆ |
| ରାଧାକୃଷ୍ଣ କ୍ଲବ୍ | ବିଞ୍ଝବାହାଳ |

## ବାଂଶପାଳ ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| କମ୍ୟୁନିଟି ହେଲ୍‌ଥ ଏକ୍ସଟେନ୍‌ସନ ପ୍ରୋଜେକ୍ଟ | ଚଂପେଇ |
| ବନବାସୀ ଚେତନା ମଣ୍ଡଳ | ଗୋନାସିକା |

| | |
|---|---|
| ସର୍ବୋଦୟ ସେବା ସମିତି | ଶୁଆକାଟୀ |
| ପାଟେଶ୍ୱର ଯୁବକ ସଂଘ | ଶୁଆକାଟୀ |
| ସୂତ୍ର | ଶୁଆକାଟୀ |
| ଡୁମୁରିଡିହି ଯୁବକ ସଂଘ | ତଳଜାଗର |
| ଟି·ଆର୍·ଡି·ଏସ୍·ଏସ୍·ଓ | ଜନ୍ତାରି |
| ଗାନ୍ଧୀଜୀ ଯୁବକ ସଂଘ | ଅଞ୍ଜର |

## ଯୋଡା ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| ରାଣା ପ୍ରତାପ ଯୁବକ ସଂଘ | ଶିଆଳିଯୋଡି |
| ଆଦିବାସୀ ବିକାଶ ସମିତି | ସେରେଣ୍ଡା |
| ମା' କୁଞ୍ଜରି ଯୁବକ ସଂଘ | ଧୁବାକୋଚା |
| ଟାଟା ଷ୍ଟୀଲ୍ ରୁରାଲ୍ ଡେଭ୍· ସୋସାଇଟି | ଯୋଡା |
| ସତ୍ୟସାଇ ଯୁବକ ସଂଘ | କୋଚାବରପଦା |
| ରାଧାକୃଷ୍ଣ ଯୁବକ ସଂଘ | ରେଭେନ୍‌ସାପୁର |
| ମା' ତାରିଣୀ ଯୁବକ ସଂଘ | ମୁଟୁଡା |
| କଳିଙ୍ଗ ଗୋପବନ୍ଧୁ ୟୁଥ୍ ଆସୋସିଏସନ୍ | କଳିଙ୍ଗ |
| ଚଇତାଳି (ନୃତ୍ୟ ଓ ଗୀତ) | ମାଟକାମ୍‌ବେଡା |
| କୌଶିକ ଥିଏଟର୍ | ମାଟକାମ୍‌ବେଡା |

## ଚଂପୁଆ ବ୍ଲକ୍

| ସାଂସ୍କୃତିକ ଅନୁଷ୍ଠାନ | ସ୍ଥାନ |
|---|---|
| ସରେଇ ଯୁବକ ସଂଘ | ସରେଇ |
| ରାଧାକୃଷ୍ଣ ସଙ୍ଗୀତ ମହାବିଦ୍ୟାଳୟ | ରିମୁଳି |
| ଫୋରମ୍ ଫର୍ ଇକନମିକ୍ ଆଣ୍ଡ କଲ୍‌ଚରାଲ୍ ଆଡଭାନ୍‌ସମେଣ୍ଟ | କାଳିକାପ୍ରସାଦ |
| ବୀଣାପାଣି ଯୁବକ ସଂଘ | ଟୁଣୁଟୁଣା |

| | |
|---|---|
| ଅମରଜ୍ୟୋତି ସଂଘ | ରାମଚନ୍ଦ୍ରପୁର |
| ବାଗ୍‌ଦେବୀ ଯୁବକ ସଂଘ | ନିଷ୍ଠିତପୁର |
| ସବୁଜ ଯୁବକ ସଂଘ | ପାତୁଆ |
| ବୈତରଣୀ ସେବା ସୋସାଇଟି | ଚଂପୁଆ |
| ସିନ୍ଦୁର ଗୌରୀ ଯୁବକ ସଂଘ | ରେଂଗାଳବେଡା |
| ଜୟଦୁର୍ଗା କଲ୍‌ଚରାଲ୍ କ୍ଲବ୍ | କରଞ୍ଜିଆ |
| ମନମୋହିନୀ ଯୁବକ ସଂଘ | ଗୁଲୁଡିପଶି |
| ଆଦିବାସୀ ଲକ୍ଷ୍ମୀ ଯୁବ ପରିଷଦ | ବାଲା |
| କାଉଁରିକଳା ଯୁବକ ସଂଘ | କାଉଁରିକଳା |
| ଯୁବଜ୍ୟୋତି କ୍ଲବ୍ | ପାରୁଡିପଶି |
| ପ୍ରକଳ୍ପ | ଜ୍ୟୋତିପୁର |
| ପାରିଜାତ ଯୁବକ ସଂଘ | ଉଜବାଲି, ଚଂପୁଆ |

## ଝୁଂପୁରା ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ପ୍ରଗତି କ୍ଲବ୍ | ଚିଙ୍ଗୁଡିପଶି |
| ରାଧାମାଧବ ଯୁବକ ସଂଘ | ନିଉଣ୍ଡି |
| ସୁବାଷ ବୋଷ କ୍ଲବ୍ | ହୁଡିସାହି |
| ବାପୁଜୀ ଯୁବକ ସଂଘ | ଗଣ୍ଡବରେହି |
| ମୋହନବୀର ଯୁବକ ସଂଘ | ବଡ଼ପଶି |
| ଶଶୀକଳା ଯୁବକ ସଂଘ | ଟୁକୁଡିହା |
| ସତ୍ୟନାରାୟଣ ଯୁବକ ସଂଘ | ଅନ୍ଧାରୀଖମଣ |
| ଭାସ୍କରଜ୍ୟୋତି କ୍ଲବ୍ | ପିଛୁଳାବେଡା |
| ଏ.ଏସ୍.ଡବ୍ଲ୍ୟୁ.ଆର୍.ଡି | ନୁଟାପଶି |
| ମା' ତାରିଣୀ କ୍ଲବ୍ | ସୀତାରାମପୁର |
| ଲକ୍ଷ୍ମୀନାରାୟଣ କ୍ଲବ୍ | କାଶୀପୁର |

| | |
|---|---|
| ସିନ୍ଦୁରଗୌରୀ କ୍ଲବ୍ | ସିଲିତିଆ |
| ପାରିଜାତ କ୍ଲବ୍ | ବାର୍ହାପଣି |
| ଶ୍ରୀଜଗନ୍ନାଥ କ୍ଲବ୍ | କାଶିପାଳ |
| ରାମକୃଷ୍ଣ ପାଠାଗାର | ଟୁକୁଡିହା |
| ଆଜାଦ୍ ହିନ୍ଦ କ୍ଲବ୍ | ଗୋପୀବଲ୍ଲଭପୁର |
| ଏସ୍·କେ·ଟି·ଜେ ଯୁବକ ସଂଘ | ଅସୁକି |
| ଜୟଲକ୍ଷ୍ମୀ କ୍ଲବ୍ | ଧର୍ନୁଜୟପୁର |
| ମା' ବନଦୁର୍ଗା କ୍ଲବ୍ | ହୁଡିସାହି |
| ତ୍ରିଶକ୍ତି ଯୁବ ପରିଷଦ | ଗଣ୍ଡବରେହି |
| ରାଧାକୃଷ୍ଣ ଯୁବକ ସଂଘ | ସରାସିଂହା |
| ଜିୟଲ୍ ମାର୍ଶାଲ୍ ଜୁଆନ୍ ଯୁମିତି | ତେଲିଆଣାଳ |
| ସ୍ୱପ୍ନେଶ୍ୱର କୋରାଲ୍ ୟୁଥ୍ କ୍ଲବ୍ | ମହାଦେବପୁର |
| ଭଗତ୍ ସିଂ ୟୁଥ୍ କ୍ଲବ୍ | ଅଁଳେଇଗୋଡା |
| ନେତାଜୀ ଯୁବକ ସଂଘ | ବାଲିବନ୍ଧ |
| ଯୁବଜ୍ୟୋତି କ୍ଲବ୍ | ରାଇକଳା |

## ଆନନ୍ଦପୁର ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ପ୍ରଣବ ପାଠାଗାର | ଆନନ୍ଦପୁର |
| ଉଖରେଶ୍ୱର କ୍ଲବ୍ | ଆନନ୍ଦପୁର |
| ଧକୋଠା ଯୁବକ ସଂଘ | ଧକୋଠା |
| ଜ୍ୟୋତି କ୍ଲବ୍ | ବାରଗାଁ |
| ବିଶ୍ୱଭାରତୀ କ୍ଲବ୍ | ପଅଁପଲ୍ଲୀ |
| ଜୟଭାରତୀ ଯୁବକ ସଂଘ | ଟୋଲଙ୍କପତା |
| ସହିଦ୍ କ୍ଲବ୍ | କୋତପତା |
| ନୂଆଗାଁ ରାଧାରମଣ କ୍ଲବ୍ | ନୂଆଗାଁ |
| ଫକୀରପୁର ଜେନେରାଲ୍ ଲାଇବ୍ରେରୀ | ଫକୀରପୁର |

| | |
|---|---|
| ଇଣ୍ଡିଆ ଡେଭଲପମେଣ୍ଟ ପ୍ରୋଜେକ୍ଟ | ଫକୀରପୁର |
| ବନଦୁର୍ଗା ଯୁବକ ସଂଘ | ବରୁଆଁ |
| ଗୋପେଇଶୁଣି ଯୁବକ ସଂଘ | ଭାଲୁକୁମା |
| ଆଞ୍ଚଳିକ ପରିବେଶ ସୁରକ୍ଷା | କଣ୍ଟିପାଳ |
| ସିଦ୍ଧେଶ୍ୱର ଆଦିବାସୀ ୱେଲଫେୟାର ପ୍ରୋଜେକ୍ଟ | କନ୍ତୋ |
| ଶାନ୍ତି ସେବା ସଂଘ | ବେଲବାହାଳି |
| ତରତରା ୟୁଥ୍ କ୍ଲବ୍ | ତରତରା |
| ବୈତରଣୀ କ୍ଲବ୍ | ଟୁକୁଣା |
| ନୀଳଶୈଳ କ୍ଲବ୍ | ବାଉଁଶଗଡ |
| କିଷାନ୍ କ୍ଲବ୍ | ପୁରୁଣାଘାଟି |

## ହାଟଡିହି ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ଜନ ଓଡ଼ିଆ ଯୁବ ପରିଷଦ | ପଞ୍ଚୁଗୋଛିଆ |
| ଆଞ୍ଚଳିକ ସରସ୍ୱତୀ ୟୁଥ୍ ପରିଷଦ | ନିଶଙ୍କପୁର |
| ସୁବର୍ଣ୍ଣେଶ୍ୱର ଯୁବ ମୈତ୍ର ସଂଘ | ସୁଲଣ |
| ଗଡ଼ଚଣ୍ଡୀ ଯୁବ ପରିଷଦ | ସୁନ୍ଦରପାଳ |
| ଅନ୍ତୋଦୟ ଚେତନା କେନ୍ଦ୍ର | ସାଉଁଟାପଲ୍ଲୀ |
| ସିଂଦୋଭ୍ ଏମ୍·ପି·ସି·ଏସ୍ | ସିଂଦୋଭ |
| କ୍ଲବ୍ ଦେଶପ୍ରେମୀ | ରଣା |
| ମା' ଗଡ଼ଚଣ୍ଡୀ କ୍ଲବ୍ | ମାଝୀଗାଁ |
| ଗରୀବ ନାରାୟଣ ପାଠାଗାର | ଇଚ୍ଛୋଲ |
| ବୈତରଣୀ କଲ୍‌ଚରାଲ୍ କ୍ଲବ୍ | ଆଡହୁରିଆ |
| ରିଜିଓନାଲ୍ ପ୍ରୋଗ୍ରେସିଭ୍ ୟୁଥ୍ କ୍ଲବ୍ | ଢେଙ୍କା |
| ପ୍ରଗତି କ୍ଲବ୍ | ସରଳା |
| ଯୌତୁକ ପ୍ରପୀଡିତ ନାରୀସେବା ଥଇଥାନ କେନ୍ଦ୍ର | ଆମ୍ବଗାଡିଆ |
| ଅମରଜ୍ୟୋତି କ୍ଲବ୍ | ତେନ୍ତୁଳିପଡା |

| | |
|---|---|
| ଅନାଦିନାରାୟଣ ଯୁବକ ସଂଘ | ଡିମିରିଆ |
| ରାଧାକୃଷ୍ଣ ଯୁବକ ସଂଘ | ଜଳସରପୁର |
| ରିଜିଓନାଲ୍ କ୍ଳବ୍ | ମୁଗୁପୁର |
| ଯୁବ ସାମ୍ମୁଖ୍ୟ | ବଞ୍ଜୋ |

## ଘସିପୁରା ବ୍ଲକ୍

| **ସାଂସ୍କୃତିକ ଅନୁଷ୍ଠାନ** | **ସ୍ଥାନ** |
|---|---|
| ଶଇଲଙ୍ଗ ମହିଳା ସମିତି | ଶଇଲଙ୍ଗ |
| ଅରବିନ୍ଦ କ୍ଳବ୍ | କେଶଦୂରାପାଳ |
| ସର୍ବପଲ୍ଲୀ ରାଧାକୃଷ୍ଣ କ୍ଳବ୍ | ନରସିଂହପୁର |
| ଯୁଗଜ୍ୟୋତି କ୍ଳବ୍ | ଚାମୁହିଁ |
| ଏସ୍.କେ. ରାଉତ ଜୟଶ୍ରୀ ୟୁନାଇଟେଡ୍ କ୍ଳବ୍ | ଧାଉଡିଡିହା |
| ନିଳାଦ୍ରୀ ବିହାରୀ ଆଞ୍ଚଳିକ କ୍ଳବ୍ | ଭାଗନଇ |
| ବାୟାବାବା କ୍ଳବ୍ | ଶୈଲଙ୍ଗ |
| ଆର୍.ଏନ୍.ପାତ୍ର ଗୋପବନ୍ଧୁ ଶାନ୍ତି ଉପବନ | କଇନିପୁରା |
| ଝାଡେଶ୍ୱର କ୍ଳବ୍ | ଘସିପୁରା |
| ଜୟଦୂର୍ଗା କ୍ଳବ୍ | ବଳରାମପୁର |
| ଏ.ପାତ୍ର କ୍ଳବ୍ | ଅଟାସାହି |
| ହିଙ୍ଗୁଳ କ୍ଳବ୍ | ସାଇଁକୁଳ |
| ନେତାଜୀ ଆଞ୍ଚଳିକ ଯୁବକ ସଂଘ | ରାମଚନ୍ଦ୍ରପୁର |
| ବ୍ରାହ୍ମଣୀଦେବୀ କ୍ଳବ୍ | ହାସନପୁର |
| ଜାଗୃତି କ୍ଳବ୍ | ଭୋଳାନୂଆଗାଁ |
| ଉତ୍କଳମଣି ଯୁବକ ସଂଘ | କଇଁସିରା |
| ନେତାଜୀ କ୍ଳବ୍ | ଭଣ୍ଡାରୀଡିହା |
| ବିଶ୍ୱଜ୍ଞାନ ଚେତନା ସମାଜ | ସ୍ନେହକାନନ (ଅଁଳାପାଳ) |
| ୟୁନାଇଟେଡ୍ କ୍ଳବ୍ | ଉଜୁଣି |
| ସର୍ବମଙ୍ଗଳ ମଙ୍ଗଳ ବ୍ଲୁ ଷ୍ଟାର୍ କ୍ଳବ୍ | ସରେଇ |

| | |
|---|---|
| କିଶୋର କ୍ଲବ୍ | ପୁରୁଣା ବାନ୍ଧଗୋଡା |
| ନାଗରିକ ସଂଘ | ଚଉମୁହାଣି |
| କଳାକାହ୍ନୁ ପାଠାଗାର | ବଳରାମପୁର |
| ନେତାଜୀ ସୁବାସ ଭଲ୍ୟୁଣ୍ଟାରୀ କ୍ଲବ୍ | ପୁରୁଣାବାନ୍ଧଗୋଡା |
| ଜୟଗୋବିନ୍ଦ ୟୁଥ୍ କ୍ଲବ୍ | ଅଟାସାହି |
| ସତ୍ୟ ନିରଞ୍ଜନ ସେବା ସଂଘ | ଦରଡିପାଳ |
| ମା' ମଙ୍ଗଳା କ୍ଲବ୍ | ସତତୀରା |
| ହିଙ୍ଗୁଳା ଯୁବକ ସଂଘ | ଉଜୁଣି |
| ସୋସାଇଟି ଫର୍ ରୁରାଲ୍ ଡେଭ· | ଭଣ୍ଡାରିଡିହା |
| ମହର୍ଷୀ ଦୟାନନ୍ଦ ପାଠାଗାର | ମଛାଳ |
| ଶନିଶ୍ଚର କ୍ଲବ୍ | ବେଲସୁନ୍ଦରୀ |
| ଧନେଇ ଯୁବକ ସଂଘ | ଖାଳିଆମେଣ୍ଟା |
| ସୁବାଷ ବୋଷ ଯୁବକ ସଂଘ | ବାରଙ୍ଗ |
| ଜୟ ସନ୍ତୋଷୀମା' କ୍ଲବ୍ | ମଲିକାତୀରା |
| ସାଇଁକୁଳ ମହିଳା ସମିତି | ସାଇଁକୁଳ |
| ନବଜ୍ୟୋତି ଯୁବକ ସଂଘ | ଓସ୍ତପୁର |
| ନିଳାଦ୍ରୀ କ୍ଲବ୍ | ବସନ୍ତପୁର |
| ହରଚଣ୍ଡୀ କ୍ଲବ୍ | କେନ୍ଦୁଖୁଣ୍ଟା |
| ବ୍ରାହ୍ମଣୀଦେବୀ କ୍ଲବ୍ | ଗୋଡିପାଟଣା |
| ସ୍ୱାମୀ ବିବେକାନନ୍ଦ ସ୍ମାରକସମିତି | ଡରିମୂଳ |
| ଯୁବଶକ୍ତି କ୍ଲବ୍ | ଚଅଁରପଣି |
| ମହାମାୟୀ ହିଙ୍ଗୁଳା ଆଞ୍ଚଳିକ କ୍ଲବ୍ | ଜର୍ଦା |

## କେନ୍ଦୁଝର ଜିଲ୍ଲାର ସାପ୍ତାହିକ ହାଟ

| ହାଟ | ବାର |
|---|---|
| କେନ୍ଦୁଝରଗଡ଼ ପୁରୁଣାବଜାର | ରବିବାର |
| କେନ୍ଦୁଝର ଧର୍ମଶାଳା | ରବିବାର |

| | |
|---|---|
| ଢେଙ୍କିକୋଟ | ଶନିବାର |
| ବାଙ୍କପୁଟୁଳି | ଶୁକ୍ରବାର |
| ଘଟଗାଁ | ମଙ୍ଗଳବାର |
| ହରିଚନ୍ଦନପୁର | ଶୁକ୍ରବାର, ସୋମବାର |
| ସାହାରପଡା | ରବିବାର |
| ନୂଆଗାଁ | ରବିବାର |
| ସ୍ୱାମ୍ ପାଟଣା | ବୁଧବାର |
| ପଳାସପଙ୍ଗା | ମଙ୍ଗଳବାର |
| ଖୀରେଇଟାଙ୍ଗିରି | ମଙ୍ଗଳବାର |
| ରାଜନଗର | ଗୁରୁବାର |
| ଭଗାମୁଣ୍ଡା | ବୁଧବାର |
| ରେବଣାପଳାସପାଳ | ରବିବାର |
| ବ୍ରାହ୍ମଣୀପାଳ | ରବିବାର |
| ଦୈତାରୀ | ରବିବାର |
| ବଡ଼ବିଲ୍ | ରବିବାର |
| ଯୋଡା | ପ୍ରତିଦିନ |
| ବନେଇକଳା | ମଙ୍ଗଳବାର |
| କଣ୍ଡରା | ଗୁରୁବାର |
| ଚଂପୁଆ | ପ୍ରତିଦିନ |
| ଝୁଂପୁରା | ବୁଧବାର ଓ ପ୍ରତିଦିନ |
| ଭୂଇଁପୁର | ବୁଧବାର |
| କରଞ୍ଜିଆ | ରବିବାର |
| ଜ୍ୟୋତିପୁର | ଶୁକ୍ରବାର |
| ଉଜପଣି | ଗୁରୁବାର |
| ଉଖୁଣ୍ଡା | ଶନିବାର |
| ପର୍ସଳା | ଶୁକ୍ରବାର |
| ରମୁଳି | ସୋମବାର |
| କାଳିକାପ୍ରସାଦ | ଗୁରୁବାର |

# କେନ୍ଦୁଝରର ପାରଂପରିକ ଜଙ୍ଗଲଜାତ ଖାଦ୍ୟ ଦ୍ରବ୍ୟ ଓ ଅନ୍ୟାନ୍ୟ ସାମଗ୍ରୀ

ବଣପାହାଡ ଘେରା କେନ୍ଦୁଝର ଓ ଏହାର ପ୍ରାକୃତିକ ଶୋଭାରାଜି ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଭିନ୍ନ । ଏଠାକାର ମାଇଲ୍ ମାଇଲ୍ ବ୍ୟାପୀ ଲମ୍ବିଥିବା ପାହାଡ, ଘଞ୍ଚ ଶାଳ ଜଙ୍ଗଲ ଓ ଜଙ୍ଗଲୀ ପଶୁପକ୍ଷୀ ବିଦେଶାଗତଙ୍କୁ ସବୁବେଳେ ଆକୃଷ୍ଟ କରିଥାଏ । ମାତ୍ର, ଦ୍ରୁତ ଖଣି ଖନନ ଓ ଶିଳ୍ପାୟନ ଆଜି କେନ୍ଦୁଝରର ଜୈବ ବିବିଧତା ପ୍ରତି ବିପଦ ସୃଷ୍ଟି କରିଛି । ଏଠାକାର ଘଞ୍ଚ ଜଙ୍ଗଲ, ରାଶିରାଶି ପର୍ବତମାଳା ଓ ଆଦିବାସୀ ଜନଜାତି, ଜୈବବିବିଧତା ଆଜି ବିପନ୍ନ । କେନ୍ଦୁଝରର ଆଦିମ ଜନଜାତିମାନେ ସାଧାରଣତଃ ଜଙ୍ଗଲର ଫଳମୂଳ ଉପରେ ନିର୍ଭର କରି ବଞ୍ଚିଥାନ୍ତି । ଜଙ୍ଗଲ ଓ


ଶାଳ ଫୁଲ

ପାହାଡକୁ କେନ୍ଦ୍ର କରି କେନ୍ଦୁଝରବାସୀଙ୍କ ଜୀବନଶୈଳୀ ବେଶ୍ ପ୍ରଭାବିତ । କି ଖରା କି ବର୍ଷା କି ଶୀତ; ସବୁ ଋତୁରେ ବଣର ଫୁଲ, ଫଳ, ମୂଳ ଓ ଅନ୍ୟାନ୍ୟ ଜଙ୍ଗଲଜାତ ଦ୍ରବ୍ୟର ସମ୍ଭାରରେ କେନ୍ଦୁଝରର ରାସ୍ତାକଡ଼ର ବଜାର ସତେଜ ହୋଇଉଠେ । ଆଦିବାସୀ ମହିଳା ଓ ପୁରୁଷମାନେ ଜଙ୍ଗଲରୁ ସଂଗ୍ରହ କରିଥିବା ନାନା ପ୍ରକାରର ଜଙ୍ଗଲୀ କୋଳି, କେନ୍ଦୁ, ଆମ୍ବ, ଶାଳ ଦାନ୍ତକାଠି, ଶାଳପତ୍ର ଓ ଅନ୍ୟାନ୍ୟ ସାମଗ୍ରୀକୁ କେନ୍ଦୁଝର ବଜାରକୁ ବୋହିଆଣିଥାନ୍ତି । ଏହି ଆଦିବାସୀ ମହିଳା ଓ ପୁରୁଷମାନେ ଏହାକୁ ବିକ୍ରିକରି ସେମାନଙ୍କର ତେଲଲୁଣ ସଂସାର ଚଳାନ୍ତି କହିଲେ ଠିକ୍ ହେବ ।



ରାସ୍ତା ପାର୍ଶ୍ୱରେ ଶାଳପତ୍ରର ପସରା ମେଲି ବସିଛନ୍ତି ଆଦିବାସୀ ମହିଳା



ରାସ୍ତା ପାର୍ଶ୍ୱରେ ଶାଳପତ୍ରର ପସରା ମେଲି ବସିଛନ୍ତି ଆଦିବାସୀ ମହିଳା



କେନ୍ଦୁଝରୀ କୁସୁମ କୋଳି: ଏହା ଏକ ପାରମ୍ପରିକ ଖାଦ୍ୟ ।
ଏହାକୁ କଞ୍ଚା ବେଳେ ଭଜାରନ୍ଧା କରାଯାଇଥାଏ ।



ପୁଢେଇ କୋଳି: ଲାଲ୍ ରଂଗର ଏହି ଜଙ୍ଗଲୀ ଫଳଟି କେନ୍ଦୁଝରରେ ବେଶ୍
ପରିଚିତ ଫଳ ଭାବେ ଜଣାଶୁଣା ।



କେନ୍ଦୁଝରୀ କେନ୍ଦୁର ପସରା: ସହରର ମୁଖ୍ୟ ରାସ୍ତାରେ ଆଦିବାସୀ ମହିଳାମାନେ କେନ୍ଦୁ ବିକ୍ରି କରୁଛନ୍ତି ।



କେନ୍ଦୁଝରୀ କରମଙ୍ଗା



କେନ୍ଦୁଝର ଜିଲ୍ଲାର ଆଦିମ ଅଧିବାସୀଙ୍କ ପାରଂପରିକ ଖାଦ୍ୟ: କଲେଇ ବା ଝଡିପୋକ



କେନ୍ଦୁଝର ଜିଲ୍ଲାର ଆଦିମ ଅଧିବାସୀଙ୍କ ପାରଂପରିକ ଖାଦ୍ୟ: ଜାଇ ବା ନାଲି ଉଦ୍ଧା



କେନ୍ଦୁଝର ଜଂଗଲରୁ ସଂଗୃହୀତ ହରିଡା



ଗୋଲାପ ରଂଗର ଆକର୍ଷଣୀୟ 'ଗିଲିରି ଫୁଲ'। ଏହା କେନ୍ଦୁଝରବାସୀଙ୍କ ଏକ ପାରଂପରିକ ଖାଦ୍ୟ ଭାବେ ପରିଚିତ ।



କେନ୍ଦୁଝର ଜଂଗଲରୁ ସଂଗ୍ରହ କରାଯାଇଥିବା ବସ୍ତାବସ୍ତା ବରକୋଳି



କେନ୍ଦୁଝରୀ ଅଷାଡୁ କୋଳି



କେନ୍ଦୁଝରୀ ମକାର ପସରା

କେନ୍ଦୁଝରୀ ଖୁଦ ଛତୁ (ବାଲି ଛତୁ)



କେନ୍ଦୁଝରୀ ଆମ୍ବଡା



କୁସୁମ ମଂଜି, ଯାହାର ତେଲ ଆଦିବାସୀ ଯୁବତୀର
ଖୋସାର ସୌନ୍ଦର୍ଯ୍ୟ ବଢ଼ାଏ



ଜଙ୍ଗଲରୁ ସଂଗୃହୀତ ପାରଂପରିକ ପାହାଡିଆ ଶୋରିଷ



ଜଙ୍ଗଲରୁ ସଂଗୃହୀତ ପାରଂପରିକ ପାହାଡିଆ ରାଶି

ଦୁଇଟି ଶିଶୁ କେନ୍ଦୁଝର ବଜାରକୁ କଖାରୁ ଫୁଲ ବିକ୍ରି କରିବାକୁ ଆସୁଛନ୍ତି ।



ମୁସାକାନି ଚେରମୂଳି: ଏହାକୁ ଖରାରେ ଶୁଖାଇ ଶିଳରେ ବାଟି ହାଣ୍ଡିଆରେ ବ୍ୟବହାର କରାଯାଏ । ଭାତକୁ ଶୀଘ୍ର ପଚେଇବାରେ ଏହା ସହାୟତା କରିଥାଏ ।

କେନ୍ଦୁଝର ଓ ଏହାର ଆଖପାଖ ଜଙ୍ଗଲରୁ ମିଳୁଥିବା ଚାର କୋଳି, କେନ୍ଦୁ, ଝରଣା ଆମ୍ବ, ବଣ ଶାଗ, କାଇ, କଲେଇ, ନାନା ପ୍ରକାର ଛତୁ, ଖୁଦ ଛତୁ, ରୁଟୁକା ଛତୁ, କାଠ ଛତୁ, ଗିର୍ଲି ଫୁଲ, ଖଲିପତ୍ର, ଦାନ୍ତକାଠି ସଂଗ୍ରହ କରି ଆଦିବାସୀ ମହିଳା ଓ ପୁରୁଷମାନେ କେନ୍ଦୁଝର ବଜାରରେ ପସରା ମେଲେଇଥାନ୍ତି । କେନ୍ଦୁଝର ଜିଲ୍ଲାର ଜଙ୍ଗଲରୁ ଚାରକୋଳି, ବରକୋଳି, ଜାମୁ, ଆମ୍ବ, ଅଷାଢୁ କୋଳି, ଜଙ୍ଗଲୀ ସାରୁ, ପୁଢେଇ କୋଳି, କେନ୍ଦୁ, କରମଙ୍ଗା, କୁସୁମ କୋଳି, କଖାରୁଫୁଲ, ପଣସ ମଞ୍ଜି, ତେନ୍ତୁଳି, ଗୋଟି ପଣସ, ମକା, କାଠ, ଦାନ୍ତକାଠି, ଶାଳପତ୍ର, ସିଆଡି ପତ୍ର, ହରିଡା, ବାହାଡା, ଅଁଳା, ଝାଡୁ, ଘାସ ମସିଣା, ନାନା ପ୍ରକାର ଜଙ୍ଗଲୀ ଫୁଲ, ଶାଗ ଆଦି ସଂଗ୍ରହ କରି ଏଠାକାର ସ୍ଥାନୀୟ ଅଧିବାସୀମାନେ ବିକ୍ରି କରିଥାନ୍ତି । ସୁଖର କଥା, ଦ୍ରୁତ ଖଣି ଖନନ ଓ ଶିଳ୍ପାୟନର ପ୍ରଭାବରେ ମଧ୍ୟ କେନ୍ଦୁଝରର ପାରଂପରିକ ଜଙ୍ଗଲଜାତ ଦ୍ରବ୍ୟର ବଜାର ଉପରେ କୌଣସି ପ୍ରଭାବ ପଡିନାହିଁ । ପଚାଶବର୍ଷ ତଳେ କେନ୍ଦୁଝରର ରାସ୍ତାକଡରେ ଯେଉଁ ଜଙ୍ଗଲଜାତ ଦ୍ରବ୍ୟର ବଜାର ଥିଲା ଆଜି ମଧ୍ୟ ସହରର ରାସ୍ତାକଡରେ କାଠ, ପତ୍ର, ଦାନ୍ତକାଠି, ଫୁଲ, ଫଳ ଓ ଜଙ୍ଗଲୀ ଫଳମୂଳର ବଜାର ରହିଛି । ମାତ୍ର, ଶିଳ୍ପାୟନ ଓ ଖଣି ଖନନ ଯୋଗୁଁ ଯେଉଁଭଳି ଭାବେ ଜଙ୍ଗଲ ଧ୍ୱଂସ ପାଉଛି ତାହା ହିଁ ଏଠାକାର ଆଦିବ ଜନଜାତିଙ୍କ ପାଇଁ ଚିନ୍ତାର କାରଣ ପାଲଟିଛି । ଏହା ଏବେ କେନ୍ଦୁଝରର ଜୈବବିବିଧତା ପାଇଁ ଏକ ପ୍ରକାଣ୍ଡ ଆହ୍ୱାନ ପାଲଟିଛି । ଶିଳ୍ପ କାରଖାନା ଓ ଯାଂତବ ଟ୍ରକ୍‌ମାନଙ୍କରୁ ବାହାରୁଥିବା ଧୂଳି, ଧୂଆଁରେ କେନ୍ଦୁଝରର ଗ୍ରାମ୍ୟ ଜୀବନ, ଜଙ୍ଗଲ ଓ ପରିବେଶ ଏକପ୍ରକାର ବେହାଲ୍ ହୋଇଯିବାକୁ ବସିଲାଣି । ଅଷାଢୁଆ ଫଳ (କୋଳି)କୁ ପନିପରିବା ଭଳି ଖଣ୍ଡଖଣ୍ଡ କାଟି ଆଳୁ ସାଙ୍ଗରେ ଭାଜି କରାଯାଇଥାଏ । ପଣସ ମଞ୍ଜିକୁ ତରକାରୀ, ପୋଡା କରି ଖିଆଯାଏ । ଆମ୍ବ, ପିଜୁଳି, କରମଙ୍ଗା, କୁସୁମ କୋଳି, ଜାମୁ କୋଳି, କେନ୍ଦୁ, ପୁଢେଇ ଆଦି କଞ୍ଚା କିମ୍ବା ପାଚିଲା ଫଳକୁ ଖିଆଯାଏ । କେନ୍ଦୁଝରର ଜଙ୍ଗଲମାନଙ୍କରେ ଅନେକ ରଙ୍ଗବେରଙ୍ଗର ଜଙ୍ଗଲୀ ଛତୁ ଦେଖିବାକୁ ମିଳିଥାଏ । ମାଟିଆ, ଧଳା, କଳା, ହଳଦିଆ, ଲାଲ୍ ଆଦି ବିଭିନ୍ନ ରଙ୍ଗର ଛତୁ କେନ୍ଦୁଝରର ଜଙ୍ଗଲରୁ ମିଳିଥାଏ । ବର୍ଷା ଦିନ ଆରମ୍ଭ ହେବାମାତ୍ରେ ଏଠାକାର ଆଦିବାସୀ ମହିଳାମାନେ କେନ୍ଦୁଝର ବଜାରରେ ନାନା ପ୍ରକାର ଜଙ୍ଗଲୀ ଛତୁର ପସରା ମେଲେଇ ବସିଥିବାର ଦେଖାଯାଏ । ଆଦିବାସୀ ମହିଳାମାନେ ଜଙ୍ଗଲରୁ ନାନା ଜାତିର ଛତୁ ସଂଗ୍ରହ କରି ନିକଟସ୍ଥ ବଜାରମାନଙ୍କରେ ବିକ୍ରି କରି ନିଜର ଗୁଜୁରାଣ ମେଣ୍ଟେଇ ଥାନ୍ତି । ଏହି ଜଙ୍ଗଲୀ ଛତୁମାନଙ୍କ ମଧ୍ୟରୁ ବିହିଡେନ୍ ଛତୁ, ପତ୍ରିଆ ଛତୁ, ପୁଟୁକୁନି ଛତୁ, ବିଜଭାନୁ ଛତୁ, ହୁଙ୍କା ଛତୁ, ବଡ଼ ଛତୁ, ବାଲି ଛତୁ 'ରୁଟୁକା ଛତୁ' ଆଦି ଏ ଅଞ୍ଚଳରେ ବେଶ୍ ଲୋକପ୍ରିୟତା ଲାଭ କରିପାରିଛି । ଏଠାକାର ଆଦିବାସୀ ଯୁବତୀ, ମହିଳାମାନେ ନାନା ପ୍ରକାର କାଠ ଛତୁ ସଂଗ୍ରହ କରି ବିକ୍ରି କରିଥାନ୍ତି । ମୋଟ ଉପରେ କହିବାକୁ ଗଲେ ବର୍ଷା

ଦିନେ କେନ୍ଦୁଝରରେ ଏକ ଆକର୍ଷଣୀୟ ଛତୁର ବଜାର ଉପଲବ୍ଧ ହୋଇଥାଏ । ଏହା କେବଳ ସ୍ଥାନୀୟ ଅଞ୍ଚଳର ଆଦିବାସୀଙ୍କ ଦ୍ୱାରା ସମ୍ଭବ ହୋଇଥାଏ । ଆହୁରି ମଧ୍ୟ ବର୍ଷା ଦିନେ ଏଠାରେ ନାଡ଼ ନଥିବା ଆଣ୍ଟୁଆ ଛତୁ ଏବଂ ମଣ୍ଡା ଛତୁ ଦେଖିବାକୁ ମିଳିଥାଏ ।

## କେନ୍ଦୁଝରିଆ 'ରୁଟୁକା ଛତୁ'

ଛତୁ ତ ଛତୁ, ପୁଣି 'ରୁଟୁକା ଛତୁ' । କେନ୍ଦୁଝରିଆ 'ରୁଟୁକା ଛତୁ' ଠିକ୍ ଦେଖିବାକୁ କୋରାପୁଟିଆ 'ବୋତା ଛତୁ' ଭଳି । କୋରାପୁଟିଆ 'ବୋତା ଛତୁ'ଠାରୁ କେନ୍ଦୁଝରିଆ 'ରୁଟୁକା ଛତୁ' ଅଧିକ ସୁଆଦିଆ । ଗାଳ୍ପିକ ଡ· ରାମଚନ୍ଦ୍ର ବେହେରାଙ୍କ ଭାଷାରେ- "ରୁଟୁକା ଛତୁ କସା ଆଗରେ ଖାସି ମାଉଁସ, ଦେଶୀ କୁକୁଡ଼ା କସା ବି ହାର୍ ମାନିବ !" କେନ୍ଦୁଝର ଜିଲ୍ଲାକୁ ଛାଡି ଓଡ଼ିଶାର ଅନ୍ୟ ଜିଲ୍ଲାର ଲୋକଙ୍କୁ 'ରୁଟୁକା ଛତୁ' ସଂପର୍କରେ ପଚାରିଲେ ସେମାନେ କେବଳ ଆଖି, ପାଟି, କାନ, ନାକ ମେଲା କରି ଅନେଇବା ଛଡା ଆଉ ଅଧିକ କ'ଣ କରିପାରିବେ? ଭଗବାନଙ୍କର ଏକ ଚମତ୍କାର ସୃଷ୍ଟି ହେଉଛି ଏହି 'ରୁଟୁକା ଛତୁ' । ଏହାର, ନା ଅଛି ଚେର, ମୂଳ ନା ଅଛି ଶାଖା ପ୍ରଶାଖା ନା ଅଛି ମଞ୍ଜି



ବା କାଣ୍ଡ? କେବଳ ଗୋଲ୍ ଆକାରର ଛୋଟ ଛୋଟ ଖଞ୍ଜ ଗୋଲି ଭଳି ଦେଖାଯାଉଥିବା ଏହି ଅଦ୍ଭୁତ ବସ୍ତୁ ସଂପର୍କରେ ଅନେକ କିଛି ତଥ୍ୟ ଏବେ ବି ରହସ୍ୟମୟ । ଏହା ଗଛ କି ଫୁଲ କି ଫଳ, ସେ ସଂପର୍କରେ ସ୍ଥାନୀୟ ଲୋକଙ୍କୁ ବିଶେଷ କିଛି ଜଣା ନଥାଏ । ତେବେ ଏହାର ତରକାରୀ ଏତେ

ସ୍ୱାଦିଷ୍ଟ, ଯିଏ ଥରେ ଖାଇଛି, ସେ ଜାଣିଛି ତା' ମଜା । ଏହି ଛତୁର ତରକାରୀ ଖାଇଲା ବେଳେ ଜଣେ ନୂଆ ଲୋକ ଖାସି ମାଂସ ତରକାରୀର ଭ୍ରମରେ ପଡିଯିବାର ସମ୍ଭାବନା ଥାଏ । ବଡ଼ବଡ଼ିଆ ତାରକା ହୋଟେଲ୍‌ର ମେନୁରେ ଥିବା ଯେକୌଣସି 'ନନ୍ ଭେଜ୍' ଆଇଟମ୍ 'ରୁଟୁକା ଛତୁ' ଆଗରେ କିଛି ନୁହେଁ ବୋଲି କୁହାଯାଇପାରେ ।

'ରୁଟୁକା ଛତୁ'ର ଉତ୍ପତ୍ତି ସଂପର୍କରେ ସ୍ଥାନୀୟ ଅଞ୍ଚଳର ଜଣାଶୁଣା ପୁରୁଣାକାଳିଆ ଲୋକେ ମଧ୍ୟ ଅଧିକ କିଛି କହି ପାରନ୍ତିନାହିଁ । ଏହା ପ୍ରକୃତିର ଏକ ବିସ୍ମୟ । ତେବେ ଏଠାକାର ଆଦିବାସୀମାନେ ଏହି ଛତୁର ଆବିଷ୍କାରକ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହା ହିଁ ସୃଷ୍ଟିର ବୈଚିତ୍ର୍ୟ । କେନ୍ଦୁଝର ଜିଲ୍ଲାର ଶାଳ ଜଙ୍ଗଲମାନଙ୍କରେ ମାଟି ତଳୁ ଏହା ମିଳିଥାଏ । ବିଶେଷକରି ଖରା ଦିନ ଶେଷ ଓ ବର୍ଷା ଦିନର ଆରମ୍ଭରେ ଏହି 'ରୁଟୁକା ଛତୁ' ମିଳିଥାଏ । ଏହା ମାଟି ଭିତରେ ମାଳମାଳ ହୋଇ ରହିଥାଏ । ପ୍ରଥମ ବର୍ଷାର ଆଗମନରେ ମାଟି ଭିତରେ ଥାଇ ଏହା ଭଲ ଭାବେ ବିକଶିତ ହୋଇଥାଏ । କୁହାଯାଏ, ପହିଲି ବର୍ଷା, ଘଡଘଡି ଓ ବିଜୁଳି ଚମକିଲେ 'ରୁଟୁକା ଛତୁ' ମାଟି ଭିତରୁ ଉପରକୁ ଫୁଟି ଉଠିଥାଏ । ଜଙ୍ଗଲରେ କେଉଁ ମାଟିରେ 'ରୁଟୁକା ଛତୁ' ରହିଛି, ତାହାକୁ ଚିହ୍ନିବା ମଧ୍ୟ ଏକ କଳା, ନୈପୁଣ୍ୟ । କେବଳ ଆଦିବାସୀ ମହିଳା ଓ ଯୁବତୀମାନେ ବର୍ଷା ଦିନେ 'ରୁଟୁକା ଛତୁ'ର ଅନୁସନ୍ଧାନରେ ବଣ ଜଙ୍ଗଲରେ ବୁଲନ୍ତି । ସକାଳୁ ଟାଙ୍କୁଡି ଧରି ମାଳମାଳ ଆଦିବାସୀ ଯୁବତୀ ଓ ମହିଳାମାନେ ଜଙ୍ଗଲରେ ବୁଲି ଏହି 'ରୁଟୁକା ଛତୁ' ସଂଗ୍ରହ କରୁଥିବାର ଦୃଶ୍ୟ ବାସ୍ତବରେ ଆକର୍ଷଣୀୟ । ଯେଉଁ ସ୍ଥାନରେ ମାଟି ଉପରକୁ ଫୁଲି ଉଠିଥିବ ଏବଂ ମାଟିରେ ଫାଟ ସୃଷ୍ଟି ହୋଇଥିବ, ସେହି ସ୍ଥାନରେ 'ରୁଟୁକା ଛତୁ' ରହିଛି ବୋଲି ଏହି ଆଦିବାସୀ ଯୁବତୀମାନେ ଜାଣିପାରନ୍ତି । ଯୁବତୀମାନେ ସାଙ୍ଗରେ ଶାବଳ, କୋଡି, କୋଦାଳ ଧରି ଜଙ୍ଗଲରେ ବୁଲୁଥିବେ, ଯେଉଁଠି 'ରୁଟୁକା ଛତୁ'ର ସନ୍ଧାନ ପାଇବେ ସେଠାରେ ମାଟିକୁ ଖୋଳି ଏହାକୁ ସଂଗ୍ରହ କରୁଥିବେ ।

'ରୁଟୁକା ଛତୁ' ଦେଖିବାକୁ ସଂପୂର୍ଣ୍ଣ ଗୋଲ୍ ଏବଂ ଛୋଟ ଛୋଟ ଶଙ୍ଖ ଗୋଲି ଆକୃତିର । ଏହାର ଚେର କି କାଣ୍ଡ କିଛି ନଥାଏ । ଏହାର ମଞ୍ଜି ବି ନଥାଏ । ତେବେ ଏହା ମାଟି ଭିତରେ କିପରି ସୃଷ୍ଟି ହୁଏ ସେ ସଂପର୍କରେ କେହି କିଛି କହି ପାରନ୍ତିନାହିଁ । କୁହାଯାଏ, ଘଡଘଡି ଓ ବର୍ଷା ହେଲେ ଏହା ମାଟି ଭିତରେ ସୃଷ୍ଟି ହୋଇଥାଏ । ତେବେ ଏହା ଏକ ଲୋକ ବିଶ୍ୱାସ । ପ୍ରକୃତ ତଥ୍ୟ କେହି ବି ଜାଣନ୍ତି ନାହିଁ । ଏଥିନେଇ ବିଜ୍ଞାନ କ'ଣ କୁହେ, ସେ ସଂପର୍କରେ ସମସ୍ତେ ଅଜ୍ଞ ।

ମଣିଷ ଚାହିଁଲେ ବି ଏହାକୁ କୃତ୍ରିମ ଉପାୟରେ ଚାଷ କରିପାରିବ ନାହିଁ । ଏହା କେବଳ ପ୍ରାକୃତିକ ଉପାୟରେ ଏଠାକାର ଶାଳ ଜଙ୍ଗଲର ମାଟି ତଳୁ ମିଳିଥାଏ । ଆଦିବାସୀ ଯୁବତୀମାନେ ସକାଳୁ ଜଙ୍ଗଲକୁ ଯାଇ ପାଟିଆଏ ଲେଖା 'ରୁଟୁକା ଛତୁ' ସଂଗ୍ରହ କରି ଆଣି ସ୍ଥାନୀୟ ମାର୍କେଟ୍‌ରେ ବିକ୍ରି କରନ୍ତି । ତେବେ ସବୁଠୁ ଆଶ୍ଚର୍ଯ୍ୟର କଥା ହେଉଛି, ଏହି ଛତୁର ଦାମ୍ ଆକାଶ ଛୁଆଁ । ଅନ୍ୟ

ଛତୁମାନଙ୍କ ତୁଳନାରେ ଏହାର ଦାମ୍ ଚଢା । ଅନ୍ୟ ଛତୁର ଦାମ୍ କିଲୋ ପ୍ରତି ହାରାହାରି ୧୦୦ରୁ ୧୫୦ ଟଙ୍କା ଥିଲାବେଳେ ବୋଡା ଛତୁ କିଲୋ ପ୍ରତି ୩୦୦ ଟଙ୍କାରେ ବିକ୍ରି ହୋଇଥାଏ । ତେବେ ସ୍ଥଳ ବିଶେଷରେ ଏହା ୨୦୦ରୁ ୨୫୦ ଟଙ୍କାରେ ମଧ୍ୟ ମିଳିଥାଏ । ମେ' ମାସର ଶେଷ ସପ୍ତାହ ଓ ଜୁନ୍ ମାସର ଦ୍ୱିତୀୟ କିମ୍ବା ତୃତୀୟ ସପ୍ତାହ ପର୍ଯ୍ୟନ୍ତ ଶାଳ ଜଙ୍ଗଲରେ ମାଟି ତଳୁ ଏହା ପର୍ଯ୍ୟାପ୍ତ ପରିମାଣରେ ମିଳିଥାଏ । ଅପରପକ୍ଷେ, ଏହା ଅଗଷ୍ଟ ମାସର ଶେଷ ସପ୍ତାହ ପର୍ଯ୍ୟନ୍ତ ମଧ୍ୟ ମାଟି ଭିତରୁ ମିଳିଥାଏ , ମାତ୍ର ସେତେବେଳକୁ ଏହାର ସ୍ୱାଦ ଓ ଖାଦ୍ୟ ଗୁଣ କମି ଯାଇଥାଏ । ଅଗଷ୍ଟ ମାସରେ ସଂଗ୍ରହ କରାଯାଉଥିବା 'ରୁଟୁକା ଛତୁ' ଖାଇବାକୁ ସୁଖ ଲାଗି ନ ଥାଏ । ମାତ୍ର ଜୁନ୍ ମାସର ପ୍ରଥମ ସପ୍ତାହ ବେଳକୁ ଯେଉଁ 'ରୁଟୁକା ଛତୁ' ସଂଗ୍ରହ କରାଯାଇଥାଏ, ତାହା ଖାଇବାକୁ ଭାରି ସୁଆଦିଆ ହୋଇଥାଏ ।

'ରୁଟୁକା ଛତୁ'ରେ ବିଭିନ୍ନ ପ୍ରକାର ଆଇଟମ୍ କରାଯାଇପାରେ । ରୁଟୁକା ଚିଲି, ରୁଟୁକା ଫ୍ରାଏ (କସା), ରୁଟୁକା ଛତୁ ତରକାରୀ, ରୁଟୁକା ଛତୁ ଭଜା (ସନ୍ତୁଳା) ଆଦି ବିଭିନ୍ନ ପ୍ରକାର ଆଇଟମ୍ ତାରକା ହୋଟେଲ୍‌ର ମେନୁକୁ ମାତ୍ ଦେବାର ସମ୍ଭାବନା ରହିଛି । ପୁରୁଷ ପୁରୁଷ ଧରି ଏହି 'ରୁଟୁକା ଛତୁ'କୁ କେନ୍ଦୁଝରର ଆଦିବାସୀ ଯୁବତୀମାନେ ସଂଗ୍ରହ କରନ୍ତି ଏବଂ ଧନୀକ ଶ୍ରେଣୀର ଲୋକେ ଏହାକୁ ଖାଆନ୍ତି । କୋଡିଏ ବର୍ଷ ତଳେ 'ରୁଟୁକା ଛତୁ' କିଲୋ ପ୍ରତି ଦଶ ଟଙ୍କାରେ ମିଳୁଥିବାବେଳେ ଏବେ ଏହା ୩୫୦ ଟଙ୍କାରେ ପହଞ୍ଚିଛି । କେନ୍ଦୁଝର ବଜାରରେ ବାଂଶପାଳ, ଗୋନାସିକା, କାଞ୍ଜିପାଣି ଅଞ୍ଚଳର ବୋଡା ଛତୁର ଏକ ବିଶେଷ ଭାଉ ରହିଛି । 'ରୁଟୁକା ଛତୁ' ଦେଖିବାକୁ ସାଧାରଣତଃ ମାଟିଆ ରଙ୍ଗର । ତେବେ ମାଟିଆ ବ୍ୟତୀତ ଧୂସର, ଲାଲ୍, କଳା ରଙ୍ଗର 'ରୁଟୁକା ଛତୁ' ଦେଖିବାକୁ ମିଳେ । ତେବେ ଧଳା ଓ କଳା ରଙ୍ଗର 'ରୁଟୁକା ଛତୁ' ବେଶି ସୁଆଦିଆ ବୋଲି ସ୍ଥାନୀୟ ଲୋକେ କହନ୍ତି ।

# ଫଟୋରେ କେନ୍ଦୁଝର ...



ନିର୍ଜନତାର ସମାହାର ଓ ନିରବତାର ମୀନାବଜାର: କାଂଜିପାଣି ଘାଟି 





ଘଟଗାଁ ତାରିଣୀ ମନ୍ଦିର ପରିସରରେ ଘଟକେଶ୍ୱର ମନ୍ଦିର



କେନ୍ଦୁଝର ରାଜବାଟୀର ଅପରପାର୍ଶ୍ୱରେ ଥିବା ଚନ୍ଦନ ପୁଷ୍କରିଣୀ



ଘଟଗାଁ ତାରିଣୀ ମନ୍ଦିର ପରିସରରେ ଥିବା ଜଗନ୍ନାଥ ମନ୍ଦିର



ନରଣପୁରଠାରେ ଥିବା ମହାଦେବ ଘଡଘଡି ମହେଶଙ୍କ ମନ୍ଦିର



ଖୁଣ୍ଟାପଡାଠାରେ ଥିବା ମହାଦେବ ବ୍ରହ୍ମେଶ୍ୱରଙ୍କ ମନ୍ଦିର



ଖୀରେଇଟାଙ୍ଗିରିର ସର୍ବେଶ୍ୱର ମହାଦେବଙ୍କ ମନ୍ଦିର



ତେଲକୋଇର ଜଗନ୍ନାଥ ମନ୍ଦିର




ଭୁବନେଶ୍ୱରର ରାଜ୍ୟ ସଂଗ୍ରହାଳୟରେ ଥିବା କେନ୍ଦୁଝର ଅଂଚଳର ଉଦ୍ଧୃତ ବିଷ୍ଣୁଙ୍କ ଦ୍ୱାରପାଳ ମୂର୍ତ୍ତି



ଇଂରେଜ ଅମଳର ପ୍ରାଚୀନ ଚଂପୁଆ ବୈତରଣୀ ପୋଲ । ସୂଚନାଯୋଗ୍ୟ, ଏହି ପୋଲଟି ଉଭୟ ଓଡ଼ିଶା ଓ ଝାଡଖଣ୍ଡର ସୀମା ନିର୍ଦ୍ଧାରକ । ପୋଲଟିର ଠିକ୍ ମଝିରେ ଏକ ସୀମା ନିର୍ଦ୍ଧାରଣ ଚିହ୍ନ ଦେଖିବାକୁ ମିଳେ । ତେବେ ଏହି ଐତିହ୍ୟ ପୋଲଟି ଏବେ ବ୍ୟବହାର ଅନୁପଯୋଗୀ ହୋଇପଡିଛି ।



ବ୍ରାହ୍ମଣୀପାଳରେ କୁଶଭଦ୍ରା ନଦୀ ଉପରେ ଥିବା ଉଚ୍ଚତମ ରେଳପୋଲ



କାନ୍ଝାରୀ ଜଳଭଣ୍ଡାରରେ ଏକ ମନୋରମ ସଂଧ୍ୟା



କାନ୍ଝାରୀ ଡ୍ୟାମ୍



ତେଲକୋଇ ବ୍ଲକ୍ ଅନ୍ତର୍ଗତ କାକୁଡିଅମ୍ବା ଜଳଭଣ୍ଡାରରେ ଏକ ଅପରାହ୍ନର ଦୃଶ୍ୟ



ତେଲକୋଇ ବ୍ଲକ୍‌ରେ ବହିଯାଇଥିବା ସମାକୋଇ ନଦୀସ୍ଥ ଚକଦରଠାରେ ପ୍ରକୃତିର ଅଫୁରନ୍ତ ସୌନ୍ଦର୍ଯ୍ୟ । ସୂଚନାଯୋଗ୍ୟ, ଏଠାରେ ପ୍ରସ୍ତାବିତ ନଦୀବନ୍ଧ ଯୋଜନାକୁ ତେଲକୋଇ ଅଞ୍ଚଳବାସୀ ବିରୋଧ କରିଆସୁଛନ୍ତି ।



ତେଲକୋଇ ବ୍ଲକ୍‌ରେ ଥିବା ପ୍ରସିଦ୍ଧ 'ଟେଣ୍ଟେଇନାଳି ଜଳପ୍ରପାତ'



⇧ ଦେଓଗାଁର କୁଶଳେଶ୍ୱର ମହାଦେବଙ୍କ ପୀଠ ନିକଟରେ ଥିବା
କୁଶଭଦ୍ରା ନଦୀ ଘାଟ । ରାଜା ଯଯାତିକେଶରୀଙ୍କ ଦ୍ୱାରା ଏହି
ଐତିହାସିକ ଘାଟ ଓ ରିଂ ବନ୍ଧ ନିର୍ମାଣ କରାଯାଇଥିଲା ।







ପ୍ରସିଦ୍ଧ 'କେନ୍ଦୁଝରୀ ଟାଟ' । ବଳଦେବଜୀଉଙ୍କ ମନ୍ଦିରରେ ଏହା ଏକ ପ୍ରକାର ଭୋଗ । ମନ୍ଦିର ସାମ୍ନାରେ ବିକ୍ରି କରାଯାଏ ।



ବିପ୍ଳବୀ ଧରଣୀଧରଙ୍କ ଏକ କଳ୍ପିତ ଚିତ୍ରାଙ୍କନ



କେନ୍ଦୁଝର ଜିଲ୍ଲାରେ କାର୍ଯ୍ୟରତ ଏକ ସ୍ପଞ୍ଜ ଆଇରନ୍ ପ୍ଲାଣ୍ଟର ଚିତ୍ର



କେନ୍ଦୁଝର ଜିଲ୍ଲାରେ ଏକ ରେଲ୍ ୱେ ସାଇଡିଂର ଦୃଶ୍ୟ




କେନ୍ଦୁଝର ଜିଲ୍ଲାରେ କାର୍ଯ୍ୟରତ ଖଣି ଭିତରର ଚିତ୍ର






କେନ୍ଦୁଝର ସଦର ବ୍ଲକ୍‌ରେ ଥିବା କାଦଗଡ଼ ଗୁମ୍ଫା




ରାଜାରାଜୁଡା ଅମଳର କଚେରୀ ଘର, ଯାହା ଏବେ
କେନ୍ଦୁଝର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ଭାବେ ବ୍ୟବହୃତ ହେଉଛି ।



 କେନ୍ଦୁଝରର ହାଡଥରା ଶୀତ ଘାଙ୍କୁ ତୁଷାରପାତ 





ଜୁଡିଆଘାଟିରୁ କେନ୍ଦୁଝର ସହରର ଦୃଶ୍ୟ



ଶାରଦୀୟ ଋତୁରେ ଅରଡେଇ ନଦୀ କୂଳରେ କାଶତଣ୍ଡିର ସଂଭାର

# ସହାୟକ ଗ୍ରନ୍ଥ ସୂଚୀ


୦୧· ଶ୍ରୀଭଞ୍ଜଭୂମି କେନ୍ଦୁଝରୀ ଶ୍ରୀ ବିପିନ ବିହାରୀ ଦାସ (ପ୍ରଥମ ଭାଗ-୧୯୮୦)

୦୨· କେନ୍ଦୁଝର ପରିଚିତି ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ (୨୦୦୧)

୦୩· କେନ୍ଦୁଝରର ଦେବଦେବୀ ଶ୍ରୀ ରମେଶ ଚକ୍ରବର୍ତ୍ତୀ (୨୦୦୮)

୦୪· ଐଶ୍ୱର୍ଯ୍ୟମୟୀ କେନ୍ଦୁଝରୀ କାକଳି ପ୍ରକାଶନୀ, କେନ୍ଦୁଝରଗଡ଼

୦୫· କେନ୍ଦୁଝର ଦର୍ପଣ ଡ· କୃତ୍ତିବାସ ନାୟକ (୧୯୯୭)

୦୬· ବିଭିନ୍ନ ବର୍ଷର ସ୍ମରଣିକା (ଗୋନାସିକା)

*07. Orissa District Gazetteers, Kendujhar (1986)*
*-Nilamani Senapati, I.C.S*
*-Nrusinha Ch. Behuria, I.A.S*
*-Durga Ch. Kuanr*

*08. District Statistical Hand Book, Keonjhar (2007)*

*09. The official website, Keonjhar*

୧୦· ଆଇନା (କେନ୍ଦୁଝର ବିଶେଷାଙ୍କ) (ଜାନୁୟାରୀ-ଫେବୃଆରୀ, ୨୦୦୭)

୧୧· ଆମ ଜିଲ୍ଲା: କେନ୍ଦୁଝର ସାହିଦ୍ ଉମର (୨୦୧୦)

## ଲେଖକଙ୍କ ଅନ୍ୟାନ୍ୟ ବହି

୧. ମାଟିଗୀତ (କବିତା ସଂକଳନ)
୨. ତନୁଜା ବଳକୁ ନେଇ ଯେତେସବୁ ବେକାରିଆ ଗପ (ଗପ ସଂକଳନ)
୩. ଭିଟାମିନ୍ (ଗପ ସଂକଳନ)
୪. ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ (ଫିଚର ସଂକଳନ)
୫. ବଣ ଡଙ୍ଗରର ଗପ-ପ୍ରଥମ ଭାଗ (କୋରାପୁଟିଆ ଆଦିବାସୀ ଲୋକଗପ ସଂଗ୍ରହ)
୬. ବଣ ଡଙ୍ଗରର ଗପ-ଦ୍ୱିତୀୟ ଭାଗ (କୋରାପୁଟିଆ ଆଦିବାସୀ ଲୋକଗପ ସଂଗ୍ରହ)
୭. ପରଜା ଜୀବନ ଓ ସଂସ୍କୃତି (ଗବେଷଣାଧର୍ମୀ ପୁସ୍ତକ)
୮. Tales from Hill & Jungle (tribal folk tales of Koraput region)
୯. ଆଦିବାସୀ ନାଚ ଓ ଗୀତ (ଗବେଷଣାଧର୍ମୀ ପୁସ୍ତକ)
୧୦. ଭାଗବତ ଟୁଙ୍ଗି (କବିତା ସଂକଳନ)
୧୧. ଡୁମା ଦେବତା ଓ ଅନ୍ୟାନ୍ୟ ଗପ (ଗପ ସଂକଳନ)

ଲେଖକଙ୍କୁ ଆପଣ ଫୋନ୍ କରିପାରିବେ:
୯୪୩୭୨୧୩୮୫୪
ଆପଣ ମେଲ୍ ପଠେଇ ପାରିବେ:
e-mail
ranjan_pragyan@rediffmail.com
pradhanranjan37@yahoo.com



ISBN: 987-81-89098-61-2

₹ 350
$ 25



Marketing by
Paschima
Publications

